# ସଞ୍ଚୟନ

ପ୍ରାଚୀନ ଯୁଗରୁ ସାମ୍ପ୍ରତିକ ଯୁଗ ପର୍ଯ୍ୟନ୍ତ
ଓଡ଼ିଆ କବିତା ସଂକଳନ

ସମ୍ପାଦକ
ବସନ୍ତ କୁମାର ଶତପଥୀ




ସାହିତ୍ୟ ଏକାଡେମୀ
ନୂଆ ଦିଲ୍ଲୀ

*Sanchyana* (an anthology of Oriya poetry) complied and edited by Sri Basanta Kumar Satpathy for Sahitya Akademi, New Delhi, 1974.
Price Rs. 15.00



**ସାହିତ୍ୟ ଏକାଡେମୀ**

ରବୀନ୍ଦ୍ର ଭବନ, ୩୫ ଫିରୋଜସାହା ରୋଡ଼

ନୂଆ ଦିଲ୍ଲୀ-୧

ରବୀନ୍ଦ୍ର ସରୋବର ଷ୍ଟେଡ଼ିୟମ,

ବ୍ଲକ୍ V ବି, କଲିକତା-୨୯

୨୧, ହେଡୋସ୍ ରୋଡ଼, ମାଡ୍ରାଜ ୬

୧୭୨, ନଇଗାଓଁ କ୍ରସ ରୋଡ଼,

ବମ୍ବେଇ-୧୪

ମୂଲ୍ୟ—ଟ ୧୫.୦୦

ଜେନେରାଲ୍ ପ୍ରିଣ୍ଟର୍ସ ଆଣ୍ଡ ପବ୍ଲିଶର୍ସ ପ୍ରାଇଭେଟ୍ ଲିମିଟେଡ୍ (ଅବନାଶ ପ୍ରେସ),
୧୧୯ ଲେନିନ ସରଣୀ, କଲିକତା ୭୦୦୦୧୩ରୁ ଶ୍ରୀ ସୁରଜିତ୍ ଚନ୍ଦ୍ର ଦାସଙ୍କ ଦ୍ୱାରା ମୁଦ୍ରିତ.

# ସୂଚୀ


ବିଷୟ — ପୃଷ୍ଠା

ପ୍ରାକ୍‌କଥନ

ଓଡ଼ିଆ କାବ୍ୟ ସାହିତ୍ୟର ସୂଚନା

## ପୁରାଣ ଓ ମଧ୍ୟଯୁଗ

କାହ୍ନୁପା (?୮ମରୁ ୧୨ଶ ଶତାବ୍ଦୀ)

ନଗର ବାହିରେ ଡୋମ୍ବି — ୩

ରୁ ନାମ ସୁଣ୍ଡାଳୀ — ୪

ଶବରପା (? ୮ମରୁ ୧୨ଶ ଶତାବ୍ଦୀ)

ଉଁଚା ଉଁଚା ପାବତ — ୫

ଗଅଣତ ଗଅଣତ ତ୍ରଇଲା ବାଡ଼ୀ ... — ୬

ଲୁଇପା (? ୮ମରୁ ୧୨ଶ ଶତାବ୍ଦୀ)

କାଆ ତରୁବର — ୮

ଗୋରେଖ ନାଥ (? ୧୨ଶରୁ ୧୪ଶ ଶତାବ୍ଦୀ)

ରେଖ ନାହିଁ ରୂପ ନାହିଁ ... — ୯

ଅବଧୂତ ନାରାୟଣାନନ୍ଦ ସ୍ୱାମୀ (? ୧୪ଶରୁ ୧୫ଶ ଶତାବ୍ଦୀ)

ମୋହନା — ୧୦

ବତ୍ସ ଦାସ (? ୧୪ଶରୁ ୧୫ଶ ଶତାବ୍ଦୀ)

କଳସା — ୧୩

ସାରଳା ଦାସ (୧୫ଶ ଶତାବ୍ଦୀ)

ଅସ୍ତ୍ର ଶିକ୍ଷା — ୧୯

ଗୁରୁ ଦକ୍ଷିଣା — ୨୨

ସ୍ୱୟମ୍ବର ସଭା — ୨୯

ମାର୍କଣ୍ଡେୟ ଦାସ (? ୧୫ଶରୁ ୧୬ଶ ଶତାବ୍ଦୀ)

ଗଜ ପୁତ୍ର ବାହୁଡ଼ି ନର୍ତ୍ତନ — ୩୬

ଅର୍ଜୁନ ଦାସ (? ୧୫ଶରୁ ୧୬ଶ ଶତାବ୍ଦୀ)
ତାଡ଼କା ବଧ ୩୯
ଦାମୋଦର ଦାସ (?୧୫ଶରୁ ୧୬ଶ ଶତାବ୍ଦୀ)
ଝୁରୁଅଛୁ ପ୍ରାଣବନ୍ଧୁ ୪୧
ବଳରାମ ଦାସ (୧୫ଶରୁ ୧୬ଶ ଶତାବ୍ଦୀ)
ଧନୁଭଙ୍ଗ ... ୪୪
ଗୁହକର ପଦାଠ ୪୯
ମାସ୍ତାଲଙ୍କସାଙ୍ଗେ ୫୨
ବଳରାମ ଦାସ (୨ୟ ?) ...
କାନ୍ତ ମୋର ଗଲେ ମୃଗ ମାର ୫୪
ଜଗନ୍ନାଥ ଦାସ (୧୬ଶ ଶତାବ୍ଦୀ)
ଶୁଣ କପୋତ ଗୁରୁ ମୋର ୫୫
ବର୍ଷା ୫୮
ଭାଗବତ ବଚନ ୬୦
ଅଚ୍ୟୁତାନନ୍ଦ ଦାସ (୧୬ଶ ଶତାବ୍ଦୀ)
ମୋ କାହ୍ନୁରେ ୬୩
ଘରଘରଣୀ ସମ୍ବାଦ ୬୪
ଯଶୋବନ୍ତ ଦାସ (୧୫ଶରୁ ୧୬ଶ ଶତାବ୍ଦୀ)
ହାଡ଼ ରୁ ନ ବୋଲ ହାଡ଼ପା ରୁ ବୋଲ ୬୬
ନିତ୍ୟଧାମ ... ୬୯
ନରସିଂହ ସେଣ ମହାପାତ୍ର (୧୬ଶ ଶତାବ୍ଦୀ)
ତିଲୋତ୍ତମାର ନୃତ୍ୟ ... ୭୦
ମାଧବୀ ଦାସୀ (? ୧୬ ଶତାବ୍ଦୀ)
ଚକାନୟନ ହେ ୭୩
ଶଙ୍କର ଦାସ (? ୧୬ ଶତାବ୍ଦୀ)
ଆରେ ବାବୁ ଗୃହଧାରୀ ... ୭୪

ଦେବ ଦୁର୍ଲ୍ଲଭ ଦାସ (? ୧୬ଶରୁ ୧୭ଶ ଶତାବ୍ଦୀ)
ଦ୍ୱାରକାରେ ଶ୍ରୀକୃଷ୍ଣ ୭୬
ସଖୀ ରୁ ସାନ୍ତ୍ୱନା ୭୭
ଫଲ ତୋଳା ୭୯
ଉନ୍ମାଦ ୮୧
ସାଲବେଗ (? ୧୬ଶରୁ ୧୭ଶ ଶତାବ୍ଦୀ)
ବଂଶୀଧ୍ୱନି ୮୩
ମୋତେ ସେହିରୂପ ଦେଖାଅ ୮୪
ଆହେ ନୀଳ ଶଇଳ ୮୪
ଶିଶୁ ଶଙ୍କର ଦାସ (? ୧୬ଶରୁ ୧୭ଶ ଶତାବ୍ଦୀ)
ମୃତ୍ୟୁ ... ୮୫
କାର୍ତ୍ତିକ ଦାସ (? ୧୬ଶରୁ ୧୭ଶ ଶତାବ୍ଦୀ)
ରୁକ୍ମଣୀ ବନ୍ଧ ୮୭
ଭୀମ ଧୀବର (? ୧୬ଶରୁ ୧୭ଶ ଶତାବ୍ଦୀ)
ବାରୁଣୀବନ୍ତରେ ଦୁଃଶା ୯୨
ବଷ୍ଣୁ ଦାସ (? ୧୬ଶରୁ ୧୭ଶ ଶତାବ୍ଦୀ)
ରେ ମନ୍ଦାକନୀ ... ୯୬
ପୁରୁଷୋତ୍ତମ ଦାସ (୧୬ଶରୁ ୧୭ଶ ଶତାବ୍ଦୀ)
ମାଣିକ୍ୟ ୯୯
ପ୍ରତାପ ରାୟ (? ୧୭ଶରୁ ୧୮ଶ ଶତାବ୍ଦୀ)
ଶଶିସେଣା ୧୦୦
ରଘୁନାଥ ହରିଚନ୍ଦନ (୧୭ଶରୁ ୧୮ଶ ଶତାବ୍ଦୀ)
ନଦୀ ୧୦୩
ଧନଞ୍ଜୟ ଭଞ୍ଜ (୧୭ଶରୁ ୧୮ଶ ଶତାବ୍ଦୀ)
ଚଣ ମୃଗ ୧୦୪

ବିକ୍ରମ ଭଞ୍ଜ (୧୭ଶରୁ ୧୮ଶ ଶତାବ୍ଦୀ)
ବର ବରଷା ହେଲା ପରବେଶ ୧୦୭
ଦୀନକୃଷ୍ଣ ଦାସ (୧୭ଶରୁ ୧୮ଶ ଶତାବ୍ଦୀ)
କେହ୍ନେ ନନା ୧୦୯
ଅଙ୍କୁ ୧୧୦
ଗୋପୀ ଧାଇଁଲେ ୧୧୨
କାଳୀୟ ଦଳନ ୧୧୩
ଗ୍ରୀଷ୍ମ ୧୧୪
କୃପାସିନ୍ଧୁ ବଚନ ୧୧୬
ବୃନ୍ଦାବତୀ ଦାସୀ (୧୭ଶରୁ ୧୮ଶ ଶତାବ୍ଦୀ)
ତ୍ରିଭଙ୍ଗୀ ୧୧୭
ଭୂପତି ପଣ୍ଡିତ (୧୭ଶରୁ ୧୮ଶ ଶତାବ୍ଦୀ)
ରମ୍ଭା ଓ ନାରଦେଳ ୧୧୮
ରାଧା ଓ ବୃନ୍ଦାବତୀ ୧୧୯
କଳା ଲୋକ ୧୨୪
ଲୋକନାଥ ବିଦ୍ୟାଧର—(୧୭ଶରୁ ୧୮ଶ ଶତାବ୍ଦୀ)
କଳିଯୁଗ କଥା ୧୨୬
ସ୍ୱୟମ୍ବର ୧୨୮
ଉପେନ୍ଦ୍ର ଭଞ୍ଜ (୧୭ଶରୁ ୧୮ଶ ଶତାବ୍ଦୀ—୧୬୮୮-୧୭୪୧)
ବନ୍ଦଇଁ ଦୀନବାନ୍ଧବ ୧୩୧
ନିକାଳ ୧୩୨
କରୁଣାକର ହେ କରୁଣାକର ୧୩୩
ଅବନା ୧୩୪
ବନସ୍ତ ପତର ୧୩୪
ଜଳକ୍ରୀଡ଼ା ୧୩୮
ପଲ୍ୟଙ୍କ ଅଙ୍କରେ ଲାବଣ୍ୟବତୀ ୧୪୧

| | |
|---|---|
| ଚେଉ ଚରୁଣୀ | ୧୪୩ |
| ମାଳିନୀ | ୧୪୪ |
| ନଟନଟୀ | ୧୪୬ |
| ଦେଖି ନବକାଳିକା | ୧୪୮ |
| ହେମନ୍ତ | ୧୪୯ |
| ଚନ୍ଦ୍ରକୂଟ | ୧୫୦ |
| ଜାହ୍ନବୀ | ୧୫୧ |
| ବାଣବାହୁ ହେ | ୧୫୩ |
| ବନେ ବସିଥିଲି | ୧୫୪ |
| ଅହ୍ମା ମୋ ଜୀବନଧନୀ | ୧୫୬ |
| **ବିଶ୍ୱନାଥ ଖୁଣ୍ଟିଆ (୧୭ଶରୁ ୧୮ଶ ଶତାବ୍ଦୀ)** | |
| ମାୟାମୃଗ | ୧୫୬ |
| ହନୁ ଓ ସୀତା | ୧୫୯ |
| **ଦାଶରଥି ଦାସ (ଅଷ୍ଟାଦଶ ଶତାବ୍ଦୀ)** | |
| ଏ ପ୍ରୀତ ନୋହଇ ଭିନ୍ନରେ | ୧୬୨ |
| ହାଥୀ ଝୁଲଇରେ | ୧୬୫ |
| **କୃପାସିନ୍ଧୁ ଦାସ (ଅଷ୍ଟାଦଶ ଶତାବ୍ଦୀ)** | |
| ଆଉ ଅଛୁ କି ସେ ଭ୍ରମା | ୧୬୬ |
| **ରଘୁନାଥ ଭଞ୍ଜ (ଅଷ୍ଟାଦଶ ଶତାବ୍ଦୀ)** | |
| ବନ କେଳି | ୧୬୮ |
| **ପୀତାମ୍ବର ଦାସ (ଅଷ୍ଟାଦଶ ଶତାବ୍ଦୀ)** | |
| ?° | ୧୭୦ |
| ଶୁକ ପ୍ରତି ମେନକା | ୧୭୧ |
| **ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା (ଅଷ୍ଟାଦଶ ଶତାବ୍ଦୀ)** | |
| ନାହିଁ ମୋ ଡର | ୧୭୪ |
| ମୋର କଲା ଚାହିଁତ • | ୧୭୬ |

| | |
|---|---|
| ଦନେଇ ଦାସ (ଅଷ୍ଟାଦଶ ଶତାବ୍ଦୀ ?) | |
| ଭାନୁର ରଙ୍ଗ | ୧୭୯ |
| ଚନ୍ଦ୍ରାବଳୀଙ୍କ ଫୁଲ ବେଶ ... | ୧୮୨ |
| କାହିଁକି ଜନମ ହୋଇଲ ଗୋସାଇଁ | ୧୮୩ |
| ହିପୁରୀର ଦାସ (ଅଷ୍ଟାଦଶ ଶତାବ୍ଦୀ) | |
| ଜନ୍ମୋତ୍ସବ | ୧୮୭ |
| ବ୍ରଜନାଥ ବଡ଼ଜେନା (ଅଷ୍ଟାଦଶ ଶତାବ୍ଦୀ) | |
| ମରହଟ୍ଟା ଫଉଜ | ୧୮୯ |
| ନ ଛାଡ଼ିବା କଲ୍ଲା | ୧୯୧ |
| ଯାଗ ମଣ୍ଡପେ ଦ୍ୱିଜ | ୧୯୩ |
| ଅଭିମନ୍ୟୁ ସାମନ୍ତ ସିଂହାର (୧୭୫୭-୧୮୦୬) | |
| ଭଙ୍ଗୀ | ୧୯୪ |
| କଂଶାରୀ ଶୋଭା | ୧୯୭ |
| ଶରତ ସନ୍ଧ୍ୟା | ୧୯୮ |
| ସୁଧା ଧର ସଖୀ କର | ୧୯୯ |
| କି ଜାତ ପଦାର୍ଥ ? କାହୁଁ ଏ ଥଇଲ ? | ୨୦୧ |
| ପ୍ରାବେଶ ଘଟ | ୨୦୩ |
| ଜଳା ମାଣିକ | ୨୦୪ |
| ବଂଶୀ ସ୍ୱରୂପ | ୨୦୬ |
| ଗଣି ନାଇକଙ୍କ ଗପ (୧୮ଶରୁ ୧୯ ଶତାବ୍ଦୀ) | |
| କୁଂମ ସମସ୍ୟା | ୨୦୮ |
| ପଦ୍ମନାଭ ଶ୍ରୀ ଚନ୍ଦନ (ଅଷ୍ଟାଦଶ ଶତାବ୍ଦୀ) | |
| ବରଷା | ୨୦୯ |
| ଭକ୍ତ ଚରଣ ଦାସ (୧୮ଶ ୧୯ଶ ଶତାବ୍ଦୀ) | |
| କଳା କଲେବରର କହ୍ନାଇ | ୨୧୧ |
| ଯାହା ମୁଖ ଅନାଇ ବଞ୍ଚିବ .... | ୨୧୨ |

ଭକ୍ତ ଓ ଜ୍ଞାନ ୨୧୪

ଚଷାଙ୍କ ୨୧୬

ନହଇ ମନ ଆରେ ... ୨୧୮

ବନମାଳୀ ଦାସ (୧୮ଶ-ଊନବିଂଶ ଶତାବ୍ଦୀ)

ପ୍ରୀତ ଝୁରି ୨୨୦

କୃଷ୍ଣନଆଁ ଗିଳଛୁ କଆଁ ୨୨୦

ଏ ବେଣ ହୋଇବ ନାହିଁ ୨୨୧

ତୋର ଏତେ ବଡ଼ାଇ ୨୨୨

ଧନ ମାଗୁ ନାହିଁ ଜନ ମାଗୁ ନାହିଁ ୨୨୨

ନୂଆ ନୂଆ ଦଣେ ୨୨୩

କାହାରେ କହିବ ସହି ୨୨୩

କେଶବ ପଟ୍ଟନାୟକ (୧୮ଶ-୧୯ଶ ଶତାବ୍ଦୀ)

ତୁମ୍ଭ ସଙ୍ଗେ ମୁହିଁ ଯିବି ୨୨୪

ଚଣ୍ଡାଳ ଓ ସୁନ୍ଦରୀ ... ୨୨୬

ଗୋପାଳକୃଷ୍ଣ ପଟ୍ଟନାୟକ (୧୭୮୫-୧୮୫୭)

ପଦାବଳୀ ୨୩୧

ରାଧା ପଦ୍ମରତ୍ନ ସଙ୍ଗାତରେ ୨୩୧

କେଶର କୁଞ୍ଜ ଶେଯରେ ୨୩୨

ଶ୍ୟାମ ସୁନ୍ଦର ମୁରଲୀ ୨୩୩

କରୁଥିଲ ମୁଁ ନାହିଁ ନାହିଁରେ ୨୩୩

ଗୋଷ୍ଠ ଚନ୍ଦ୍ରମାଙ୍କୁ ଆସ ବୋଲରେ ସହି ୨୩୪

• ମୋହନ ଗୀତ ଛନ୍ଦା ପଢ଼ିଲା ମା ୨୩୪

ଶ୍ୟାମ ଯା ଯା କୁହାର ତୋ ପୀରତିକ ରେ ୨୩୫

ଦେଲି ସହି କୁଳକୁ ଟେକି ଜଳାଞ୍ଜଳି ୨୩୫

ଶ୍ୟାମର ତୋର କଥା ନାହିଁକି ରେ ୨୩୬

ଉଠିଲୁ ଏତେ ବେଗି କାହିଁକି ରେ ... ୨୩୬

କବିସୂର୍ଯ୍ୟ ବଳଦେବ ରଥ :...(୧୭୮୯-୧୮୬୮)
କାଳ ସର୍ପ ଆପଣ ୨୩୮
କେନେ ହସିବେ ୨୩୯
ଲଳିତା ... ୨୪୦
୧—ଖଗପ ରୁ ହେଲୁରେ
୨—ଗଲଣି ତ ଗଲ କଥା
୩—ଯେନାଇ ଅମ୍ଭେ ଯେତେ
୪—ନୂଆନଃପଃଲୀ ମୁକୁଟ
୫—ଗୁହି ଗୁହି ତୋ ସରଣୀ
୬—ଛଳ ବାହ୍ମଣ ହେ !
୭—ଝଗଡ଼ ମାତ୍ର ହେଲ ହେ
୮—ଠିକ ଠ ବର୍ତ୍ତୁଳ ଚନ୍ଦ୍ରାନନା
୯—ଡର ନାହିଁ କ ହେ
୧୦—ତୋ ଯେନ ତମାଳ ଶ୍ୟାମ
୧୧—ଫାଟି ପଡ଼ିବାର ନକୁଞ୍ଜ ପଞ୍ଚାର
୧୨—ଭଙ୍ଗୀ ଗୁହାଁ
୧୩—କ୍ଷମାନୁକମ୍ପାଧର ହେ
ମଧୁମଣି ମହାପାତ୍ର :—(୧୮୧୦-୧୮୬୫)
ଦ୍ୱାରବନ୍ତି ୨୪୯
ରହସ୍ୟାବଳି ୨୫୦
ଭୀମ ଭୋଇ :—(୧୮୫୫-୧୮୯୫)
ଭୁଲୁଥାଇଁ ବନେ ୨୫୨
ନୃହନ୍ତ ୨୫୩
କେତେ ସହୁଥିବ ମୁହିଁ ୨୫୪
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ୨୫୪
ଅହିଂସା ଧର୍ମ ୨୫୫

# ଆଧୁନିକ ଯୁଗ


ରାଧାନାଥ ରାୟ :—(୧୮୪୮-୧୯୦୮)

ଚନ୍ଦ୍ରଭାଗାର ବନ୍ଧୁକ କ୍ରୀଡ଼ା ୧୫୯

ଉଷାର ମୃଗୟା ୧୬୧

ଭାରତ ଭ୍ରମଣ ୧୬୫

କରଥିଲ୍ ଆଶା ୧୬୮

ଏହୁ କି ସେ ଆର୍ଯ୍ୟଭୂମି ? ୧୬୯

ଅହମିକା ୧୭୩

ମଧୁସୂଦନ ରାଓ :—(୧୮୫୩-୧୯୧୨)

ଋଷିପ୍ରାଣେ ଦେବାବତରଣ ୧୭୭

ଆଘ୍ରାଣ ପ୍ରଭ ୧୭୯

ବିଚ୍ଛେଦ ୧୮୧

ଜୀବନ ଚିନ୍ତା ... ୧୮୩

ଫକୀର ମୋହନ ସେନାପତି :—(୧୮୪୩-୧୯୧୮)

ଦେଶୀ ଓ ବିଲାତି ୧୮୭

ହସି ହସି ଗଲ୍ପ ମୋତେ କନ୍ଦାଇ କନ୍ଦାଇ ୧୯୦

ଜୀର୍ଣ୍ଣ ପଲ୍ଲବର ଆଶୀର୍ବାଦ ୧୯୧

ଗଙ୍ଗାଧର ମେହେର :—(୧୮୬୨-୧୯୨୪)

ମୋ ଅର୍ଜିତ ପାପ ୧୯୩

ମଙ୍ଗଳେ ଅଇଲା ଉଷା ୧୯୭

ଗୃହିଣୀ ୧୯୯

ନନ୍ଦ କିଶୋର ବଳ :—(୧୮୭୫-୧୯୨୮)

ଡାମରା କାଉ ୨୦୩

ପକ୍ଷୀବାସୀ ୨୦୫

ଚଢ଼ିଆ ମୂଷା ୩୧୦

ଚିନ୍ତାମଣି ମହାନ୍ତି :—(୧୮୬୭-୧୯୪୩)

ପଖାଳ ଓ କାଞ୍ଜି ୩୧୨

ଗୋପବନ୍ଧୁ ଦାଶ :—(୧୮୭୭-୧୯୨୮)

ସ୍ୱରାଜ୍ୟ ପଥେ ୩୧୪

ନୀଳକଣ୍ଠ ଦାସ :—(୧୮୮୪-୧୯୬୭)

ଗ୍ରାମ ଚଣ୍ଡୀରେ ସନ୍ଧ୍ୟା ୩୧୮

ଗୋଦାବରୀଶ ମିଶ୍ର :—(୧୮୮୬-୧୯୫୬)

କାଳିକାଇ ... ୩୨୨

ଲକ୍ଷ୍ମୀକାନ୍ତ ମହାପାତ୍ର :—(୧୮୮୮-୧୯୫୩)

ବନ୍ଦେ ଉତ୍କଳ ଜନନୀ ୩୩୦

ସବୁଥିରୁ ବଞ୍ଚିତ ଧନ ୩୩୧

ସବୁ ତ ନେଇଛ ଛଡ଼ାଇ ୩୩୨

ଫୁଲଟି ନେବେ ମୋର ଘାଏ ଘର ୩୩୩

ପଦ୍ମଚରଣ ପଟ୍ଟନାୟକ :—(୧୮୮୫-୧୯୫୬)

ଧଉଳି ପାହାଡ଼ ୩୩୫

ଗୋଦାବରୀଶ ମହାପାତ୍ର :—(୧୮୯୯-୧୯୬୫)

ଉଠ କଂକାଳ ୩୩୯

ହରେକୃଷ୍ଣ ମହତାବ :—(୧୮୯୯—)

ବାଇଲ ନଦୀର ତଟରେ ୩୪୧

କୁନ୍ତଳା କୁମାରୀ ସାବତ :—(୧୯୦୦-୧୯୩୮)

ଶେଫାଳି ପ୍ରତି ୩୦୪

କାଳିନ୍ଦୀ ଚରଣ ପାଣିଗ୍ରାହୀ :—(୧୯୦୧—)

ପୁଷ୍ପ ମନ୍ଦିର ୩୪୯

ପଥ କାହିଁ ? ୩୫୪

ବୈକୁଣ୍ଠ ନାଥ ପଟ୍ଟନାୟକ :—(୧୯୦୪—)

| | |
|---|---|
| ବନ୍ୟା ବିପ୍ଳବ | ୩୫୫ |
| ମୂକ ଭଗବାନ | ୩୫୯ |

ଅନ୍ନଦାଶଙ୍କର ରାୟ :—(୧୯୦୪—)

| | |
|---|---|
| ଗ୍ରନ୍ଥର ପ୍ରେରଣା ... | ୩୦୭ |

ମାୟାଧର ମାନସିଂହ :—(୧୯୦୫—୧୯୭୩)

| | |
|---|---|
| ମହାନଦୀରେ ଜ୍ୟୋତ୍ସ୍ନାବିହାର ... | ୩୭୫ |
| କଜଳ ବେଳା | ୩୭୫ |

ଅନନ୍ତ ପଟ୍ଟନାୟକ :—(୧୯୧୦—)

| | |
|---|---|
| ନବ ବନ୍ଦନା ପଢ଼େ ... | ୩୭୬ |

ରାଧା ମୋହନ ଗଡ଼ନାୟକ :—(୧୯୧୧—)

| | |
|---|---|
| ମାଟି | ୩୮୧ |
| କବି ବଧୂର ଗୌରବ | ୩୮୪ |

କୃଷ୍ଣଚନ୍ଦ୍ର ତ୍ରିପାଠୀ :—(୧୯୧୧—)

| | |
|---|---|
| କେଉଁ ଅନ୍ଧାରେ ଗୁଲ ବନ୍ଧୁ ତୁମ ତରଣୀ | ୩୮୯ |

ନିତ୍ୟାନନ୍ଦ ମହାପାତ୍ର :—(୧୯୧୨—)

| | |
|---|---|
| ଏ ମରଣ ନୁହେଁ ନୁହେଁ | ୩୯୦ |

କୁଞ୍ଜବିହାରୀ ଦାଶ :—(୧୯୧୪—)

| | |
|---|---|
| ସ୍ୱରର ସହସ୍ର ପଦ ଧ୍ୱନି | ୩୯୧ |

ସଚ୍ଚିଦାନନ୍ଦ ରାଉତରାୟ :—(୧୯୧୫—)

| | |
|---|---|
| ଗ୍ରାମ ଶ୍ମଶାନ | ୩୯୫ |
| ପୋଡ଼ାଛମାଡ଼ା ପୋଷ ଅଗ୍ରାଣି | ୩୯୭ |
| ସ୍ୱଗତ | ୪୦୩ |

ଜ୍ଞାନୀନ୍ଦ୍ର ବର୍ମା :—(୧୯୧୭—)

| | |
|---|---|
| ମୂର୍ତ୍ତି ଓ ମନ୍ଦିର | ୪୦୪ |

ବିନୋଦ ଚନ୍ଦ୍ର ନାୟକ :—(୧୯୧୯—)

| | |
|---|---|
| ଗ୍ରାମ ପଥ | ୪୦୭ |

ଗୁରୁପ୍ରସାଦ ମହାନ୍ତି :—(୧୯୨୪—)

ଅକ୍ଷିର କପୋତ ମୋର ୪୧୨

ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)—(୧୯୨୪—)

ଶାନ୍ତ ସମାଧିର ୪୧୩

ଗୋପାଳ ଚନ୍ଦ୍ର ମିଶ୍ର —(୧୯୨୫—)

ଅଜନ୍ତା ୪୧୪

ବେଣୁଧର ରାଉତ :—(୧୯୨୬—)

ଆଶାବରୀ ୪୨୬

ଚନ୍ଦ୍ରାମଣି ବେହେରା :—(୧୯୨୮—)

ସ୍ୱପ୍ନଜାନ ପାଇଁ ଗୋଟିଏ ସ୍ତୁତ ୪୧୭

ବିଦ୍ୟୁତ୍ ପ୍ରଭା ଦେବୀ—(୧୯୨୯—)

ଖଦ୍ୟୋତିକା ୪୧୯

ରମାକାନ୍ତ ରଥ—(୧୯୩୪—)

ଲିଣୁକ ୪୦୩

ବ୍ରଜନାଥ ରଥ—(୧୯୩୬—)

ଶିମୁଳୀ ୪୨୪

ସୀତାକାନ୍ତ ମହାପାତ୍ର—(୧୯୩୭—)

ଝଡ଼ ୪୨୬

## ପରିଶିଷ୍ଟ

ଲେଖକ ଗୀତ ୪୨୯

ଶବ୍ଦ ପରିଚୟ ୪୪୩

ପ୍ରଥମ ପଙ୍କ୍ତି ସୂଚୀ ୪୮୩

# ପ୍ରାକ୍‌କଥନୀ

ଉତ୍କଳ ବିଶ୍ୱବିଦ୍ୟାଳୟର ଆନୁକୂଲ୍ୟ ତଥା ସୋନପୁର ମହାରାଜାଙ୍କ ପୃଷ୍ଠପୋଷକତାରେ ଅର୍ଦ୍ଧଶତାବ୍ଦୀ ପୂର୍ବେ ପ୍ରକାଶିତ ବିନୟ ଚନ୍ଦ୍ର ମଜୁମଦାରଙ୍କ କବିତା ସଂଗ୍ରହ ପରେ ଏହା ଆଦିପର୍ବରୁ ଅଧୁନାତନ କାଳ ପର୍ଯ୍ୟନ୍ତ କବିତାର ଅନ୍ୟ ଏକ ସଙ୍କଳନ । ଏଥିରେ ଓଡ଼ିଆ କାବ୍ୟ ସାହିତ୍ୟର ପ୍ରତିନିଧିତ୍ୱ କରୁଥିବା ପ୍ରାୟ ସମସ୍ତ ପ୍ରଖ୍ୟାତ କବି ଓ କବିତାକୁ ସନ୍ନିବେଶ କରିବାର ପ୍ରୟାସ କରାଯାଇଛି । ସଙ୍କଳନର ପ୍ରାରମ୍ଭରେ କାବ୍ୟଧାରାର ଇତିହାସ ତଥା ଗତିପ୍ରକୃତିର ସୂଚନା ଦିଆଯାଇ ଶେଷରେ କବି-ପରିଚୟ ଓ କବିତାର ପ୍ରଥମ ପଂକ୍ତି ସୂଚୀ ପ୍ରଦତ୍ତ ହୋଇଅଛି । କାବ୍ୟାମୋଦୀମାନେ ଏ ସଙ୍କଳନରୁ ଓଡ଼ିଆ କାବ୍ୟ ସାହିତ୍ୟର ପ୍ରକୃତି, ପ୍ରସାର ତଥା ଗତିର ଏକ ବ୍ୟାପକ ସର୍ବମସ୍ତ ଚିତ୍ର ପାଇ ପାରିବେ ବୋଲି ଆଶା ।

ଗଣଭୋଟ ଦ୍ୱାରା କାବ୍ୟ କବିତାର ମୂଲ୍ୟାୟନ ହୁଏ ନାହିଁ ସତ କିନ୍ତୁ ଏକ ପ୍ରକାର ଗଣଭୋଟଦ୍ୱାରା ହିଁ ଅତୀତରେ କବିତାର ମୂଲ୍ୟ ନିରୂପିତ ହୋଇଛି । ପୂର୍ବେ କାବ୍ୟ କବିତା ଲୋକ ମୁଖରେ ଗୀତ ଓ ଆଲୋଚିତ ହେଉଥିଲା ଏବଂ ବହୁଳ ମତହିଁ ଶ୍ରେଷ୍ଠ ମତ ବୋଲି ଧରି ନେଇ ସେଥିର ମୂଲ୍ୟ ନିରୂପିତ ହେଉଥିଲା । ସ୍ମରଣୀୟତା ଉତ୍କୃଷ୍ଟ କବିତାର ଗୋଟିଏ ପ୍ରଧାନ ଗୁଣ । ସମ୍ପାଦକଙ୍କ ପ୍ରଥମ କର୍ତ୍ତବ୍ୟ ହେଲା ଏଇ ସର୍ବଜନାଦୃତ ଓ ସର୍ବଜନବିଦିତ କବିତାଗୁଡ଼ିକୁ ଏକାଠି କରିବା । ତେଣୁ ବାରମ୍ବାର ଆବୃତ୍ତ ଓ ପଠିତ କବିତା ଏ ସଙ୍କଳନରେ ରହିଛି ; ରହିବା ସ୍ୱାଭାବିକ । ସ୍କୁଲ କଲେଜ ପାଠ୍ୟ ବୋଲି ସେଗୁଡ଼ିକୁ 'ପୋଚରା' ବୋଲାଯାଇ ନ ପାରେ । ଯାହା ଭଲ ତାହା ସବୁଦିନ, ସବୁ ସ୍ଥାନରେ ଭଲ ।

କବିତା ନିର୍ବାଚନ ଏକ ଦୁରୂହ ବ୍ୟାପାର । ସମ୍ପାଦକଙ୍କ ନିଜ ରୁଚି ଅଛି ; ପାଠକମାନଙ୍କ ମଧ୍ୟ ଭିନ୍ନ ଭିନ୍ନ ରୁଚି ଅଛି । ତଥାପି ଉତ୍କୃଷ୍ଟ କବିତାର ଯାଦୁକରୀ ଶକ୍ତି ଯୋଗୁଁ ରୁଚିର ସମତା ଓ ସମନ୍ୱୟ ଅନେକ କ୍ଷେତ୍ରରେ ସମ୍ଭବ । ପ୍ରାଚୀନ ଓ ମଧ୍ୟଯୁଗର କବିତା ନିର୍ବାଚନରେ ଦୁଇଟି ଅସୁବିଧା । ପ୍ରଥମତଃ ଅନେକ ଭଲ ବହି ଅପ୍ରକାଶିତ ବା ଦୁଷ୍ପ୍ରାପ୍ୟ । ଉଦାହରଣ ସ୍ୱରୂପ, ରାମଚନ୍ଦ୍ର ପଟ୍ଟନାୟକଙ୍କ ଉତ୍କୃଷ୍ଟ କାବ୍ୟ 'ହାରାବଳୀ' ଅଦ୍ୟାପି ଅପ୍ରକାଶିତ । ଦ୍ୱିତୀୟତଃ, ପ୍ରକାଶିତ ବହୁ-

ସୂଚିତ ଅଶୁଦ୍ଧି ଓ ପ୍ରକ୍ଷେପ ପୂର୍ଣ୍ଣ । ସାରଳା ମହାଭାରତର ଶୁଦ୍ଧ ସଂସ୍କରଣର କାର୍ଯ୍ୟ ଶେଷ ହୋଇଥିଲେ ମଧ୍ୟ ପ୍ରେସକୁ ଯିବା ପର୍ଯ୍ୟନ୍ତ ତାହା ମିଳି ନଥିଲା । ତାଙ୍କର 'ଚଣ୍ଡି-ପୁରାଣ' ବା ବିଲଙ୍କା ରାମାୟଣରୁ କିଛି ଅଂଶ ଦିଆଯାଇ ପାରନାହିଁ ବା ଯୁଦ୍ଧ ବର୍ଣ୍ଣନା ମହାକବିଙ୍କ ବୈଶିଷ୍ଟ୍ୟ ହେଲେହେଁ ସେଥିରୁ ପରିଚ୍ଛେଦଟିଏ ଦିଆଯାଇ ପାରିଲା ନାହିଁ ।

କାଳକ୍ରମରେ କବିମାନଙ୍କୁ ସଜାଇବା ଅନ୍ୟ ଏକ ଦୁରୂହ ବ୍ୟାପାର । ପ୍ରାଚୀନ ଓ ମଧ୍ୟଯୁଗର କବିମାନେ ନିଜର ସତ୍ତା ବିଷୟରେ ନୀରବ । ସେମାନଙ୍କଠାରେ କବିତା ମୁଖ୍ୟ, କବି ଗୌଣ । ଏଇ ଅଳ୍ପ କେତେଦିନ ହେଲା ପଣ୍ଡିତ ନୀଳକଣ୍ଠ ଦାଶ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଡକ୍ଟର ମାନସିଂହ, ଶ୍ରୀ ସୁରେନ୍ଦ୍ର ମହାନ୍ତି ଓ ଡକ୍ଟର ବଂଶୀଧର ମହାନ୍ତିଙ୍କ ଓଡ଼ିଆ ସାହିତ୍ୟର ଇତିହାସ ପ୍ରକାଶିତ ହୋଇଛି । ଠିକ୍ କବିଜୀବନୀକାଳ ଓ ଆବିର୍ଭାବକ୍ରମ ସେମାନଙ୍କ ଇତିହାସରୁ ମଧ୍ୟ ପାଇବା ସମ୍ଭବ ନୁହେଁ । ସବୁଠି ଅନୁମାନ ଦ୍ୱାରା ନ ହେଲେ ବାହ୍ୟ ଓ ଅଭ୍ୟନ୍ତରୀଣ ପ୍ରମାଣରୁ କାଳନିର୍ଣ୍ଣୟ ହୋଇଛି । ଏ ଗ୍ରନ୍ଥରେ ଉକ୍ତ ଐତିହାସିକଙ୍କ ତଥ୍ୟ ସହିତ ବିନାୟକ ମିଶ୍ର ଓ ପ୍ରାଚୀସମିତି ପ୍ରଦତ୍ତ ତଥ୍ୟକୁ ମିଳାଇ ଏକ ଆନୁମାନିକ ଆବିର୍ଭାବକ୍ରମ ପ୍ରସ୍ତୁତ କରାଯାଇ କବି ଓ କବିତାକୁ ସଜାଯାଇଛି । ଉଭୟ ଶ୍ରୀ ସୁରେନ୍ଦ୍ର ମହାନ୍ତି ଓ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ ତାଲିକାକୁ ପ୍ରାୟଶଃ ଗ୍ରହଣୀୟ ବୋଲି ମତବ୍ୟକ୍ତ କରିଛନ୍ତି ।

କବିତାଗୁଡ଼ିକର ଶିରୋନାମା ପ୍ରାୟଶଃ ସମ୍ପାଦକଙ୍କର । ତେବେ ପ୍ରାୟ ଅଧିକାଂଶ କ୍ଷେତ୍ରରେ ଶିରୋନାମାଟି କବିଙ୍କ କାବ୍ୟରୁ ବା ଗୃହୀତ କବିତାଟିରୁ ନିଆଯାଇଛି । ଯେତେ ବେଶୀ ସଂଖ୍ୟା ସମ୍ଭବ ସେତେ କବି ଓ କବିତାକୁ ସଞ୍ଚୟନର ଅନ୍ତର୍ଭୁକ୍ତ କରିବା ଉଦ୍ଦେଶ୍ୟରେ କବିତାବିଶେଷର ସୌନ୍ଦର୍ଯ୍ୟ ଓ କଳା ଅକ୍ଷୁଣ୍ଣ ରଖି ଅନେକ ସ୍ଥଳରେ ଦୀର୍ଘ ଛାନ୍ଦ ବା ସର୍ଗକୁ କର୍ତ୍ତିତ ଆକାରରେ ଗ୍ରହଣ କରାଯାଇଛି । ତାହା ନ କରି ପୂର୍ଣ୍ଣାଙ୍ଗ ଛାନ୍ଦ ବା ସର୍ଗମାନ ଦେଇଥିଲେ ଦଶ କୋଡ଼ିଏ ଜଣ କବିଙ୍କ କାବ୍ୟ-କୃତିରେ ବିରାଟ ସଞ୍ଚୟନଟିଏ ହୋଇଥାନ୍ତା ଓ ଅନେକ ଖ୍ୟାତନାମା କବି ବାଦ୍ ପଡ଼ିଯାଇଥାନ୍ତେ । ମଜୁମଦାରଙ୍କ ସଂକଳନ ପ୍ରକାଶ ପରେ ଅଗଣିତ କବି ଓ କାବ୍ୟ କବିତାର ସନ୍ଧାନ ମିଳି ସାରିଲାଣି ।

କବି ଓ କାବ୍ୟ ନିର୍ବାଚନ କଲାବେଳେ ଉଭୟର ଓଡ଼ିଆ ସାହିତ୍ୟରେ ସ୍ଥାନ ଓ ଅବଦାନ ବୈଶିଷ୍ଟ୍ୟ ପ୍ରତି ନଜର ଦିଆ ଯାଇଛି । "ଲେଖକଙ୍କ ପ୍ରତିଭା ଓ ମୌଳିକତା

ତଥା ତାଙ୍କ ଲକ୍ଷ୍ୟ, ଆଦର୍ଶ ଓ ସାଫଲ୍ୟର ସମନ୍ୱୟ ପ୍ରତି ଦୃଷ୍ଟି ଦେବା ସଙ୍ଗେ ସଙ୍ଗେ ସଙ୍କଳନର ପୂର୍ଣ୍ଣାଙ୍ଗ ସୌଷ୍ଠବ ଓ ପ୍ରତିନିଧିତ୍ୱ ବଜାୟ ରଖିବା ପାଇଁ ପ୍ରୟାସ କରାଯାଇଛି । କବିତାର ଆଂଶିକ ସୌନ୍ଦର୍ଯ୍ୟ ଅପେକ୍ଷା ପୂର୍ଣ୍ଣାଙ୍ଗ ସୌଷ୍ଠବ ଉପରେ ଏବଂ ଆବେଗ, ରଙ୍ଗ, ମୌଳିକତା ଅପେକ୍ଷା ସତ୍ୟ, ଐକ୍ୟ ଓ ସ୍ପଷ୍ଟତା ଉପରେ ଜୋର ଦିଆ ଯାଇଛି । ସର୍ବୋପରି ବିଭିନ୍ନ ରୂପ-ରସ-ସ୍ୱର-ବୃତ୍ତ ସମ୍ବଳିତ ନାନା ଶ୍ରେଣୀର କବିତା ସନ୍ନିବେଶିତ କରି ଓଡ଼ିଆ କାବ୍ୟ ସାହିତ୍ୟର ବିଭିନ୍ନ ବିକାଶର ସାମଗ୍ରିକ ଛବି ପାଠକ ମାନସରେ ପ୍ରତିଫଳନର ଚେଷ୍ଟା ହୋଇଛି ।

ଗ୍ରନ୍ଥର ଶେଷରେ ଗ୍ରଥିତ କବି-ପରିଚୟରେ ସଂକ୍ଷିପ୍ତ କବିଜୀବନୀ ସହିତ କାବ୍ୟ ପ୍ରତିଭା ସମ୍ପର୍କରେ କେଉଁଠି କମିତି ପଦେଅଧେ ଟିପ୍ପଣୀ ଦିଆ ଯାଇଛି । ତଦ୍ୱାରା ପାଠକ ମନରେ ବିଭ୍ରାନ୍ତି ସୃଷ୍ଟି କରିବାର ବା ତାଙ୍କୁ ମତାନ୍ୱିତ କରିବାର ଅଭିପ୍ରାୟ ନାହିଁ । "କବିତା ନିଜେ ନିଜ କଥା କୁହେ, ଯୁବକକୁ ଅଭିଜ୍ଞତା ଯୋଗାଏ; ପ୍ରୌଢ଼କୁ ଧୈର୍ଯ୍ୟ ଦିଏ ଓ ବୃଦ୍ଧକୁ ଯୌବନ ଦିଏ ।

ସାମ୍ପ୍ରତିକ ଯୁଗର କାବ୍ୟସାହିତ୍ୟରୁ କବିତା ନିର୍ବାଚନ ଅତୀବ ବିପଜ୍ଜନକ ବ୍ୟାପାର; କାରଣ ଅଧିକାଂଶ କବି ଜୀବିତ, ପୁନଶ୍ଚ, ମୁଦ୍ରାଯନ୍ତ୍ରରୁ ବାହାରିବା ମାତ୍ରେ କବିତାର ମୂଲ୍ୟ ନିର୍ଣ୍ଣୀତ ହୋଇ ପାରେନା । ତଥାପି ଅଧୁନାତମ କବିଗୋଷ୍ଠୀଙ୍କଭିତରୁ ପ୍ରତିନିଧିସ୍ଥାନୀୟ କେତେ ଜଣଙ୍କୁ ନେଇ ସଙ୍କଳନଟି ପୂର୍ଣ୍ଣାଙ୍ଗ ଓ ଆଧୁନିକତମ କରିବାର ଚେଷ୍ଟା ହୋଇଛି । ଅନେକ ଖ୍ୟାତନାମା ଆଧୁନିକ କବି ଅପରିହାର୍ଯ୍ୟ କାରଣରୁ ବାଦ୍ ପଡ଼ିଯାଇଛନ୍ତି । ସ୍ୱର୍ଗତ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଓ ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ ଯଥାକ୍ରମେ ପ୍ରାଚୀନ ଓ ଆଧୁନିକ ଯୁଗପାଇଁ ଉପଦେଷ୍ଟା ଥାଇ ଯେଉଁ ମୂଲ୍ୟବାନ ଉପଦେଶ ଦେଇଛନ୍ତି ସେଥିପାଇଁ ସମ୍ପାଦକ ସେମାନଙ୍କଠାରେ ଋଣୀ ।

ସ୍ୱର୍ଗତ ଡକ୍ଟର ମାନସିଂଙ୍କ ଉତ୍ସାହ ଓ ପ୍ରେରଣା ଏ ପ୍ରସଙ୍ଗରେ ସ୍ମରଣ କରୁଛି ।

ଭାରତୀୟ ସାହିତ୍ୟ ଏକାଡେମୀ ଏ ସଙ୍କଳନ ପ୍ରକାଶ କରି ଓଡ଼ିଆ ସାହିତ୍ୟର ଏକ ବହୁକାଳରୁ ଅନୁଭୂତ ଅଭାବ ଦୂର କରିଥିବାରୁ ଓଡ଼ିଶାବାସୀଙ୍କ କୃତଜ୍ଞତା ଅବଶ୍ୟ ଲାଭ କରିବେ ।

ସଂକଳନର କାର୍ଯ୍ୟ ୧୯୫୮ରେ ଆରମ୍ଭ ହୋଇ ୧୯୬୧ରେ ଶେଷ ହେବା ପରେ ୧୯୬୦ରେ ମୁଦ୍ରଣ କାର୍ଯ୍ୟ ଆରମ୍ଭ ହୋଇଥିଲା । ନାନା ଦୁଃଖ ଦୁର୍ବିପାକ

ସଞ୍ଚୟନ ।

ଭଡରେ ଏ ଗ୍ରନ୍ଥରେ ସନ୍ନିବିଷ୍ଟ କବିତାରାଜି ସମ୍ପାଦକଙ୍କୁ ଯେଉଁ ସ୍ୱର୍ଗୀୟ ଅନୁଭୂତି ଓ ଆନନ୍ଦ ଦେଇଛନ୍ତି ତାହା କାବ୍ୟରସପିପାସୁମାନେ ମଧ୍ୟ ଉପଲବ୍ଧ କରିବେ ବୋଲି ଆଶା ।

ଦୋଳପୂର୍ଣ୍ଣିମା,
୮-୩-୭୪
ବାଲେଶ୍ୱର

ବସନ୍ତ କୁମାର ଶତପଥୀ
ସମ୍ପାଦକ

# ଓଡ଼ିଆ କାବ୍ୟ ସାହିତ୍ୟର ସୂଚନା

ଓଡ଼ିଶା (ଉଡ୍ରଦେଶ, କଳିଙ୍ଗ, ଉତ୍କଳ), ଦେବଭୂମି, ପୁଣ୍ୟଭୂମି। ବହୁ ଆଗରେ ଏ ଦେଶ ଏହି ସ୍ତବରେ ପ୍ରତିଷ୍ଠା ଲାଭ କରିଛି। ମରହଟ୍ଟା ବୀର ଶିବାଜୀ ପ୍ରବଳ ପରାକ୍ରାନ୍ତ ଆଉରଙ୍ଗଜେବଙ୍କ କବଳରୁ ଖସି ଯେତେବେଳେ ପଳାଇ ଯାଉଥିଲେ ସେତେବେଳେ ମଧ୍ୟ ଏ ଦେଶକୁ ଦେଖିବା ମାତ୍ରେ ସେ କହି ଉଠିଥିଲେ, "ଏ ଯଥାର୍ଥତଃ ଦେବପୀଠ ହେବା ଭୂମି।" ଯୁଗେ ଯୁଗେ ମହାପୁରୁଷ ଓ ସନ୍ଥମାନେ ଏ ଦେଶକୁ ଭଜନ୍ତି। କ୍ଷେତ୍ରର ମାହାତ୍ମ୍ୟ ଓ ଜାତିର ଧର୍ମପ୍ରାଣତା ଆଗନ୍ତୁକକୁ ମୁଗ୍ଧ ଓ ସ୍ତମ୍ଭିତ କରିଛି। ଚଣ୍ଡାଶୋକ ଏଠାରେ ପ୍ରିୟଦର୍ଶୀ ଧର୍ମାଶୋକ ହୋଇଛି।

ଓଡ଼ିଶା ହେଲା ଜଗନ୍ନାଥଙ୍କ ଦେଶ। ଏହି ଜଗନ୍ନାଥ ଓଡ଼ିଆର ମୈତ୍ରୀଦେବ। ଶ୍ରୀକ୍ଷେତ୍ର ହେଲା ସାମ୍ୟଧର୍ମପୀଠ। ଆଜି ଉତ୍କଳର ସାମ୍ରାଜ୍ୟ ନାହିଁ; ସାମୁଦ୍ରିକ ବାଣିଜ୍ୟ ନାହିଁ, ବିଶ୍ୱବନ୍ଦ୍ୟ କାରୁକଳା ଓ ସ୍ଥାପତ୍ୟ ନାହିଁ। ତଥାପି ପଦଦଳିତ ଓ ଇତିହାସର ଶତ ଦୈନ୍ୟ ଓ ତାଡ଼ନା ମଧ୍ୟରେ ଯେଉଁ ଗର୍ବିତ ମାନବିକତା ଓ ଜୀବନ୍ତ ପରମ୍ପରାର ସାର୍ଥକତା ଘେନି ଏ ଦେଶ କଳାପ୍ରାଣତା ଓ ଜୀବନ୍ତ ପ୍ରାଚୁର୍ଯ୍ୟ ନେଇ ବଞ୍ଚିଛି ତାହା ଏଇ ପରମାରାଧ୍ୟ ଜଗନ୍ନାଥଙ୍କ ଯୋଗୁଁ। ଏଇ ଜଗନ୍ନାଥ ହେଲେ ଜ୍ଞାନ ମୂର୍ତ୍ତି, ବୁଦ୍ଧମୂର୍ତ୍ତି, ଏପରିକି ଭୈରବ ମୂର୍ତ୍ତି। ସେ ଏକାଧାରରେ କୃଷ୍ଣ, ରାମଚନ୍ଦ୍ର ସାକ୍ଷାତ ନାରାୟଣ। ଏହାଙ୍କ ଦେହରେ ବୁଦ୍ଧଙ୍କ ଦନ୍ତ ଅଛି, ଅଥ ବଡ଼ୀ ଜଗନ୍ନାଥଙ୍କ ଆତ୍ମା ମଧ୍ୟ ଅଛି। ଭାରତର ଜନସ୍ରୋତ ଯୁଗ ଯୁଗ ଧରି ଶ୍ରୀକ୍ଷେତ୍ରକୁ ମାଡ଼ି ଆସିଛି ମାନବର ଶ୍ରେଷ୍ଠ ଗନ୍ତବ୍ୟ ଓ ଆଶ୍ରୟସ୍ଥଳ ବୋଲି। ଶଙ୍କର, ରାମାନୁଜ, ମାଧବାଚାର୍ଯ୍ୟ, ନାନକ, କବୀର, ଚୈତନ୍ୟ ଆସିଛନ୍ତି ଏଇ ଜଗନ୍ନାଥ ଧାମକୁ ଧର୍ମ ପ୍ରଚାର ପାଇଁ, ମାନବଧର୍ମୀ ନାସ୍ତିକ ମଧ୍ୟ ମୁଣ୍ଡ ନୁଆଁଇ କହିଛି "ତଥାପି ନମଇଁ ତୋତେ ହେ ନିର୍ଜୀବ କର୍କଶ ପାଷାଣ"। ହେଲେ ଏ ଜଗନ୍ନାଥ କାହାର ? ଏ ହେଲେ ଶବରର 'କାଷ୍ଠ ପାଷାଣ ଦେବତା' ଦାରୁ ବ୍ରହ୍ମ। କି ଅଦ୍ଭୁତ ଏ ଜଗନ୍ନାଥ ! ତାଙ୍କଠାରୁ ଅଧିକ ଆଶ୍ଚର୍ଯ୍ୟ ଓ ରହସ୍ୟ ଜଗନ୍ନାଥ ଧର୍ମ। ବୌଦ୍ଧ, ଜୈନ, ଶାକ୍ତ, ବୈଷ୍ଣବ, ବ୍ରାହ୍ମ ଆଦି ସବୁ ଧର୍ମର ଅବଦାନ ବିବର୍ତ୍ତନ ବିସ୍ତାର ଚୂଡ଼ାନ୍ତ ପରିଣତି ଓ ସମନ୍ୱୟ ଘଟିଛି ଏହି ଧର୍ମରେ। ଏ ଧର୍ମର ଗୁଣ ହେଲା ଅକୃତ୍ରିମ ଆତିଥେୟତା,

ସହିଷ୍ଣୁତା, ଉଦାରତା ଏବଂ ପରପ୍ରାଣତା । ତେଣୁ ଓଡ଼ିଆ ଯୁଗେ ଯୁଗେ ଜଗନ୍ନାଥଙ୍କ ପ୍ରାଣ ; ଜାତିର ମୈତ୍ରୀ ହେଉଛି ତାର ସନାତନ ବ୍ରତ । ଓଡ଼ିଶାର ଧର୍ମ ହେଉଛି ଜଗନ୍ନାଥ ଧର୍ମ, ସଭ୍ୟତା ଜଗନ୍ନାଥ ସଭ୍ୟତା ଓ ସାହିତ୍ୟ ଜଗନ୍ନାଥ ସାହିତ୍ୟ । ଓଡ଼ିଆର ଏହି ଧର୍ମ ଓ ଅଧ୍ୟାତ୍ମବାଦର ପୂର୍ଣ୍ଣପ୍ରକାଶ ଘଟିଛି ତାର ମନ୍ଦିରରେ, ଗୁମ୍ଫାରେ, ତାର ନିତ୍ୟ ଚଳଣିରେ, ତାର ଶିଳ୍ପସ୍ଥାପତ୍ୟରେ ଏବଂ ନୃତ୍ୟ ଓ ସଙ୍ଗୀତରେ । ହାତୀ ଗୁମ୍ଫା, ବ୍ୟାଘ୍ରଗୁମ୍ଫା, ରାଣୀହଂସପୁରର ଅନୁପାତସୌଷ୍ଠବ ଓ ବିଳାସ ଲାବଣ୍ୟ, କୋଣାର୍କର ପ୍ରସ୍ତର ଗାତ୍ରର କାବ୍ୟକବିତା ଓ ଲାସ୍ୟଲୀଳା, ଭୁବନେଶ୍ୱରର ରାଜାରାଣୀ ମନ୍ଦିରର ନର୍ତ୍ତକୀର ସ୍ୱଚ୍ଛଭଙ୍ଗୀ, ଠାଣି, ଓଡ଼ିଶୀ ନୃତ୍ୟର ନର୍ତ୍ତକୀର ସୁଠାମ ଚଞ୍ଚଳ ଅଙ୍ଗନ୍ୟାସ, ସାରଳାଦାସଙ୍କ ଦାଣ୍ଡୀ ବୃତ୍ତ ଓ ସାବଲୀଳତା ତଥା କବିତାର ସ୍ୱଚ୍ଛନ୍ଦ କଳ୍ପନା କବିସୂର୍ଯ୍ୟଙ୍କ 'ଭ' ଗୀତର ରାଗ ସମୃଦ୍ଧିରେ ହିଁ ସେହି ଏକ ସଂସ୍କୃତି, ସୃଜନୀ ଶକ୍ତି ଓ ସଭ୍ୟତାର ବିକାଶ ଓ ପ୍ରକାଶ । କଟକର ସୁନା ରୂପାର ତାରକସି କାମ, ବା ପାଙ୍ଗଣା ମନ୍ଦିର ଗାତ୍ରର ସୂଚୀକାର୍ଯ୍ୟ ବା ଭାସ୍କର୍ଯ୍ୟ କାରୁକଳା ଆଦି ସର୍ବତ୍ର ସେଇ ଏକ କଲ୍ୟାଣଗରିମା ପ୍ରକଟିତ । ଓଡ଼ିଆ ଜାତୀୟ ଜୀବନର ତଥା ସାହିତ୍ୟର ସବୁ ମୂଳଉପାଦାନ ଓ ମୂଳଉତ୍ସ ଏହି ଜଗନ୍ନାଥ ।

ଓଡ଼ିଆ ସାହିତ୍ୟର ଅଧିକାଂଶ ରଚନା ଶ୍ରୀକ୍ଷେତ୍ରରୁ ବା ସନ୍ନିକଟବର୍ତ୍ତୀ ସ୍ଥାନମାନଙ୍କରୁ ଆସିଛି । ତାନ୍ତ୍ରିକ, ସିଦ୍ଧାଚାର୍ଯ୍ୟ, ବୌଦ୍ଧ, ଜୈନ ସନ୍ନ୍ୟାସୀମାନେ ଭୁବନେଶ୍ୱର, ଖଣ୍ଡଗିରି ଉଦୟଗିରି ଆଦି ସ୍ଥାନମାନଙ୍କରେ ଥାଇ ପରମାର୍ଥ ତତ୍ତ୍ୱସମ୍ବଳିତ କବିତା ରଚନା କରିଛନ୍ତି । ଆଦି ମହାକବି ସାରଳା ଶ୍ରୀକ୍ଷେତ୍ରର ଅଦୂରରେ ତାଙ୍କ ମହାଭାରତରେ ପ୍ରଥମେ ଦାରୁ ବ୍ରହ୍ମ ଉପାଖ୍ୟାନ ଉଦ୍ଭାବନ କରନ୍ତି । ବଳରାମ ଦାସ ତାଙ୍କ ଦାଣ୍ଡି ରାମାୟଣ ଜଗମୋହନରେ ବସି ଆବୃତ୍ତି କରିଛନ୍ତି । ଗରୁଡ଼ସ୍ତମ୍ଭ ସନ୍ନିଧାନରେ ଦୀନକୃଷ୍ଣ କରପତ୍ର ଯୋଡ଼ି ଆର୍ତ୍ତତ୍ରାଣ ଚଉତିଶା ପାଠ କରିଛନ୍ତି । ଜଗନ୍ନାଥ ଦାସ ତାଙ୍କ ଭାଗବତ କଳ୍ପ ବଟବୃକ୍ଷ ତଳେ ବସି ଭକ୍ତଙ୍କୁ ଶୁଣାଇଛନ୍ତି । ଏମାନେ ସମସ୍ତେ ହେଲେ ଜାତସ୍ମର, କବିଗୁରୁ । ଏହି ଜଗନ୍ନାଥ ହିଁ ଅନେକ ମୂକକୁ ବାଚାଳ କରିଛନ୍ତି, ଅନ୍ଧକୁ ଚକ୍ଷୁ ଦେଇଛନ୍ତି । ସେଥିପାଇଁ ଗ୍ରନ୍ଥ, ସର୍ଗ, ଛାନ୍ଦ ଆରମ୍ଭରେ ବା ଶେଷରେ ନୀଳଗିରି ବାସୀଙ୍କ ବର୍ଣ୍ଣନା ଶ୍ରୀକ୍ଷେତ୍ରରେ ବାସ କରୁଥିବା କବି ଏପରିକି ସେ ସୌଭାଗ୍ୟରୁ ବଞ୍ଚିତ କବିମାନେ ଦେଇଅଛନ୍ତି ।

କୁହାଯାଇଛି ଜଗନ୍ନାଥ ଧର୍ମ ହେଲା ମହାଭାରତୀୟ ମୈତ୍ରୀଧର୍ମ ଏବଂ ଏହି ଜଗନ୍ନାଥ ଧର୍ମ ଓ ସଂସ୍କୃତି ଓଡ଼ିଆ ସାହିତ୍ୟର ଭିତ୍ତି ଓ ପିଣ୍ଡ । ତେଣୁ ଓଡ଼ିଆ କାବ୍ୟ କବିତା ବିଚାର କଲାବେଳେ ଜଗନ୍ନାଥ ଧର୍ମ-ସୁଲଭ ଉଦାରତା ଓ ସହିଷ୍ଣୁତା ହୃଦୟରେ ସ୍ଥାନ ଦେବାକୁ ହେବ । ଜଗନ୍ନାଥ ଧାମରେ ସାଲବେଗ, ମାଧବୀ ଦାସୀ ବା ଶ୍ରୀମନ୍ତେଇ ଯେଉଁ ଭାବରେ ଅନୁଗୃହୀତ ହୁଅନ୍ତି ସାରଳାଦାସଙ୍କ ଯୁଦ୍ଧବର୍ଣ୍ଣନା ସ୍ୱୀକୃତ ହୁଏ ବା ସଚ୍ଚିଦାନନ୍ଦରାୟଙ୍କ ଅଳକା ସାନ୍ୟାଲର ଖାଲି ପୋଷାକର କଳ୍ପନା କବିତାର ଅଭିବ୍ୟକ୍ତ ହୁଏ ସବୁ ସେଇ ଉଦାର ଦୃଷ୍ଟିକୋଣରୁ ବିଚାର କରିବାକୁ ହେବ ।

ମନ୍ଦିରର ସ୍ଥାପତ୍ୟ ଓ କାରୁକଳାରେ ଆଧ୍ୟାତ୍ମିକତାର ଯେଉଁ ନିଗୂଢ଼ ସୃଜନୀଶକ୍ତି ନିହିତ ସେହି ରୁଚି, ନିୟମ ଓ ରୂପନେଇ ଆତ୍ମ ପ୍ରକାଶ କରିଛି ଓଡ଼ିଆ କବିତା । ସହରଣୀ ଶକ୍ତି, ବ୍ୟାପକତା ଓ ସାର୍ବଜନୀନତାରେ ଓଡ଼ିଆ କାବ୍ୟ କବିତା ହୋଇଛି ଜଗନ୍ନାଥ ଧର୍ମର ସମାନଧର୍ମୀ, 'ଜନଗଣମନଅଧିନାୟକ' । ଓଡ଼ିଆ କାବ୍ୟ କବିତା ଯଥାର୍ଥତଃ ଜନ ସାହିତ୍ୟ । ରାଜଦରବାରରେ ଏହାର ଜନ୍ମ, ବୃଦ୍ଧି ଓ ପ୍ରସାର ହୋଇନାହିଁ । ପ୍ରାଚୀନ ଓ ମଧ୍ୟ ଯୁଗର ଭିକ୍ଷୁ ସନ୍ନ୍ୟାସୀ ଠାରୁ ଆରମ୍ଭ କରି ମହାରାଜା ଓ ରାଜପୁତ୍ର ପର୍ଯ୍ୟନ୍ତ, ଆଧୁନିକ ଯୁଗରେ ରାଜ୍ୟପାଳ ବାଚସ୍ପତିଠାରୁ ଆରମ୍ଭ କରି ନିଃସ୍ୱ ସର୍ବହରା ସମାଜସେବୀ ପର୍ଯ୍ୟନ୍ତ, ସର୍ବଶ୍ରେଣୀର କବି ଓଡ଼ିଆ ସାହିତ୍ୟକୁ ଦାନପୁଷ୍ଟ କରିଛନ୍ତି । ଧର୍ମନିର୍ବିଶେଷରେ ଜୈନ, ବୌଦ୍ଧ, ଶୈବ, ତାନ୍ତ୍ରିକ, ବୈଷ୍ଣବ, ବ୍ରାହ୍ମ ଓ ଅଲେଖପନ୍ଥୀମାନେ, ବ୍ରହ୍ମଚେତନାପ୍ରାପ୍ତ ସିଦ୍ଧପୁରୁଷ ଠାରୁ ସମରପ୍ରତ୍ୟାବୃତ୍ତ ଷଡାଙ୍ଗୀ ରୁଗଣ ବିଧର୍ମୀ ମୁସଲମାନ ପର୍ଯ୍ୟନ୍ତ ଜାତିଧର୍ମବର୍ଣ୍ଣ ନିର୍ବିଶେଷରେ ଏ ଦେଶର ସାହିତ୍ୟକୁ କାବ୍ୟ-କବିତା-ସମୃଦ୍ଧ କରିଛନ୍ତି । ତା ଛଡ଼ା ଅନ୍ଧ, କୁଷ୍ଠୀ, କୈବର୍ତ୍ତ, କନ୍ଧ ଏପରି କି ପ୍ରୋଷିତଭର୍ତ୍ତୃକା ନାରୀ ପର୍ଯ୍ୟନ୍ତ ଏ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ ଓ ରସସିକ୍ତ କରିବାରେ ସାହାଯ୍ୟ କରିଛନ୍ତି । ଅନ୍ୟ ପ୍ରାନ୍ତୀୟ ରାଷ୍ଟ୍ରର କବିଗଣ ଯଥା ତେଲେଗୁ, ବଙ୍ଗାଳୀ, ମହାରାଷ୍ଟ୍ରୀୟ ବା କାନ୍ୟ କୁବ୍ଜାଗତ ବ୍ରାହ୍ମଣମାନେ ମଧ୍ୟ ଉତ୍କଳ ସାହିତ୍ୟକୁ ଉଲ୍ଲେଖଯୋଗ୍ୟ ଦାନ କରିଛନ୍ତି । ଓଡ଼ିଆ ସାହିତ୍ୟରେ ତେଣୁକରି ମହାଭାରତୀୟ ସଂସ୍କୃତି ଓ ସଭ୍ୟତାର ସ୍ରୋତ ଓ ପରମ୍ପରା ସ୍ପଷ୍ଟ ଲକ୍ଷ୍ୟ କରିହୁଏ, ଯେପରିକି ଜଗନ୍ନାଥ ଧର୍ମରେ ମହାଭାରତୀୟ ସାହିତ୍ୟ ଓ

ସଂସ୍କୃତିର ପ୍ରାଣ ଖୋଜି ପାଇ ହେବ । ଏହି ଜନସାହିତ୍ୟର ଆଉ ଏକ ବୈଶିଷ୍ଟ୍ୟ ଏହି ଯେ ତାହା ମୁଷ୍ଟିମେୟ ଲେଖକ ବା ଗୋଷ୍ଠୀରେ ଆବଦ୍ଧ ନ ହୋଇ ସମସ୍ତ ଦେଶର ସମ୍ପତ୍ତି ହୋଇ ଯାଇଛି ; ଜାତିର ପିଣ୍ଡର ଅସ୍ଥି ମଜ୍ଜା ହୋଇ ରହିଛି । ନିରକ୍ଷର ପଲ୍ଲୀକୃଷକ ଓ ପଲ୍ଲୀନାରୀ ମଧ୍ୟ ଭାଗବତର ଅନେକ ପଂକ୍ତି ଦୈନନ୍ଦିନ ବ୍ୟାପାରରେ ବ୍ୟବହାର କରିପାରନ୍ତି । ଓଡ଼ିଶାର ପ୍ରତି ପଲ୍ଲୀରେ ହଜାର ହଜାର ତାଳପତ୍ର ପୋଥି ପୂଜାପାଉଛି ଓ ଗାଁର ଭାଗବତ ଘର ଧର୍ମ, ସାମାଜିକ ଓ ସଂସ୍କୃତିକ ଜୀବନର ଅନୁଷ୍ଠାନ ହୋଇ ରହିଛି । ଧର୍ମ ଓ ପ୍ରେମ—ମାନୁଷୀ ହେଉ ବା ଅତିମାନୁଷୀ ହେଉ—ଓଡ଼ିଆ କାବ୍ୟକବିତାର ସୃଷ୍ଟି, ପୁଷ୍ଟି ଓ ବର୍ଦ୍ଧନ କରିଛି । ତେଣୁ ସଙ୍କୀର୍ଣ୍ଣ ଧର୍ମମନୋବୃତ୍ତି ବା ଜୀବନଚେତନାରୁ ଓଡ଼ିଆ କାବ୍ୟକବିତା ବିଚାର କଲେ ବସିଲେ ଜଗନ୍ନାଥଧର୍ମୀ ସାହିତ୍ୟ ଓ କାବ୍ୟକଳାର ଯଥାର୍ଥ ମୂଲ୍ୟାୟନ ବା ମାନମର୍ଯ୍ୟାଦା ଉପଲବ୍ଧି କରିହେବ ନାହିଁ ; ଯେପରି ଉତକୋଟିର କେତେକ ଶ୍ରେଣୀର ସ୍ଥାପତ୍ୟକଳା, ସ୍ଥାପତ୍ୟ ଓ ନୃତ୍ୟଗୀତ ଲଘୁମତିମାନଙ୍କ ଦ୍ୱାରା ହେୟ ଓ ଘୃଣ୍ୟ ବିବେଚିତ ହୋଇଥାଏ ।

'ସମସ୍ତେ ମୋର ପୁଅପରି' ଅଶୋକଙ୍କ ଧଉଳି ଅନୁଲେଖର ଏହି ବାଣୀ ଜଗନ୍ନାଥମୁକ୍ତିମନ୍ତ୍ରକ ମହାବାଣୀ ପରି ଜଣାପଡ଼େ । ଏହି ଅନୁଶାସନରେ ଓ ଉତ୍କଳର ସମ୍ରାଟ ଖାରବେଳଙ୍କ ହାତୀଗୁମ୍ଫା ଅନୁଶାସନରେ (ଖ୍ରୀ : ପୂ ୧ମ ଶତାବ୍ଦୀ) ଓଡ଼ିଆ ଭାଷାର ପ୍ରାରମ୍ଭିକ ରୂପର ସୂଚନା ମିଳେ । ଓଡ଼ିଆଭାଷା କେବେ ବର୍ତ୍ତମାନର ରୂପ ଗ୍ରହଣ କଲା ତାହା ଜାଣିବାର ଉପାୟ ନାହିଁ । ତେବେ ହୁଏନସାଂ ଆସିବା ବେଳକୁ ଓଡ଼ିଆ ଅପଭ୍ରଂଶ ବୋଧହୁଏ ନିର୍ଦ୍ଦିଷ୍ଟ ରୂପରେଖ ପାଇ ସାରିଥିଲା, ଏ କଥା ସ୍ୱୀକାର କରିବାକୁ ହେବ । କିନ୍ତୁ କାହାମୁଖରୁ ପ୍ରଥମେ ଓଡ଼ିଆରେ 'ଶ୍ଳୋକ' ନିର୍ଗତ ହେଲା ତାହା କହି ହେବ ନାହିଁ । ତେବେ ୮ମ ବା ୯ମ ଶତାବ୍ଦୀ ବେଳକୁ ସାହିତ୍ୟିକ ଭାଷାରୂପେ ଓଡ଼ିଆ ବ୍ୟବହୃତ ହୋଇଥିଲା । ବୌଦ୍ଧଗାନ ଓ ଦୋହାରୁ ଯେଉଁ କେତୋଟିରେ ଏହି ସଂକଳନ ଆରମ୍ଭ କରାଯାଇଛି ସେ ଗୁଡ଼ିକର ଆଧୁନିକ ଓଡ଼ିଆ ରୂପ ମଧ୍ୟ ପ୍ରତି ପଙ୍କ୍ତି ତଳେ ଦିଆଯାଇଛି । ଭାବ ଓ ଭାଷା ଉଭୟ ଦୃଷ୍ଟି-କୋଣରୁ ସେ ଗୁଡ଼ିକ ଓଡ଼ିଆ ବୋଲି ସ୍ପଷ୍ଟ ପ୍ରତୀୟମାନ ହେବ । ଧଉଳି ଓ ଉଦୟଗିରିର ଜୈନଗୁମ୍ଫା ସନ୍ନିକଟସ୍ଥ ଶବର ପଲ୍ଲୀର ପରିବେଶ ଓ ବାତାବରଣ କବିତା ଗୁଡ଼ିକରେ ଯେପରି ଚିତ୍ରିତ ସେଥିରୁ ସେ ଗୀତିକାଗୁଡ଼ିକ ଓଡ଼ିଶାରେ ରଚିତ ହୋଇଥିବା

ବୌଦ୍ଧ ବା ଜୈନ ସନ୍ନ୍ୟାସୀ ଦ୍ୱାରା ରଚିତ ହୋଇ ଥିବାର ପ୍ରମାଣ ମିଳେ । ଧର୍ମତତ୍ତ୍ୱ ସମ୍ବଳିତ ହେଲେହେଁ ସେ ଗୁଡ଼ିକରେ ପ୍ରଚୁର ଗୀତିଲ ଭାବ ଓ ଭାଷାର ସାରଲ୍ୟ ଲକ୍ଷ୍ୟ କରିବାର କଥା । ଓଡ଼ିଆ କାବ୍ୟ ସାହିତ୍ୟର ଉନ୍ମେଷ ଯୁଗର କବିତା ଏ ଗୁଡ଼ିକ ।

ଏହି ଉନ୍ମେଷ ଯୁଗପରେ ଯେଉଁ ଚନସ୍ୱର ଶତକ ଆସିଲା ତାହା କାବ୍ୟ ସାହିତ୍ୟର ଶୂନ୍ୟଯୁଗ । ମନ୍ଦିର ଗାତ୍ରର ଶିଳାଲିପିରୁ ଖାଲି ଏତିକି ଜଣାପଡ଼େ ଯେ ଏହି କାଳରେ ଓଡ଼ିଆଭାଷା ଓ ଲିପି କ୍ରମେ ସ୍ପଷ୍ଟତର ହେଲା । କବିତା କେବଳ ବ୍ୟଙ୍ଗ ଓ ଲୋକଗୀତ ଆକାରରେ ପ୍ରକାଶ ପାଇଲା । ବୌଦ୍ଧଧର୍ମର ପ୍ରାଧାନ୍ୟ ଲୋପ ପାଇବାରୁ ଜନ ସାହିତ୍ୟ ବିରଳ ହେଲା । ବ୍ରାହ୍ମଣମାନେ ପ୍ରବଳ ହୋଇ ଉଠିଲେ ଓ ସଂସ୍କୃତ ପ୍ରଭାବଶାଳୀ ହୋଇ ଉଠିଲା । ଦେଶରେ ରାଜନୈତିକ ଅସ୍ଥିରତା ଓ ଅନିଶ୍ଚିତତା ସେତେବେଳେ ଦ୍ରୁତ ବୃଦ୍ଧି ପାଇଥିବ । ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀ ଓ ତ୍ରୟୋଦଶ ଶତାବ୍ଦୀ ମଧ୍ୟରେ ଓଡ଼ିଶାରେ ନାଥଧର୍ମ ପ୍ରତିଷ୍ଠା ଲାଭ କଲା । ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ଓ ଶୂନ୍ୟ ସାଧନା ଏହି ଧର୍ମର ବୈଶିଷ୍ଟ୍ୟ । ଗୋରେଖନାଥ, ମଲ୍ଲିକାନାଥ ମତ୍ସ୍ୟେନ୍ଦ୍ର ନାଥ ବା ମୀନନାଥ ଓ ଲୁଇ ଦାସ ପ୍ରଭୃତି ସିଦ୍ଧମାନେ ଏହି ସମୟର ପ୍ରସିଦ୍ଧ କବି । ଗୋରେଖ ନାଥ ଏହି ଯୁଗର ସର୍ବାପେକ୍ଷା ପ୍ରଭାବଶାଳୀ କବି । ତାଙ୍କର ଶିଶୁବେଦ ଗୋରେଖବାଣୀ, ଗୋରେଖ ସଂହିତା, ସପ୍ତାଙ୍ଗ ଯୋଗ ଆଦି ପୁସ୍ତକଗୁଡ଼ିକ ବିଶେଷ ପ୍ରଣିଧାନଯୋଗ୍ୟ । ଶିଶୁବେଦର ସାହିତ୍ୟିକ ମୂଲ୍ୟ ଅସ୍ୱୀକାର କରାଯାଇ ନ ପାରେ ।

ଏହାପରେ ଆସିଲା ଶୈବଧର୍ମର ପ୍ରାଧାନ୍ୟ ଯୁଗ । ଏ ଯୁଗର ଗ୍ରନ୍ଥ ହେଲା ରୁଦ୍ରସୁଧାନିଧି । ଏକାଧାରରେ ଗଦ୍ୟପଦ୍ୟ ଉଭୟ ରୂପନେଇ ରଚିତ ଏହା ଏକ ଯୁଗାନ୍ତକାରୀ ଗ୍ରନ୍ଥ । ଏକାମ୍ର କାନନର ଅତୀବ ପ୍ରଭାବଶାଳୀ ବ୍ରହ୍ମଚାରୀ ଅବଧୂତ ନାରାୟଣ ସ୍ୱାମୀ ଏହାର ରଚୟିତା । କଳ୍ପନାବିଳାସ, ବର୍ଣ୍ଣନାଚାତୁରୀ, ଚରିତ୍ର ଚିତ୍ରଣ, ଆଳଂକାରିକତା, ଆବେଗ ଓ ରସୋତ୍ତୀର୍ଣ୍ଣତାରେ ରୁଦ୍ରସୁଧାନିଧି ଏକ ବିରଳ ଗ୍ରନ୍ଥ । ଏହି ଶୈବଯୁଗର ଅନ୍ୟ ଏକ ଯୁଗାନ୍ତକାରୀ ରଚନା ହେଲା ଗୋଟିଏ କବିତା, ବତ୍ସାଦାସଙ୍କ 'କଳସା' । ରୁଦ୍ରସୁଧାନିଧି ଓ କଳସା ଉଭୟର ଉଦ୍ଦେଶ୍ୟ ହେଲା ଶିବମହିମା ପ୍ରକଟନ ଓ କୀର୍ତ୍ତନ । କଳସାରେ ବର୍ଣ୍ଣିତ ହୋଇଥିବା ଶିବଙ୍କ ଚଉଠ କୁମାର

ସମ୍ଭବର ବହୁ-ବର୍ଣ୍ଣିତ ଶିବଙ୍କ ଚନ୍ଦ୍ରଶେଖର । ଏଠାରେ ଶିବଙ୍କ 'ବୃଦ୍ଧାବର' ରୂପ ହାସ୍ୟୋଦ୍ଦୀପକ, ଅଥଚ ବାସ୍ତବତାସମ୍ପନ୍ନ । ବୌଦ୍ଧଜୈନ ଓ ଶୈବ ପ୍ରଭାବ ଓଡ଼ିଆ କାବ୍ୟ କବିତାରେ ସୁସ୍ପଷ୍ଟରୂପେ ମୁଦ୍ରାଙ୍କିତ ହେବା ପରେ ତାନ୍ତ୍ରିକତା ଓ ଶକ୍ତି ପୂଜାର ପ୍ରଭାବ ସାହିତ୍ୟରେ ଦେଖିବାକୁ ମିଳିଲା । ତତ୍ପରେ ବୈଷ୍ଣବ ଧର୍ମ—ବିଶେଷ ସୀତାରାମ ଓ ରାଧାକୃଷ୍ଣ ରୂପରେ—ବହୁଦିନ ଧରି ଓଡ଼ିଆ କାବ୍ୟସାହିତ୍ୟର ମୂଳ ପିଣ୍ଡ ହେଲା ।

ପ୍ରାୟ ତିନି ଶ୍ୱରଣୀୟ ବର୍ଷପରେ ଓଡ଼ିଆ କାବ୍ୟକବିତା ଯେପରି ପ୍ରସ୍ତରର ଅଧ୍ୟାୟ ହଠାତ୍ ପରିସମାପ୍ତ କରି ଏକ କାନ୍ତିକାଶ୍ୱ ପ୍ରଚଣ୍ଡ ପଦକ୍ଷୁରଣ ଯୁଗ ଆରମ୍ଭ କଲା । ସ୍ଥାପତ୍ୟକଳାର ଅବନତି ସଙ୍ଗେ ସଙ୍ଗେ ଓଡ଼ିଆ କାବ୍ୟପ୍ରତିଭା ଯେପରି ନବଭାବରେ ସ୍ଥାପତ୍ୟ ବିଭବ ପ୍ରଦର୍ଶନ ପାଇଁ ବ୍ୟାକୁଳ ଓ ବଦ୍ଧପରିକର ହେଲା । ସାରଳାଦାସ ହେଲେ ଏ ନୂତନ କାବ୍ୟସୌଧର ପ୍ରତିଷ୍ଠାତା, ନମୀତା ଉଦ୍‌ଘାଟକ । ବିରାଟ ବିରାଟ ଓଜନଦାର ବଡ଼ ବଡ଼ ମୁଗୁନି ପଥର ଆଣି ସେ ଖଞ୍ଜିଦେଇ ଗଲେ ତାଙ୍କ ବିସ୍ମୟକାରୀ କାବ୍ୟ ମନ୍ଦିରରେ । ପ୍ରସ୍ତର ଅମସୃଣ କିନ୍ତୁ ଅଟଳାୟ । ଏହାରି ଉପରେ ଉପେନ୍ଦ୍ରଭଞ୍ଜ ଓ ଅନୁଗାମୀ ଶିଳ୍ପୀଗଣ ଆଲଂକାରିକତା ଦେଖାଇଛନ୍ତି ।

ସାରଳାଦାସ ଓଡ଼ିଶାର ଗଜପତି କପିଳେନ୍ଦ୍ର ଦେବଙ୍କ ସମକାଳୀନ । କପିଳେନ୍ଦ୍ରଙ୍କ ଯୁଗହେଲା ଉତ୍କଳର ଉଦ୍‌ବୋଧ ବା ଅଭ୍ୟୁତ୍‌ଥାନ ଯୁଗ । ସେତେ-ବେଳକୁ ନଭସ୍ପୃଶୀ ଦେବାଳୟମାନ ଉତ୍କଳର କୀର୍ତ୍ତିସ୍ତମ୍ଭ ରୂପେ ନିର୍ମିତ ହୋଇ ସାରିଲାଣି । କପିଳେନ୍ଦ୍ରଙ୍କ ସଫଳ ଦାକ୍ଷିଣାତ୍ୟ ଅଭିଯାନ ପରେ, ବିଜୟୋଲ୍ଲାସରେ ଦୃପ୍ତ ଏଲିଜାବେଥ ଓ ସେକ୍‌ସ୍‌ପିଅରଙ୍କ ଇଂଲଣ୍ଡ ପରି, ଉତ୍କଳର ହୃଦୟ ଉଲ୍ଲସିତ ଓ ସ୍ପନ୍ଦିତ ହେଉଥାଏ । ଯେତେବେଳେ ଉତ୍କଳ ଗଜପତି କପିଳେନ୍ଦ୍ରଦେବ ଉତ୍କଳର ଛତ୍ରପତି ; ଶୂଦ୍ରମୁନି 'ସାରଳା' ସେତେବେଳେ ଉତ୍କଳ ସାହିତ୍ୟ ରାଜ୍ୟର ଅପ୍ରତିଦ୍ୱନ୍ଦ୍ୱୀ ସମ୍ରାଟ । ସାରଳା ଚିହ୍ନିଥିଲେ ସ୍ୱଦେଶକୁ, ସ୍ୱଦେଶର ଲୋକମାନଙ୍କୁ ସ୍ୱଦେଶର ରାଜାଙ୍କୁ ଓ ସର୍ବୋପରି ସେଇ ଶ୍ରୀକ୍ଷେତ୍ରର ଜୀବନ୍ତ ଦେବତା ଜଗନ୍ନାଥଙ୍କୁ । ସାରଳାଙ୍କ ସଫଳ କୃତିର ଏହାହିଁ ହେଲା ଅନ୍ତରାତ୍ମା, ମୂଳସୂତ୍ର । ସାରଳାଦାସ ଅଦ୍ଭୁତ କଳ୍ପନାଶକ୍ତି ବଳରେ ସଂସ୍କୃତ ମହାଭାରତକୁ ଏକ ଓଡ଼ିଆ ମହାକାବ୍ୟରେ ପରିଣତ କରିଦେଲେ । ସାରଳାଙ୍କ ମହାଭାରତ ସଂସ୍କୃତ ମହାଭାରତରେ ଅନୁବାଦ ବା ଅନୁଧାବନ ନୁହେଁ । ତାଙ୍କ ମହାଭାରତର ଚରିତ୍ରଗଣ ଦେବଦେବୀ ବା ଅତିମାନବ ନ ହୋଇ

ଉଜ୍ଜ୍ୱଳୀକୃତ ହୋଇଛନ୍ତି । ମହାଭାରତ ଯୁଦ୍ଧ କପିଳେନ୍ଦ୍ରଙ୍କ ସେନାମାନର ଦାକ୍ଷିଣାତ୍ୟ ଅଭିଯାନ ଅନୁରୂପ । ଓଡ଼ିଶାର ନଦନଦୀ, ବନପର୍ବତ, ଦେବାଦେବୀ, ନଗରାଦି ସମସ୍ତେ ଯେପରି ନୂଆ ରୂପରେ ଏହି ମହାଭାରତରେ ସ୍ଥାନ ପାଇଛନ୍ତି । ଏପରିକି ଯୁଧିଷ୍ଠିର ସ୍ୱର୍ଗାରୋହଣ ବାଟରେ ଓଡ଼ିଶାରେ କଚ୍ଛବନ ରଡ଼ ହରିସାଙ୍କ ଝିଅ ସିଂଘାଣିକୁ ବିବାହ କରିଛନ୍ତି । ଶ୍ରୀକୃଷ୍ଣଙ୍କ ଶବକୁ ଓଡ଼ିଶା ମହୋଦଧି ତଟରେ ସଂସ୍କାର କରି-ଯାଇଛି । ଜଗନ୍ନାଥ ରୂପରେ ନୀଳଗିରିରେ ଜନ୍ମିବେ ବୋଲି ଏଠାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି । ସାରଳା ମହାଭାରତର ସ୍ୱଦେଶପ୍ରୀତି, ଦେଶପ୍ରାଣତା ଓ ଆଦର୍ଶ ପ୍ରକାଶରେ ସାମ୍ୟଭାବ ଓ ନିର୍ଭୀକତା ଅତୁଳନୀୟ । ସଂସ୍କୃତ ମହାଭାରତ ଯେପରି ବୈଦିକ ଓ ବ୍ରାହ୍ମଣ୍ୟ ଭାରତର ଜାତୀୟ ସାହିତ୍ୟ, ସାରଳା ମହାଭାରତ ସେହିପରି ମୈତ୍ରୀ ଧର୍ମୀ ଓଡ଼ିଆର ଜାତୀୟ ସାହିତ୍ୟ । ସାରଳା ମହାଭାରତ ସମ୍ଭବତଃ ଭାରତବର୍ଷର ପ୍ରାଚୀନତମ ପ୍ରାକୃତ ମହାଭାରତ । ସାରଳାଙ୍କ ମହାଭାରତ କେବଳ ଓଡ଼ିଶାର ନୁହେଁ ସମଗ୍ର ଭାରତୀୟ ସାହିତ୍ୟ କ୍ଷେତ୍ରରେ ଏକ ସ୍ୱତନ୍ତ୍ର । କେବଳ ବିଷୟ ବସ୍ତୁରେ ନୁହେଁ, ପ୍ରକାଶଭଙ୍ଗୀ ଓ ଶୈଳୀରେ ମଧ୍ୟ ଏହି ଗ୍ରନ୍ଥ ଉତ୍କଳ ସାହିତ୍ୟର ଭାରତୀୟ ସାହିତ୍ୟ ପ୍ରତି ଏକ ମୌଳିକ ବିସ୍ମୟକର ଅବଦାନ । ସଂସ୍କୃତ ଓ ପ୍ରାକୃତର ଦ୍ୱନ୍ଦ୍ୱ ଶେଷ ହେଲା ଏହି ମହାଭାରତ ଯୋଗୁଁ । ତେଣୁ ଓଡ଼ିଆଭାଷା ଯଥାର୍ଥରେ ସାରଳାଙ୍କୁ ଓଡ଼ିଆ ସାହିତ୍ୟର ଜନକ ରୂପେ ଗ୍ରହଣ କରେ ।

ସାରଳାଙ୍କ ମହାଭାରତ ଲେଖା ପରେ ହଠାତ୍ ଦେଶରେ ତାଳପତ୍ର ପୋଥି ଲେଖାର ବନ୍ୟା ଛୁଟିଲା । ଓଡ଼ିଆଭାଷା ଓ ଲିପି ସର୍ବକାଳୀନ ଓ ସାର୍ବଜନୀନ ହେବାକୁ ଲାଗିଲା । ଅକ୍ଷର ରୂପନେଲା; ଭାଷା ମାର୍ଜିତ ହେଲା । ସାରଳାଙ୍କ ଦାଣ୍ଡିବୃତ୍ତି ଓ ଭୁଜଙ୍ଗ ପ୍ରୟାଗଧ୍ୱନିର ଗଦ୍ୟମିଶା ଛନ୍ଦର ପ୍ରଭାବ ଓଡ଼ିଆ କାବ୍ୟର ପ୍ରାୟ ସମସ୍ତ ଛନ୍ଦ, ଗ୍ରନ୍ଥ, ଲେଖା ଓ ରଚନାରେ ରହିଯାଇଛି । ଏହି ଦାଣ୍ଡିବୃତ୍ତି ଚଉଦ ଅକ୍ଷର ପାଦରେ ନିୟମିତ ହେଲା ପରି ହେଲେହେଁ ମଧ୍ୟେ ମଧ୍ୟେ କୌଣସି ଅକ୍ଷର ନିବନ୍ଧ ମାତ୍ରା ନିୟମରେ ନିବଦ୍ଧ ହୋଇ ରହିନାହିଁ । ଜଗନ୍ନାଥ ଦାସଙ୍କ ନବାକ୍ଷରୀ ଭାଗବତ ବୃତ୍ତ ବାହାରିବାଯାଏ ଏହି ବୃତ୍ତ କାବ୍ୟସାହିତ୍ୟରେ ନିରବଚ୍ଛିନ୍ନ ଭାବରେ ଅନୁସୃତ ହେଉଥିଲା । ସାରଳାଙ୍କ ମୂଳ ମହାଭାରତ ଅତୀବ ଲୋକପ୍ରିୟ ହେବାରୁ କାଳକ୍ରମେ କଳାଧ୍ୱଂସକାରୀ ପଣ୍ଡିତମ୍ମାନ୍ୟଙ୍କ ପ୍ରକ୍ଷେପ ଯୋଗୁଁ ମହାକାବ୍ୟଟି ଦୁଷ୍ଟ ହେଲା ଓ ବର୍ତ୍ତମାନ ମିଳୁଥିବା ମୁଦ୍ରିତ ମହାଭାରତ'କେବଳ ଏହି

ପ୍ରକ୍ଷେପପୂର୍ଣ୍ଣ ଅଶୁଦ୍ଧ ଗ୍ରନ୍ଥ । ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ଓଡ଼ିଶା ସରକାରଙ୍କ ଆନୁକୂଲ୍ୟରେ ସଂଶୋଧିତ ସଂସ୍କରଣ ଏକତ୍ରରେ ପ୍ରକାଶିତ ।

ସାରଳାଙ୍କ ପରବର୍ତ୍ତୀ ଶତକଟିକୁ ନୂଆ ନୂଆ କାବ୍ୟ ରୂପର ପରୀକ୍ଷାଯୁଗ ବୋଲି ଯାଇପାରେ । ଦାଣ୍ଡିବୃତ୍ତ ପରେ କୋଇଲି ଓ ଚଉତିଶା ଏହି ଦୁଇ ଶ୍ରେଣୀର ରଚନାର ଉଦ୍ଭବ ହେଲା । କେଶବ କୋଇଲି ଓଡ଼ିଶାର ପ୍ରାଚୀନତମ ଓ ସୁପ୍ରସିଦ୍ଧ ଚଉତିଶା । ଯଶୋଦାଙ୍କ ବାତ୍ସଲ୍ୟ ଏଥିରେ ପ୍ରକାଶ ପାଇଛି । ଜଗନ୍ନାଥ ଦାସ ଏହାକୁ "ଅର୍ଥକୋଇଲି"ରେ ଜୀବ ପରମାତ୍ମା ରୂପେ ବ୍ୟାଖ୍ୟା କରିଛନ୍ତି । ଏହି କୋଇଲି ଗୀତର ଆଦିମ ଗୀତ ହେଲା 'ଲୋଲୀ' ନାମକ ଦେଶଭାଷା ଗୀତ । ଏହି 'ଲୋଲି' ବା କୋଇଲି ଗୀତର ପଦ୍ଧତିଧର ଓଡ଼ିଆ ଗ୍ରନ୍ଥର ବିକାଶ ହୋଇଛି । ଏହି କେଶବ କୋଇଲି ପୁଣି ଏକ ଚଉତିଶା । ଏହି ଚଉତିଶା ଓଡ଼ିଆ କାବ୍ୟ ସାହିତ୍ୟର ଏକ ପ୍ରଖ୍ୟାତ ରୂପ । 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଚଉତିଶଗୋଟି ଅକ୍ଷର ନିୟମ ଅନୁସାରେ ପଂକ୍ତିମାନ ଲେଖା ଯାଇଥିବାରୁ ଏହାକୁ ଚଉତିଶା ବୋଲିଯାଏ । ସନେଟରେ ଯେପରି ନିର୍ଦ୍ଦିଷ୍ଟ ନିୟମ ଓ ପରିସରର ନିଗଡ ମଧ୍ୟରେ ଭାବଟିଏ ପ୍ରକାଶିତ ହୁଏ ଏହି ଚଉତିଶାରେ ମଧ୍ୟ ତଦ୍ରୂପ । ଓଡ଼ିଶାରେ ଅସଂଖ୍ୟ ଚଉତିଶା ଲେଖା ଯାଇଛି । ପ୍ରାକୃତ, ଅପ୍ରାକୃତ ପ୍ରେମ, ଦୁଃଖ ବିଷାଦ, ଭବିଷ୍ୟତବାଣୀ, ବ୍ୟଙ୍ଗ ବିଦ୍ରୂପ, ଭଗବଦ୍ଭକ୍ତି ସବୁ ଏହି ଚଉତିଶା ମାଧ୍ୟମରେ ପ୍ରକାଶ ପାଇଛି । ପ୍ରେମିକ ପ୍ରେମିକାଙ୍କ ପ୍ରେମନିବେଦନ ଓ କରୁଣ ରସ ପ୍ରକାଶ ପାଇଁ ଏହି ଚଉତିଶା ପ୍ରଶସ୍ତ । ବୃଶ ପାଞ୍ଚୋଟି ଗ୍ରନ୍ଥରେ ପ୍ରାଚୀସମିତି ଅନେକ ଗୁଡ଼ିଏ ପ୍ରାଚୀନ ଚଉତିଶା ପ୍ରକାଶ କରିଛନ୍ତି । ଏହି ଚଉତିଶାର ଅକ୍ଷର ନିୟମ ରକ୍ଷାକରି ଦୀନକୃଷ୍ଣ, ଉପେନ୍ଦ୍ରଭଞ୍ଜ ଆଦି ଆଳଂକାରିକମାନେ ରସକଲ୍ଲୋଳ, ବୈଦେହୀଶ ବିଳାସ, କଳା କଉତୁକ ଆଦି ଗ୍ରନ୍ଥମାନ ଲେଖିଛନ୍ତି । ଅଭିନ୍ନା ଚଉତିଶା, ମନାକିନୀ ଚଉତିଶାରେ ତରୁଣ ତରୁଣୀଙ୍କର ପ୍ରେମ ନିବେଦନ ଓ ପ୍ରଣୟକଳ୍ପନା, ଦନେଇଦାସଙ୍କ ଯାନକଡ଼ା ଓ ଭକ୍ତ ଚରଣଙ୍କ ମନବୋଧ ଚଉତିଶାରେ ସଂସାର ବିରାଗ ଓ 'ବା' ଚଉତିଶାରେ ଭବିଷ୍ୟତ ବାଣୀ ମନୋରମ ରୂପେ ସ୍ଫୁଟିତ ହୋଇଛି । ଶଂସିତ ଶତକର ବିଶିଷ୍ଟ କବି ହେଲେ ଅର୍ଜୁନ ଦାସ । ତାଙ୍କର 'ରାମବିଭା' ଓଡ଼ିଆ ସାହିତ୍ୟର ପ୍ରଥମ ଗ୍ରନ୍ଥ-ନିବଦ୍ଧ କାବ୍ୟ । ଏହି ରାମବିଭା କାବ୍ୟରେ ଓ ପ୍ରାୟ ଅର୍ଦ୍ଧଶତକ ପରେ ରଚିତ

ଶିଶୁଶଙ୍କରଙ୍କ ଉଷାଭିଳାଷରେ ସାରଳା ଦାସଙ୍କ ପ୍ରଭାବ ସୁସ୍ପଷ୍ଟ ହେଲେହେଁ ସଙ୍ଗୀତ ମୂର୍ଚ୍ଛନା ଓ ଅଳଂକାରକତାରେ ଏ ଦୁଇ ଗ୍ରନ୍ଥରୁ ଆଗାମୀ ଯୁଗର ସୂଚନା ସ୍ପଷ୍ଟ ଭାବରେ ମିଳେ ।

ଷୋଡ଼ଶ ଶତାବ୍ଦୀ ଓଡ଼ିଶାରେ ଏକ ଧର୍ମଯୁଗ ରୂପେ ଦେଖାଦେଲା । ସାରଳା-ଯୁଗ ଯଦି ହେଲା ରେନେସାଁ ବା ଅଭ୍ୟୁତ୍ଥାନ ଯୁଗ ପଞ୍ଚସଖା ଯୁଗ ହେଲା ରିଫର୍ମେଶନ ବା ଧର୍ମସଂସ୍କାର ଯୁଗ । ୧୫୦୯ରେ ଚୈତନ୍ୟ ଓଡ଼ିଶାକୁ ଆସିଲେ ପ୍ରେମମାର୍ଗର ବୈଷ୍ଣବ ଧର୍ମକୁ ନେଇ । ଆଗରୁ ଜୟଦେବ ଗୀତଗୋବିନ୍ଦ ଜରିଆରେ ତାଙ୍କ ପାଇଁ କ୍ଷେତ୍ର ପ୍ରସ୍ତୁତ କରି ବୈଷ୍ଣବ ଧର୍ମର ତୂର୍ଯ୍ୟନାଦ ଶୁଣାଇ ସାରିଥିଲେ । ଚୈତନ୍ୟଙ୍କ ଆଗମନ ସଙ୍ଗେ ସଙ୍ଗେ ଦେଶରେ ଏକ ଅସ୍ୱାଭାବିକ ଶୈଥିଲ୍ୟ, ପରିବର୍ତ୍ତନ ଓ ଧର୍ମ-ବହୁଳତା ଦେଖାଦେଲା । ଦେଶର ତଦାନୀନ୍ତନ ନରପତି ପ୍ରତାପରୁଦ୍ର ମଧ୍ୟ ମୃଦଙ୍ଗ ମଞ୍ଜୀରର ତାନରେ ବାହୁ ଉତ୍ତୋଳନ କରି ନୃତ୍ୟମତ୍ତ ହେଲେ । ଧର୍ମ ରାଜାନୁଗତ ହେଲା । ବଳରାମ ଦାସ ଓ ଜଗନ୍ନାଥ ଦାସ 'ମତ୍ତ' ଓ 'ଅତିବଡ଼ି' ଉପାଧି ଏହି ଭକ୍ତିବହୁଳତା ପାଇଁ ଲାଭକଲେ । ଦେଶର ରାଜାପ୍ରଜା ସମସ୍ତେ ଉନ୍ମତ୍ତ । ଦେବଦୁର୍ଲ୍ଲଭଙ୍କ ରହସ୍ୟ ମଞ୍ଜରୀର "ସଖି, ତୁ ଯାଉ କି ନା ? କହ୍ନାଇ ପାଶକୁ ଯାଉ କି ନା?" "ଭେରୀ ମୃଦଙ୍ଗ ନାନା ବାଦ୍ୟନାଦେ ; ବ୍ରହ୍ମାଣ୍ଡ ପୁର ବ୍ରହ୍ମଲୋକ ଭେଦେ" ପଂକ୍ତିମାନଙ୍କରେ ଏହି ଉନ୍ମାଦ ସ୍ପଷ୍ଟରୂପେ ପ୍ରକାଶିତ । ଦେଶପ୍ରେମୀମାନେ କାନ୍ଦିଲେ, "ରାଜା ଓ ରାଜ୍ୟର ଏକି ଅଧୋଗତି ! କାହିଁର ସମର ସଜ୍ଜା, ଅସ୍ତ୍ରର ଝନତ୍କାର ପରିବର୍ତ୍ତେ "ଧେଙ୍କ୍ ଧେଙ୍କ୍ ଥେଇ ଥେଇ" ନିନାଦ କଣ ?" ଉତ୍କଳ ତାର ସାରତ୍ୱ ହରାଇଲା । ଉତ୍କଳର ସ୍ୱାଧୀନତା ରବି ଅସ୍ତମିତ ହେଲା । ତିନିଶ ବର୍ଷ ଧରି ଏହି ଧର୍ମ ଓଡ଼ିଶାରେ ପ୍ରବଳ ହୋଇ ଜାତୀୟ ଜୀବନ ଉପରେ ଅସ୍ୱାଭାବିକ ପ୍ରଭାବ ବିସ୍ତାର କରି କାଳକ୍ରମେ କ୍ଷୀଣ ଓ ଦୁର୍ବଳ ହେଲା । ରହିଲା କିନ୍ତୁ ଅମର ବୈଷ୍ଣବ ସାହିତ୍ୟ ; ରହିଲେ ସନାତନ ଜଗନ୍ନାଥେ । (ପଞ୍ଚସଖା ଏକ ପ୍ରତାରଣା ବୋଲି କେତେକ ଗବେଷକଙ୍କ ଅଧୁନାତମ ମତ) ଚୈତନ୍ୟ ଆସିଲାବେଳକୁ ସାରଳା ଦାସଙ୍କ ମହନୀୟ ଆଦର୍ଶ ପୂର୍ତ୍ତି କରିବା ପାଇଁ ବଳରାମ ଦାସ ଭାରତୀୟ ଧର୍ମ, ସଂସ୍କୃତି ଓ ସାହିତ୍ୟର ଅନ୍ୟତମ ନିଦର୍ଶନ ରାମାୟଣକୁ ଦାଣ୍ଡି ବୃତ୍ତରେ ପକାଇ ସାରିଥିଲେ ଓ ଜଗମୋହନରେ ବସି ଆବୃତ୍ତି କରୁଥିଲେ । ଜଗନ୍ନାଥ ଦାସ ନିଜ ନିରକ୍ଷର ମାତାଙ୍କ

ଅନୁରୋଧରେ ସଂସ୍କୃତ ଭାଗବତକୁ ନବାକ୍ଷରୀ ବୃତ୍ତରେ ପକାଇ ଶ୍ରୀକୃଷ୍ଣଚରଣଙ୍କୁ ଉତ୍କଳୀୟ ଭକ୍ତପ୍ରାଣ ନରନାରୀଙ୍କଠାରେ ଅର୍ପଣ କଲେ । ଏହି ଅମର ସାହିତ୍ୟ କୀର୍ତ୍ତିଦ୍ୱୟ ଅତି ଦୁର୍ଦ୍ଦିନରେ ଓଡ଼ିଆ ଜାତି ଓ ସାହିତ୍ୟକୁ ବଞ୍ଚାଇ ରଖିଛି । ଜଗନ୍ନାଥ ଦାସଙ୍କ ଭାଗବତ ଏକାଧାରରେ ଓଡ଼ିଆର ବାଇବଲ ଓ ଭଗବଦ୍ ଗୀତା । ଦେଶରେ ସାକ୍ଷରତା ପ୍ରସାର ଏହି ଭାଗବତ ଯୋଗୁଁ ! ନାନା ଦୁଃଖ ଦୁର୍ବିପାକରେ ପଡ଼ି ବିଚ୍ଛିନ୍ନ ସୀମାନ୍ତ ଅଞ୍ଚଳରେ ରହୁଥିବା ଓଡ଼ିଆମାନଙ୍କ ମଧ୍ୟ ଆତ୍ମୀୟ ଓ ଏକତା ଦେଇଛି ଏଇ ଭାଗବତ । ଭାଗବତର ବାଣୀ ବେଦବାକ୍ୟ ତୁଲ୍ୟ ଓ ଏହି ଭାଗବତ ବାଣୀ ସାକ୍ଷର ନିରକ୍ଷର ନିର୍ବିଶେଷରେ ତୁଣ୍ଡରେ ରଖିଛନ୍ତି । ମୃତ୍ୟୁଶଯ୍ୟା ନିକଟରେ ଏହି ଭାଗବତ ପଢ଼ାଯାଇଥାଏ । ସାରଳାଙ୍କ "ମହାଭାରତ" ଯେପରି ସଂସ୍କୃତ ମହାଭାରତରୁ ପୃଥକ ବଳରାମଙ୍କ "ରାମାୟଣ" ଓ ଜଗନ୍ନାଥଙ୍କ "ଭାଗବତ" ମଧ୍ୟ ଉତ୍କଳୀୟ ଆଦର୍ଶ ଓ ବାତାବରଣରେ ସ୍ୱତନ୍ତ୍ର ଓ ମୌଳିକ ରୂପ ଧାରଣ କରିଛନ୍ତି । "ଭାଗବତ ବୃତ୍ତରେ ଦାଣ୍ଡି ବୃତ୍ତର ପରିସମାପ୍ତି ଓ ସୁନ୍ଦର ବାଣୀ-ବିଳାସ । ଏହା ସାଧାରଣ ଜନବୃତ୍ତି ଅଥଚ ବାଣୀ ଭଙ୍ଗୀରେ ଏକ ପ୍ରକାର ସର୍ବତୋମୁଖୀ ଓ ଅନନ୍ୟ ।" ଦାଣ୍ଡିବୃତ୍ତ ପରି ଏହା ସରଳ ଓ ସ୍ୱଚ୍ଛନ୍ଦ । କାନ୍ୟକୁବ୍ଜାଗତ ଭୂପତି ପଣ୍ଡିତ କପରି ଏହି ବୃତ୍ତର କୁଶଳ ବ୍ୟବହାର କରିଛନ୍ତି ତହିଁରୁ ଏ ବୃତ୍ତର ମନୋମୁଗ୍ଧକାରୀ ଶକ୍ତିର ସୂଚନା ମିଳେ । ପଞ୍ଚସଖାର ଅନ୍ୟତମ ମହାପୁରୁଷ ଅଚ୍ୟୁତାନନ୍ଦ, ପୁରାଣ, ସଂହିତା, ମାହାତ୍ମ୍ୟଗୁଡ଼ିକୁ ଲୋକପ୍ରିୟ କରି ପଞ୍ଚସଖାଙ୍କ ଧର୍ମପ୍ରଚାର ଓ ଜନସାହିତ୍ୟ ସୃଷ୍ଟି କରିବା ଉଦ୍ଦେଶ୍ୟ ପୂରଣ କଲେ । ମହାଭାରତ, ରାମାୟଣ ଓ ଭାଗବତ ତୁଲ୍ୟ ତାଙ୍କ 'ହରିବଂଶ' ପୁଳକ । ବଙ୍ଗଳାର ରାଜା ଗୋବିଚନ୍ଦ୍ର ନିଜ ମାତାଙ୍କ ନିର୍ଦ୍ଦେଶରେ ରାଜ୍ୟ ଧନସମ୍ପତ୍ତି ଛାଡ଼ି ହାଡ଼ିପା ନାମକ ହାଡ଼ିର ସେବାକରି ମୋକ୍ଷ ପାଇଥିଲେ ; ସେଇକଥା ଅବଲମ୍ବନରେ ଯଶୋବନ୍ତ ଯେଉଁ ଗୋବିନ୍ଦ ଚନ୍ଦ୍ର ଗୀତା ରଚନାକଲେ ତହିଁର ଟୀକା ଅଦ୍ୟାପି ନାଥ ଯୋଗୀମାନେ କେନ୍ଦରା ସାହାଯ୍ୟରେ ଗାଇ ଦ୍ୱାର ଦ୍ୱାର ବୁଲନ୍ତି ଓ ପଲ୍ଲୀନାରୀ ଲୋତକଭରା ଚକ୍ଷୁରେ ଶୁଣନ୍ତି ।

ପଞ୍ଚସଖା (୨) ହେଲେ ଉତ୍କଳର ସଂସ୍କୃତ ସାହିତ୍ୟ ତଥା ଧର୍ମଗ୍ରନ୍ଥନିହିତ ମଣିମାଣିକ୍ୟ ଓଡ଼ିଶାର ଦରିଦ୍ର ଜନତାଙ୍କ ନିକଟରେ ସେମାନେ ପହଞ୍ଚାଇ ଦେଲେ । ମାତ୍ର, ଅଳ୍ପ କେତୋଟି ଦଶକ ପରେ ମୁସଲମାନମାନେ ଓଡ଼ିଶା ଆକ୍ରମଣ କଲେ ।

ଦେଶରେ ପୁଣି ରାଜନୈତିକ ଓ ସାମାଜିକ ବିକ୍ଷୋଭ, ଅସ୍ଥିରତା ଓ ବିଶୃଙ୍ଖଳା ଆସିଲା। ସାରଳାଙ୍କଠାରୁ ଆରମ୍ଭ କରି ପଞ୍ଚସଖାଙ୍କ ପର୍ଯ୍ୟନ୍ତ ସାହିତ୍ୟ ପଠିତ ଓ ଆବୃତ୍ତ ହେଉ-ଥିଲା। କିନ୍ତୁ ଗୀତ ଗୋବିନ୍ଦର ସଙ୍ଗୀତ ମୂର୍ଚ୍ଛନାରେ ଓ ମାଘ ଓ ଭାରବୀଙ୍କ ଅବକ୍ଷୟ ଯୁଗର ସଂସ୍କୃତ ସାହିତ୍ୟ ପରିବେଶରେ ଓଡ଼ିଆ କବିତା ସାରଲ୍ୟ ଓ ସାର୍ବଜନୀନତା ହରାଇଲା ଏବଂ ଜଗମୋହନ ବଟ ବୃକ୍ଷର ସ୍ନିଗ୍ଧ ଛାୟା ଛାଡ଼ି କ୍ଷୁଦ୍ର କ୍ଷୁଦ୍ର ରାଜାମାନଙ୍କ ପ୍ରାସାଦରେ କବିପସ୍ଥ ପଣ୍ଡିତଙ୍କୁ ଆଶ୍ରା କଲା। ସାହିତ୍ୟ ସୃଷ୍ଟି ଓ ଚର୍ଚ୍ଚା ବିଳାସରେ ପରିଣତ ହେଲା।

ପଞ୍ଚସଖାଙ୍କ ପରବର୍ତ୍ତୀ ଷୋଡ଼ଶ ବର୍ଷର କାବ୍ୟସାହିତ୍ୟ ବୈଷ୍ଣବ ଧର୍ମ ଓ ଅପ୍ରାକୃତ ପ୍ରେମକୁ ଉପଜୀବ୍ୟ କରି ରଚିତ। ଏ ସମୟର କାବ୍ୟକବିତା ଗୁଡ଼ିକୁ ପୁରାଣ, ଅଳଂକାର ସାହିତ୍ୟ, ଆଳଂକାରିକ ବୈଷ୍ଣବ ସାହିତ୍ୟ, ବୈଷ୍ଣବ ସଙ୍ଗୀତ ଓ ପଦାବଳୀ, ଅଧ୍ୟାତ୍ମବାଦୀ କବିତା ଇତ୍ୟାଦି ଶିରୋନାମାରେ ସଜାଇ ରଖାଯାଇପାରେ। କେବଳ ଗୋଟିଏ ଦୁଇଟି ଗ୍ରନ୍ଥକୁ ଐତିହାସିକ କାବ୍ୟ ବୋଲିଯାଇପାରେ। ଅଙ୍ଗିକରେ ଯୁଗଧର୍ମୀ ହେଲେ ମଧ୍ୟ ଆତ୍ମିକ ସ୍ୱାର୍ଥକ୍ୟ ସେଥିରେ ରହିଛି।

ପୁରାଣ କାରଙ୍କ ମଧ୍ୟରେ ପିତାମ୍ବର ଦାସଙ୍କ ନାମ ଉଲ୍ଲେଖ ଯୋଗ୍ୟ। ନୃସିଂହ ପୁରାଣରେ ତାଙ୍କର ମୌଳିକତା, କଳ୍ପନା ବିଳାସ, ବର୍ଣ୍ଣନା ସୌଷ୍ଠବ ଓ ଚରିତ୍ର ଚିତ୍ରଣର ପ୍ରକୃଷ୍ଟ ପରିଚୟ ମିଳେ। ଗ୍ରନ୍ଥ ଶେଷ ଆଡ଼କୁ କବି ରହସ୍ୟବାଦୀ ମଧ୍ୟ ହୋଇଛନ୍ତି। କବି ପୁରୁଷୋତ୍ତମ ଦାସଙ୍କ 'କାଞ୍ଚିକାବେରୀ' ଏକ ଉଲ୍ଲେଖଯୋଗ୍ୟ ପ୍ରଥମ ଐତିହାସିକ କାବ୍ୟ।

ଉପେନ୍ଦ୍ର ଭଞ୍ଜ ଯେଉଁ ଯେଉଁ ରୀତିର କବିତାରେ ପରାକାଷ୍ଠା ଲାଭ କଲେ ତାହାର ଆରମ୍ଭ ରୁକ୍ମଣୀବିଭା ଓ ଶଶିସେଣା କାବ୍ୟରେ। ତାଙ୍କ ପିତାମହ ଧନଞ୍ଜୟଭଞ୍ଜ ମଧ୍ୟ ଏ ଶ୍ରେଣୀର କବିତା ରଚନାରେ ଧୂରନ୍ଧର ଥିଲେ। ଅଙ୍ଗିକ ଓ ଆତ୍ମିକରେ ଭଞ୍ଜଙ୍କ ରଚନା ପାଠକକୁ ସମ୍ମୋହିତ କରେ। ଅଗାଧ ପାଣ୍ଡିତ୍ୟ ଓ ବିଶିଷ୍ଟ ଆଳଂକାରିକତାରେ ତାଙ୍କ କାବ୍ୟ କବିତାର ଚମତ୍କାରିତା ଅକ୍ଷରେ ଅକ୍ଷରେ ଫୁଟି ଉଠିଛି। ମହାକାବ୍ୟ ଓ ପୁରାଣରୁ ବିଷୟବସ୍ତୁ ନେଇ ସେ ଯେପରି ଅମର କୃତି ବୈଦେହୀଶ ବିଳାସ ସୃଷ୍ଟି କରିଛନ୍ତି କର୍ଣ୍ଣାଟକ ରାଜପୁତ୍ର ଓ ସିଂହଳର କେମାଙ୍କୁ ନାୟକ ନାୟିକା କରି ସେହିପରି ସେ କାଳ୍ପନିକ ଲାବଣ୍ୟବତୀ କାବ୍ୟ ମଧ୍ୟ ଲେଖିଛନ୍ତି। ପ୍ରେମର

ଏପରି କିଛି ବିଷୟ ନାହିଁ ଯାହା ସେ ବର୍ଣ୍ଣନା ନକରିଛନ୍ତି ଏବଂ ସେ ଏପରି କିଛି ବର୍ଣ୍ଣନା କରିନାହାନ୍ତି ଯାହାକୁ ସେ ଅଳଂକୃତ ନ କରିଛନ୍ତି । କବିତାରେ ଯେତେବେଳେ ଭାଷା ଓ ବିଷୟବସ୍ତୁର ସ୍ୱରସାମ୍ୟ ଓ ଅନୁପାତ ରହେ ସେତେବେଳେ ସଙ୍ଗୀତମୟ ଭଞ୍ଜଙ୍କ କାବ୍ୟପ୍ରତିଭା ଯାଦୁମନ୍ତ୍ର ପରି ପାଠକ ମନକୁ ଆକୃଷ୍ଟ ଓ ବଶୀଭୂତ କରେ । ସଂସ୍କୃତ ରୀତି କାବ୍ୟର ନିୟମ ଅକ୍ଷରେ ଅକ୍ଷରେ ମାନି ସେ ଓଡ଼ିଆ କାବ୍ୟକୁ ସଂସ୍କୃତର ସମକକ୍ଷ କରି ପାରିଥିଲେ । ଉପେନ୍ଦ୍ରଙ୍କ କାବ୍ୟଛଟାକୁ ଆଦର୍ଶ କରି ପରବର୍ତ୍ତୀ କବିମାନେ କାବ୍ୟରଚନା କରିଛନ୍ତି । ଉପେନ୍ଦ୍ରଭଞ୍ଜ ବୋଧହୁଏ ଓଡ଼ିଆ ସାହିତ୍ୟର ପ୍ରଥମ ଚିତ୍ରପଦୀ ସଙ୍ଗୀତ ସ୍ରଷ୍ଟା ।

କାଳ୍ପନିକ ବିଷୟବସ୍ତୁ ବା ସୀତାରାମ ଉପାଖ୍ୟାନ ନେଇ ଭଞ୍ଜ ଯଦି ଆଳଂକାରିକ କାବ୍ୟ ସୃଷ୍ଟି କରିଥିଲେ ଦୀନକୃଷ୍ଣ ରାଧାକୃଷ୍ଣଙ୍କୁ ଉପାସ୍ୟ ନାୟକ ନାୟିକା କରି ରସକଲ୍ଲୋଳ କାବ୍ୟରେ ଆଳଂକାରିକ ପ୍ରତିଭା ବ୍ୟକ୍ତ କରିଥିଲେ । ଉଭୟ ଦୀନକୃଷ୍ଣ ଉପେନ୍ଦ୍ରଭଞ୍ଜ ଯେଉଁ ରୀତି ଯୁଗର ଅବତାରଣା କଲେ ତହିଁର ସୁଯୋଗ୍ୟ ଦାୟାଦ ହେଲେ ଅଭିମନ୍ୟୁ । ଅଭିମନ୍ୟୁଙ୍କ ହାତରେ ସ୍ଥଳବିଶେଷରେ କବିତା କ୍ଲିଷ୍ଟତା ଓ ଆଳଂକାରିକତା ମୁକ୍ତ ହୋଇ ଅତୀବ କୋମଳ ଓ ମଧୁର ହେଲା । ବିଦଗ୍ଧ ଚିନ୍ତାମଣିର ଗ୍ରନ୍ଥ ଗୁଡ଼ିକରେ ବିଶେଷକରି ଯେଉଁ ଗୁଡ଼ିକରେ ସେ ଉପେନ୍ଦ୍ରଙ୍କୁ ଗୁରୁ କରି ନାହାନ୍ତି ସେଥିରେ ଓଡ଼ିଆ ଭାଷାର ଅନ୍ତର୍ନିହିତ ନିସର୍ଗ ମାଧୁରୀ ପୁଣି ପ୍ରକଟିତ ହୋଇଛି ଓ କବିସୂର୍ଯ୍ୟଙ୍କ ପାଇଁ କ୍ଷେତ୍ର ପ୍ରସ୍ତୁତ କରିଛି ।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ଦେବଦୁର୍ଲ୍ଲଭ ଦାସ, ଭକ୍ତଚରଣ, ଦନେଇ ଦାସ, ଭୂପତି ପଣ୍ଡିତ ଆଦି ସମସ୍ତେ ବୈଷ୍ଣବ ଧର୍ମକୁ କାବ୍ୟ ସାହିତ୍ୟର ମୂଳ କଲେହେଁ ସେମାନଙ୍କ ଭାଷା 'କୋଇଲି' ବା ଭାଗବତର ସରଳ ଜନଭାଷାର ଅନୁବର୍ତ୍ତୀ ହୋଇଥିଲା । ଯଦୁମଣି ମହାପାତ୍ରଙ୍କ "ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର" କାବ୍ୟଟିକୁ ରୀତିଯୁଗର ଅବକ୍ଷୟୀ କାବ୍ୟ ବୋଲିଯାଇପାରେ । ତାଙ୍କର 'ରହସ୍ୟାବଳୀ' 'ପୂର୍ଣ୍ଣଚନ୍ଦ୍ର' ଅପେକ୍ଷା ଅଧିକ ଲୋକପ୍ରିୟ ।

ଉପେନ୍ଦ୍ରଭଞ୍ଜ ସଙ୍ଗୀତ ସ୍ରଷ୍ଟା ମଧ୍ୟ । ତାଙ୍କ ଅନୁବର୍ତ୍ତୀ ହୋଇ ବନମାଳୀ ଦାସ, କବିସୂର୍ଯ୍ୟ, ଗୋପାଳକୃଷ୍ଣ ଓ ଆଧୁନିକ ଯୁଗର ଲକ୍ଷ୍ମୀକାନ୍ତ ଅମର ସଙ୍ଗୀତ ରଚନା କରିଛନ୍ତି । ବନମାଳୀ ଦାସ ତଥା ଗୋପାଳକୃଷ୍ଣଙ୍କ ପଦାବଳୀ, ମୀରାବାଈଙ୍କ ଭଜନ

ଏବଂ ବିଦ୍ୟାପତି ଓ ଚଣ୍ଡୀଦାସଙ୍କ ପଦାବଳୀର ସମକକ୍ଷ । ପ୍ରେମିକ ପ୍ରେମିକାର ନିଗୂଢ଼ ଓ ଜଟିଳ ମନୋଭାବ ଅନନ୍ୟସାଧାରଣ ପ୍ରକାଶ ଭଙ୍ଗୀ ନେଇ ଅତୀବ ମର୍ମସ୍ପର୍ଶୀ ହୋଇଛି ଏହି ସଙ୍ଗୀତ ଓ ପଦାବଳୀରେ । କବିସୂର୍ଯ୍ୟଙ୍କ ଗଦ୍ୟ ପଦ୍ୟ ମିଶ୍ରିତ 'ଚମ୍ପୂ' ସଙ୍ଗୀତାବଳୀ ଓଡ଼ିଶୀ ରୂପେ ପରିଚିତ ଓ ନୃତ୍ୟର ତାଳେ ତାଳେ ଗୀତ ହୋଇ ଦେଶ ବିଦେଶରେ ଖ୍ୟାତି ଲଭିଛି ଏବଂ ଭକ୍ତି ଯୁଗର କାବ୍ୟକବିତାର ଗୌରବମୟ ପରିଣତି ଓ ପରିପୂର୍ଣ୍ଣତା ଆଣି ଦେଇଛି ।

ବୈଷ୍ଣବ ଧର୍ମର କୃଷ୍ଣଶାଖା ଧରି କାବ୍ୟ ରଚିତ ହେଲା ବେଳେ ବିଶ୍ୱନାଥ ଖୁଣ୍ଟିଆ ଓ କେଶବ ପଟ୍ଟନାୟକ ରାମଶାଖା ଧରି ରାମାୟଣ ରଚନା କରିଛନ୍ତି । 'ବିଚିତ୍ର ରାମାୟଣ'ର ସାରଲ୍ୟ ଓ କରୁଣ ରସ ଏବଂ 'ନୃତ୍ୟରାମାୟଣ'ର କଥୋପକଥନ ଛଳରେ ପଦ ରଚନା ଏ ଦୁଇ ଗ୍ରନ୍ଥର ବୈଶିଷ୍ଟ୍ୟ । ଏ ଦୁଇଟି ଗ୍ରନ୍ଥର ଭାଷା ଜନଭାଷା ଓ ସର୍ବଜନଉପଭୋଗ୍ୟ ।

ମୁଖ୍ୟତଃ ଧର୍ମ ଓ ଅଳଂକାରବିଜଡ଼ିତ ଚାରିଶହ ବର୍ଷର କାବ୍ୟସାହିତ୍ୟରେ ବ୍ରଜନାଥ ବଡ଼ଜେନା ଓ ଭୀମଭୋଇଙ୍କ ସ୍ଥାନ ସ୍ୱତନ୍ତ୍ର । ପୁରୁଷୋତ୍ତମ ଦାସଙ୍କ 'ପଦ୍ମାବତୀ' ପରେ ଦ୍ୱିତୀୟଥର ପାଇଁ ବଡ଼ଜେନାଙ୍କ କାବ୍ୟରେ ଓଡ଼ିଆ କାବ୍ୟର ଉପଜୀବ୍ୟ ବସ୍ତୁ ହେଲା ଏକ ଐତିହାସିକ ଘଟଣା । ଢେଙ୍କାନାଳ ଉପରେ ମରହଟ୍ଟାମାନଙ୍କ ଆକ୍ରମଣ ଜାତୀୟତା ଓ ଦେଶପ୍ରେମିକତାର ମୁଦ୍ରାଙ୍କନ ନେଇ 'ସମର ତରଙ୍ଗ'ରେ ପ୍ରକଟିତ ହେଲା । ସଜୀବ ରଣସଜ୍ଜା ବର୍ଣ୍ଣନାରେ ବାସ୍ତବତାକୁ ରୂପ ଦେବା ପାଇଁ ଏପରିକି ବର୍ଗୀ ସୈନ୍ୟଙ୍କ ଭାଷାର ମଧ୍ୟ ଅବିକଳ ବ୍ୟବହାର ସମର ତରଙ୍ଗର ବୈଶିଷ୍ଟ୍ୟ । ଭୀମଭୋଇ ହେଲେ ନିରକ୍ଷର (ଅନ୍ଧ?) ଗୋରୁ ଜଗା ଟୋକା । କାବ୍ୟ ସାହିତ୍ୟର ଆଦିକାଳରେ ଯେଉଁ ବୌଦ୍ଧ ଓ ଜୈନ ଧର୍ମ ଦେଖା ଯାଇଥିଲା ତାହାର ଅନ୍ୟ ରୂପ ଏହି ଅଭକ୍ତକର୍ମୀଙ୍କ କବିତାରେ ସ୍ୱତଃସ୍ଫୂର୍ତ୍ତି ସରଳତା ନେଇ ପୁନଶ୍ଚ ଦେଖାଦେଲା । ଭୀମଭୋଇ ଅଲୌକିକ ମହିମା ସମ୍ପନ୍ନ ବ୍ୟକ୍ତି । 'ଅହିଂସାଧର୍ମ' ଗାନ୍ଧୀବାଦ ପ୍ରଚାର ଓ ପ୍ରସାରର ପୂର୍ବ କବିତା । ଏହି ଭୀମଭୋଇଙ୍କଠାରେ ଆଦିଯୁଗ ଓ ମଧ୍ୟଯୁଗର ଓଡ଼ିଆକାବ୍ୟ ସାହିତ୍ୟର ଯେପରି ମହିମାମୟ ପରିସମାପ୍ତି ସେହିପରି ଗୌରବମୟ ନବଯୁଗର ଅଭ୍ୟୁଦୟ ଓ ସୂତ୍ରପାତ ।

ହେଲେ, ନବାରୁଣ ମୃତ୍ୟୁ ଯନ୍ତ୍ରଣାରୁ ଏହି ନବଯୁଗର ଉଦ୍ଭବ । ନିରବଚ୍ଛିନ୍ନ ସାହିତ୍ୟିକ ଇତିହାସ ଓ ପରମ୍ପରା ନେଇ ଓଡ଼ିଆ ଭାଷା ଦୀର୍ଘ ଏକ ହଜାର ବର୍ଷ

ସୁପ୍ରତିଷ୍ଠିତ ହେବାବେଳକୁ ବିଗତ ଶତାବ୍ଦୀର ମଧ୍ୟ ଭାଗରେ ଅଗ୍ନି ପରୀକ୍ଷାର ସମ୍ମୁଖୀନ ହେଲା । ଜାତି ଓ ଭାଷା ପକ୍ଷରେ ଜୀବନ ମରଣ ସମସ୍ୟା ବା ସନ୍ଧିକ୍ଷଣ ଉପସ୍ଥିତ ହେଲା । ଗୋଦାବରୀଠାରୁ ଗଙ୍ଗାଯାଏ ଯେଉଁ କଳିଙ୍ଗ ସାମ୍ରାଜ୍ୟ ପରିବ୍ୟାପ୍ତ ଥିଲା ତାହା ନିଜର ସ୍ୱାତନ୍ତ୍ର୍ୟ ହରାଇ କେତେବେଳେ ବଙ୍ଗ କେତେବେଳେ ଅବା ବିହାର ସହିତ ପ୍ରଶାସନିକ ସୁବିଧା ଦୃଷ୍ଟିରୁ ଯୋଡ଼ା ହେଉଥାଏ । ଏପରି କି ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ମଧ୍ୟ କୁହାଗଲା । ଓଡ଼ିଶାର ସାମାଜିକ ଜୀବନରେ ମରହଟ୍ଟା ଶାସନର କୁଫଳର ସ୍ପଷ୍ଟ ମୁଦ୍ରାଙ୍କନ ଲିଭି ନଥାଏ ; ବ୍ରିଟିଶ ଶାସନର ଯତ୍‌କିଞ୍ଚିତ ସୁଫଳ ଓଡ଼ିଶାବାସୀ ପାଇ ନ ଥାନ୍ତି । ଏ ଦୁର୍ଯୋଗକୁ ଆସିଲା ୧୮୬୬ ସାଲର କରାଳ ନ'ଅଙ୍କ ଦୁର୍ଭିକ୍ଷ । ଦୁର୍ଭିକ୍ଷ ପଛକୁ ମହାମାରୀ । ଅବହେଳିତ ନିଷ୍ପେଷିତ ଜାତିର ମେରୁଦଣ୍ଡ ଭାଙ୍ଗି ପଡ଼ିଲା ; ନୈରାଶ୍ୟ ଓ ଅନ୍ଧକାରରେ ସାହିତ୍ୟ ବୁଡ଼ିଗଲା । କାହିଁଗଲା ଓଡ଼ିଆର ସାମ୍ରାଜ୍ୟ ; କାହିଁ ଗଲା ତାର ସୁଦୂରପ୍ରସାରୀ ନୌବାଣିଜ୍ୟ ; କାହିଁ ଗଲା ତାର ଐଶ୍ୱର୍ଯ୍ୟ କଳା, ସ୍ଥାପତ୍ୟ, ସୃଜନୀଶକ୍ତି ଓ ଗୌରବଗରିମା !

ମାତ୍ର ଅନ୍ଧକାର ଯେତେବେଳେ ନିବିଡ଼, ଘନୀଭୂତ, ସେତିକିବେଳେ ଜ୍ୟୋତି ଧରାର ହେଲାପରି ଓଡ଼ିଶାର ଘନତମିସ୍ରାଚ୍ଛନ୍ନ ଆକାଶରେ ଉଦୟ ହେଲେ ଜ୍ୟୋତିଷ୍କତ୍ରୟୀ : ଫକୀର ମୋହନ ସେନାପତି, ରାଧାନାଥ ରାୟ ଓ ମଧୁସୂଦନ ରାଓ । ସେମାନଙ୍କ ପ୍ରୟାସରେ ନିମଜ୍ଜମାନ ଭାଷା ଓ ସାହିତ୍ୟକୁ ଏହି ତ୍ରିମୂର୍ତ୍ତି ଧରିରଖିଲେ । ଯଥାକ୍ରମେ ମଣିଷ, ପ୍ରକୃତି ଓ ଭଗବାନଙ୍କୁ କେନ୍ଦ୍ର କରି ସେମାନେ ସତ୍ୟ, ସୁନ୍ଦର ଓ ଶିବର ଯେଉଁ ସାହିତ୍ୟ ସର୍ଜନା କଲେ ପରମ୍ପରାରେ ତାହା ଏକ ବାଞ୍ଛିତ ବିବର୍ତ୍ତନ ଆଣିବା ସଙ୍ଗେ ସଙ୍ଗେ ଏକ ନୂଆ ଯୁଗର ଏକ ନୂତନ ଅଧ୍ୟାୟର ଦ୍ୱାରଦେଶ ଖୋଲିଦେଲା । ସଂସ୍କୃତ ସାହିତ୍ୟ, ମଧ୍ୟ ଯୁଗୀୟ ସାହିତ୍ୟ ଏବଂ ପାଶ୍ଚାତ୍ୟ ସାହିତ୍ୟର ଏକ ଅପୂର୍ବ ସମନ୍ୱୟରେ ଆଧୁନିକ ସାହିତ୍ୟର ସୃଷ୍ଟି । ପୁରାଣ ଓ ମଧ୍ୟଯୁଗରେ ରାଶି ରାଶି ରାମକୃଷ୍ଣ ଲୀଳାକୁ ଭିତ୍ତି କରି ଯେଉଁ ଅଳଂକାର ସାହିତ୍ୟ ଗଢି ଉଠିଥିଲା . ଏହି ନବଯୁଗରେ ତାହାର ଅନ୍ତ ହେଲା ଏବଂ କାବ୍ୟ ଦେବଲୋକରୁ ନରଲୋକକୁ ଖସି ଆସିଲା । ପରମ୍ପରା ଖର୍ବ ବା ବ୍ୟାହତ ନ ହୋଇ ବ୍ୟାପକତର ଓ ପ୍ରଶସ୍ତତର ହେଲା । ଫକୀରମୋହନ ପ୍ରଥମ ଓଡ଼ିଆ ଛାପାଖାନା ସ୍ଥାପନ କରି-ଭାଷା ଓ ସାହିତ୍ୟର ରକ୍ଷା ଓ ପ୍ରସାର କଲେ । ସେ ଥିଲେ ଯଥାର୍ଥ ମାତୃଭୂମି ଓ ମାତୃଭାଷାର ଉପାସକ । ନାମଯଶ ଉପାର୍ଜ୍ଜନ ପାଇଁ

ସେ କାବ୍ୟକବିତା ଲେଖି ନ ଥିଲେ । ସାରଳା ଦାସ ଯେବେ ଓଡ଼ିଆ ସାହିତ୍ୟର ଜନକ, ଫକୀର ମୋହନ ତାହାର ରକ୍ଷକ । ଗାଳ୍ପିକ ଓ ଔପନ୍ୟାସିକ ରୂପେ ସେ ପ୍ରଖ୍ୟାତ ହେଲେହେଁ ବ୍ୟାସକବି ନାମରେ ତାଙ୍କୁ ଆଖ୍ୟା ଦିଆଯାଏ । କବିତାରେ ବ୍ୟଙ୍ଗ, ହାସ୍ୟ, ଏବଂ କରୁଣ ରସ ଯୁଗପତ୍ ଫୁଟାଇବାରେ ସେ ରଥୀ । ତାଙ୍କ 'ଅବସର ବାସରେ' ଗୀତ କବିତା ଗୁଚ୍ଛରେ ଅଳଂକାରବର୍ଜିତ ଧର୍ମବ୍ୟଥିତଙ୍କ ବିଷୟ ସ୍ୱଚ୍ଛନ୍ଦ ସ୍ରୋତରେ ପ୍ରକାଶ ଲଭିଛି । ଫକୀର ମୋହନ ଶିଶୁସାହିତ୍ୟର ମଧ୍ୟ ସ୍ରଷ୍ଟା । ରାଧାନାଥ ସୁପଣ୍ଡିତ, ସଙ୍ଗୀତଜ୍ଞ ଓ ବହୁଶାସ୍ତ୍ରବିତ୍ ଥାଇ ପ୍ରାଚ୍ୟ ପାଶ୍ଚାତ୍ୟ ସାହିତ୍ୟର ଅମୂଲ୍ୟ ସମ୍ପଦ ଓ ରତ୍ନରାଜି ସଂଗ୍ରହ କରି ନୂତନରୂପ ଦେଇ ଏପରି ଭାବରେ କାବ୍ୟାମୋଦୀଙ୍କ ଆଗରେ ଉପସ୍ଥାପିତ କଲେ ଯେ ସେ ସବୁ ତାଙ୍କ ନିଜସ୍ୱ ପରି ବୋଧ ହେଲା । ଏଟଲାଣ୍ଟାସ୍ ରେସ୍, ଏଗୋନେ ତେଫନ ଉପାଖ୍ୟାନ, ଟ୍ୱେଲଫ୍‌ଥ ନାଇଟ୍, ଲେଡି ଅଫ୍ ଦି ଲେକ୍, ଫେଆରି କୁଇନ୍ ଆଦି ଗ୍ରୀସ, ରୋମ୍ ଓ ଇଂଲଣ୍ଡର ଆଖ୍ୟାନ ଗୁଡ଼ିକୁ ଏ ଦେଶର ସ୍ଥାନ ବିଶେଷ ଓ ଜଳବାୟୁରେ ସେ ଏପରି ମିଶାଇ ଦେଲେ ଯେ, ସେ ଗୁଡ଼ିକ ସ୍ଥାନୀୟ କିଂବଦନ୍ତୀ ପରି ବୋଧହେଲା । ନିଜେ 'ଭ୍ରମଣକାରୀ ଥାଇ ଭାରତ ଓ ଓଡ଼ିଶାର ଅଧିକାଂଶ ବୁଲି ସେ ପ୍ରକୃତି ସହିତ ପ୍ରତ୍ୟକ୍ଷ ସମ୍ପର୍କର ପରିଚୟ ଦେଲେ ଓ ଦେଶର ଗଛପତ୍ରରେ ଗଳ୍ପ ଝୁଲାଇ ଦେଲେ । ପ୍ରାଚୀନ ରାଗ ରାଗିଣୀରେ ତାଙ୍କର ଅଧିକାଂଶ କାବ୍ୟ ରଚିତ । ଅମିତ୍ରାକ୍ଷର ଛନ୍ଦର ସେ ପ୍ରଥମ ପ୍ରବର୍ତ୍ତକ । ଓଡ଼ିଶାର ପ୍ରାକୃତିକ ଦୃଶ୍ୟସମ୍ପଦପୂର୍ଣ୍ଣସ୍ଥାନ, ଦେବପୀଠ ଏବଂ ଇତିହାସସ୍ଥଳୀ କୌଣସିଟି ତାଙ୍କ କାବ୍ୟରୁ ବାଦ୍ ପଡ଼ିନାହିଁ । ସେ ଯଥାର୍ଥରେ ରୋମାଣ୍ଟିକ ଯୁଗର ସ୍ରଷ୍ଟା । ମଧୁସୂଦନ ମୁଖ୍ୟତଃ ଭକ୍ତିମୂଳକ ଗୀତି କବିତାର ରଚୟିତାରୂପେ ଖ୍ୟାତ । ସେଥିରୁ ପ୍ରତ୍ୟେକଟିର ଗୁରୁ ଗମ୍ଭୀର ଝଙ୍କାର ଋଷିମୁଖ ନିଃସୃତ ବାଣୀ ସଦୃଶ ପ୍ରତୀୟମାନ ହୁଏ । ଋକ୍‌ବେଦର ମନ୍ଦ୍ରମଧୁର ଗାନ ପରି ସେଗୁଡ଼ିକର ନିନାଦ ଓ ଝଙ୍କାର । ଆକାଶ ପରି ସେଗୁଡ଼ିକ ପ୍ରଶାନ୍ତ, ପବିତ୍ର ଓ ନିର୍ମଳ । ପାଷଣ୍ଡ ହୃଦୟରେ ମଧ୍ୟ ଭାବାନ୍ତର ଆଣେ । ଏହି ତିନିଜଣଙ୍କ କବିତାରେ ଦେଶାତ୍ମବୋଧ ଓ ଦେଶ ସେବା ପ୍ରଚେଷ୍ଟା ସୁସ୍ପଷ୍ଟ । ଏ ତ୍ରିମୂର୍ତ୍ତିଙ୍କ ସୁଯୋଗ୍ୟ ଦାୟାଦ ହେଲେ ଉତ୍କଳ କାଳିଦାସ ଗଙ୍ଗାଧର ମେହେର ଓ ପଲ୍ଲୀକବି ନନ୍ଦ କିଶୋର ବଳ । ଗରିବ ତନ୍ତୀ ପରିବାରରେ ଜନ୍ମି ଉଚ୍ଚ ଶିକ୍ଷାରୁ ବଞ୍ଚିତ ହୋଇ ମଧ୍ୟ ଗଙ୍ଗାଧର ନିସର୍ଗ

ସୁନ୍ଦର ଭାଷାରେ ଯେଉଁ କେତେ ଖଣ୍ଡି କାବ୍ୟ ରଚନା କରିଛନ୍ତି ତାହା ତାଙ୍କୁ ଜାତିସ୍ମର କରିଛି । ଶକୁନ୍ତଳା, ସୀତା, ଇନ୍ଦୁମତୀ ଆଦି କାଳିଦାସଙ୍କ କାବ୍ୟନାୟିକା ଗଙ୍ଗାଧରଙ୍କ ନିପୁଣ ତୁଳୀରେ ଆଦର୍ଶ ଭାରତ ଲଳନା ରୂପେ ପୁନର୍ଜନ୍ମ ଲାଭ କରିଛନ୍ତି । ନନ୍ଦକିଶୋର ବିଷାଦ ଭରା ପଲ୍ଲୀ ଜୀବନର ଚିତ୍ର ନିଖୁଣ ଭାବରେ ତାଙ୍କ ଗୀତି-କବିତାରେ ଆଙ୍କି ଯୁଗ ଯୁଗ ଧରି ଅବହେଳିତ ପଲ୍ଲୀବାସୀ ଓ ପଲ୍ଲୀଦୃଶ୍ୟ ପ୍ରତି ପାଠକର ଦୃଷ୍ଟି ଆକର୍ଷଣ କରିଛନ୍ତି । ଫକୀରମୋହନ ତାଙ୍କ ଉପନ୍ୟାସରେ ଅବଶ୍ୟ ସେ ଚିତ୍ର ଦେଇଥିଲେ । ନନ୍ଦକିଶୋରଙ୍କ "ନାନାବାୟା ଗୀତ' ଓ 'ଶିଶୁପଦ୍ୟଗୀତ'' ରାଧାନାଥ ଯୁଗର ବହୁମୁଖୀ ପ୍ରତିଭାକୁ ପରିପୂର୍ଣ୍ଣାଙ୍ଗ କରେ । ବ୍ୟକ୍ତିଗତ ଜୀବନ ଓ ରୁଚିରେ ପାର୍ଥକ୍ୟ ଓ ବ୍ୟବଧାନ ଥିଲେ ମଧ୍ୟ ରାଧାନାଥ ଯୁଗର ପ୍ରତ୍ୟେକ କବିଙ୍କର ସୃଷ୍ଟି ପରସ୍ପରର ଅନୁପୂରକ ଓ ପରିପୋଷକ । ପ୍ରସଙ୍ଗକ୍ରମେ ଉଲ୍ଲେଖ କରାଯାଇ-ପାରେ ଯେ ମଧୁସୂଦନ ରାଓ ହେଲେ ପ୍ରଥମ ସନେଟ ରଚୟିତା ଓ ଉଚ୍ଚକୋଟୀର ସ୍ତୁତି-କବିତା (Ode)ର ପ୍ରବର୍ତ୍ତକ, ଲକ୍ଷ୍ୟ କରିବାର କଥା ଯେ ରାଧାନାଥଙ୍କ ପରବର୍ତ୍ତୀ କବିମାନେ ପ୍ରକୃତିଚିତ୍ରଣରେ ନୂତନ ଦୃଷ୍ଟିଭଙ୍ଗୀ ନେଲେ ଏବଂ ଓଡ଼ିଆ ସାହିତ୍ୟ ଜାତୀୟ ଜୀବନର ସମସ୍ୟା ଓ ଆବଶ୍ୟକତା ସହିତ ବରାବର ସଂଶ୍ଳିଷ୍ଟ ହେଲା ।

ରାଧାନାଥ ଯୁଗର ଅବସାନ ହେଉଁ ନ ହେଉଁଣୁ ଓଡ଼ିଶାର ରାଜନୈତିକ ଜୀବନରେ ଆସିଲା ଏକ ନୂତନ ଜାଗରଣ । ୧୯୦୩ ସାଲରେ ଅର୍ଥାତ୍ ଇଂରାଜ ଶାସନର ଠିକ୍ ଶହେ ବର୍ଷ ପରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଢ଼ିବାର ଆନ୍ଦୋଳନର ସୂତ୍ରପାତ ହେଲା । ଏହି ଜାତୀୟ ଆକାଂକ୍ଷା ପୂରଣ ପାଇଁ ଉତ୍କଳ ସମ୍ମିଳନୀ ସ୍ଥାପିତ ହେଲା ଶତାବ୍ଦୀର ସୂର୍ଯ୍ୟ ମଧୁସୂଦନ ଦାସଙ୍କ ନେତୃତ୍ୱରେ । ଭାଷା-ସୂତ୍ରରେ ପ୍ରଦେଶ ଗଠନ ପାଇଁ ଏହାହିଁ ଭାରତରେ ସର୍ବପ୍ରଥମ ପ୍ରୟାସ । ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଫକୀରମୋହନଙ୍କୁ ଏହି ସମ୍ମିଳନୀର ସଭାପତିତ୍ୱ କରିବାକୁ ଆହ୍ୱାନ କରି ନବଯୁଗ ପ୍ରବର୍ତ୍ତକଯୁଗଳଙ୍କୁ ଯଥୋଚିତ ସମ୍ମାନ ଦେଇଥିଲା । ଫକୀରମୋହନ ୧୯୧୮ରେ ପରଲୋକ ଗମନ କଲେ । ରାଧାନାଥ ସାହିତ୍ୟ ଅନୁସରଣକାରୀମାନେ ବିଂଶ ଶତାବ୍ଦୀର ତୃତୀୟ ଦଶକ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ସାହିତ୍ୟସେବା କରୁଥିଲେ ମଧ୍ୟ ପ୍ରଥମ ଦଶକ ବେଳକୁ ସେମାନେ ମ୍ଳାନପ୍ରଭ ହୋଇ ଯାଇଥିଲେ ।

୧୯୦୩ ସାଲ ଆରମ୍ଭ କରି ପ୍ରଥମ ମହାଯୁଦ୍ଧର ଶେଷ ଓ ଗାନ୍ଧୀଜୀଙ୍କର

ଅସହଯୋଗ ଆନ୍ଦୋଳନ ପର୍ଯ୍ୟନ୍ତ ଯେଉଁ ଜାତୀୟପ୍ରେମବହ୍ନି ପ୍ରଜ୍ୱଳିତ ହେଲା ତାକୁ ଉତ୍କଳରେ ପ୍ରଦୀପ୍ତ କଲେ ସର୍ବସ୍ୱତ୍ୟାଗୀ ଉତ୍କଳମଣି ଗୋପବନ୍ଧୁ ଦାଶ। ତାଙ୍କର ହାତରେ ସାହିତ୍ୟ ଓ ଦେଶସେବା ଅଙ୍ଗାଙ୍ଗୀ ହେଲା। ପୁରୀ ନିକଟସ୍ଥ ସତ୍ୟବାଦୀର ବକୁଳ ବନରେ ଏକ ବିହାର ସ୍ଥାପନ କରି ସେ ପ୍ରଚଳିତ ଶିକ୍ଷା ପଦ୍ଧତିରେ ଆର୍ଯ୍ୟ ଋଷିଙ୍କ ସରଳ ଆଧ୍ୟାତ୍ମିକ ଜୀବନର ବାଣୀ ମିଶାଇ ଯୁବକମାନଙ୍କୁ ଉଦ୍‌ବୋଧନ ଦେଲେ ଏବଂ ଭଗବଦଗୀତୋକ୍ତ ଶୁଦ୍ଧପୂତ ଶାନ୍ତ ଜୀବନ ଗଢି ଜାତି ପାଇଁ ତାହା ଉତ୍ସର୍ଗ କରିବା ନିମନ୍ତେ ସାହିତ୍ୟ ଜରିଆରେ ବଜ୍ର ନିର୍ଘୋଷରେ ଆହ୍ୱାନ ଦେଲେ। ତାଙ୍କର ବଳିଷ୍ଠ ଲେଖନୀ ପ୍ରସୂତ ପ୍ରବନ୍ଧାଦି ଓଡ଼ିଶାର ପ୍ରାଚୀନତମ ପତ୍ରିକା ତାଙ୍କ ପ୍ରତିଷ୍ଠିତ 'ସମାଜ'ରେ ପ୍ରକାଶିତ ହେଲା। ଏକ ସମାଜ ସଂସ୍କାର ଯୁଗ ଭିତରେ ଦେଶପ୍ରୀତିର ଜୋୟାରି ଦେଖାଦେଲା। ଗୋପବନ୍ଧୁଙ୍କ ସହକର୍ମୀ ରହିଲେ ପଣ୍ଡିତ ନୀଳକଣ୍ଠ ଦାଶ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ଲିଙ୍ଗରାଜ ମିଶ୍ର, ଆଚାର୍ଯ୍ୟ ହରିହର ଓ କୃପାସିନ୍ଧୁ ମିଶ୍ର। ଏମାନଙ୍କ ସ୍ୱାର୍ଥତ୍ୟାଗ ଅତୁଳନୀୟ। ଏମାନେ ସମସ୍ତେ ଗୁଣୀ ଅଧ୍ୟାପକ, କୃତୀ ସାହିତ୍ୟିକ, ଐତିହାସିକ, ଦେଶସେବୀ ତଥା ସମାଜ ସଂସ୍କାରକ। ନୂତନ ଯୁଗର ଏହି ପଞ୍ଚସଖାଙ୍କ ପ୍ରେରଣାରେ ଜାଗି ଉଠିଲା ସତ୍ୟବାଦୀ ସାହିତ୍ୟ। ସମାଜ ସଂସ୍କାର ପ୍ରୟାସ, ଦେଶ ପ୍ରୀତି ଓ ଦରିଦ୍ର ନାରାୟଣ ସେବା—ଏକ କଥାରେ ଗାନ୍ଧୀବାଦ—ସତ୍ୟବାଦୀ ସାହିତ୍ୟର ଅଭିମୁଖ୍ୟ ହେଲା।

ପଣ୍ଡିତ ଗୋପବନ୍ଧୁଙ୍କ 'ବନ୍ଦୀର ଆତ୍ମକଥା' ଓ 'କାରାକବିତା'ର ପ୍ରତ୍ୟେକ ପଂକ୍ତିରେ କବିଙ୍କର ମାନବବାଦର ପରିପ୍ରକାଶ। ଦେଶ ପାଇଁ, ଜାତିପାଇଁ କବି ହୃଦୟର ବ୍ୟାକୁଳତା ଓ ବୁଭୁକ୍ଷା ଆର୍ତ୍ତନାଦ ଶୁଦ୍ଧ ସରଳ ଭାଷାରେ ବ୍ୟକ୍ତ ହୋଇ ପାଠକର ପ୍ରାଣରେ ଘୋର ଆଲୋଡନ ସୃଷ୍ଟି କରେ। ପଣ୍ଡିତ ନୀଳକଣ୍ଠଙ୍କ 'କୋଣାର୍କେ' ଆଧୁନିକ ଓଡ଼ିଆ କାବ୍ୟର ଏକ ଉଜ୍ଜ୍ୱଳ ଅନବଦ୍ୟ ନିଦର୍ଶନ। ଉଗ୍ର ଜାତୀୟତା ବୋଧ ସହିତ ମଧୁମୟ କଳ୍ପନା ବିଳାସର ମଧୁର ସମନ୍ୱୟ ଏ କାବ୍ୟରେ ସଂଘଟିତ। ତାଙ୍କର 'ଖାରବେଳ' କାବ୍ୟଟି ଓଡ଼ିଆର ଲୁପ୍ତ ଗୌରବ ପ୍ରତି ପାଠକର ଦୃଷ୍ଟି ଟାଣି ଏକ ନବଜାଗରଣ ପାଇଁ ଆହ୍ୱାନ ଦିଏ। ଗୋଦାବରୀଶ ମୁଖ୍ୟତଃ ଗାଥାକବି। ତାଙ୍କ କବିତାରେ ନାନା କିମ୍ବଦନ୍ତୀ ଓ ଐତିହାସିକ ଗାଥା

ସାଧାରଣ ଗାଉଁଲି ଭାଷାରେ ଅନୁରୂପ ସାମାଜିକ ଓ ପାରିବାରିକ ପରିବେଶରେ ଜାତୀୟତାର ଦୀପ୍ତିରେ ରସାଣିତ ହୋଇ ଗଭୀର କରୁଣ ରସର ସୃଷ୍ଟି କରେ । ଓଡ଼ିଶାର କାହ୍ନିକ ତାଙ୍କର 'କାଳିଜାଇ' ଗାଥା କବିତାଟି ବିଶ୍ୱର ବାଲାଡ ସାହିତ୍ୟ ପ୍ରତି ଏକ ଅଭିନବ ଅବଦାନ ।

ଏହା ପରେ ଭାରତରେ ଆସିଲା ଗାନ୍ଧୀଜୀଙ୍କ ନେତୃତ୍ୱରେ ଏକ ବିରାଟ ବିକ୍ଷୋଭ, ରାଜନୈତିକ ଝଡ଼ଝଞ୍ଜା । ଅସତ୍ୟ, ଅନ୍ୟାୟ ଓ ଅସ୍ପୃଶ୍ୟତା ବିରୁଦ୍ଧରେ ଗାନ୍ଧୀଜୀଙ୍କ ପ୍ରବର୍ତ୍ତିତ 'ଅହିଂସା ସମର ଓ ଅସହଯୋଗ ଆନ୍ଦୋଳନର ଆହ୍ୱାନରେ ଆକୁମାରୀ ହିମାଚଳ ଜାଗି ଉଠିଲା । ମୃତକଳ୍ପ କଙ୍କାଳସାର ଓଡ଼ିଆ ଜାତି ପାଇଁ ଆତ୍ମୋତ୍ସର୍ଗରେ ବଦ୍ଧପରିକର ହୋଇ ଧର୍ମଧ୍ୱଜୀଙ୍କ ବିରୁଦ୍ଧରେ ଯେଉଁ ପଞ୍ଚସଖା ଅଭିଯାନ ଚଳାଇଥିଲେ ସେମାନେ ଏ ଆହ୍ୱାନକୁ ଉପେକ୍ଷା କରିବେ କିପରି ? ସ୍ୱତନ୍ତ୍ର ଉତ୍କଳ ପାଇଁ ଯେଉଁ ସଂଗ୍ରାମ ଚାଲିଥିଲା ତାହା ଜାତୀୟ ସମରରେ ବିଲୀନ ହେଲା । ବକୁଳ ବନର ବିପଞ୍ଚି ନୀରବିଲା ; କବିମାନେ କର୍ମୀ ହେଲେ ଏବଂ ଋକ୍‌ବେଦର ମନ୍ତ୍ର ପରିବର୍ତ୍ତେ ଅରଟ ଓ ଚରଖାର ବାଣୀ ସର୍ବତ୍ର ଶୁଣାଗଲା । ସତ୍ୟବାଦୀ ସାହିତ୍ୟଯୁଗର ଅବସାନ ହେବା ସଙ୍ଗେ ସଙ୍ଗେ କାବ୍ୟ ରାଜ୍ୟରେ ଏକ ବିରାଟ ଶୂନ୍ୟତା ମଧ୍ୟ ଅନୁଭୂତ ହେଲା ।

ଏତିକିବେଳେ ଅଦୂରେ, ପୂର୍ବାକାଶରେ କବିସୂର୍ଯ୍ୟ ରୂପେ ରବୀନ୍ଦ୍ରନାଥଙ୍କ ଆବିର୍ଭାବ । ରାଜନୀତି କ୍ଷେତ୍ରରେ ଗାନ୍ଧୀଙ୍କ ପ୍ରଭାବ ପରି ସମସ୍ତ ଭାରତୀୟ ସାହିତ୍ୟ ରବୀନ୍ଦ୍ର ଦୀପ୍ତିରେ ଉଦ୍ଭାସିତ ହେଲା । ୧୯୧୩ ସାଲରେ କବିଗୁରୁ ନୋବେଲ୍ ପୁରସ୍କାର ଲଭିଥିଲେ ମଧ୍ୟ ୧୯୨୦ ସାଲ ପର୍ଯ୍ୟନ୍ତ ତାଙ୍କ ପ୍ରଭାବ ଉତ୍କଳ ସାହିତ୍ୟରେ ରେଖାପାତ କରି ନଥିଲା । ସତ୍ୟବାଦୀଯୁଗର କବିଗଣଙ୍କ ମଧ୍ୟରୁ ଅଧିକାଂଶ କଲିକତାରୁ ଉଚ୍ଚଶିକ୍ଷା ପାଇଥିଲେ ମଧ୍ୟ ସେମାନେ ସମସ୍ତେ କାୟମନୋବାକ୍ୟରେ ବଙ୍ଗ ପ୍ରଭାବର ପ୍ରତିରୋଧ କରୁଥିଲେ । ରେଭେନ୍‌ସା କଲେଜର ପ୍ରାକ୍-ସ୍ନାତକ ଶ୍ରେଣୀର ସର୍ବଶ୍ରୀ ଅନ୍ନଦାଶଙ୍କର ରାୟ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ବୈକୁଣ୍ଠ ନାଥ ପଟ୍ଟନାୟକ ପ୍ରମୁଖ କେତେଜଣ ତରୁଣ କବି ରବୀନ୍ଦ୍ର ପ୍ରଭାବ ପ୍ରତି ଆକୃଷ୍ଟ ହୋଇ ଏକ ନୂତନ କାବ୍ୟଧାରାର ସୂତ୍ରପାତ କଲେ । ଶାନ୍ତିନିକେତନର 'ସବୁଜ ପତ୍ର' ଅନୁକରଣରେ 'ସବୁଜ ସମିତି' ଗଢ଼ି 'ଯୁଗବୀଣା' ନାମକ ମୁଖପତ୍ରରେ ସେମାନେ

ଗୁଣି ଗୁଣି ଗଳ୍ପ, କବିତା, ଉପନ୍ୟାସ, ଭ୍ରମଣ କାହାଣୀ ଓ ସମାଲୋଚନା ପ୍ରକାଶ କରିବାକୁ ଲାଗିଲେ । ଉଦାର ପ୍ରଗତିବାଦୀ ପ୍ରଖ୍ୟାତ 'ଉତ୍କଳ ସାହିତ୍ୟ'ର ସମ୍ପାଦକ ବିଶ୍ୱନାଥ କର ଏ ତରୁଣ କବିବର୍ଗଙ୍କୁ ଆଶୀର୍ବାଦ କଲେ । ୧୯୩୧ ସାଲରେ 'ସବୁଜ କବିତା' ନାମରେ କବିତାଗୁଚ୍ଛଟିଏ ପ୍ରକାଶିତ ହେଲା । 'ସବୁଜ କବିତା' ପ୍ରଧାନତଃ ଯୁବଶକ୍ତିର ପ୍ରଳୟ ଆହ୍ୱାନ ଓ କମଳ ବିଳାସୀଙ୍କ ପ୍ରେମ କବିତାଗୁଚ୍ଛ । "ଅଗ୍ନିକଣା ! ଅଗ୍ନିକଣା !" ପଂକ୍ତିରୁ ପ୍ରଳୟ ଓ ବିଦ୍ରୋହର ସୂଚନା ସୁସ୍ପଷ୍ଟ । 'ହେ ନିର୍ଜୀବ କାଷ୍ଠ ପାଷାଣ ମୂରତି !' ସମ୍ବୋଧନରୁ ସନାତନ ଧର୍ମ ପ୍ରତି ଅନାସ୍ଥା ଭାବ ସହିତ ମାନବବାଦର ଅବତାରଣା ମଧ୍ୟ କାଳନ୍ଦୀଚରଣଙ୍କ 'ପୂଜା ମନ୍ଦିର'ରୁ ମିଳେ । ତାଙ୍କର 'ପଥ କାହିଁ ?' କବିତାରୁ ନୈରାଶ୍ୟ ଓ ସଂଶୟବାଦର ସୂଚନା ମିଳେ । ସବୁଜ କବିମାନଙ୍କର ବିଶେଷତଃ ଅନ୍ନଦାଶଙ୍କରଙ୍କ କବିତାରେ ଉଚ୍ଛଳତା, ଗତିଶୀଳତା ଓ ଭାବାବେଗ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ । ପ୍ରେମ, ସୌନ୍ଦର୍ଯ୍ୟ ଓ ଯୌବନର ପ୍ରଶସ୍ତି ସବୁଜ କବିମାନେ ଯେପରି ମୁକ୍ତ କଣ୍ଠରେ ଗାଇଛନ୍ତି ସେହିପରି ବଜ୍ରନିର୍ଘୋଷରେ ପ୍ରାଚୀନ ଓ ପ୍ରାଣହୀନର ଧ୍ୱଂସ ପାଇଁ ଆବାହନୀ ଶୁଣାଇଛନ୍ତି । ଏବଂ ଅବଶେଷରେ ବାସ୍ତବ ଜୀବନର ଆହ୍ୱାନ ବା ତାଡ଼ନାରେ ଏହି କମଳବିଳାସୀମାନେ ବିଦାୟ ନେଇଛନ୍ତି । ନାନା ତ୍ରୁଟିବିଚ୍ୟୁତି ସତ୍ତ୍ୱେ ସବୁଜ ସାହିତ୍ୟ ଓଡ଼ିଆ କାବ୍ୟ ରାଜ୍ୟରେ ସ୍ଥାୟୀ ଛାପ ରଖି ଯାଇଛି । ନୂଆ ନୂଆ ଛନ୍ଦ ଓ ବିଚିତ୍ର ଶବ୍ଦ ଯୋଜନାରେ କାବ୍ୟ ରାଜ୍ୟର ବାତାବରଣ, ପରିବେଶ ଓ ଦିଗ୍‌ବଳୟ ସଂପ୍ରସାରିତ ହୋଇଛି ଏବଂ ଓଡ଼ିଆ କବିତାରେ ଏକ ଆନ୍ତର୍ଜାତୀୟ ଚେତନା ଆସିଛି ।

ବିଂଶ ଶତାବ୍ଦୀର ଚତୁର୍ଥ ଦଶନ୍ଧି ବେଳକୁ କାବ୍ୟସାହିତ୍ୟରେ ପୁଣି ଏକ ନୂତନ ଦିଗ୍‌ବଳୟ ଖୋଲିଲା । ତୃତୀୟ ଦଶକର ଗାନ୍ଧୀ ଆନ୍ଦୋଳନ ନୂତନ ରାଜନୈତିକ ଚେତନା ଜାଗ୍ରତ କରିଥିଲେ ମଧ୍ୟ କାବ୍ୟ ମାନସରେ ତାର ପ୍ରଭାବ କ୍ଷୀଣ । କେତୋଟି ଜାତୀୟ ସଙ୍ଗୀତ, ବିପ୍ଳବ ଗୀତିକା, ଶୋକ କବିତା ଓ କେତେଜଣ ତରୁଣ କବିଙ୍କୁ ଓଡ଼ିଆ ସାହିତ୍ୟ ଏ ଗଣ ବିକ୍ଷୋଭରୁ ପାଇଲା ମାତ୍ର । ୧୯୩୬ ସାଲରେ ଉତ୍କଳ ସ୍ୱତନ୍ତ୍ର ପ୍ରଦେଶ ହେଲାରୁ ସମସ୍ତ ଓଡ଼ିଆ ଭାଷା ଭାଷୀ ଅଞ୍ଚଳକୁ ଏକତ୍ର କରିବାର ଯେଉଁ ଜାତୀୟ ଆକାଂକ୍ଷା ୧୯୦୩ ସାଲରେ ଜାଗ୍ରତ ହୋଇଥିଲା ତାହାର ଆଂଶିକ ସାଫଲ୍ୟ ମିଳିଲା । ତେଣୁ ସ୍ୱତନ୍ତ୍ର ସ୍ଥିତି ସୁପ୍ରତିଷ୍ଠିତ କରି

ଜାତିର ସର୍ବାଙ୍ଗୀନ ଉନ୍ନତି ବିଧାନ ନିମନ୍ତେ ଅପୂର୍ବ ଜାଗରଣ ଓ ଉତ୍ସାହ ଦେଖା ଦେଲା । ଶ୍ରେଣୀହୀନ ସମାଜ ଗଠନ, ରାଷ୍ଟ୍ରରେ ବ୍ୟକ୍ତିର ସର୍ବାଧିକ ସମ୍ମାନ ସ୍ୱୀକାର, ଅସାମାଜିକ ବିଭେଦ ଓ ଅସାମଞ୍ଜସ୍ୟ ଦୂରୀକରଣ, ନିଷ୍ପେଷିତ ଓ ଅବହେଳିତର ଉନ୍ନତି ବିଧାନ କରି ତାଙ୍କୁ ନ୍ୟାଯ୍ୟ ସ୍ଥାନ ପ୍ରଦାନ ନୂତନ ସାମ୍ୟବାଦୀ ସାହିତ୍ୟର ଆଭିମୁଖ୍ୟ ହେଲା । ମହାତ୍ମାଗାନ୍ଧୀ ଏ ଆଦର୍ଶ ଜାତି ଆଗରେ ତୋଳି ଧରିଥିଲେ ମଧ୍ୟ, ଆଶ୍ଚର୍ଯ୍ୟର କଥା, ଯୁବ ସମାଜ ତାଙ୍କୁ ଗୁରୁ ନ କରି କାର୍ଲ ମାର୍କସଙ୍କ ପ୍ରତି ଆକୃଷ୍ଟ ହେଲା ଏବଂ ନୂତନ ସଂସ୍ଥା ଓ ସାହିତ୍ୟ ଗଢ଼ିବାକୁ ଲାଗିଲା । ଫଳତଃ ପ୍ରାନ୍ତୀୟ ଓ ଭାରତୀୟ ରାଜନୀତି ଓ ସାହିତ୍ୟ ଆନ୍ତର୍ଜାତୀୟ ରାଜନୀତି ଓ ସାହିତ୍ୟ ସହିତ ମିଶି ଏକ ଅଭିନବ ରୂପ ଧାରଣ କଲା । ସାମ୍ୟବାଦୀ ସାହିତ୍ୟର ପ୍ରବର୍ତ୍ତକ ହେଲେ କାଳନ୍ଦୀଚରଣ ପାଣିଗ୍ରାହୀଙ୍କ ଅନୁଜ ସ୍ୱର୍ଗତଃ ଭଗବତୀ ଚରଣ ପାଣିଗ୍ରାହୀ । 'ନବଯୁଗ ସାହିତ୍ୟ ସଂସଦ'ର ମୁଖପତ୍ର 'ଆଧୁନିକ' ଜରିଆରେ ଏହି ନୂତନ ସାହିତ୍ୟ ଓ ବାମପନ୍ଥୀ ଚିନ୍ତାଧାରା ପ୍ରସାରିତ ହେଲା । ସାମ୍ୟବାଦୀ କବିତାର ସର୍ବଶ୍ରୀ ଅନନ୍ତ ପଟ୍ଟନାୟକ, ମନମୋହନ ମିଶ୍ର ଓ ସଚ୍ଚି ରାଉତରାୟ ମୁଖପାତ୍ର । ମନମୋହନ ମିଶ୍ର ବାମପନ୍ଥୀ ମର୍ମସ୍ପର୍ଶୀ ସଙ୍ଗୀତ ରଚୟିତାରୂପେ ଖ୍ୟାତ । ଅନନ୍ତ ପଟ୍ଟନାୟକଙ୍କ ଉଚ୍ଚକୋଟୀର କବିତା ସହିତ ହୁଏତ ବାମପନ୍ଥୀ ଚିନ୍ତାଧାରାର ସମ୍ପର୍କ ନାହିଁ ।

କାବ୍ୟ ରାଜ୍ୟରେ ନାନା ବିବର୍ତ୍ତନ, ପରିବର୍ତ୍ତନ ଏବଂ ପରୀକ୍ଷା ଚାଲିଥିଲା ବେଳେ ମଧ୍ୟ ଅନେକ କବି ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖି ପାରମ୍ପରିକ ରୀତିରେ ବାଣୀ ସେବା କରି ଚାଲିଛନ୍ତି । ନାନା 'ବାଦ' ବା ବିସମ୍ବାଦ ଊର୍ଦ୍ଧ୍ୱରେ ରହି ଶାଶ୍ୱତୀ କାବ୍ୟ ରଚନାରେ ବ୍ରତୀ ସେମାନେ । ସତ୍ୟବାଦୀ ଓ ସବୁଜ ଯୁଗ ଭିତରେ ଥାଇ ମଧ୍ୟ ଚିନ୍ତାମଣି ରାଧାନାଥୀ କବିତା ଲେଖୁଥିଲେ ; ସତ୍ୟବାଦୀ ଓ ସବୁଜ ଯୁଗର ଅବସାନ ପରେ ଗୋଦାବରୀଶ ମିଶ୍ର ଓ କାଳନ୍ଦୀଚରଣ ପାଣିଗ୍ରାହୀ ପାରମ୍ପରିକ ଧାରା ସହିତ ଆଧୁନିକ ଚେତନାକୁ ନିଜ ନିଜ ରଚନା ମିଳାଇଛନ୍ତି । ଅତ୍ୟାଧୁନିକ କବିତାଯୁଗରେ ମଧ୍ୟ ବିଦ୍ୟୁତ୍‌ପ୍ରଭା ଦେବୀ, କୁଞ୍ଜବିହାରୀ ଦାଶ, କୃଷ୍ଣଚନ୍ଦ୍ର ତ୍ରିପାଠୀ ମଣିଷର ଚିରନ୍ତନ ସୁଖଦୁଃଖ ବିରହବେଦନା ସରଳ ବୋଧଗମ୍ୟ ଭାଷାରେ ପ୍ରକାଶ କରିବାକୁ ଗର୍ବ ଅନୁଭବ କରନ୍ତି । ଏହି ସ୍ୱତନ୍ତ୍ରପନ୍ଥୀ ନିର୍ଦ୍ଦଳୀୟ କବିବୃନ୍ଦଙ୍କ ମଧ୍ୟରେ ଗୋଦାବରୀଶ ମହାପାତ୍ର, "ପଦ୍ମଶ୍ରୀ ମାୟାଧର ମାନସିଂହ, ରାଧାମୋହନ ଗଡ଼ନାୟକଙ୍କ ନାମ

ସର୍ବାଦୌ ଉଲ୍ଲେଖଯୋଗ୍ୟ । ଗୋଦାବରୀଶ ବକୁଳ ବିହାରର ପୂର୍ବତନ ଗ୍ରନ୍ଥ-ଥାଇ ସାରା ଜୀବନ ସାହିତ୍ୟକୁ ଜୀବିକା କରି ବଞ୍ଚିଥିଲେ । କଟୂକ୍ତି, ବ୍ୟଙ୍ଗ, ବିଦ୍ରୂପ ଓ ହାସ୍ୟରସକୁ ଅସ୍ତ୍ର କରି ସେ ତାଙ୍କ କବିତାବଳୀରେ ଦରିଦ୍ର, ଅବହେଳିତ ଜାତିକୁ ଚେତାବନୀ ଶୁଣାଇଛନ୍ତି ଓ ସ୍ୱତନ୍ତ୍ରଶ୍ରୀ ଦେଶସ୍ୱାଧୀ, ଓଜସ୍ୱୀ ଓ ପ୍ରାଣସ୍ପର୍ଶୀ ସାହିତ୍ୟ ସ୍ରଷ୍ଟାରୂପେ ଅବିସ୍ମରଣୀୟ ସ୍ଥାନ ଅଧିକାର କରି ଯାଇଛନ୍ତି । ପଣ୍ଡିତ ଗୋଦାବରୀଶଙ୍କ ପରେ ରାଧାମୋହନ ହେଉଛନ୍ତି ଗାଥା କବିତା ରଚନାରେ ନିପୁଣ ଅଦ୍ୱିତୀୟ କଳାକାର । ମଧୁର ଛନ୍ଦଯୋଜନା ଓ କଥାବସ୍ତୁର ନବୀନ ପରିକଳ୍ପନା ଓ ଉପସ୍ଥାପନା ଯୋଗୁଁ ଦେଶର ଅତୀତ ବିଭବରାଜି ତାଙ୍କ କବିତାରେ ହୃଦୟଗ୍ରାହୀ ହୋଇଛି । ଯଥା-ଯୋଗ୍ୟ ଭାବଦ୍ୟୋତକ ମଧୁର ଶବ୍ଦପ୍ରୟୋଗରେ, ରସ ତଥା ବୈଚିତ୍ର୍ୟ-ଉତ୍ପାଦକ ବସ୍ତୁବିନ୍ୟାସ ଓ କଳାତ୍ମକ ସୌନ୍ଦର୍ଯ୍ୟ ପ୍ରଖ୍ୟାପନରେ କବିତତ୍ତ୍ୱର ଏକ ଅଖଣ୍ଡ ରୂପରାଶି ଶକ୍ତି ଓ ରସପିପାସାର ପରିଚୟ ମିଳେ ତାଙ୍କ ଗାଥାକବିତାରେ । ସର୍ବୋପରି ମାୟାଧର ମାନସିଂହ ଆବାଲ୍ୟରୁ ବି ଗତ ତିରିଶ ବର୍ଷ ଧରି ଅବିଶ୍ରମଗତିରେ କାବ୍ୟ-କବିତାରେ ଯେଉଁ ବହୁମୁଖୀ ପ୍ରତିଭା ଦେଖାଇଛନ୍ତି ତାହା ଅନୁଧ୍ୟାନ କଲେ ବିସ୍ମିତ ହେବାକୁ ପଡ଼େ । ପ୍ରେମ, ଧର୍ମ, ଦେଶାତ୍ମବୋଧ ତାଙ୍କ କବିତାରେ ଓତପ୍ରୋତ ଭାବରେ ଜଡ଼ିତ । ପ୍ରେମର ଏପରି କୌଣସି ବିଷୟ ନାହିଁ ଯାହାର ଚିତ୍ର ସେ ଦେଇ ନାହାନ୍ତି । ଉତ୍କଳ ପ୍ରକୃତି ବର୍ଣ୍ଣନା ତାଙ୍କ କବିତାର ଅନ୍ୟ ଏକ ସାଫଲ୍ୟ । 'ପାଷାଣୀ' କାବ୍ୟର ଲେଖକ ଆଦିବାସୀ କବି ଶ୍ରୀ ମହେଶ୍ୱର ନାୟକ ଏଇ ଦଳୀୟ ଶ୍ରେଣୀର । ପୌରାଣିକ ଗାଥାକୁ ନୂତନ ରୂପ ଓ ମୂଲ୍ୟ ଦେବାରେ ସେ ସିଦ୍ଧହସ୍ତ ।

ଦ୍ୱିତୀୟ ମହାଯୁଦ୍ଧୋତ୍ତର ଯୁଗରେ କବିତାର ଆଭିମୁଖ୍ୟରେ ବୈପ୍ଳବିକ ପରିବର୍ତ୍ତନ ଆସିଛି । 'ନୂତନ କବିତା' ବା ଆଜିର କବିତା ବିଦେଶୀ ଗ୍ରନ୍ଥ ଓ ପ୍ରେରଣାରେ ଗଢ଼ା । ଏଥିରେ ସ୍ଥାନୀୟ ରୂପରଙ୍ଗ ବା ପରମ୍ପରା ଉପେକ୍ଷିତ । ପ୍ରଗତିବାଦୀ କବିତାର ପୁରୋଧା ହେଉଛନ୍ତି ଅନନ୍ତ ପଟ୍ଟନାୟକ ଓ ପଦ୍ମଶ୍ରୀ ସଚ୍ଚି ରାଉତରାୟ । ସଚ୍ଚି ରାଉତରାୟଙ୍କ କାବ୍ୟ ଜୀବନ ଧାରାର କ୍ରମ ବିବର୍ତ୍ତନ ସୁସ୍ପଷ୍ଟ । 'କବିତା-୧୯୬୨'ର ସଚ୍ଚି ରାଉତରାୟ 'ବାଜିରାଉତ'ର ସଚ୍ଚି ରାଉତରାୟ ନୁହନ୍ତି ବା 'ବାଜିରାଉତ'ର କବି 'ପଲ୍ଲୀଶ୍ରୀ'ର କବି ନୁହନ୍ତି । ଗଳ୍ପ, ଉପନ୍ୟାସ ଓ ପ୍ରବନ୍ଧାଦିରେ ନୂଆ ଦୃଷ୍ଟିକୋଣ ନେଇ ସେ ଗତ ତିରିଶ ବର୍ଷ ଧରି ଶକ୍ତିଶାଳୀ ଲେଖକ ରୂପେ ବିବେଚିତ ।

'ଅଭିଯାନ', 'ପାଣ୍ଡୁଲିପି' ତାଙ୍କୁ ନୂତନ ଯୁଗ ପ୍ରବର୍ତ୍ତକ ରୂପେ ଖ୍ୟାତ ଦେଇଛୁ । ଜାନୁଆରୀ ୧୯୪୦ ମସିହାରେ ଗୁରୁପ୍ରସାଦ ମହାନ୍ତି ଯେଉଁ ଜାନୁଆରୀରେ 'ନୂତନ କବିତା' ପ୍ରକାଶ କରିଥିଲେ ତାହା ମଧ୍ୟ ନବଯୁଗର ଅବତାରଣାରେ ସହାୟକ ହୋଇଥିଲା । ବିନୋଦ ଚନ୍ଦ୍ର ନାୟକ, ଚିନ୍ତାମଣି ବେହେରା, ରମାକାନ୍ତ ରଥ ଓ ସୀତାକାନ୍ତ ମହାପାତ୍ର ଏ ଶ୍ରେଣୀର କବିତା ରଚନାରେ ପ୍ରସିଦ୍ଧି ଲଭିଛନ୍ତି ।

ଅଗଣିତ ନବୀନତମ କବିଙ୍କ ମଧ୍ୟରେ ସର୍ବଶ୍ରୀ ରବି ସିଂ, ସୌଭାଗ୍ୟ କୁମାର ମିଶ୍ର, ଜୀବନାନନ୍ଦ ପାଣି, ଦୀପକ ମିଶ୍ର, ନୃସିଂହ ଚରଣ ରଥ, ସୌରୀନ୍ଦ୍ର ବାରିକ ଅଗ୍ରଗଣ୍ୟ । ଏହି ପ୍ରଗତିବାଦୀ କବିତାର କାବ୍ୟଗତ ହେଲା ଉଦ୍ୟୋଗପ୍ରଧାନ ପାଶ୍ଚାତ୍ୟର ରାଜନୈତିକ ଅର୍ଥନୈତିକ ଜୀବଧାରାର ଅନୁକରଣ, ବାମପନ୍ଥୀ ମନୋଭାବ, ଗୀତା ଧର୍ମିତାବର୍ଜନ ; ପୂର୍ବବର୍ତ୍ତୀ ରୋମାଣ୍ଟିକ କବିତାର ଜୀର୍ଣ୍ଣ ଆଙ୍ଗିକ ଓ କ୍ଲିଷ୍ଟ ଚିନ୍ତାଧାରା ପ୍ରତି ବୀତସ୍ପୃହ ପ୍ରକାଶ ଏବଂ ମୁକ୍ତଛନ୍ଦ ଓ ସ୍ପନ୍ଦିତ ଗଦ୍ୟର ବ୍ୟବହାର । ବଙ୍ଗଳାରେ ଜୀବନାନନ୍ଦ ଦାଶ, ବୁଦ୍ଧଦେବ ବସୁ ଓ ବିଷ୍ଣୁ ଦେ ପ୍ରମୁଖ ଏ ନୂତନ କବିତାର ସାର୍ଥକ ପ୍ରୟୋଗ କରିଛନ୍ତି । ଏହି ପ୍ରଗତିବାଦୀ କବିମାନଙ୍କର କାବ୍ୟଗୁରୁ ହେଉଛନ୍ତି ହପକିନ୍ସ, ଇଲିଅଟ, ହୁଇଟମେନ୍, ଲରେନସ, ସ୍ପେଣ୍ଡର, ଅଡେନ, ଏଜରା ପାଉଣ୍ଡ, ସାର୍ତ୍ରେ, ନରୁଦା ଓ ଲରକା ଆଦି ପାଶ୍ଚାତ୍ୟ କବିଗଣ । ଅନ୍ୟ ଲକ୍ଷଣ ଭିତରେ ପ୍ରଗତିବାଦ କବିତାର କେତୋଟି ଚିହ୍ନ ଏହି :—ଧର୍ମ, ପ୍ରେମ ପ୍ରଭୃତି ସୁପ୍ରତିଷ୍ଠିତ ମୂଲ୍ୟବୋଧ ଉପରେ ସଂଶୟ, ନିରୀଶ୍ୱରବାଦ, ପରମେଶ୍ୱର ଓ ଧର୍ମ ପ୍ରତି ଅନାସ୍ଥା, ଦେହଜ ପ୍ରେମର ବିଶ୍ଳେଷଣ, ନଗରାଞ୍ଚଳ ଯାନ୍ତ୍ରିକ ସଭ୍ୟତା ସହିତ ସଂଘର୍ଷ, ଜୀବନ ପ୍ରତି ହତାଶଭାବ ଓ କ୍ଳାନ୍ତ ଅନୁଭବ, ଅବଚେତନମାନସର ଗବେଷଣା, ମୃତ୍ୟୁ-ଚେତନା, ମାର୍କସବାଦ । ଆଙ୍ଗିକତା କ୍ଷେତ୍ରରେ ପ୍ରଚୁର ପ୍ରତୀକ ଓ ରୂପକଳ୍ପର ପ୍ରୟୋଗ, କବିପ୍ରସିଦ୍ଧି ବର୍ଜନ, ଭାବ ରାଶିର ଅସଂବଦ୍ଧତା, ଖଣ୍ଡ ବାକ୍ୟ ପ୍ରୟୋଗ, ଓ ବହୁଳ ଉଦ୍ଧୃତି । ପ୍ରଗତିବାଦୀ କବି ତାର ହୃଦୟର ସମସ୍ତ ଦ୍ୱାର ଜଗତର ଉନ୍ମୁକ୍ତ ବାୟୁ ଗ୍ରହଣ କରିବା ଉଦ୍ଦେଶ୍ୟରେ ଖୋଲି ରଖେ ଏବଂ ଅନ୍ତର୍ମୁଖୀ ଓ ବହିର୍ମୁଖୀ ଶକ୍ତିର ଦ୍ୱନ୍ଦ୍ୱ ଦେଇ କବିତା ସୃଷ୍ଟି କରେ । ଏ ସବୁ ଲକ୍ଷଣ ଆଧୁନିକ କାବ୍ୟ କବିତାରେ ଥିବାରୁ ସାଧାରଣ ପାଠକ ପକ୍ଷରେ ସେ ସବୁ କ୍ଲିଷ୍ଟ, ଦୁର୍ବୋଧ୍ୟ ଓ ଅବୋଧ୍ୟ ଏବଂ ଅଶ୍ଳୀଳ । ଏ ନୂତନ କବିତାର ମୂଲ୍ୟାୟନ କାଳ ଉପରକୁ ଛାଡ଼ି ଦିଆ-

ଗଲେ ମଧ୍ୟ ଏକଥା ସ୍ୱୀକାର କରିବାକୁ ହେବ ଯେ ଆମେରିକାରୁ ଜାପାନ, ସୁଇଡେନରୁ ଅଷ୍ଟ୍ରେଲିଆ ଆଫ୍ରିକାରୁ କୋରିଆ ସର୍ବତ୍ର ଏହି ଏକ ଶ୍ରେଣୀର କବିତା ଲେଖା ଯାଉଛି ଏବଂ ପ୍ରାକ୍-ଯୁଦ୍ଧ କାଳୀନ କବିତା ଅନ୍ତର୍ହିତ ହୋଇଗଲାଣି ।

ଏହାହିଁ ହେଲା ପ୍ରାୟ ହଜାରେ ବର୍ଷର ଓଡ଼ିଆ କାବ୍ୟ ସାହିତ୍ୟ ଇତିହାସର ସଂକ୍ଷିପ୍ତସାର । 'ଉଞ୍ଚ ଉଞ୍ଚ ପାବତ'ରୁ ବାହାରି ଏହି କାବ୍ୟଗଙ୍ଗା "ବିତଳକୁ ଆଲିଙ୍ଗନ କରି" କେତେବେଳେ 'ସୁରବର ତାପ' ହରେ । ଅନ୍ୟ କେତେବେଳେ ଅବା ସେ ଖରସ୍ରୋତା, ଉଚ୍ଛୃଙ୍ଖଳା, କୂଳପାବନୀ ; କେତେବେଳେ ଅବା କ୍ଷୀଣସ୍ରୋତା ବା ଅନ୍ତଃସ୍ରୋତା ଫଲ୍‌ଗୁ; ପୁଣି କେତେବେଳେ ଅବା ସୁପ୍ରଶସ୍ତା ଜ୍ୟୋତ୍ସ୍ନାମୟୀ ମହାନଦୀ । କିନ୍ତୁ ଚିର ପ୍ରବହମାନା ଏହି ସାରସ୍ୱତୀ କାବ୍ୟଧାରା ସତ୍ୟଶିବସୁନ୍ଦରର ଧ୍ରୁବତାରାକୁ ଲକ୍ଷ୍ୟ ରଖି ଆଗେଇ ଚାଲିଛି ହୃଦସ୍ୱରେ ଧର୍ମ, ଧୃତି ନେଇ । ଏ କାବ୍ୟନଦୀ ପ୍ରଶସ୍ତତର ହେଉ, ଉଜ୍ଜ୍ୱଳତର ହେଉ ଏବଂ ଅଧିକ କଲ୍ୟାଣମୟୀ ହେଉ, ଏତିକି; ଜଗନ୍ନାଥଙ୍କ ଠାରେ ପ୍ରାର୍ଥନା ।

ଫକୀର ମୋହନ କଲେଜ
ଜାନୁଆରୀ ୧, ୧୯୬୮
ଶ୍ରୀଗୁଣ୍ଡିଚା, ଜୁନ ୨୧, ୧୯୭୪

ବସନ୍ତ କୁମାର ଶତପଥୀ
ପ୍ରାଧ୍ୟାପକ, ଇଂରାଜୀ ବିଭାଗ

# କାହ୍ନୁପା

(୮ମ—୧୨ଶ ଶତାବ୍ଦୀ)

## ନଗର ବାହିରେ ଡୋମ୍ବି

(ରାଗ :—ଦେଶାଖ)

ନଗର ବାହିରେଁ ଡୋମ୍ବି ତୋହୋରି କୁଡ଼ିଆ
(ନଗର ବାହିରେ ଡୋମ୍ବି ତୋହରି କୁଡ଼ିଆ)
ଛୋଇ ଛୋଇ ଜାଇ ସୋ ବ୍ରାହ୍ମଣ ନାଡ଼ିଆ
(ଛୁଇଁ ଛୁଇଁ ଯାଏ ସେ ବ୍ରାହ୍ମଣ ନାଣ୍ଡିଆ)
ଆଲୋ ଡୋମ୍ବି ତୋଏ ସମ କରିବେ ମୋ ସାଙ୍ଗ
(ଅଲୋ ଡୋମ୍ବି ତୋର ସଙ୍ଗେ କରିବ ମୁଁ ସାଙ୍ଗ)
ନିଘିଣ କାହ୍ନୁ କପାଳି ଜୋଇ ଲାଙ୍ଗ
(ନିର୍ଘୃଣ କାହ୍ନୁ କପାଳୀ ଯୋଗୀ ଲଙ୍ଗ)
ଏକସୋ ପଦୁମା ଚୌଷଠୀ ପାଖୁଡ଼ୀ
(ଏକ ସେ ପଦୁଅଁ ଚୌଷଠି ପାଖୁଡ଼ା)
ତହିଁ ଚଡ଼ି ନାଚଅ ଡୋମ୍ବି ବାପୁଡ଼ୀ
(ତହିଁ ଚଢ଼ି ନାଚଇ ଡୋମ୍ବି ବାପୁଡ଼ୀ)
ହାଲୋ ଡୋମ୍ବି ତୋ ପୁଛମି ସଦଭାବେ
(ଆଲୋ ଡୋମ୍ବି ତୋତେ ପୁଛଇ ସଦଭାବେ)
ଆଇସସି ଜାସି ଡୋମ୍ବି କାହାରି ନାବେଁ ।
(ଆସୁ ଯାଉ ଡୋମ୍ବି କାହାର ନାବେଁ)
ତାନ୍ତି ବିକଣଅ ଡୋମ୍ବି ଅବରନା ଚଙ୍ଗେଡ଼ା ।
(ତନ୍ତ୍ରୀ ବିକଇ ଡୋମ୍ବି ଆବରନା ଚଙ୍ଗେଡ଼ା)
ତୋହୋର ଅନ୍ତରେ ଛାଡ଼ି ନଡ଼ ପେଡା

(ତୋହ୍ୱର ଅନ୍ତରେ ଛୁଡ଼ିଲ୍ ନଟ ପେଡା

ତୁ ଲୋ ଡୋମ୍ବି ହାଉଁ କପାଳୀ
(ତୁଲୋ ଡ଼ୋମ୍ବି ମୁଁଇ କପାଳୀ)

ତୋହ୍ୱର ଅନ୍ତରେ ଘେଣିଲ୍ ହାଡ଼େର୍ ମାଳୀ
(ତୋହ୍ୱର ଅନ୍ତରେ ମୁଁଇ ଘେନଲ୍ ହାଡ଼ର ମାଳ)

ସରୋବର ଭାଂଜଅ ଡ଼ୋମ୍ବି ଖାଅ ମୋଲାଣ
(ସରୋବର ଭଞ୍ଜିଣ ଡ଼ୋମ୍ବି ଖାଅ ମୃଣାଳ)

ମାରମି ଡ଼ୋମ୍ବି ଲେମି ପରାଣ
(ମାରମି ଡ଼ୋମ୍ବି (ତୋର) ନେମି ପରାଣ)

(ଚର୍ଯ୍ୟାଗୀତିକା)

## ତୁ କାମ ଚଣ୍ଡାଳୀ

ଢଣି ଭୂଅଣ ମଇଁ ବାହୁଅ ହେଲେଁ ।
(ଢନ ଭୁବନ ମୁଇଁ ବାହୁଣ ହେଲେ ।)

ହାଉଁ ସୁତେଲ୍ ମହାସୁହ ଲୀଲେଂ ।
(ମୁଁ ଶୋଇଲ୍ ମହାସୁଖ ଲୀଳେଂ ।)

କଇସଣି ହାଲୋ ଡ଼ୋମ୍ବି ତୋହୋର୍ ଭଭର୍ ଆଲୀ ।
(କେସନେ ଅଲୋ ଡ଼ୋମ୍ବି ତୋହର ବାରୁଆଲୀ ?)

ଅନ୍ତେ କୁଲିଣ ଜଣ ମାଝେଁ କାବାଲୀ ।
(ଅନ୍ତେ କୁଳନ ଜନ ମଝିରେ କପାଳୀ ।)

ତଇଁ ଲୋ ଡ଼ୋମ୍ବି ସଅଲ ବିଟାଳିଉ ।
(ତହିଁ ଲୋ ଡ଼ୋମ୍ବି ସକଳ ବିଟାଳୁ ।)

କାଜ ଣ କାରଣ ସସହର ଟାଳିଉ
(କାର୍ଯ୍ୟ ନା କାରଣ ଶଶଧର ଟାଳୁ ।)

କେହ୍ନୋ କେହ୍ନୋ ତୋହ୍ନୋରେ ବରୁଅ ବୋଲଇ ।
(କେହ୍ନ କେହ୍ନ ତୋହ୍ନୋରେ ବରୁପା ବୋଲଇ ।)
ବିଦୁଜନ ଲୋଅ ତୋରେ କଣ୍ଠ ନ ମେଲଇ ।
(ବିଦୁଜନ ଲୋକ ତୋରେ କଣ୍ଠ ନ ମେଲଇ)
କାହ୍ନ ଗାଇ ତୁ କାମ ଚଣ୍ଡାଳୀ ।
(କାହ୍ନ ଗାଇ ତୁ କାମ ଚଣ୍ଡାଳୀ ।)
ଡୋମ୍ବି ତ ଆଗଲି ନାହିଁ ଛିନାଳୀ ।
(ଡୋମ୍ବି ତୋ ଆଗରେ (କେହି) ନାହିଁ ଛିଣ୍ଡାଳୀ)
(ଚର୍ଯ୍ୟାଗୀତିକା)

# ଶବରପା

(୮ମ—୯ମ ଶତାବ୍ଦୀ)

## ଉଂଚ୍ଚ ଉଂଚ୍ଚ ପାବତ

ଉଁଚା ଉଁଚା ପାବତ ତହିଁ ବସଇ ସବରୀ ବାଳୀ ।
(ଉଚ୍ଚ ଉଚ୍ଚ ପର୍ବତ ତହିଁ ବସଇ ଶବରୀ ବାଳୀ)
ମୋରଙ୍ଗି ପୀଚ୍ଛ ପରହିଣ ସବରୀ ଗୀବତ ଗୁଞ୍ଜରୀ-ମାଳୀ ।
(ମୟୂର ପୁଚ୍ଛ ପରିହିଣ ଶବରୀ ଗ୍ରୀବାରେ ଗୁଞ୍ଜରୀମାଳ)
ଉମତୋ ସବରୋ ପାଗଲ ସବରେ ମା କର ଗୁଲୀ ଗୁହାଡ଼ୀ ।
(ଉନ୍ମତ୍ତ ଶବର ପାଗଳ ଶବର ନ କର ଗୋଳ-ଗୁହାରି)
ତୋହୋରି ଣିଅ ଘରଣୀ ନାମେ ସହଜ ସୁନ୍ଦରୀ
(ତାହାର ନିଜ ଘରଣୀ ନାମେ ସହଜ ସୁନ୍ଦରୀ ।)
ଣାଣା ତରୁବର ମୋଉଲିଲରେ ଗଅଣତ ଲାଗେଲି ଡ଼ାଳୀ
(ନାନା ତରୁବର ମୁକୁଳିଲେ ରେ ଗଗନରେ ଲାଗିଲା ଡାଳ)

ଏକଲ୍ଲା ସବଗ୍ଗ ଏ ବଣ ହୃଣ୍ଡଇ କର୍ଣ୍ଣ କୁଣ୍ଡଳ ବଜ୍ରଧାଗ୍ଗ
(ଏକେଲ୍ ଶବଗ୍ଗ ଏ ବଣ ହୃଣ୍ଡଇ କର୍ଣ୍ଣ କୁଣ୍ଡଳ ବଜ୍ରଧାଗ୍ଗ)
ତଅ ଧାଉ ଖାଟ ପାଡ଼ିଲା ସବରୋ ମହାସୁହେ ସେଜ୍ଛିଇଲ୍ ।
(ତନ ଧାତୁ ଖଟ ପାତିଲା ଶବର ମହାସୁଖେ ଶେଜ ଛୁଇଲା)
ସବରୋ ଭୁଜଙ୍ଗ ନୈରାମଣୀ ଦାଗ୍ଗ ପେହ୍ମରାତ ପୋହାଇଲ୍ ।
(ଶବର ଭୁଜଙ୍ଗ ନୈରାମଣୀ ଦାଗ୍ଗ ପ୍ରେମରାତ ପୁହାଇଲା ।)
ହିଅ ତାଂବୋଲା ମହାସୁହେ କାପୁର ଖାଇ ।
(ହିଆ ତାମ୍ବୁଲ ମହାସୁଖେ କପୁର ଖାଇ)
ସୁନ ନୈରାମଣି କଣ୍ଠେ ଲଇଆ ମହାସୁଖେ ରାତ ପୋହାଇ ।
(ଶୂନ୍ୟ ନୈରାମଣି କଣ୍ଠେ ନେଇଣ ମହାସୁଖେ ରାତ ପୋହାଇ)
ଗୁରୁବାକ୍ ପୁଚ୍ଛିଅ ବିନ୍ଧ ନିଅଣା ବାଣେ ।
(ଗୁରୁବାକ୍ ପୁଚ୍ଛିଣ ବିନ୍ଧ ନିଜମନ ବାଣେ ।)
ଏକେ ଶର ସନ୍ଧାନେ ବିନ୍ଧହ ବିନ୍ଧହ ପରମଣିବାଣେ ।
(ଏକ ଶର ସନ୍ଧାନେ ବିନ୍ଧ ବିନ୍ଧ ପରମ ନିର୍ବାଣେ ।)
ଉମତ ସବରୋ ଗରୁଆ ରୋଷେ ।
(ଉନ୍ମତ୍ତ ଶବର ଗରୁଆ ରୋଷେ)
ଗିରିବର ସିହର-ସନ୍ଧ ପଇସନ୍ତେ ସବରୋ ଲୋଡ଼ିବ କଇସେ ।
(ଗିରିବର ଶିଖର ସନ୍ଧ ପଶନ୍ତେ ଶବରେ ଲୋଡ଼ିବ କେମନେ ?)
(ଚର୍ଯାଗୀତିକା)

## ଗଅଣତ ଗଅଣତ ତଇଲା ବାଡ଼ୀ

ଗଅଣତ ଗଅଣତ ତଇଲା ବାଡ଼ୀ ହେଞ୍ଚେ କୁରାଡ଼ୀ ।
(ଗଗନେ ଗଗନେ ତଇଲା ବାଡ଼ୀ ହାଣେ କୁରାଢ଼ୀ ।)
କଣ୍ଠେ ନୈରାମଣି ବାଲି ଜାଗନ୍ତେ ଉପାଡ଼ୀ ।।
(କଣ୍ଠେ ନୈରାମଣୀ ବାଳୀ ଜାଗନ୍ତେ ଉପାଡ଼ ।।)

ଗୁଢ଼ ଗଢ଼ ମାଅମୋହ ବଷମ ଦୁନ୍ଦୋଲୀ ।
(ଗୁଢ଼ ଗୁଢ଼ ମାୟାମୋହ ବିଷମ ଧନ୍ଦୋଲୀ ।)
ମହାସୁହେ ବିଲସନ୍ତି ଶବରୋ ଲଇଆ ସୁଣ-ମେହେଲୀ ॥
(ମହାସୁଖେ ବିଲସନ୍ତି ଶବର ନେଇଣ ଶୂନ୍ୟ-ମାହାଣ୍ଡ ॥)
ହେଉ ସେ ମୋର ତଇଲା ବାଡ଼ୀ ଖସମେ ସମତୁଲା ।
(ହେଉ ସେ ମୋର ତଇଲା ବାଡ଼ୀ ଖସମ ସମତୁଲ । )
ସୁକଡ ଏ ସେରେ କପାସୁ ଫୁଟିଲା ॥
(ଶୁକଲ ଏହୁ ସେ,ରେ କପାସୁ ଫୁଟିଲା । )
ତଇଲା ବାଡ଼ୀର ପାସେଁର ଜୋହ୍ନା ବାଡ଼ୀ ଉଇଲା ।
(ତଇଲା ବାଡୀର ପାଶେରେ ଜହ୍ନବାଡ଼ି ଉଇଁଲା ।)
ଫିଟେଲି ଅନ୍ଧାରରେ ଆକାଶ-ଫୁଲିଆ ।
(ଫିଟିଲା ଅନ୍ଧାରରେ ଆକାଶ-ଫୁଲିଆ ॥)
କଙ୍ଗୁଚିନା ପାକେଲା ରେ ଶବରଶବରୀ ମାତେଲା ।
(କଙ୍ଗୁଚିନା ପାଚିଲା ରେ ଶବରଶବରୀ ମାତିଲା ।)
ଅଣୁଦିନ ଶବରେ କିମ୍ପି ନ ଚେବଇ ମୁହାସୁହେଁ ଭୋଲା ॥
(ଅନୁଦିନ ଶବର କିଛୁ ନ ଚେତଇ ମହାସୁଖେ ଭୋଲା ॥)
ଚ୍ଯାରିବାସେଁ ଗଢ଼ିଲରେ ଦିଆ ଚଞ୍ଚାଲୀ ।
(ଚାରିବାଆଁଶେ ଗଢ଼ିଲେ ଦେଇ ଚଞ୍ଚଳି ।)
ତହିଁ ତୋଲି ଶବରେ ଡାହ କଏଲା କାନ୍ଦଇ ସଗୁଣ ଶିଆଲୀ ॥
(ତହିଁ ତୋଲି ଶବର ଦାହ କଲା କାନ୍ଦଇ ଶାଗୁଣା ଶିଆଳୀ ।)
ମାରିଲ ଭବମତ୍ତରେ ଦହଦିହେ ଦିଧଲୀ ବଲୀ ।
(ମାରିଲା ଭବମତ୍ତାରେ ଦଶଦିଶେ ଦେଲା ବଳୀ ।)
ହେର ସେ ସବର ନିରେବଣ ଭଇଲା ଫିଟିଲି ସବରାଲୀ ॥
(ହେର ସେ ଶବର ନିର୍ବାଣ ହୋଇଲା ଫିଟିଲା ଶବରାଳି ॥)

(ଚର୍ଯାଗୀତିକା)

# ଲୁଇପା

(୮ମ—୯୨ଶ ଶତାବ୍ଦୀ)

## କାଆ ତରୁବର

(ରାଗ :— ପଟମଞ୍ଜରୀ)

କାଆ ତରୁବର ପଞ୍ଚ ବି ଡ଼ାଲ ।
(କାୟା ତରୁବର ପାଞ୍ଚ ବି ଡାଳ)
ଚଞ୍ଚଲ ଚୀଏ ପଇଠା କାଲ । ୧ ।
(ଚଞ୍ଚଳ ଚିତ୍ତେ ପ୍ରବିଷ୍ଟ କାଳ)
ଦିଢ଼ କରିଅ ମହାସୁହ ପରିମାଣ ।
(ଦୃଢ଼ କରଣ ମହାସୁଖ ପରିମାଣ
ଲୁଇ ଭଣଇ ଗୁରୁ ପୁଚ୍ଛିଅ ଜାଣ ।। ଧ୍ରୁ ।।
(ଲୁଇ ଭଣଇ ଗୁରୁ ପୁଚ୍ଛି'ଣ ଜାଣ)
ସଅଲ ସମାହିଅ କାହି କରିଅଇ ।
(ସକଳ ସମାଧିରେ କଣ କରାଯାଏ ?)
ସୁଖ ଦୁଃଖେତେଁ ନିଚିତ ମରିଅଇ । ୨ । ଧ୍ରୁ
(ସୁଖ ଦୁଃଖରେ ନିଶ୍ଚିତ ମୃତ୍ୟୁ ହୁଏ ।)
ଏଡ଼ି ଏଉ ଛାନ୍ଦକ ବାନ୍ଧ କରଣ କପଟେର ଆସ ।
(ଏଡ଼ି ଏହୁ ଛାନ୍ଦର ବନ୍ଧ କରଣ କପଟର ଆଶ)
ସୁନୁପାଖ ଭିଡ଼ି ଲେହୁରେ ପାସ ।। ୩ ।। ଧ୍ରୁ
(ଶୂନ୍ୟ ପାଖ ଭିଡ଼ି ନିଅରେ ପାଶ ।)
ଭଣଇ ଲୁଇ ଆମ୍ହେ ଝାଣେ ଦିଠା ।
(ଭଣଇ ଲୁଇ ଆମ୍ହେ ଦେଖିଲୁ ଧ୍ୟାନେ)
ଧମଣ ଚମଣ ବେଣି ପିଣ୍ଡି ବଇଠା ।। ୪ ।। ଧ୍ରୁ
(ଧମଣ ଚମଣ ବେନି ପିଣ୍ଡି ଆସନେ ।)

(ଚର୍ଯ୍ୟାଗୀତିକା)

# ଗୋରେଖ ନାଥ

(୧୨ଶ—୧୪ଶ ଶତାବ୍ଦୀ)

## ରେଖ ନାହିଁ ରୂପ ନାହିଁ

ଯେତ୍ନେକ ବକା ନ ହଲଇ ମୀର
ତେତ୍ନେ ମନ୍ ପବନ କର ଥିର ।
ବଗ ମଛ ମୀରେ ସମ କର ଜାଣ
ତେବେ ସେ ପିଣ୍ଡକୁ ପରତେ ପ୍ରାଣ ॥

(ବଗ ଯେ ସେ ମନ । ମଛ ଯେ ସେ ପବନ । ମୀର ଯେ ସେ ବନ୍ଦୁଟି । ମନ ପବନକୁ ଲକ୍ଷ୍ୟ କଲେ ବଗ ମଛବ ଅଚଳ ହୁଅଇଟି । ସ୍ୱେହାକୁ ସହଜ ସମାଦ କହୁଂ)

କେବଣ ଚକେ ବହଇ ସମୀର
କେବଣ ଚକେ ମନ ହୋଇ ଥିର ।
କେବଣ ଚକେ ଲାଗଇ ସୁସ୍ୱାଦ
କେବଲ ଚକେ ଲାଗଇ ସମାଦ ॥

(ହୃଦୟ ଚକେ ମନ ହୋଯ୍ୱେ ଥିର । ନାଭି ଚକେ ଲଗଇ ସମୀର । କଣ୍ଠ ଚକେ ଲଗଇ ସୁସ୍ୱାଦ । ଗଗନ ଚକେ ଲଗଇ ସମାଦ । ଗଗନେ ଯେ ବୋଇଲୁ ଧ୍ୱନ ଅନ୍ତରେ ଗଗନଟି । ଜୋତ ଉଦେ କଲେ ସ୍ୱେହାକୁ ଗଗନ ସମାଦ କହୁ ।)

ଶାସା କର୍ଣ୍ଣ ଉର୍ଦ୍ଧ୍ୱର ତଳେ ପିଅଂଲା
ଷୋଲ ଯେନଇ ଯେ ସାର୍ପ ହୋଯ୍ୱେ ଜାଲା ॥
ରେଖ ନାହୁଂ ରୁପ ନାହୁଂ ଗର୍ଣ୍ଣ ନାହୁଂ ଛାୟା
ଜଗତେ ବ୍ୟାପିତ ସ୍ୱେକଇ କାୟା ॥
ବୁଲାହୁଂ ହଶାସ ଓଭୁବନୁ ଗରୁଆ
ବାଲ ରେହ ପ୍ରମାଣେ ଅତ ବଡ଼ ସରୁଆ ॥

ଲବଣୀ ତୁଂ କୋମଳ ସୂଚୀ ନାହିଂ ଫୁଟେ
ଅହ୍ନଣି ବରଷଇ କାଷି ନାହିଂ ବୁଟେ ॥

(ଅହ୍ନଣି ବରଷଇ ଯେ ଚକ୍ଷୁଟି । ସେ୍ତ ସେ ନିରଂଜନ ଶୂନ୍ୟଟି ।
ଚନ୍ଦ୍ରକଳା ଥିର କରି ସହଜ ନାଡ଼ ଉଜାଗର କରି ଲକ୍ଷେ କଲେ
ସେ ପରମ ଶୂନ୍ୟକୁ ଭେଟଇଟି । ସେ୍ତ ସେ ଶୂନ୍ୟ ଗ୍ୟାନଟି ।
ଶେଷେ ସିଧ୍ୟ ପରମ ପଦ ପାଇଟି । ସେ ପ୍ରକୃତକୁ ଦେଖି
ଅନୁଭବ କଲେ ସିଧ ହୋଇବଟି)

(ଶିଶୁବେଦ)

# ଅବଧୂତ ନାରାୟଣ ସ୍ୱାମୀ

(୧୪ଶ—୧୫ଶ ଶତାବ୍ଦୀ)

## ମୋହିନୀ

ଆଦ୍ୟା ବାରୁ କନ୍ୟା ସେ ।
ରସେ ଜଗତ ମୋହିଲ ।
ପୃଥ୍ୱୀ ଶୋହିଲ ।
ପ୍ରାଣି ମାନଙ୍କର ଧଇର୍ଯ୍ୟ ହରିଲ ।
ଅନଙ୍ଗ ଅସ୍ତ୍ରୋନଧିକ ଆସି କପିଳାସ କନ୍ଦର ଯାକେ ବୁଡ଼ାଇଲ ।
ଆ ଧନ୍ୟ ଧନ୍ୟ ।

କି ଭୂମି ଗତ ଥିତ ।
କି ମନ୍ମଥ ରାଜାର କୋଦଣ୍ଡ ଭ୍ରାନ୍ତ ।
କି ବଜ୍ରଳାର କାନ୍ତ ।
କି ବ୍ରହ୍ମାଦି ଦେବଙ୍କ ମୋହିନୀ ଫାଶି ।
କି ବିଧି ନିରମିଲା ଲାବଣ୍ୟ ରାଶି ।

କି ଅନଙ୍ଗ ଅମିୟ ପୂର୍ଣ୍ଣ କଳସୀ ।
କି ଯୋଗିଜନ ମୀନ ମନ ବଡ଼ଶୀ ।
କି ବିବେକ ପ୍ରଦୀପକୁ ହତ ବତାଶୀ ।
କି ଇଶ୍ୱର ମୋହିବାକୁ ଉଷିତହାସୀ ।
କି ବ୍ରହ୍ମାଦ କେ୍ୟାତକ ନିର୍ମାଣ ଶଶୀ ।
କି ଦେଖି କାମ ଦେବହିଁ ହୋଉଛୁ ଧଡ଼ସି ।
ଆ ବାବୁ ଜନ୍ୟାରେ ।

ବଦନ ଶରଦ ପୌର୍ଣ୍ଣମୀର ଚାନ୍ଦ ।
ଦୁହାସ ନୟନେ କି ଯୋଗୀ ଜନମାନଙ୍କୁ ପାତୁଅଛୁ ଫାନ୍ଦ ।
ଗ୍ୟାନ କରୁ ଉତ୍ପାଟିବାକୁ ନୟନ ଗୋନଦୀ ତରଙ୍ଗ ।
ସ୍ନିଗ୍ଧ ବିଦଗ୍ଧ ମୁଗ୍ଧ ମଧୁର ଚଞ୍ଚଳ କଟାକ୍ଷରେ କୋଟିକୋଟି କାମ ଆସି ହେଉଛୁ ସଙ୍ଗ ।

ନବୀଣ ମୁକ୍ତ ତେଜ ପାରି ତାହା ମୁଖ କମଳ ପେଷିଲେ ।
ବିଧାତା ଦେଖିଲେ ଜଡ଼ ଭାବେ କରିବ ପ୍ରଳାପ ।
ମନ୍ମଥ ରତିସଙ୍ଗ ତେଜିବାକୁ କରନ୍ତେ କରୁଅଛୁ ସଂକଳ୍ପ ।
ଚନ୍ଦ୍ର ଦରଶନ ମାତ୍ରକେ କରଣେ ଛୁଇଁଲା ସନ୍ତୁ ।
କଷ୍ଟେ କଷ୍ଟ ପ୍ରାଣ ରଖିଅଛୁ ତନ୍ତୁ ।
ରୋହିଣୀର ଅଙ୍ଗ ସଙ୍ଗ ବିରଙ୍ଗ ପାଇଲା ।
ସ୍ୱର୍ଣ ନ କରିବା ମାତ୍ରକେ ନିମଗ୍ନ ହୋଇ ଜଡ଼ ଆତ୍ମା ଗଗନେ ଉଡ଼ିଲା ।
ବେଗ କରି ନ ପାରି ସେହି କାଳକ ।
କଳଙ୍କ ବୋଲି ତାହା ବୋଲନ୍ତି ଅଦ୍ୟାପି ।
ସ୍ତନ ଯୁଗଳ କଳ୍ପଲତା ଫଳ ପ୍ରାପ୍ତେ ପ୍ରକାଶ ।
ଇନ୍ଦ୍ର ଦେଖିଲେ ସ୍ୱର୍ଗ ବେଗ ଶ୍ରଦ୍ଧା ସେହିକ୍ଷଣି ହୋଇବ ଦାସ ।

ସକଳ ସ୍ଥିର ରତ୍ନରେ ସୃଷ୍ଟି କି ଚୂର୍ଣ୍ଣୀଭୂତ ହୋଇଲା ।
ତ୍ରିପୁର ସୁନ୍ଦରୀମାନଙ୍କ ହିଂ ଅଦର ସରିଲା ।
ସେ କ୍ରୀଡ଼ାରସ ନଦୀରେ ଲାବଣ୍ୟବାରି ବୁଡ଼ାଇଲା ।

ପରମ ଆଇଶ୍ୱର୍ଯ୍ୟ ମାନଙ୍କୁ କି ମୋହନ ଶର ଭେଦିଲା ।
ଦିଗପାଳମାନେ ଦେଖି ହୋଇଲେ ଜଡ଼ ।
ଅଜୀବ ଜୀବ ମାନଙ୍କରେ ଲାଗିଲା ବଡ଼ ।

ସକଳ ସିଦ୍ଧି ରୁଦ୍ରଗଣମାନେ ରକ୍ଷାଗଲେ ଅପ୍ରମାଦେ ।
ତହିଁ ଅଭିନବ ଚଇତନ ନାମେ ରୁଦ୍ରଗଣେକ ଥିଲା ।
କୋମଳ କଣ୍ଟକଗ୍ୟାନେ ଆରୁଷ୍ଠ ଯୋଗରେ ।
ସେ ଚାହିଁଦେଇ ପଡ଼ିଲା ଏକା ଘୋର ଅନଙ୍ଗ ଧାଡ଼ରେ ।
ସେ ମାୟା କନ୍ୟାକୁ ଦେଖିଲା ।
ସ୍ଥିରକରି ତାହାର ଲାବଣ୍ୟ ସୁଧାନିଧି
ମୁଖ ନିରେଖି ପେଖିଲା ।
ତାହାର ଅଚଳ ଚିତ୍ତ ଚଳିଲା ।
ଥିର ଚକ୍ଷୁ ଚଳିଲା ।
ହୃଦୟ ସଳିଲା ।
ଚଇତନ ବୁଡ଼ିଲା ।
ଶରୀର ଚମକିଲା ।
ବୁଦ୍ଧି ଝମକିଲା ।
ପ୍ରେମଲତା ପୁଲକିଲା ।
କାମ ଝଲକିଲା ।
ସନ୍ୟାସ ଚଳିଲା ।
ଛେଦବନ୍ଧ ଗଳିଲା
ଶ୍ୱାସ ଚଳିଲା ।
ଗଣ୍ଡ ସ୍ଥଳ ଉଲ୍ଲସିଲା ।
ଭ୍ରୂଲତା ବକାଶିଲା ।
ଶୃଙ୍ଗାର ରସେ ରସିଲା ।
ଧ୍ୟାନ ମୁଦ୍ରା ଖସିଲା ।

ସମାଧି ନସିଲା ।
ଉତ୍କଣ୍ଠା ଦଶିଲା ।
ଏକାର ମିଶିଲା ।
ସେଦ ଜଳେ ପଶିଲା ।
ପାଦ ପାଣି ବସିଲା ।
ମନ କମ୍ପିଲା ।
ଖେଦ ଜଳ ମାଡ଼ିଲା ।
ଯୋଗାଭ୍ୟାସ ଛାଡ଼ିଲା ।
ଉର୍ଦ୍ଧବନ୍ଧ ଛୁଟିଲା ।
ରଥରଙ୍ଗ ସୁମରିଲା ।
କନ୍ୟାରସେ ଭଜିଲା ।
ରସ ଜଳଧିରେ ମଜିଲା ।
ବନତା ଶେଗ ବାଞ୍ଛିଲା ।
ଭବସାଗରେ ଝାସିଲା ।

( ରୁଦ୍ର ସୁଧାନିଧି )

## ବଚ୍ଛାଦାସ

(୧୪ଶ—୧୫ଶ ଶତାବ୍ଦୀ)

### କଳସା

କହନ୍ତ କାମିନୀ ଶୁଣ ହେମନ୍ତ ଦୂଲଣି
କାହୁଂ ବରେ ବରଲେ ଭୁମ୍ଭର ଚିନ୍ତାମଣି ।
କୁଳ ମୂଳ ଗୋତ୍ର ଅଦ ନାହୁଂ ଜଣା ତାର
କନକ ବେଦୀରେ ଚୁଡ଼ା ବସିଛୁ ମଧୁର । ୧ ।
ଖୁଂ ଖୁଂ ଖାସ ସାହାସେଣ ପେଲୁଅଛୁ ଧଇଂ
ଝର ନଶ୍ୱାସ ବୁଢ଼ାର ମାଥ ଲଗେ ଭୁଇଂ ।

ଖଣ୍ଡିଆ ଯୋଗୀର ସଙ୍ଗେ ନାହିଂ ଯାନ ତାର
ଖଣ୍ଡିଆ ବଳଦ ବୁଢ଼ା ବାନ୍ଧିଛୁ ପାଖର । ୨ ।
ଗୋଡ଼ ହାତ ଖଣ୍ଡ ଫୁଲ, ଗଳୁଛୁ ନୟନ
ଗଣ୍ଡ ସ୍ଥଳେ ଲମ୍ବିର ମୁଦ୍ରିର ଦରଶନ ।
ଗ୍ୟାନ ଭ୍ରଷ୍ଟ ହୋଇଲେନ ଭେବଲ ତା ମତ
ଗୁଣ ଲକ୍ଷଣ ବୁଢ଼ାର ନାହିଂ ତଥି ଗତ । ୩ ।
ଘର ଦ୍ୱାର କେଉଣ ଦେଶରେ ତଥ୍ୟ ନାହିଂ
ଘଟାଇଲ୍ ବିଧି ଆଣି ଏମନ୍ତ କରାଇ ।
ଘଟ ଘଟ ହୋଇ ନାଳ ବହଇ ଗୁଣ୍ଡର,
ଘଣ୍ଟ ଜଟା ଲେସ୍ଥ ଏକ କାନ୍ଧିଛୁ ମୁଣ୍ଡର । ୪ ।
ନ ଚାହାଇ ମନୁଷ୍ୟ ସେ ନ ଦେଖେ ନୟନ
ନିକଟେ ଡାକଲେ ନ ଶୁଣେ ତା ବେନି କର୍ଣ୍ଣ ।
ନଖ ମୁଖ ଚକ୍ଷୁ ସ୍ଥାନ ପଶିଲ୍ ଭିତର
ନିଆ ଝଣି ଶଣା ପ୍ରାୟେ ଦିଶୁଛୁ ଉଦର । ୫ ।
ଚର୍ମିକ ମାଡ଼ଣ ବୁଢ଼ା ବସିଛୁ ମଧ୍ୟେଣ
ଚଉପାଶେ ବେଢ଼ିଛନ୍ତି ଦେବତା ବ୍ରାହ୍ମଣ ।
ଚକେର ବୁଢ଼ାଙ୍କୁ ଦେଖି ଚକିତ ହୋଇଲୁ
ଚନ୍ଦ୍ରା ସାଗରେଣ ସଖି ନିଶ୍ୱସ୍ୱେ ବୁଡ଼ିଲୁ । ୬ ।
ଚ୍ଛନ୍ନ ଅଙ୍ଗେ ଛୁଣ୍ଡା ଚମ୍ଚା ଲଗିଛୁ ତାହାର
ଛାର ପାଉଂଶ ଲୋଚାଏ ଲେପିଛୁ ଶରୀର
ଛନ୍ଦିଅଛୁ ସର୍ପ ମାଳ ମୁଣ୍ଡେ ଆଭରଣ
ଛଟକେ ଭେଳକ ବୁଢ଼ା ଲଗାଇଲ୍ କାଣ । ୭ ।
ଜଙ୍ଗମକୁ ପ୍ରାପତ ହୋଇଲୁ ଚନ୍ଦ୍ରମୁଖି
ଯାହା ତୋର କପାଳରେ ବିଧି ଅଛୁ ଲେଖି ।
ଯୁବା କାଳେ ଯହୁଂ ଯୋଗ ଭୁଞ୍ଜିବୁ ନା ଯାହା
ଜାଣୁ ଜାଣୁ ଜଙ୍ଗମ ଗୋଟାକୁ ହେଲୁ ବାହା । ୮ ।

ଝୁଁମୁ ଝୁଁମୁ ବାଜ ଘଣ୍ଟି ଘୁଗୁଡ଼ି ନେପୁଏ
ଝଁମକୁଣ୍ଡ ଅଛୁ କରେ ଝିଣଲ ଗୋଟାଏ
ଝୁଲି ହୋଇ ଝଙ୍କି ହୋଇ ପଡ଼ୁଛୁ ଢଳାଇ
ଝିଅ କ ନାରୁଣି ପ୍ରାଏ ଦଣ୍ଡିବୁ ଗୋ ରୁହ । ୯ ।
ଞସଡ଼େଣ କହେ କଥା ଞକୁଟିଣ ଦାନ୍ତ
ନ ଆସଇ ବାଣୀ ତାର ଦୂହ୍ନଂ ହୋଏ ଅନ୍ତ ।
ଞଣ ଦାଢ଼ି ରୁଚ ତାକୁ ନ ମିଳେ ଭଣ୍ଡାର
ଞଣା କାଳେ ଯେ ଦେଖିଲେ ଉପ୍ସେ ତରପାର । ୧୦ ।
ଟଳ ଟଳ ହୋଇ ଟେକ ବସି ନପାରଇ
ଟାକୁଅ ଗାଲ ପାକୁଆ ଦାନ୍ତ ଅଦ ନାହ୍ନଂ ।
ଟକ ଟକ ହୋଇ ତା ଲାଗଇ ବେଜ କର୍ଣ୍ଣ
ଟାକସ୍ତ୍ର ଞମୀଖି ସେ ଅଛୁତ ଅପାବନ । ୧୧ ।
ଠୁଳ କରିଥିବା ଭିକ୍ଷା ମାଗିବାର ଧନ
ଠକ ଥିଲା ଦେବ ବୋଲି ହେମନ୍ତ ସ୍ୱଜନ ।
ଠକର ସ୍ୱଭାବ ସେ ଗୋ ଲଗାଇଲା ଆଣି
ଠାବେ ହେରୁ ନାଶ ଗଲୁ ହେମନ୍ତ ଦୂଳଣୀ । ୧୨ ।
ଡାକଏ ବଜାଉଅଛୁ ଆଲେକ ଝୋଲର
ଡ଼ିଙ୍ଗର ଡାଙ୍ଗୁଆ ଯେନ କରବୁ ଗୋ ଘର ।
ଡମ୍ବରୁଧରକୁ ସେବା କଲୁ ପଣମାଣି
ଡ଼ିଙ୍ଗର ବର ପାଇଲୁ ଦେଲେ ଶୂଳପାଣି । ୧୩ ।
ଢୋର ତପୂସିକ ମାଗୋ ବଳାଇଲୁ ଚଣ୍ଡ
ଢ଼ୋକର ଯୋଗୀଙ୍କ ମାଗୋ ହୋଇଲୁ ପ୍ରାପତ ।
ଢ଼ମାଳ ନ କର ମୁଂ ଯେ କହୁଅଛୁ ସତ
ଢ଼ାଳେ ହେଉ ନାଶ ଗଲା ହେମନ୍ତ ଦୁହିତ । ୧୪ ।
ଅଣାଇଲେ ସ୍ୱପ୍ନେ କାହ୍ନୁଂ·ବରେକ ବରଣ
ଅଣମନୁଷ୍ୟ ଯେ ସେ'ଅଛୁତ ଅପାବନ

ଅଣଖ ସାଗରେ ମାଏ ଝିଏ ଦୁହେଁ ହୋଇ
ଅଣ ଉହାଡ଼ରେ ଶୀଘ୍ର ଦେଖାଇଲେ ନେଇ । ୧୫ ।
ତୀକ୍ଷ ଶରବର ବାଳୀ ବାଜଲା ହୃଦର
ତଡ଼ତେ ପଡ଼ଲା ଢ଼ଳି ଝଟେ ତା ମଧର
ତକ୍ଷଣେ ତୋଳି ଧଇଲେ ତାହାଙ୍କର ଦାସୀ
ଚୂରତେ ମିଳିଲେ ମାଏ କଣ୍ଠରେ ତା ଆସି । ୧୬ ।
ଥରହର ଭଇ ମାଏ ବୋଲନ୍ତି ବଚନ
ଥିରକର ମନ ମା ଗୋ ନୋହୁ ଅଚେତଁନ
ଥିଲା ଏତେ କାଳ ମୋର ଦୁଲଣା ହୋଇଣ
ଥନ ଯହ୍ନବନ କାଳେ ଦେହୁଛୁ ଜୀବନ । ୧୭ ।
ଦଇନ କର କହୁଛୁ ଶୁଣ ମୋର ମାସ୍ତେ
ଦନ୍ତେ ଚରଣ ଧରଣୀ ଓଁଲଗଇ ପାସ୍ତେ
ଦରଦ୍ର ସ୍ଥାନ ବୁଢ଼ାକୁ ଯେବେ ମୋତେ ଦେବୁ
ଦୁଇ ନୟନରେ ମୋର ମରଣ ଦେଖିବୁ । ୧୮
ଧସ୍ୱଧର ହୋଇ ମାଏ ଝିଅ ବୋବାଇଲେ
ଧାଇ ମୂଦ୍ରସୁନ୍ଦୀମାନେ ଚହଳ ପାଇଲେ
ଧାଇଂ ଆସି ତତକ୍ଷଣେ ମିଳିଲେ ସ୍ୱଜନ
ଧର୍ମ ପୁଣ୍ୟ କାଳେ କପାଁ କରୁଛ ସ୍ୱେଦନ । ୧୯ ।
ନାହିଁକ ସଂସାର ମଧ୍ୟେ ସ୍ୱଜାର କୁମର
ନଲଜ ବୁଢ଼ାକୁ ପୁନଗଣ୍ଡ କଲ୍ ବର
ନୋହିଲେ ବୁଢ଼ାରୁ ମାଏ ଝିଅ ଦୁହେଁ ହୋଇ
ନୋହିଲେ ମଠରୁ ସ୍ୱହସ୍ତରେ ବିଷ ଖାଇ । ୨୦ ।
ପଟ୍ଟଯେନ ମାଣିକ୍ୟ ମୁକୁତା ଗୁନ୍ଥା ନାହିଁ
ପୋଡ଼ୁ ପୋଡ଼ୁ ଜୀବନ ପବିତ୍ର ସ୍ୱଜା ହୋଇ
ପିଅର ଜନନୀ ରମ୍ଭ ଜୀବନ ଧିକ ତ
ପାକୁଆ ବୁଢ଼ାକୁ ଦେଇ ଯେନ ଲୋଡ଼ଁ ବଣ୍ଡ । ୨୧ ।

ଫରମାଣ ଦେଇଛନ୍ତି ହେମନ୍ତ ରାଜନ
ଫାଇ ନେଲେ କହ୍ନା ଗୋ ସେହୁ ବଡ଼ଜନ
ଫଳେଣ ଜାଣିବା ପଛେ ତାହାଙ୍କର ଗୁଣ
ଫ଼ରସେ ସେବଲେ ଗୌରୀ ପାଇବ କାରଣ । ୧୨ ।
ଶଙ୍କର ନ କର ମାଏ ଝିଅ ଦୁହେଁ ତୁମ୍ଭେ
ବିକଳ ମନରୁ ଗୁଡ଼ କହୁଅଛୁ ଆମ୍ଭେ
ବ୍ରହ୍ମା ବିଷ୍ଣୁ ଦେବତାଏ ଛନ୍ତି ତାଙ୍କୁ ବେଢ଼ି
ବଡ଼ ଭାଗ୍ୟବନ୍ତ ଗୌରୀ ପୁଣ୍ୟ ଅଛୁ ବଢ଼ି । ୧୩ ।
ଭାଲପଟେ ଲେଖନ ଯା କରନ୍ତି ବିଧାତା
ଭଲ ଭାଗ୍ୟବନ୍ତ ଗୌରୀ ଆମ୍ଭର ଦୁହିତା
ଭୋଜନର ବେଳେ ରାଣୀ ମିଳିଲାକ ଆସି
ଭିତରେ ମଣୋହି ସଞ୍ଜା ଭିଆଣ କରସି । ୧୪ ।
ମହାଦେଇ ମନ ବ୍ୟଥା ଛଡ଼ାଇ ରାଜନ
ମିଳିଲେ ଯେ ସର୍ବଜନ ବିଭର ଆସ୍ଥାନ ।
ମଙ୍ଗଳଣ କଲେ ତହିଁ ହଳଦୀ ଚନ୍ଦନ
ମଙ୍ଗଳ ମହୁରୀ ଶଙ୍ଖ ବାଜେ ଘନଘନ । ୧୫ ।
ଯୁବତୀ ସକଳ ମିଳି ହୁଳହୁଳି ଦେଲେ
ଜଗତମୋହନୀକି ଦିବ୍ୟ ବେଶ କରାଇଲେ
ଜାଇଫୁଲ ଜନଆର ଖୋସାରେ ଖୋସିଲେ
ଯତନେ କସ୍ତୁରୀ ଟିକା କପାଳରେ ଦେଲେ । ୧୬ ।
ରତ୍ନ ଓଢ଼ଣୀ ଚୂଡ଼ି ମଥାରେ ସୀମନ୍ତ
ରାମ ଅଭିଷେକ ଚୂଡ଼ି ନାକେ ଗଜମୋତି
ରୁଣୁ ଝୁଣୁ ବାଜୁଅଛି ପଦ୍ମରେ ନୂପୁର
ରାଜୀବଦଳ-ଲୋଚନେ ରଞ୍ଜିଲେ କଜ୍ଜ୍ୱଳ । ୧୭ ।
ଲତାବଳି ପାଟେ ପିନ୍ଧି ନେତ୍ରେ ହପୁରାଣ
ଲାବଣ୍ୟ ଚନ୍ଦ୍ରବଦନୀ ଲକ୍ଷେ ଲକ୍ଷ୍ମୀ ଗୁଣ

ଲବଣ ଚଇଂଶ୍ର ପୂଜା ଆଣି ବଢ଼ାଇଲେ
ଲଳଟେ ମଙ୍ଗଳ ଗୀତ କାମିନୀ ଗାଇଲେ । ୨୮ ।
ବ୍ରହ୍ମା ଆଗ୍ୟଧି ହୋଇଣ ବେଦୀରେ ବସିଲେ
ବରକୁ ସେ ଦଶଜଣ ଚୋଳ ବସାଇଲେ
ବାସବର୍ଗ ବନ୍ଧୁ ବାକ୍ୟ ଅପରଳା ସୂତା
ବସିଲେ କନ୍ୟା ମାଡ଼ି କାଳୀ ଯେନ ପିତା । ୨୯ ।
ଶିରବେରଣ ବାନ୍ଧଲେ ମୁଣ୍ଡେ ପଞ୍ଚଶାଖା
ଶୋଇପଡ଼ି ବୁଢ଼ା ଖାସୁ ଖାସୁ ଗଲା ମୂର୍ଚ୍ଛା ।
ଶାଶୁ ଆଦ ସମସ୍ତେ ଯେ ବୋବାଳ ଗ୍ରୁଡ଼ିଲେ
ସଚେତ ପାଇଲା ବୁଢ଼ା ଚୋଳ ବସାଇଲେ । ୩୦ ।
ସନ୍ତୋଷେ ହସ୍ତ ଯୋଡ଼ିଣ କଲେଣ ସେ ନାସ୍ତ
ସତ୍ୱରେଣ ଦେବତାଏ ଗଲେ ଯେଝାପୁଣ୍ଡ
ସନ୍ତୋଷେଣ ନାସ୍ତ ମିଳ ଜୁଆ ଖେଳାଇଲେ
ସତ୍ୱରେଣ ବରକନ୍ୟା ବେଦୀରୁ ଉଠିଲେ । ୩୧ ।
ସମସ୍ତେ ବସିଣ ପଞ୍ଚୁ ଗ୍ରାସାଦ ଖାଇଲେ
ସଖୀ ସଙ୍ଗାରୁଣୀ ମାନେ ମଦୁଣଯ୍ୟା କଲେ
ସୁରଙ୍ଗେଣ ବରକନ୍ୟା କରୁଛନ୍ତି ଖବ ।
ଶୋଭା ପାଉଛନ୍ତି ଦୁହେଁ ରତୀକାମଦେବ । ୩୨ ।
ହେମନ୍ତର ଗୁଣୀ ଦେଖି ସନ୍ତୋଷ ହୋଇଲେ
ସ୍ନାନ ପରପଞ୍ଚ ବେଶ ଘଡ଼ୁଁ ପକାଇଲେ ।
ହୋଇଲେ ସନ୍ତୋଷ ସେ ସକଳ ଲୋକ ଦେଖି
ହାସ୍ୟ କରୁଛନ୍ତି ସଖୀ ସଙ୍ଗାରୁଣୀ ଦେଖି । ୩୩ ।
ଛଛନ୍ଦେ ଚଉଠି ସାରି କାଦଖେଳ ଭଲେ
ଛ ସାତ ଅଷ୍ଟମଙ୍ଗଳା ଉଛବ ସାଇଲେ ।
କ୍ଷିତି ପତି ଠାକୁର ସେ କପିଳାସେ ସ୍ଥିତି
କ୍ଷୁଦ୍ରବୁଦ୍ଧି ବଞ୍ଛା ଦାସ କଳସା ପଢ଼ନ୍ତି । ୩୪ ।

# ସାରଳା ଦାସ

(ପଞ୍ଚଦଶ ଶତାବ୍ଦୀ)

## ଅସ୍ତ୍ରଶିକ୍ଷା

ଅଗସ୍ତି ବୋଇଲେ ଶୁଣ ବଇବସ୍ୱତ ମନୁ ।
ଜାଗ୍ର ନାମେ କସ୍ୱତବର ଅଜପଅର ତନୁ । ୧ ।
ଗଣ୍ଡା ଦୁଇଗୋଟା ଘେନିଲ ଅଷ୍ଟ ଯତ୍ନେ ।
ବାରୁଣାବନ୍ତ ଜଇ ଆସଇ ତୋଷମନେ । ୨ ।
ମଥାପ୍ତେଣ ମକର ଝାଲି କଣ୍ଣେଣ ଗୁଞ୍ଜମାଳ ।
ଲୋହିତବର୍ଣ୍ଣ ନେତ ଅଙ୍ଗେଣ ରଙ୍ଗଧୂଳ । ୩ ।
ଧାମଣା କାଠର ଧନୁ କଣ୍ଠା ବାଟସ୍ତେଂଶର ଗୁଣ ।
ଡାଳ ଆଭରଣ ଫିଶକ ନାସ୍ୱିକ ଦୁଇ ତ୍ରୋଣ । ୪ ।
ସେହିଧନ ସମସ୍ତେ ଅଜପଥ କସ୍ୱତର ତନସ୍ତେ ।
ଦ୍ରୋଣଙ୍କ ଦର୍ଶନକଲା ବାରୁଣାବନ୍ତ ଆଖଡ଼ାସ୍ତେ । ୫ ।
ଗଣ୍ଡା ଦେଖିଣ ସାନନ୍ଦ ହୋଇଲେ ଦ୍ରୋଣଗୁରୁ ।
ବଦ୍ୟାପୁତ୍ର ହୋଇବ ତୁମ୍ଭେ ଅଗ୍ୟାଂ ଥିର କରୁ । ୬ ।
ଯୁଜେଷ୍ଠି ବୋଇଲେ ଗୁରୁ ଥାଉ ସେ କସ୍ୱତ ।
ବନର ଲୋକ ସେହାରେ କାର୍ଯ୍ୟ ଅଛଇ ବହୁତ । ୭ ।
ଶୁଣି କୋପକଲା ଧୃତରାଷ୍ଟ୍ରର ବଳା ।
ସ୍ୱେଗେଣ ବୋଇଲା ରେ କସ୍ୱତ ସେଥୁ ବହୁନ ହୋଇ ପଳା । ୮ ।
ଅର୍ଜୁନ ବୋଇଲା ସେ ନୋହଇ ସେମନ୍ତ ।
ବନଚର ଲୋକ ସେହାରେ କାର୍ଯ୍ୟ ଅଛଇ ବହୁତ । ୯ ।
ଗଣ୍ଡା ହରଣ ମେଘ ଗ୍ରଗଲ ବାହୁଟିଆ ।
ସ୍ୱମନ୍ତ ଆଦକର ପାଉଥିବା ବାରେହା । ୧୦ ।

ଆଉ ବୋଲ୍ କର ଅର୍ଘ୍ୟାଂ ଦେଲେ ଦ୍ରୋଣେ ।
ଦୁର୍ଯୋଧନ ବୋଇଲେ କମ୍ପା ସ୍ନେହେ ଭଣ୍ଡାଥ ଅକାରଣେ । ୧୧ ।
ଦୁଃଶାସନକୁ ବୋଇଲା ରେ ନେଅ କେଶ ଧରି ।
ବନେଣ ଗୁଡ଼ୁ ଆସ ସ୍ନେହାକୁ ଅନେକ ଶାସ୍ତି କରି । ୧୨ ।
ଶୁଣିଣ ଦୁଃଶାସନ କେଶ ଧରି କୋପେ ।
ଯୋଜନେକ ଅନ୍ତରେ ନେଇ ଗୁଡ଼ିଲା ପରତାପେ । ୧୩ ।
ସେ କାଏ କରାତ ଅନେକ କ୍ରୋଧ କଲା ।
ସେହୁ ଅଖଡ଼ାରୁ ଆପଣା ପଲ୍ଲି କ ବୋଲ୍ ବୃକ୍ଷନ୍ତ କଟାଇଲା । ୧୪ ।
ଆପଣା ପଲ୍ଲିର ଦ୍ୱାରେ ଭିଆଇଲା ଅଖଡ଼ା ।
ଦ୍ୱାଦଶ ଯୋଜନେ ଥାଇ ସାଧଇ ମହାବୀର । ୧୫ ।
ଦ୍ୱାରେଣ ଥାଇ ବାରୁଣାବନ୍ତ ଆଖଡ଼ାକୁ ଗୃହି ।
ଦ୍ୱାଦଶ ଯୋଜନେ ଥାଇ ବିଦ୍ୟା ସାଧଇ ସେହୁ । ୧୬ ।
ଦେଖ ହୋ ମହିମା ପ୍ରତାପ ଶବର ।
ଦ୍ୱାଦଶ ଯୋଜନେ ଥାଇ ସାଧଇ କରାତ କାଏ । ୧୭ ।
ଯେହ୍ନେଣ ପାଆକର ଯାଆନ୍ତି କହୁରବେ ।
ସେହୁମତେ ସାଧଇ ଧାମଇ ଓଟ ହେ ସମ୍ଭବେ । ୧୮ ।
ସେହୁ ଗଡ ଥାଇ ଗୃହି ସାଧଇ ସବ ବିଦ୍ୟା ।
ସମସ୍ତ ଶିଖିଲା ସେ ଷଡ଼ିପୁ ମହାସିଦ୍ଧା । ୧୯ ।
ତାର ନାମେଣ ଯେ ତାହାର ପ୍ରିୟବନ୍ତୀ ।
ସେ କରାତକୁ ବୋଇଲା ବିମୁଖ କରଣ ମତି । ୨୦ ।
ଆମ୍ଭେ ବନଚର ଲୋକ ବନସ୍ତ ଜୀବ ଆହାର ।
ମୃଗୟା ନ ଯାଇ ଧାଇଁ ଧାଇଁ କମ୍ପା ମର । ୨୧ ।
କାଏ ବୋଇଲା ଲୋ ଶୁଣସି ସଂଘାତ ।
କାଳେ ଜାଣି ସିନା ସ୍ନେହର ହୃଦନ୍ତ । ୨୨ ।
ସ୍ତ୍ରୀଜନା ବୋଇଲା ସେ କସ କସ ବୋଲ୍ ।
କେମନ୍ତ ପ୍ରକୃତ ତ ତୋହୋର ବୁଦ୍ଧିତ ନୁଆର । ୨୩ ।

ଅକାରଣେ ପାମର ଧାଇଁ ଧାଇଁ କମ୍ପା ମରୁ ।
ସ୍ୱେଚ୍ଛା ରୁ ସାଧୁଅଛୁ କେ ତୋହୋର ଗୁରୁ । ୨୪ ।
ଅଣଗୁରୁରେ ବିଦ୍ୟା ନୋହଇ ପ୍ରାପତ ।
ମୂର୍ଖ ପାମର ରୁ ବନଚର ଜାତ । ୨୫ ।
ଶୁଣିଯାର ବଚନ ସେ ପରମ ହୃତ କଲା ।
ମାଟିର ଦ୍ରୋଣେକ ଯେ ଜାଗ୍ର ଶବର ଥାପିଲା । ୨୬ ।
ମଥାରେ ଖୋଷିଲାକ କୃଷ୍ଣାଞ୍ଜନ ଗ୍ମମର ।
ଗୁଞ୍ଜର ମାଳ ସ୍ୱେକଂ ଖଞ୍ଜିଲା ଲଲାଟର । ୨୭ ।
ସଞ୍ଚିକର ବେନଗୋଟି ବେଣ୍ଟ ଚଷୁ ନେଇ ଖଞ୍ଜି ।
ଗୁଞ୍ଜିଗ ରଗଡ଼ ମାଳ ହୃଦେ ଲମ୍ବାଇଣ ଅଛୁ ପୁଞ୍ଜି ପ୍ରୁଞ୍ଜି । ୨୮ ।
କୋଇଲ ସୃତାର ପବିତ୍ର ଆଭରଣ ବାମ ଅଙ୍ଗେ ।
କୋନ୍ଦ ନାଳ ହରୁଣ ଲମ୍ବାଇଲା ଡାହାଣ କାନ୍ଧେ । ୨୯ ।
ଚନ୍ଦନ କାଠ ଘୋଷ ହୃଦେଣ ଦେଇ ଟିକା ।
ଧାମଣା କାଠର ଧନୁ ଧରିଣ ଅଛୁ ବାମହସ୍ତା । ୩୦ ।
ଡାହାଣ ଭୁଜରୁ ଯେ ତର୍ଜନୀ ଅଙ୍ଗୁଷ୍ଠି ।
ଅଖଡ଼ା ଶାଳାକୁ ତାହା କରିଅଛୁ ଦୃଷ୍ଟି । ୩୧ ।
ସେ ମୃତ୍ତିକା ଦ୍ରୋଣେ ଚରଣାର ବନ୍ଦେ ସେହ ।
ସାଧିଲା ସମସ୍ତ ବିଦ୍ୟା କଳ୍ପିତ ବିଷ୍ଣୁମ୍ନୀ । ୩୨ ।

(ଆଦିପର୍ବ—ମହାଭାରତ)

# ଗୁରୁ ଦକ୍ଷିଣା

ସ୍ୱେଅ୍ ଅନନ୍ତରେ ଦ୍ରୋଣେ ବିଦ୍ୟା-ପୂରନ୍ତ ହଜାର ।
ବାରୁ ଭୂମ୍ଭେ ଯାଅରେ ମୃଗୟା ବନ ହେଳ । ୧ ।
ଅଶ୍ୱତ୍ଥମା ପ୍ରସବ ଯେ କୃପୀ ନାଶ ଗଲା ।
ତାହାର ପ୍ରାଣତ୍ୟାଗ ଦିବସ ନିକଟ ହୋଇଲା । ୨ ।
ଗଣ୍ଡା ଶୋଟିଏକ ଆଣ ବାରୁ ବନୁ ।
ଗୁରୁଙ୍କର ବଚନେ ଚଳନ୍ତ ସବ ଜନୁ । ୩ ।
ପଚ୍ଛମେ ଭୀମ ଅର୍ଜୁନ ଦକ୍ଷିଣେ ବୀରକର୍ଣ୍ଣ ।
ଶତେ ସୋଦରନ୍ତ ଘେନ ଉତ୍ତରକୁ ଗଲା ଦୁର୍ଯ୍ୟୋଧନ । ୪ ।
ଭ୍ରମନ୍ତ କୁମାରେ ଯେ ଖେଦନ୍ତ ମୃଗାଣ ।
ଛୁଦ୍ରାଇଂ ନ ଛୁଡ଼ନ୍ତ ଗଣ୍ଡାଜୀବ ଲୋଡ଼ । ୫ ।
ଦକ୍ଷିଣେ କର୍ଣ୍ଣ ଲୋଡ଼ି ନ ପାଇଲା ଗଣ୍ଡା ଜୀବ ।
ମୃଗଭର ଘେନ ଗୁରୁଙ୍କ ଦର୍ଶନ କଲାନ ଗୁଧେବ । ୬ ।
ପଶ୍ଚିମ କୋଣଲେ ଗଲେ ଭୀମସେନ ଅର୍ଜୁନେ ।
ଗଣ୍ଡା ଦୁଇଗୋଟା ଘେନ ଆସି ହୋଇଲେ ପାଞ୍ଚଦିନେ । ୭ ।
ଉତ୍ତରକଇ ଗଲେ ଯେ ଦୁର୍ଯ୍ୟୋଧନ ଶତେ ଭ୍ରାତ ।
ଦେଖନ୍ତ ବନ ଗହନେ ଯେ ଅନେକ ପରବତ । ୮ ।
ଲୋଡ଼ନ୍ତ ଗହନ ଅରଣ୍ୟେଣ ପଶି ଗଣ୍ଡା ।
ଦେଖନ୍ତ ଶ୍ରମେଣ ହୋ ବହରନ୍ତ ଦୁର୍ଦ୍ଦଣ୍ଡା । ୯ ।
ମଣିନାଗ ନାମେଣ ଯେ ଗୋଟିଏ ପରବତ ।
ତହିଁର ତଳେଣ ଅଛୁ ଗୋଟିଏ ପାଣିଘାଟ । ୧୦ ।
ସେ ପାଣି ଘାଟେଣ ଜଗି ଅଛନ୍ତ ଅନୁସର ।
ତହିଁର ନିକଟେ ଜାଗ ବେଣ୍ଟଜାର ପ୍ରସ୍ଥ । ୧୧ ।
ସେ ଜାଗର ଖରକା ସରଥା ନାମ ବୋଲି ।
ସ୍ୱାମୀକ ବୋଲନ୍ତ ରୂ ଦୃଷ୍ଟି ଦେଇ ଥାଅସି ପଲ୍ଲି । ୧୨ ।

ସ୍ନାନ କରି ମୁହଂ ଆଣିଲ ଜଳ ଘଟ ଗୋଟିଏ ।
ଦ୍ୱାରକୁ ଭଲେ କରଥାଅ ମୋହୋର ଅସିବାଯାଏ । ୧୩ ।
ସ୍ୱାମିକଇ ପ୍ରବୋଧି ସେ ଚଳଇ ଶବରୁଣୀ ।
ସରୋବରରେ ପଶିଣ ଘଟେ ପୂରୁଇଲା ପାଣି । ୧୪ ।
ଘଟ ଅଣିଷ୍ଠରେ ଥୋଇ ସାରଲା ସ୍ନାନ ।
କୂଳେଣ ଆସି ହୋଇଲା ପତ୍ର ପରିଧାନ । ୧୫ ।
ମଥାରେ ବସାଇଣ ପାଣି ଘଟ ଗୋଟି ।
ସଂଘଠାଣି ଜାଣି ଆସଇ ଲେହୁଟି । ୧୬ ।
ଦୂରେଣ ଦେଖିଲା ତାହା ଦୁଶାସନ ମୂଢ଼େ ।
ଆବେଶି ବେନଭୁଜେ ଧରିଲା ତାହାଙ୍କର ଗାଢ଼େ । ୧୭ ।
ଦେଖିଲା ସଖା ଯେ ବୃଦ୍ଧିଲା ଲେହୁଟି ।
ଚଉଦ ଭୁବନ ସୁନ୍ଦର ରୁ ତାହାର ପ୍ରତ୍ର ଗୋଟି । ୧୮ ।
ଶବରୁଣୀ ଦେଖିଣ ଧାଇଁଲେ ସର୍ବ ଦୁଷ୍ଟେ ।
ବେଢ଼ିଣ ଶବରୁଣୀକି ଲେଡ଼ନ୍ତି ପାପିଷ୍ଟେ । ୧୯ ।
ହେ ନାଥ ରଖ ବୋଲି ଉଚସ୍ୱରେ ଦେଲା ଡ଼ାକେ ।
ଅହୋ ନାଗ ସ୍ୱାମୀ ମୋତେ ବଳାତ୍କାର କରନ୍ତି ଦୁଷ୍ଟଲୋକେ । ୨୦
ଉଚସ୍ୱରେ ଶୁଣିଲା ସହୁଂ ସ୍ୱଶରାର ବାଣୀ ।
ଆଖଡ଼ାର ବେଳେ ନାଗ ଶବର ତାହା ଶୁଣି । ୨୧ ।
ହସ୍ତେ ଧନୁଶର ଘେନ ବାହାର କରଗତ ।
ଧାଇଂ ପ୍ରବେଶ ହୋଇଲା କୁରୁବୀରଙ୍କ ସମେତ । ୨୨ ।
ମହା ବିକଟାଳ ଜାଣି ଭଇରବ ମୂର୍ତ୍ତି ।
ଡ଼ାକ ଦଥଇ କଟକରେ ରୁମ୍ଭେ ଅଟ କାହାର କଟ । ୨୩ ।
ଶୁଣି ପ୍ରଚଣ୍ଡ ମୂରଖ ଯେ ଦୁଶାସନ ବୀର ।
ପ୍ରଥଗଂ। କରି ବୋଇଲା ରୁ କ ମଣରୁ ଶବର । ୨୪ ।
ବନଚର ଲୋକ ହୋଇ ତୋହୋର ଏମନ୍ତ ଘରଣୀ ।
ରାଜାର ଅନ୍ତଃପୁରକୁ ଏ ଯୋଗାଇ ପାଟରାଣୀ । ୨୫ ।

ଆମେ ସୋମବଂଶୀରେ ପୃଥିବୀ ଅଧିପତି ।
ଏଥିର ଜନମନ୍ତେ ତୁରେ ହୋଇବୁ ପ୍ରାଣଘାତି । ୨୬ ।
ଦୁର୍ଭାର ବଚନ ଶୁଣି ତାର ବେଣ୍ଟକାର ।
ଧନୁରେ ବସାଇଲ ଆକେଷିଣ ଶର । ୨୭ ।
ଭୂମିକ ନାଗର ଗୋଟିଏ ଗ୍ରୁଡ଼ିଲ ଗୁରୁଙ୍କ ନାମ ଧରି ।
ମଥାରେ ଘେନିଲ ଯେ ମୁଦ୍ରିକା ଦ୍ରୋଣଙ୍କ ସ୍ମରି । ୨୮ ।
ଏକ ଉଣର ଶତେକ ଯେ ଅଛନ୍ତି କୁରୁବୀରେ ।
ଜଣେକ ପୂରେଇଲ ଶତେ ଶତେ ଶରେ । ୨୯ ।
ଅବକ୍ଷଣେ ବାଣ ଯହୁଁ ବନ୍ଧିଲ ମହାମନ୍ତ୍ରେ ।
ଜଣକେ ଶତେ ଶତେ ପଡ଼ିଲ ନାଗର କରାତ ଲାଘବ ହସ୍ତେ । ୩୦ ।
ଚିପଣ୍ଡ ଗଲ ଯେ ଶରୀରେ ଶର ଅସ୍ତ୍ର ଭେଦ ।
ପଡ଼ିଲେ କୁରୁବୀରେ ହୋ ରୁଧିର ବହେ ନଦୀ । ୩୧ ।
ଖରସାକୁ ଘେନିଣ ଚଲଇ ବୀର ତାର ।
ଆପଣା ପଛିରେ ଯାଇ ପ୍ରବେଶ ମହାବୀର । ୩୨ ।
ଦ୍ରୋଣେ ବାଟ ଗୃହାନ୍ତ ତହିଁ ଦୁର୍ଯ୍ୟୋଧନ ନଇଲ ।
ପଛା ନରେପନ୍ତେ ଦ୍ୱାଦଶ ଦିବସ ବହିଗଲ । ୩୩ ।
ସଙ୍କେଣ ଘେନଲେ ଭର୍ତ୍ତି ଖ୍ରମ କରନ୍ତି ।
ବାଟ ଅନୁସର ଆସନ୍ତି ପାଣ୍ଡେଟି । ୩୪ ।
ପ୍ରବେଶ ହୋଇଲେ ଯାଇଂ ସରୋବର କୂଳେ ।
ଯେସନେକେ ବୃକ୍ଷେ ଲୋଟନ୍ତି ମହାବାତ କାଳେ । ୩୫ ।
ଦେଖିଲେ ନାଗର ହୃଦେଣ ପଡ଼ି ପିଠି କଣ୍ଟକ ଫୁଟି ।
ମହାଗାଢ଼ ଶରେ ପୃଥିରେ ଅଛଇ କଣ୍ଟି । ୩୬ ।
ଖ୍ରମସେନ ଧାଇଂ ଯାଇଂ ଦେଖିଲନ୍ତ ଦୂରୁ ।
ସମସ୍ତେ ହେ ଶସ୍ତ୍ରଘାତେ ପଡ଼ିଅଛନ୍ତି ହେ ଗୁରୁ । ୩୭ ।
ଭରଦ୍ୱାଜଙ୍କ ନନ୍ଦନ ଦେଖିଣ ବିସ୍ମରିଲେ ।
ଏତ ଆମ୍ଭର ବିଦ୍ୟା ବୋଲି ଅର୍ଜୁନଙ୍କୁ କହିଲେ । ୩୮ ।

ଦେଖନ୍ତ ଏ ବନସ୍ତେ କେ ଅଛଇ ଫାଲଗୁନ ।
ପଶୁ ଭ୍ରମଙ୍କର ବଦ୍ୟା କେ ଅଛଇ ଅବା ଯେନ । ୩୯ ।
ଆନକୁ ଗୋଚର ନୁହଇ ଏ ବଦ୍ୟା ।
ମାନବେ ଗୋଚରେ କାହିଁ ସ୍ୱେସନେକ ପ୍ରସିଦ୍ଧା । ୪୦ ।
ଗୁରୁଙ୍କ ବଚନେ ଚଳଇ ସବ୍ୟସାଚ ।
ଦେଖିଲ୍ଲ ଗହନବନେ ଶବର ପକ୍ଷି ଗୋଟିଏ ଅଚ୍ଛୁ । ୪୧ ।
କବଚ ଆଖଡ଼ାସ୍ତେ ପଟାକୁ ବନ୍ଧଇ ବାଣ ।
ଅର୍ଜୁନକୁ ଦେଖିଣ-ସେ ବାହାର ତତକ୍ଷଣ । ୪୨ ।
ହସ୍ତେଣ ଧାମଣା କାଠର ଧନୁ କଣ୍ଠାବାସ୍ତେଂଶର ଗୁଣ ।
କଟି ମେଖଳାସ୍ତେ କୁଠାର ଫିଣକ ନାଗକର ଢୋଣ । ୪୩ ।
ଗଦର ଗଦର ବାକ୍ୟେଣ କସବୋ କସ ବୋଲ୍ ।
ଅର୍ଜୁନ ଉପରକୁ ଆସୁଅଛୁ ପେଲ୍ । ୪୪ ।
ଡ଼ାକ ଦଅକ କୱାଢ଼ ଭୂରେ କାହାର କଣ୍ଠ ଅଚ୍ଛୁ ।
ମୁହିଁ ବନଚର ମୋହୋର ଆଶ୍ରମେ କମ୍ପା ଭେଟୁ । ୪୫ ।
ଅଷ୍ୟାଥାନ୍ତୁ ଭରସା କମ୍ପାଇ କର ମରଣକୁ ।
ମାଶ ପଛାଇ କ ବଳ ଦେବଇ ଆଜ ତୁଜ୍କୁ । ୪୬ ।
ଅର୍ଜୁନ ବୋଇଲ୍ଲ ଶୁଣରେ କୱାଢ଼ ।
ଏ ମୋହୋ ଭାଅନ୍ତ କେ କଲ୍ଲ ଶରଘାତ । ୪୭ ।
ଅର୍ଜୁନ ବଚନ ଶୁଣି କାୱାଣବର କୋପେ ।
ଧନୁରେ ନାୱାକେ ପ୍ରୟୋଇଲ୍ଲ ପରତାପେ । ୪୮ ।
ଆକ୍ଷେପି ଶର ଗ୍ରୁଡଗ୍ରେଣ ଦେଖିଲ୍ଲ ଫାଲଗୁନ ।
ଶବରକୁ ମାଇଲ୍ଲ ଦବ୍ୟ ସହସ୍ର ଯେନ । ୪୯ ।
ଶରେଣ ଶର ପଡ଼ି ତାଳ ହୋଇଣ ଅଚ୍ଛନ୍ତ ।
ଖଣ୍ଡ ସମସ୍ତ ଶହସ୍ତେ ଚୂର୍ଣ୍ଣ ହୋଇ ଯାନ୍ତି । ୫୦ ।
ଶରେକ ନାୱାଚ କୋପେ ପୁରୋଇଣ କାୱ ।
ଅର୍ଜୁନ ଉପରକୁ ଷେଣିଲ୍ଲ ମହାବୀରା । ୫୧ ।

ଶତେକ ନାରଚ ଯେ ପେଶିଲା ଅର୍ଜୁନ ।
ଛେଦଣ ପକାଇଲା କଗ୍ୱଚ ସହସ୍ରମାନ । ୫୧ ।
କଗ୍ୱଚ ଅର୍ଜୁନେ ହୋଅନ୍ତେ ଅନ୍ୟାଅନ ।
ଶହସ୍ର ବିଦ୍ଧ'ଲେ କମ୍ପିଲା ମେଦିନୀ । ୫୩ ।
ଗୁଣ ଟଙ୍କାର ଘାଏ ଶୁଭଇ ଗର୍ଜୁ ଘୋଷ ।
ଚଉବନକଇ ଲାଗିଲା ବଡ଼ ତ୍ରାସ । ୫୪ ।
ଦ୍ରୋଣେ ଶୁଣିଲେ ଶହସ୍ର ରବବାଣୀ ।
କଣ୍ଠଶ୍ରାମ ଘେନଣ ଧାଇଁଲେ ବୀରମଣି । ୫୫ ।
ଦେଖିଲେ ଅର୍ଜୁନ କଗ୍ୱଚର ସମର ।
ଜାଣ୍ ଅର୍ଜୁନଙ୍କୁ ପୂରଇ ଅଛଇ ଶର । ୫୬
ଦ୍ରୋଣ ଭେଟିଲେ ଯାଇ ସମର କରନ୍ତି ବେନି ।
କେହୁ କାହାକୁ ନ ଦୂଷନ୍ତି, ସମର ଅନ୍ୟାଅନ । ୫୭ ।
ଦ୍ରୋଣେ ପଚାରିଲେ ହୋ ରହ ରହ ବୀରୁ ।
କାହାର ଠାରୁଂରୁ ସାଧିଲୁ ଏହୁ ବିଦ୍ୟାସବୁ । ୫୮ ।
କାହାର ଶିଷ୍ୟ ତୁ କେ ତୋହୋର ଗୁରୁ ।
କାହାର ବିଦ୍ୟା ସାଧି ଏତେକ ଯୁଝକରୁ । ୫୯ ।
କଗ୍ୱତ ବୋଇଲା ଶୁଣ ହୋ ବ୍ରାହ୍ମଣ ।
ମୋହୋର ବିଦ୍ୟାଗୁରୁ ଅଟନ୍ତି ସ୍ୱାମିଦ୍ରୋଣ । ୬୦ ।
ଗୁରୁ ପ୍ରଶ୍ନୀଭୂତ ହୋଇଲେ କଗ୍ୱତ ବଚନେ ।
ଆମ୍ଭେ ସେ ଦ୍ରୋଣ ହୋ ଅଟୁ ବିଦ୍ୟମାନେ । ୬୧ ।
ବଦନ୍ତି ଦ୍ରୋଣେ କାହିଁ ଅଛନ୍ତି ତୋର ଗୁରୁ ।
ଆମ୍ଭକୁ ଦେଖାଇ ତୁ କାହାକୁ ସେବା କରୁ । ୬୨ ।
ଆଖଡ଼ା ଶାଳକୁ କଡ଼'ଇଣ ନେଲା ।
ମାଟିର ଦ୍ରୋଣକୁ ନେଇଣ ଭେଟାଇଲା । ୬୩ ।
ଏହୁ ସେ ମୋହୋର ଅଟନ୍ତି ଦ୍ରୋଣସିଦ୍ଧା ।
ଏହାଙ୍କୁ ସେବି ମୁଁ ସାଧିଲି ସର୍ବ ବିଦ୍ୟା । ୬୪ ।

ଗୁରୁ ପୁଚ୍ଛାକଲେ କେମନ୍ତେଣ ସାଧିଲୁ ।
ଆମ୍ଭର ପୁତ୍ରଙ୍କ ତୁ ଦେଖଲେଣ ମାରିଲୁ । ୬୫ ।
ବୋଲଇଂ କବ୍ୟତ ମୁଂ ଗଲଇ ବାରୁଣାବନ୍ତେ ।
ବୋଇଲି ଯେ ବିଦ୍ୟା ଶିଖାଅ ଦ୍ରୋଣଗୁରୁ ମୋତେ । ୬୬ ।
ଯୁଧିଷ୍ଠିରଦେବ ବୋଲେ ସେ ଦୟା ମୋତେ କଲା ।
ଦୁର୍ଯ୍ୟୋଧନ ବୋଲେ ସେ ମୋତେ ବାହାର କରି ଦେଲା । ୬୭ ।
ଅପମାନ ପାଇଣ ମୁଂ ତହୁଂ ଅଇଲି ।
ବାରୁଣାବନ୍ତ ଠାରୁଁ ସେଠାକୁ ଲଟା କଟାଇଲି । ୬୮ ।
ଆଖଡ଼ାଟେ ଭିଆଇଲି ପଲ୍ଲିର ଦୁଆରେ ।
ମୃତ୍ତିକା ଦ୍ରୋଣ ଆପି ସାଧିଲି ସମରେ । ୬୯ ।
ସେହୁଠାରେ ଥାଇଂ ଗୃହାଇଂ ବାରୁଣାବନ୍ତ ଆଖଡ଼ାକୁ ।
ଦୃଷ୍ଟିପାତ କରୁଥାଇ ଦ୍ୱାଦଶ ଯୋଜନକୁ । ୭୦ ।
ଯେହ୍ନଂଣ ପାଦଗଡ଼ କରନ୍ତି ଦ୍ରୋଣଗୁରୁ ।
ମୁଇଂ ଏଥି ସାଧଇ ସମସ୍ତଙ୍କ ପାଦଗଡ଼ କରୁ । ୭୧ ।
ଶୁଣିଣ ଦ୍ରୋଣେ ଯେ ପରମ ସାନନ୍ଦେ ।
ତାହାକୁ ଆଣି ବସାଇଲେ ସନ୍ନିଧେ । ୭୨ ।
ଆମ୍ଭେ ଦ୍ରୋଣ ଏ ଅର୍ଜୁନ ଭୀମ କର୍ଣ୍ଣ ।
ଯାହାକୁ ଶରଘାତ କଲୁ ସେହି ଦୁର୍ଯ୍ୟୋଧନ । ୭୩ ।
ଏସନ ବଚନ ଶୁଣି ବୀର ତାହା ।
ଦ୍ରୋଣଙ୍କର ପଦ୍ମପାଦେ ପ୍ରଣିପତ୍ୟ ମହାବୀର । ୭୪ ।
ଦ୍ରୋଣେ ବୋଇଲେ ତୁ ଆମ୍ଭର ବିଦ୍ୟାପୁତ୍ର ବାରୁ ।
ଯେ ପୁତ୍ରମାନଙ୍କୁ ମାଇଲୁ ସେ ଆମ୍ଭର ସରୁ । ୭୫ ।
ବିଦ୍ୟା ପରୀକ୍ଷା ବାରୁ ଜାଣିବା ଯୁଗତେ ।
ପୁଣି ସେ ପୁତ୍ରମାନେ ଜୀବନ୍ତି ଯେମନ୍ତେ । ୭୬ ।
ତାହାକଇ ଯେତନେ ଗଲେ ସଂଗ୍ରାମ ଭୂମି ।
ତାହା ବୋଇଲା ଏହ୍ନକ୍ଷଣି ଜୀଆଂଇବ ସବୁ ସ୍ୱାମୀ । ୭୭ ।

ଧନୁରେ ବସାଇଣ ଜୀବନ୍ୟାସ ଶର କଲ ବୃଷ୍ଟି ।
ମୋହ ଗ୍ଳଡ଼ ଉଠିଲେ କୁମାର ଧୃଷ୍ଟଦ୍ୟୁମ୍ନ । ୭୮ ।
ଦ୍ରୋଣଙ୍କର ପଦ୍ମପାଦେଣ ପରଣାମି ।
ଶବର ଶର ଘାତେଣ ପ୍ରାଣ ନାଶ ହୋଇଲୁ ଦେବସ୍ବାମୀ । ୭୯ ।
ଦ୍ରୋଣ ପ୍ରାସ୍ତେ ଗୁରୁ ତୋଷି ଅମ୍ଭେ ବଦ୍ୟା ଯେ ସାଧିଲୁ ।
ଜଗ୍ତ ମାତ୍ରକେ ଆମ୍ଭେ ସମସ୍ତେ ସଂଗ୍ରାମେ ଜସ୍ବେଗଲୁ । ୮୦ ।
ପର୍ଶୁରାମ ବଦ୍ୟାରେ ତୁ ଆପଣେ ଗୁରୁ ଦ୍ରୋଣ ।
ଅଭାବେ ଶିଖାଇଲୁକ ଦେବ ନୋହିଲ କାରଣ । ୮୧ ।
ଧିକ ହେଉ ଜୀବନ ଆମ୍ଭର କ୍ଷତ୍ରିବୃତ୍ତେଣ କସ କାର୍ଯ୍ୟ ।
ଜନମୁଖେ ଅପଖ୍ୟାତ ଟାଇବୁ ବଢ଼ାଇ ଲଜ । ୮୨ ।
ଦ୍ରୋଣେ ବୋଇଲେ ତୁମେ ନ ଭାଳ କଛୁ ହିଁ ଚତ୍ତେ ।
ଅମ୍ଭର ବଦ୍ୟାପୁତ୍ର ଅଛଇ ଜାଗ୍ବ କରୁଛେ । ୮୩ ।
ଏକ ବଦ୍ୟାସ୍ବେଣ ଧ୍ବଂସି ହୋଇଲ ଭ୍ରାଥ ବେନ ।
ଘରେ ଘରେ ଏକ ସୋଦରେ ହୋଇଲ ଅନ୍ୟାଅନ୍ନ । ୮୪ ।
ଏଥକଇ ଅଭିମାନ କର ତ ନ ଯୋଗାଇ ।
ଆମ୍ଭର ବଦ୍ୟା ପୁତ୍ର ଅଛଇ ହାଦେ ସ୍ନେହ । ୮୫ ।
ଗଣ୍ଡା ଦୁଇଗୋଟି ଯେ ଯେନଗଲ ପ୍ରଥମେ ଅଖଡାକୁ ।
ତୁମ୍ଭେ ଅପମାନ କରଯେ ବାହାର କରଦେଲ ଏହାକୁ । ୮୬ ।
ଦ୍ରୋଣଙ୍କର ବଚନେ ଦୁର୍ଯ୍ୟୋଧନ ପରମ ଶାନ୍ତ ।
ଦ୍ରୋଣେ ବୋଇଲେ ବାବୁ ତୁ ବନେ ଆଅ କଭ୍ରାନ୍ତ । ୮୭ ।
ଆମ୍ଭେ ଯାଉଅଛୁଂ ହସ୍ତିନା ଭୁବନକୁ ।
ଜାଗ୍ବ ବୋଇଲ ଗୁରୁ ଦକ୍ଷିଣା ମାଗ ମୁକୁ । ୮୮ ।
ଶୁଣିଣ ଦ୍ରୋଣ ପରମ ସାନନ୍ଦ ଚତ୍ତେ ।
ଗୁରୁ ଦକ୍ଷିଣା ଶିଷ୍ୟକୁ ଲଗଇ ଯୁଗତେ । ୮୯ ।
ସତ୍ୟ କଲେ ତୋତେ ମାଗିବୁ ଦକ୍ଷିଣା ।
ଯୁଗେ ଯୁଗେ ରହିବ ତୋହୋର କହଣା । ୯୦ ।

ତାସ ବୋଇଲା ସ୍ୱାମୀ ହେ ମୁହିଁ ସତ୍ୟକଲଇଁ ।
ମୋହୋର ଶିର କମଳ ମାଗିଲେହେଁ କାଟି ଦେବଇଁ । ୯୧ ।
ଜ୍ୟେଷ୍ଠ ଅଙ୍ଗୁଳି ଗୋଟି ଧଇଲେ ଗୁରୁ ଟାଣି ।
ନାସିକ ବନ୍ଧନେ ହାତେ ତୋହର ନଥିବ କମ୍ପୁଣି । ୯୨ ।
ଚତୁର୍ଥ ଅଙ୍ଗୁଠିରେ ବାରୁ ବନ୍ଧରୁ ତୁ ଶର ।
ଏତେକେ ଗୁରୁ ଦକ୍ଷିଣାରେ ହୋଇବ ଆମ୍ଭର । ୯୩ ।
ତାସ ବୋଇଲା ଗୁରୁହେ ଭଏକଲ କ ମୁକୁ ।
ମୁକୁର କଳଙ୍କ କଲ ହୃଦବଳ ଏହାଙ୍କୁ । ୯୪ ।
ଯେବଣ ଅଭିମାନ କଲେ ମୋତେ ବାରୁଣାବନ୍ତେ ।
ସେ କଥା ଖଣ୍ଡି ମୁଂ ଧରି ଅଛଇ ହୃଦଗତେ । ୯୫ ।
ମୁଇଁ ସେ ନାଶ କରନ୍ତି ଦୁର୍ଯ୍ୟୋଧନର ବଂଶ ।
କୁରୁବଳ ସମସ୍ତ ମୁଇଁ କରନ୍ତି ନା ଧ୍ୱଂସ । ୯୬ ।
ଜାଣିଣ ଏମାନଙ୍କୁ ରକ୍ଷାକଲ ଗୁରୁ ହେ ।
ପରମ ମହାତ୍ମା ତୁ ସେ ପଣ୍ଡିତ ସନ୍ଦେହେ । ୯୭ ।
ତାସକୁ କଲ୍ୟାଣ କରି ବୁଝାଇଲେ ଆଶ୍ରମେ ।
ପୁତ୍ରନ୍ତ ଘେନି ଗୁରୁ ଗଲେ ବାରୁଣାବନ୍ତ ଭୁବନେ । ୯୮ ।

(ଆଦିପର୍ବ—ମହାଭାରତ)

## ସ୍ୱୟମ୍ବର ସଭା

ବ୍ରାହ୍ମଣ ସରୂପ ଧଇଲେ ପଞ୍ଚୁବୀରେ
ତ୍ରିକଚ୍ଛ ବସନ ଆଭରଣ କଟିରେ । ୧ ।
ନବଗୁଣ ପଇତା କନ୍ଧେରେ ଉତୁରି ହୋଇଅଛୁ ।
ବେଦ ଆଖ୍ୟାନ ମନ୍ତ୍ରପୋଥି ସବୁରି କାଖେ ଅଛୁ । ୨ ।
ଦ୍ୱାଦଶ ଟୀକା ଶରୀରେ ଶ୍ରୀବତ୍ସଲକ୍ଷଣ ।
କାଖେଣ ବେଦ କରନ୍ତି ଯେ ପ୍ରତ୍ୟକ୍ଷେ ବ୍ରାହ୍ମଣ । ୩ ।
କାନ୍ଧରେ ଛତା ସ୍ରୁବ ସ୍ରୁଚ ପ୍ରୋଛଣି
ପାଞ୍ଚଙ୍କର ଶରୀର ଝକାଶଇ ସୁବର୍ଣ୍ଣ ଜ୍ୟୋତି ଜାଣି । ୪ ।

ଗୋପ୍ୟାନ ଦୋହୋଗ୍ଧ ଅଣ୍ଟିରେ କୁଶବନ୍ଧ ।
ଚକସ୍ୱାମୀ ଦେବତା ବିଜୟେକ ପେଡ଼ି । ୫ ।
ଛଦ୍ମବୃତ୍ତି ଗୁଡ଼ ବ୍ରାହ୍ମଣସ୍ୱରୂପ ।
ସଭାକୁ ପାଣ୍ଡବେ ଚଳନ୍ତି ଗୋପ୍ୟାନ ସ୍ୱରୂପ । ୬ ।
ଗଡ଼ୁ ତମ୍ବାପାତ୍ରୀ କରେ ଅଛଇ ଜପାମାଳ ।
କଣ୍ଠେଣ ତୁଳସୀ ରୁଦ୍ରାକ୍ଷର ମାଳ । ୭ ।
ଯଦ୍ୟପି ଗୋପ୍ୟାନ ରୂପେ ଲୁଚିଇଲେ କାଏ ।
ପ୍ରତକ୍ଷେ ଦିଶୁଛନ୍ତି ସେ ନିର୍ଧୂମ ଅଗ୍ନି ପ୍ରାଏ । ୮ ।
ଗ୍ରୁପ୍ତା ମଣ୍ଡପ ପଶ୍ଚିମ ଅଢ଼େ ବ୍ରାହ୍ମଣଙ୍କର ସଭା ।
ମହା ସମ୍ଭାରେଣ ଦିଶନ୍ତି ସେ ମହାଶୋଭା । ୯ ।
ବ୍ରାହ୍ମଣସଭାରେ ବିଜୟେ ପଞ୍ଚବୀର ।
ଜସେ ପ୍ରତକ୍ଷେ ବ୍ରହ୍ମା ଇନ୍ଦ୍ର ବରୁଣ ରୁଦ୍ର କୁବେର । ୧୦ ।
ବସୁଦେବ ନାମେ ଏକଇ ଦ୍ୱିଜବର ।
ବଇତରଣୀ ନଦୀର ଈଶାନ ନଗ୍ରପୁର । ୧୧ ।
ବଡ଼ାଇ ଧାର୍ମିକସେ ଅଟଇ ଯଜୁର୍ବେଦୀ ।
ଧାର୍ମିକ ବିବେକ ସେ ମନ୍ତ୍ରେଣ ପ୍ରସିଦ୍ଧି । ୧୨ ।
ଗୁଣବନ୍ତ ବ୍ରାହ୍ମଣ ସେ ପାଣ୍ଡବଙ୍କ ରୂପ ଚାହିଁ ।
ଏ ପାଞ୍ଚକଇ ମୂର୍ତ୍ତି ବ୍ରାହ୍ମଣ କୁଳେ ନାହିଁ । ୧୩ ।
ଆକାଶ୍ଚ ବିଜୟେ କଲେ କି ପଞ୍ଚଦିଗପାଳେ ।
କଅଣ ଦେଖି ବିଜୟ କଲେକି ଏ ରାଜ୍ୟ ପାଞ୍ଚାଳେ । ୧୪ ।
ମାନବପ୍ରାଏକ ନ ଦିଶନ୍ତି ଏହାଙ୍କର ତେଜ ।
ଅନ୍ୟେଣ ଜାଣିମା ଏହାଙ୍କର ବଳ କାର୍ଯ୍ୟ । ୧୫ ।
ଲକ୍ଷଣ ବିବେକ ଦେଖି ବସିତେ ଦେଲେ ଠାବ ।
ବ୍ରାହ୍ମଣଙ୍କର ମେଳେ ବସିଲେ ପଞ୍ଚ ଯେ ପାଣ୍ଡବ । ୧୬ ।
ଭୀମସେନ ବିଚାରଇ ଏ ରାଜାଗଣମାନେ ।
ମହାସମ୍ଭାରେ ବସି ଅଛନ୍ତି କଏ ଆସନେ । ୧୭ ।

କଷ୍ଟତ ଆଗ୍ୟାଂ ମୋତେ ଦେବେ କି ଯୁଜେଷ୍ଟି ।
ନିମିଷକ ମାତ୍ରେ ମୋଡ଼ିବ ସବୁ ରାଜାଙ୍କର ମୁଣ୍ଡ ଗୋଟି । ୧୮ ।
ଚଉଦିଗେ ରାଜାମାନେ ଆସି ଅଛନ୍ତି ସମ୍ଭାରେ ।
ଦ୍ରୁପଦ ପୂଜାକରି ବସାଇଲେ ଆସ୍ଥାନରେ । ୧୯ ।
ଗଙ୍ଗାରେ ସ୍ନାହାନ କରି ମନୋହରେ ସର୍ବ ରାଜେନ୍ଦ୍ରେ ।
ଆଶ୍ୱେବନ ସାରି ଯେ ଆସ୍ଥାନେ ବିଜୟେ । ୨୦ ।
କର୍ପୂର ତାମ୍ବୂଳ ଦିଅନ୍ତି ସବୁନ୍ତି ।
ଜଣେ ଜଣେ ସମାର୍ଜଇ ସଦାନନ୍ଦ ମନ୍ତ୍ରୀ । ୨୧ ।
ଉତ୍ତର ଦକ୍ଷିଣ ଦିଗ ପୂର୍ବ ପଶ୍ଚିମ ସ୍ଥିର ।
ଯେ ଯାହାର ଆସନେ ବସନ୍ତି ଆବୋର । ୨୨ ।
ଅନେକ ଉଚ୍ଛବ ଦ୍ରୁପଦ ଭୁବନେ ।
ରାଜାମାନେ ପ୍ରବେଶ ହୋଇଲେ ପଞ୍ଚ ଦଶ ଦିନେ । ୨୩ ।
ଶ୍ରୀକରେ ଅର୍ଘ୍ୟ ଘେନି ଧୃଷ୍ଟ ଯେ ଦୁମନ ।
ସମସ୍ତ ନୃପତିଙ୍କି କରାଇ ସନମାନ । ୨୪ ।
ଶିରେଣ ମଣିମୁକୁଟ ହୃଦେଣ ରତ୍ନମାଳା ।
କର୍ଣ୍ଣେଣ କର୍ଣ୍ଣାଞ୍ଚଳ ଶିରରେ ଜଗଦଳା । ୨୫ ।
ଶ୍ରୀଭୁଜେ ବାହୁଟି କଙ୍କଣ ପାଦେଣ ନୂପୁର ।
ସାବ-ମଣି-ମୁକୁଟ ଶୋହଇ ଯେ ଶିର । ୨୬ ।
ଆଭରଣ ସୁସଞ୍ଚ ପୁଷ୍ପମାଳମାନ ।
ଏକାରାଜାକେ ବରଣ ଶତେ ମାଢ଼ ସୁବର୍ଣ୍ଣ । ୨୭ ।
ଦ୍ରୁପଦ ଲକ୍ଷେ ରାଜାଙ୍କୁ ଏସନକ ସମ୍ପାଦ ।
ସମସ୍ତ ରାଜାଙ୍କୁ ବରଣ କଲା ଏହୁ ବିଧି । ୨୮ ।
ଅର୍ଘ୍ୟ ଘେନି ମିଳିଲା ଦ୍ରୁପଦ ସଭାମଧ୍ୟସ୍ଥାନେ ।
ସମସ୍ତ ରାଜାଙ୍କୁ ଶତ ସହସ୍ର ମାନ୍ୟେ । ୨୯ ।
ଜୟସନ୍ଧ ବୋଇଲା ହଠ ହୋ ଦ୍ରୁପଦ ।
କେବଣ ତୋହୋର ବିଧାନ କହସି ଉଚିତ ବାରତ । ୩୦ ।

ଦ୍ରୁପଦ ବୋଇଲେ ଦେବ ସାବଧାନେ ଶୁଣିମା ।
ଅଗ୍ନିରୁ ଉତ୍ପତ୍ତି ମୋହର ଦୁହିତା ଶୁଦ୍ଧଧର୍ମୀ । ୩୧ ।
କୋଟିଏ ଋଷି ଘେନି ମହାମୁନି ବେଦବ୍ୟାସ ।
ମହା ଅନନ୍ତ ଦ୍ରୌପଦୀ ହୋଇଲେ ପ୍ରକାଶ । ୩୨ ।
ମୋହର ମନକାମନା କଲୁଁ ଯାହାର ଅର୍ଥେ ।
ଦଇବ-ବିପରୀତ ସେ ନାଶ ଗଲେ ଅନମିତେ । ୩୩ ।
ତାହାର ତ ତୁଲ୍ୟବର ନ ପାଇଲି ମଧ୍ୟଭୁବନେ ।
ତେଣୁ କରି ସ୍ୱୟଂବର ଉଆଇଲି ବାଦ୍ୟମାନେ । ୩୪ ।
ମୋହର ବଡ଼ ଭାଗ୍ୟ ଦୁହିତା ଉପୁଜାଇ ।
ଲକ୍ଷେକ ନୃପତି କେତେକ ଭାଗ୍ୟପାଇ । ୩୫ ।
ସମସ୍ତେହେଁ ବର ତୁମ୍ଭେ ଶୁଣ ଉଣା ଲକ୍ଷେକ ନୃପତି ।
କାହାକୁ କରିବ ଆସ୍ତି କାହାକୁ କରିବ ନାସ୍ତି । ୩୬ ।
ମହାଲକ୍ଷ ପାତଲି ମୋହୋର ବ୍ରତ ଜମନ୍ତେ ।
ଭିକ୍ଷାଏଁ କରି ବରକନ୍ୟା ନୋହିଇ ଯୁଗତେ । ୩୭ ।
ଏହୁ ମହାସମ୍ଭାରେ ଲକ୍ଷ ଯେ ବିନ୍ଧିବ ଗୋସାଇଂ ।
ଲକ୍ଷର ଚରିତ୍ର କହଇ ଶୁଣ ସାବଧାନ ହୋଇଂ । ୩୮ ।
ରାଧାଚକ୍ରେ ବୁଲଇ ଯେ ସହସ୍ରେକ ଧାର ।
କଣସ୍ତୁର ମାଛ ଅଛୁ ତହୁଂର ଉପର । ୩୯ ।
କୁମ୍ଭଲଚକ୍ର ପଞ୍ଚସ୍ତେ ବୁଲଇ ସେ ଚକ୍ର ଅନୁକ୍ରମେ ।
ତଳେ ସ୍ନେହ ଧନୁ ଥୋଇଣ ଅଛୁ ଲକ୍ଷ ବଳ ଯୁଗତେ । ୪୦ ।
ରାଧାଚକ୍ର ବୁଲୁଅଛୁ ସାତ ତାଳ ଉଞ୍ଚେ ।
ତାଳେକ ଉପରେ ପଠାଏଁ କଣ୍ଢିଲ ଅଛଇ ସୁସଞ୍ଚେ । ୪୧ ।
ଲକ୍ଷେକ ବଳ ଧନୁଧରି ପଠା ଉପରେଣ ଉଠି ।
ତହୁଂର ତଳେ ଥୋଇଣ ଅଛୁ ତୀର୍ଥଜଳ ଘଟ ଗୋଟି । ୪୨ ।
ତଳକୁ ଦୃଷ୍ଟି କରି ଉପରକୁ କରିବ ମୁଷ୍ଟି ।
ଚକ୍ର ଭେଦ ମାଛର ବାମ ନୟନ ଯିବ ଫୁଟି । ୪୩ ।

ଏହେନେକ ସରୂପେ ଯେବେ ଲଖ ବନ୍ଧିବ ।
ମୋହୋର ଦୁହିତା ଦ୍ରୋପଦୀକ ସେ ପ୍ରଦାନ ହୋଇବ । ୪୪ ।
ଯେ ଲଖ ବନ୍ଧିବ ସେ ଲମ୍ଭିବ କୁମାରୀ ।
ତାହାଂକ କେହୁ ତୁମ୍ଭେ ନୋହିବ ଦ୍ୱନ୍ଦ୍ୱକାରୀ । ୪୫ ।
ଅଛ ତୁମ୍ଭେ ନୃପତି ମହା ମହାମଲ୍ଲ ।
କନ୍ୟା ନିଅନ୍ତେ ତାହାକଉଂ ନ କରିବ ଗୋଳ । ୪୬ ।
ଏଥକୁ ସ୍ୱାମୀ ତୁମ୍ଭେ ମୋତେ କହିବା ଦୃଢ଼ ବାଣୀ ।
ତେବେ ସେ ସଭାକୁ ମୋହୋର ଦୁହିତା ଯାଉଇ ଆଣି । ୪୭ ।
ସମସ୍ତ ରାଜାମ୍ଭେ ବୋଇଲେ ଯେହ୍ନ ସେ ସତ୍ୟ ସତ୍ୟ ।
ଯାହାର ସୁକର୍ମ ତାହାକୁ କନ୍ୟା ହୋଇବ ପ୍ରାପତ । ୪୮ ।
ଏଥକୁ ନ ସହିଂ:ଯେ କରି ଲୋଡ଼ିଲ ଦ୍ୱନ୍ଦ୍ୱ ।
ସମସ୍ତ ନୃପତି ହୋଇ ତାହାକୁ କରିବୁ ଶିରଚ୍ଛେଦ । ୪୯ ।
ଏ କଥାମାନ ସମସ୍ତ କରଣ ନିର୍ମିତ ।
ନିଜ ଭୁବନକୁ ଚଳିଲା ଦ୍ରୁପଦ । ୫୦ ।
ଶ୍ରୀଖଣ୍ଡି ଧୃଷ୍ଟଦୁମନ ବେନି ପୁତ୍ର ଯାଇ ।
ଦ୍ରୌପଦୀ କନ୍ୟାକୁ ସୁବେଶ କରାଇ । ୫୧ ।
କେଶିନୀ ନାମେଣ ସେ ଅଟଇ ମୂଦୁସୁଲୀ ।
ସର୍ବ ଅଳଙ୍କାର ହୋଇ ଲକ୍ଷେକ ପୋଇଲି । ୫୨ ।
କନ୍ୟାକୁ ସ୍ନାହାନ କରାନ୍ତି ସର୍ବେ ମିଳି ।
ନାନା ସୁଗନ୍ଧେଣ କବରୀ ସ୍ୱର ସମ୍ଭାଳି । ୫୩ ।
କୁଙ୍କୁମ ଲେପନ କରଣ ଶରୀରେ ।
ମୃଗନାଭି କସ୍ତୁରୀ ଲେପନ ହୃଦସ୍ଥରେ । ୫୪ ।
ଆଲଟ ଗୁମର ଢ଼ାଳି ଶୁଖାବନ୍ତି କେଶ ।
ଅଙ୍ଗେ ପରିଧାପନ କରାନ୍ତି ଝୀନ ବାସ । ୫୫ ।
ଜାଇ ଯୁଈ ମଲ୍ଲୀ ମାଲତୀ ସେବତୀ ପାଂଖୁଡ଼ି ।
ସୁବାସ କୁସୁମେ ସାଙ୍ଗୋଇଲେ କବରୀ । ୫୬ ।

ସୁପକ୍ଷ ଖୋପା ଗୋଟି ସାଙ୍ଗୋଇ ଅତ ରସେ ।
ଲୁବୁଧେ ମଧୁକରେ କୁବୁଳୁଛନ୍ତି ପାଶେ । ୫୭ ।
ତହିଁର ଉପରେ ବେଷ୍ଟିଲେ ମୁକୁତାର ଜାଲ ।
ଲଲାଟ ପାଟିରେ ଅଷ୍ଟରତ୍ନ ଖଞ୍ଜିଲେ ମୁଦ୍ରୁସୁଲୀ । ୫୮ ।
କର୍ଣ୍ଣରେ ତଡ଼କ ନାସିକାରେ ରତ୍ନଫୁଲୀ ।
ହୃଦୟରେ ଅଷ୍ଟରତ୍ନ ହାରମାନ ଝଳ । ୫୯ ।
ଭୁଜେ କେୟୁର କଙ୍କଣ ଶୋହଇ ରତ୍ନଚୂଡ଼ି ।
ଅଷ୍ଟରତ୍ନେ ଜଡ଼ିତ ଅଙ୍ଗୁଷ୍ଠିର ମୁଦ । ୬୦ ।
ପାଦେଣ ନେପୁର ଝଲକନ୍ତି ହୀରା ।
ନ ସହଇ ସୁନ୍ଦରୀ ବହୁତ ରତ୍ନଭାର । ୬୧ ।
ମିଳଣ ଗଣିକାଙ୍କୁ କରନ୍ତି ଅଲେଖ ।
ସୁବେଶ ବେଶନମାନ ଦେଖି ଭୁଲଇ ବିମୁଖ । ୬୨ ।
ଉପରେ ପରିଧାପନ ଦାସୀ ନେତ ପାଟ ଗୋଟି ।
ଅନଳ ତେଜ ଜାଣି ବିକାଶଇ ଫୁଟି । ୬୩ ।
ଭୁଲେଣ ଅଛନ୍ତି ସେ ଲକ୍ଷେକ ପରିବାରି ।
ତାହାଙ୍କର ବେଶମାନ କହୁତ କପଣ । ୬୪ ।
ସମ୍ପୂର୍ଣ୍ଣ ଯୁବାସ୍ତିରି ସେ ଅଟନ୍ତି ରତ୍ନକାନ୍ତ ।
ଆନ କନ୍ୟାମାନଙ୍କ ଉପରେ ଅଟଇ ଗୁଣନିଧି ଯୁବତୀ । ୬୫ ।
ଅମର କୋଳାପୁଣୀମାନେ ମିଳୁଛନ୍ତି ଆସି ।
ଆନ ରାଜାଙ୍କ ନାୟିକା କୃଷ୍ଣଙ୍କ ଅଟଇ ଦାସୀ । ୬୬ ।
ଅନେକ ବେଶନ ସେ ସମସ୍ତ ଯୁବତୀ ।
ସ୍ତିରି-ରତ୍ନ-ନାୟିକା ସେ ଜଗତ ମୋହନ୍ତି । ୬୭ ।
ସହସ୍ରେକ ଚାମର ସେ ଢାଳନ୍ତି ଚଉକତ ।
ସହସ୍ରେ ଆଲଟ ସୁବର୍ଣ୍ଣର ଝଲକନ୍ତି । ୬୮ ।
ଉଷାଗଲେ ସୁନ୍ଦରୀ ସହସ୍ରେ କନକର ଛତା ।
ଛାମୁରେ ନୃତ୍ୟ କରନ୍ତି ସହସ୍ରେ ବନିତା । ୬୯ ।

ମଧୁର ରସବାଦ୍ୟେ ବଜାନ୍ତି ବ୍ରହ୍ମବୀଣା ।
କୋକିଳ ଧ୍ୱନି ପ୍ରାୟେ ଗାଆନ୍ତି ଗାୟେଣା । ୭୦ ।
ସୁବର୍ଣ୍ଣର ଯୋଗାଡ଼ ଯେଣି ସହସ୍ରେ ସଉବାଣି ।
ସହସ୍ରେ କନ୍ୟା ଆଗେ ପୁଷ୍ପ ବୃଷ୍ଟି କରି । ୭୧ ।
କନକର ହାନ୍ଦୋଳାରେ ବିଜୟେ ପାଞ୍ଚାଳୀ ।
ଚଳନ୍ତି ଯୁବତୀ ଯେ ବଣ୍ଡିକ ଶୁଣ୍ଡଶାଳୀ । ୭୨ ।
ନାନା ବାଦ୍ୟନାଦ ଧ୍ୱନି ଶୁଭଇ ଚହଳ
ଶ ବଦ ଉଚ୍ଛବ ଯେହ୍ନେ ମାତଙ୍ଗ ବୃନ୍ଦମେଳ । ୭୩ ।
କନକ ଶୋଭବନ ଶରୀର ବକାଣି ।
ଦେଖିଣ ରାଜାଗଣେ ସମସ୍ତେ ପରଶଂସି । ୭୪
ଦ୍ରୌପଦୀ ବଦନ ଭେଦ୍ଧ ନ ପାରନ୍ତି ଦୃଷ୍ଟି ।
ସ୍ତ୍ରି ଙ୍କର ମୁଖ ଦୃଷ୍ଟି ସମସ୍ତେ ହୋନ୍ତି ମୋହ୍ନ । ୭୫ ।
ଯେ ଯେ ବେଢ଼ିଛନ୍ତି ଲକ୍ଷେକ ଯୁବତୀ ।
ଲକ୍ଷେ ରାଜାଙ୍କୁ ଯେ ଯୋଗାନ୍ତି ପ୍ରିୟବତୀ । ୭୬ ।
ସଭାର ମଧ୍ୟେ ନେଇ ଉଭାରିଲେ ବାଳୀ ।
ସମସ୍ତ ରାଣିକାୟେ ମଙ୍ଗଳ ଧ୍ୱନି ତୋଳି । ୭୭ ।
ମେଢର ମଧ୍ୟେ ବିଜୟେ ଦ୍ରୌପଦୀ ।
ପୌର୍ଣ୍ଣମୀର ଚନ୍ଦ କି ବିକାଶିଲା କଣାବୃତ । ୭୮ ।
ସଭାରେ ମିଳିଲେ ଧୃଷ୍ଟ ଯେ ଦ୍ୟୁମନ ।
ରାଜାଗଣମାନଙ୍କୁ ଯେ ବୋଲନ୍ତି ବଚନ । ୭୯ ।
ଲକ୍ଷେକ ରାଜା ତୁମେ ଯେ ବସିଲ ଆସ୍ଥାନେ ।
ସମସ୍ତଙ୍କୁ ହିଁ ବରିଲି ବରବେଶ ବିଧାନେ । ୮୦ ।
ମୋହ୍ନର କହ୍ନଣୀ ଅଣିଲି ଦ୍ରୌପଦୀ ।
ବିଭ୍ରମ କଲ୍ପେ ତାହାର ରୂପ କାନ୍ତି । ୮୧ ।
ଯେ ପାରଇ ଲକ୍ଷ ବିନ୍ଧିବି ଗୋସାଇଂ
ସେ ସ୍ୱୟମ୍ବର କଲି ମୁଁ ପାଞ୍ଚାଳୀର ପାଇଂ । ୮୨ ।

(ଆଦିପର୍ବ— ମହାଭାରତ)

# ମାର୍କଣ୍ଡେୟ ଦାସ

(୧୫ଶ—୧୬ଶ ଶତାବ୍ଦୀ)

## ଗଲା ପୁଣ ବାହୁଡ଼ି ନଇଲା

କୋଇଲି କେଶବ ଯେ ମଥୁରାକୁ ଗଲେ ।
କାହା ବୋଲେ ଗଲେ ପୁତ୍ର ବାହୁଡ଼ି ନଇଲେ ! ଲୋ କୋଇଲି ॥
କୋଇଲି ! ଖଣ୍ଡକ୍ଷୀର ଦେବ ମୁଁ କାହାକୁ
ଖାଇବାର ପୁତ୍ର ଗଲେ ମଥୁରା ପୁରକୁ । ଲୋ କୋଇଲି ॥
କୋଇଲି ! ଗଲେ ପୁଣ ବାହୁଡ଼ି ନଇଲେ ।
ଗହନ ତ ବୃନ୍ଦାବନ ଶୋଭା ନ ପାଇଲେ । ଲୋ କୋଇଲି ॥
କୋଇଲି ! ଘର ମୋର ନ ମଣ୍ଡେ ନନ୍ଦ
ଘଟଣ ନ ଦଶେ ପୁର ନ ଥିଲେ ଗୋବିନ୍ଦ । ଲୋ କୋଇଲି ॥
କୋଇଲି ! ନନ୍ଦ ଦେହ ପାଷାଣେ ଗଢ଼ିଲେ ।
ନୟନେ କଜ୍ଜଳ ଦେଇ ରଥେ ବସାଇଲେ । ଲୋ କୋଇଲି ॥
କୋଇଲି ! ଚନ୍ଦ୍ରଆଉ କଟିସୂତ୍ର ମେଖଳୀ ।
ଚକିତ ହୋଇଲେ ଶୁଣି ଗୋପ ପୁର ବାଳୀ । ଲୋ କୋଇଲି ॥
କୋଇଲି ! ଗୁଣ୍ଟେକେ ମୁଁ ମାଇଲି ପୁତ୍ରବେ ।
ଗୁଡ଼ଅବା ଗଲେ କୃଷ୍ଣ ସେହୁ ପରାଭବେ । ଲୋ କୋଇଲି ॥
କୋଇଲି ! ଦୃଢ଼ ପଣେ ଅଇଲା ଅକ୍ରୂର ।
ଯାହା ବୋଲି ଭଣ୍ଡି ନେଲା ବସାଇ ରଥର । ଲୋ କୋଇଲି ॥
କୋଇଲି ! ଝୁରୁ ଝୁରୁ ଲୁହ ନ ରହିଲା ।
ଝଗଡ଼ା ଯାଉଣ କୃଷ୍ଣ ମଥୁରା ରହିଲା । ଲୋ କୋଇଲି ॥
କୋଇଲି ! ଜଣା କାଳେ ହଣ ମାଗେ ଗୃନ୍ଦ ।
ନୟନ ଟେକଣ ତାଙ୍କୁ ଯଉଥାନ୍ତି ନନ୍ଦ । ଲୋ କୋଇଲି ॥
କୋଇଲି ! ଟହ ଟହ ହସୁଥାନ୍ତି କୋଳେ ।

ଟଳ ଟଳ ଦେଉଥାନ୍ତି ଝୁଲିବାର ବେଳେ । ଲୋ କୋଇଲି ॥
କୋଇଲି ! ଠଣ ଯେ ସୁନ୍ଦର ବେଣ ପୋଏ ।
ଠକ ଭଣ୍ଡି ଗଲେ କୃଷ୍ଣ ନୋହିଲେ ଭେଟ଼ାଏ । ଲୋ କୋଇଲି ॥
କୋଇଲି ! ତାଳରେ ଗୁବଇ ଯେସନ୍ତେ ଶାଖ ।
ତାଳରୁ ଶୁଆ ପ୍ରାୟେ ସ୍ୱଷୁଥାନ୍ତି ହରି । ଲୋ କୋଇଲି ॥
କୋଇଲି ! ଉତ୍କଣ୍ଠନ୍ତି ମାଏ ଯଶୋବନ୍ତୀ ।
ଢ଼ାଳେ ହସାଇଲି ପୁତ୍ର ମୋର ଶିଶୁପଣ । ଲୋ କୋଇଲି ॥
କୋଇଲି ! ଅନକେ ଧ୍ୱଂସିଲା ଗୃହ କଂସ ।
ଅଣଦେଖିଲା କରଣ ଆପଣେ ଗଲା ନାଶ । ଲୋ କୋଇଲି ।
କୋଇଲି ! ତନୁରେ ତା ଲେପଇ କୁଙ୍କୁମ ।
ତନୟ ଖେଳାଉ ଥାନ୍ତି ସଙ୍ଗେ ବଳରାମ । ଲୋ କୋଇଲି ॥
କୋଇଲି ! ଥନ ଭିଙ୍ଗି ଖୀରପାନ ଦେଲି ।
ଅବର କାଳକୁ ପୁତ୍ର ଦେଖି ନ ପାରିଲି । କୋଇଲି ॥
କୋଇଲି ! ଦଉଡ଼ିରେ ବାନ୍ଧିଲି ପୁତ୍ରକୁ ।
ଦାମୋଦର ରାଗେ ଗଲେ ମଥୁରା ପୁରକୁ । ଲୋ କୋଇଲି ॥
କୋଇଲି ! ଧନ୍ୟ ସେହୁ ଦଇବକୀ ନାରୀ ।
ଧର୍ମିଥିଲା ପୁଅ ଗୋଟି ହୋଇଲା ତାହାରି । ଲୋ କୋଇଲି ॥
କୋଇଲି ! ନ ଶୋଭଇ ଗୋପ ପୁର ମୋର ।
ନାରାୟଣ ଗଲାଦିନୁ ମଥୁରା ନଗର । ଲୋ କୋଇଲି ॥
କୋଇଲି ! ପବିତ୍ର ପୁରୁଷ ମୋ ମାଧୋଇ ।
ପବିତ୍ର ମୁଁ ହୋଉଥିଲି କୃଷ୍ଣ ମୁଖ ଚାହିଁ । ଲୋ କୋଇଲି ॥
କୋଇଲି ! ଫଳିବାକୁ ନାହିଁ ମୋର ଆଶା ।
ଫଳିବାର ଫଳ ଗଲା ବସୁଦେବ ପାଶ । ଲୋ କୋଇଲି ॥
କୋଇଲି ! ବହୁତ ସହିଲି ତାଙ୍କ ଅଳି ।
ବଢ଼ାଇ ଶରଧା ଭାଙ୍ଗି ଗଲେ ବନମାଳୀ । ଲୋ କୋଇଲି ॥
କୋଇଲି ! ଭଣ୍ଡି ମୋତେ ଗଲେ ବେଣ ପୋଏ ।

ଖାଇ ତାଙ୍କ ବଳରାମ ନଇଲେ ବେଢ଼ାଏ । ଲୋ କୋଇଲି ॥
କୋଇଲି ! ମଥୁରାକୁ ଯିବାକ ମୁଁ ଧାଇଁ ।
ମାଧବ ମଧୁସୂଦନ ଆଣିବି କଢ଼ାଇ । ଲୋ କୋଇଲି ॥
କୋଇଲି ! ଯିଦିନ ଯେ ଆସିବେ ବୋଲି ଗଲେ ।
ଜଗତ ଜୀବନ ପ୍ରଭୁ ବେଢ଼ାଏ ନଇଲେ । ଲୋ କୋଇଲି ॥
କୋଇଲି ! ରତ୍ନ, ବସ୍ତ୍ର ଅଳଙ୍କାର ମାନ ।
ରାମକୃଷ୍ଣ ଶ୍ରୀ ଅଙ୍ଗକୁ ଦଶେ ଶୋଭାବନ । ଲୋ କୋଇଲି ॥
କୋଇଲି ! ଲକ୍ଷ୍ମୀବନ୍ତ ଅଟେ ନାରାୟଣ ।
ଲକ୍ଷ୍ମିତରେ ନାମ ଦେଲେ ଯେ ଗର୍ଗ ବ୍ରାହ୍ମଣ । ଲୋ କୋଇଲି ॥
କୋଇଲି ! ବୃନ୍ଦାବନ ନ ଶୋଭଇ ମୋର ।
ବସ୍ତ୍ରା କଏ ଚରାଇବ ଯମୁନାର ତୀର । ଲୋ କୋଇଲି ॥
କୋଇଲି ! ଶ୍ରୀମନ୍ତ ପୁରୁଷ ମୋ ମାଧୋଇ ।
ଶିଶୁରଙ୍ଗଗଲା ଦନ୍ତୁ ନନ୍ଦ ହେଲେ ବାଇ । ଲୋ କୋଇଲି ॥
କୋଇଲି ! ଶଶୀ ଯେସନ୍ତେ ଦନ୍ତୁ ଦନ କ୍ଷୀଣ ।
ସେହିମତ କ୍ଷୀଣ ହେଲେ ମୋ ନନ୍ଦରାଜନ । ଲୋ କୋଇଲି ॥
କୋଇଲି ! ସାତଦନ ଇନ୍ଦ୍ର ବୃଷ୍ଟି କଲା ।
ସପତ ବରଷ ପୁଅ ମନ୍ଦର ଧଇଲା । ଲୋ କୋଇଲି ॥
କୋଇଲି ! ହାଇ ଯେ ମାରଇ ପୁତ୍ର ବୃନ୍ଦ ।
ହୃଦରେ ଦଶିଲା ତାର ସପତ ବ୍ରହ୍ମାଣ୍ଡ । ଲୋ କୋଇଲି ॥
କୋଇଲି ! ଛନ୍ଦଣୀ ବନ୍ଦଣୀ ଭୁଜଦଣ୍ଡ ।
କ୍ଷମାକର ଦୋଷ ମୋର ଭଣେ ମାରକଣ୍ଡ । ଲୋ କୋଇଲି ॥

# ଅର୍ଜୁନ ଦାସ

(୧୫ଶ—୧୬ଶ ଶତାବ୍ଦୀ)

## ତାଡକା ବଧ

(ରାଗ—ରାମକେରୀ—କଲସାବାଣୀ)

ସରସ୍ୱତୀ ତୀରେ ବିଜୟେ ରାମ ଲକ୍ଷ୍ମଣ ବେନି
ଆନନ୍ଦ ହୋଇଣ ବୁଲନ୍ତି ବିଶ୍ୱାମିତ୍ର ମୁନି । ୧ ।
ଦେଖ ରଘୁନାଥ ଜାହ୍ନବୀ ହରିପାଦ ପାଣି
ତୋହର କୁଳେ ଭଗୀରଥ ଯତ୍ନ କରାଇ ଆଣି । ୨ ।
ସଗର ଷାଠି ସହସ୍ର ସୁତ ଦହେ କପିଳ କୋପେ
ମନ୍ଦାକିନୀ ଯେଣୁ ତାରିଲା ଭଗୀରଥ ନୃପତି ତପେ । ୩ ।
ଶୁଣି ରଘୁନାଥ ପ୍ରଣମି ଯାଇ ପଶିଲେ ଜଳେ ।
ମାନଣା ପାରି ବେନି ଭାଇ ହୃଷ୍ଟ ହୋଇଲେ କୂଳେ । ୪ ।
ସ୍ନାହାନ ସନ୍ଧ୍ୟା ଯେ ସାରିଣ ବିଶ୍ୱାମିତ୍ର ଋଷି
ରାମ ଲକ୍ଷ୍ମଣଙ୍କୁ ଘେନିଣ ଶୁଭେଣ ନାବେ ବସି । ୫ ।
ପାରି ହୋଇଣ ଦାଶରଥି ଦେଖିଲେ ଘୋର ବନ
ତାଳ ତମାଳ ମହାତରୁ ଲତା ନିବିଡ ଘନ । ୬ ।
କେଳି କରେ ନାନା କୁରଙ୍ଗ ବନ୍ଧୁ କେଶରୀ କରୀ
ନାନା କୁସୁମ ଫଳ ତରୁଂ ଭୂମି ଅଛଇ ପଡ଼ି । ୭ ।
ଶୀତଳ ପବନ ବହଇ ମନ୍ଦ ଗନ୍ଧ ଯେ ଘେନି
ମଧୁପାନେ ମତ୍ତ ହୋଇଣ ମନ୍ତ୍ର ମଧୁପ ଧୁନି । ୮ ।
ନାନା ପକ୍ଷୀ କ୍ରୀଡା କରନ୍ତି ପୁଷ୍ପଫଳନ୍ତ ଖାଇ
କସ୍ତୁରୀ ମୃଗ ଯୂଥଯୂଥ ଚରନ୍ତି ଅଭୟ ହୋଇ । ୯ ।
ରାମ ପଚାରନ୍ତି ହେ ମୁନି ! ସେହୁ କେବଣ ବନ
କାମର କି କେଳି ନଗର କରେ ଆନନ୍ଦ ମନ । ୧୦ ।
କହେ କଉଶିକ ଦାଶରଥି ! ଏଥି ତାଡ଼କା ଥାଇ

ଦେବା ସୁର ନର କାନ୍ତର ପଡ଼ିଲେ ଅବଶ୍ୟ ଖାଇ । ୧୧ ।
ଗୋରୁ, ବ୍ରାହ୍ମଣ, ଜନ ସୁଜନ ଧରି କଲଇ ହତ
ଅପାର କାଳୁଁ ରଘୁନାଥ ! ପଡ଼ିଲାଣି ସେ ପଥ । ୧୨ ।
ସେହୁ ବାଟେ ଆମ୍ଭେ ନ ଯିବା ଶୁଣ ହେ ରଘୁନାଜ
ଗୋପନ ଅଛଇ ବାଟ ସୁଲବା ବହୁତ ଦନ । ୧୩ ।
ଶୁଣିଣ ଲକ୍ଷ୍ମଣ କୁମର କୋପମୁଖ ହେଲେ
ଅସୁରୀ ଯୋଉଁ ବାଟେ ଅଛୁ ସେହିବାଟେ ଯିବା ବୋଇଲେ । ୧୪ ।
ବୋଲେ କଉଶିକ ଲକ୍ଷ୍ମଣ ଶୁଦ୍ଧି ତୁମ୍ଭେ ଶିଶୁମତ
ଅସୁରୀ ଚଳନ୍ତେ ମହୀ କମ୍ପଇ ଇନ୍ଦ୍ର କରଇ ଖେଦ । ୧୫ ।
ବିଶ୍ୱାମିତ୍ର ବୋଲ ଶୁଣିଣ ରାମ ଅରୁଣ ନେତ୍ର
ରୋଷେ କୋଦଣ୍ଡ ଟଙ୍କାରନ୍ତେ କୋପେ ଥରଇ ଗାତ୍ର । ୧୬ ।
ଟଙ୍କାର ଶବଦ ଶୁଭିଲା ସାତ ଦ୍ୱୀପ ମହୀ
ବାସୁକୀ ଶିର ନୁଆଁଇଲା ଧନୁର ଧ୍ୱନି ନ ସହି । ୧୭ ।
ଶୁଣି ଘନଘୋର ରବକୁ ଧାଇଁଲା ନିଶାଚରୀ
ଦଶନେ ଅଧର ଚାପିଣ କେଶ ମୁକୁଳା କରି । ୧୮ ।
କୁରାଳ ଚକ୍ର ପ୍ରାୟେକ ତାର ଘୂରେ ନୟନ ବେନି
ହୃଦୟ ବାସ ଜରଜର ଅଧରୁ ରୁଧିର ଘେନି । ୧୯ ।
ଶ୍ୱାସ ସମୀର ପରଖର ଘାଏ ତରୁବର ପଡ଼ି
ପବନ ଘାତେ ଗୋଡ଼ାବନ୍ତି ସଙ୍ଗେ ସକଳ ଉଡ଼ି । ୨୦ ।
ପାଦଘାତେ କମ୍ପେ ମେଦନୀ ଗିରିବରନ୍ତି ଚୂର
ଅମର ପୁରେ ହାଲହୋଳ ବ୍ୟାପିଲା ହୁରହୁର । ୨୧ ।
ମୁଷ୍ଟି କରି ତୋଳେ ଭୁଜବେନି ଟହ ଟହ ହସେ
ନୀଳ ଜଳଧର ପ୍ରାୟେକ ରାମ ନିକଟେ ମିଶେ । ୨୨ ।
ନାକେ ହସ୍ତଦେଇ ହସନ୍ତି ରାମ ଲକ୍ଷ୍ମଣ ବେନି
ସହକେ ଜ୍ଞାନ ହରାଇଲେ ବିଶ୍ୱାମିତ୍ର ମୁନି । ୨୩ ।
କରୁଣା ସାଗର ଦାଶରଥି ଦେଖିଣ ଦୟାବଶେ

ପାମରୀ ନାମ୍ନୀ ଦୁର୍ଲକ୍ଷଣୀ ରୂପ ଯେମନ୍ତ ଦିଶେ । ୨୪ ।
କାନରେ ବୋଲନ୍ତି କୌଶିକ ରାମ ବସ୍ତୁରୁ କସ
ତୋହର ଦେଖୁ ଏହୁକ୍ଷଣି ମୋତେ କରିବ ନାଶ । ୨୫ ।
ଶୁଣି ଦାଶରଥି କୋପ କରି କାଣ୍ଡ କୋଦଣ୍ଡ କସି
ଆକର୍ଣ୍ଣ ଯାଏ ଓଟାରିଣ ତାଡ଼କା ଉପରେ ପେଷି । ୨୬ ।
ଗର୍ଜିଣ ଗମଇ ସାପ୍ତକ ମନ୍ତ୍ରଗଢ ଉଡେ
ଅବନୀ ଖର ନିଶାଚରୀ ହୃଦ ମଧ୍ୟରେ ପଡେ । ୨୭ ।
କୁଟିଳ କଠୋର ହୃଦୟ ତାର ରାମବାଣ ପଡ଼ି
ମନୁଷ୍ୟ ଲୋକେ ଯେସନ୍ତେ ଗଙ୍ଗାଇ ତେସନ ଜଳରେ ବୁଡ଼ି । ୨୮ ।
ସେହୁ ଯେମନ୍ତେ ମୀନ ଯେହ୍ନ ଯାଇ ତାଳରେ ବସେ
ତାଡ଼କା ଜୀବନ ଯେହ୍ନଣ ବାଣ ରାମ ତୂଣୀରେ ପଶେ । ୨୯ ।
ପରମ ବ୍ରହ୍ମ ଅବତାର ଧରେ ଜଙ୍ଗମ ରୂପ
କେବଣ ଖଡ୍ଗେ ନିଶାଚରୀ ଖଣ୍ଡିଲା ସକଳ ପାପ । ୩୦ ।
ବାଜିଲା ମଙ୍ଗଳ ମହୁରୀ ଭୀରତୂର ଘୋଷ
ଦିବ୍ୟ ବିମାନେ ଦଇତୁଣୀ ସୁରପୁରେ ପ୍ରବେଶ । ୩୧ ।

(ରାମବିଭା-୩ୟ ଛାନ୍ଦ)

# ଦାମୋଦର ଦାସ

(୧୫ଶ—୧୬ଶ ଶତାବ୍ଦୀ)

## ଝୁରୁଅଛି ପ୍ରାଣସହୀ

(ରସକୋଇଲି ବାଣୀ)

କହଇ ରାଧା ସଖୀ ଦୂତିକାକୁ
କଦମ୍ବମୂଳେ ଦେଖିଲୁ କୃଷ୍ଣଙ୍କୁ
କଳାକଳେବର, ରଙ୍ଗା-ଅଧର
କପାଳେ କସ୍ତୁରୀ ଚିତା ସୁନ୍ଦର ସେ,

କୁବଳୟଶ୍ୟାମଳ ନାଶେ ଯେ
କାମବିକାର କଳଙ୍କ ପ୍ରାଣବନ୍ଧୁ
ଦେଖି ସୁଧାନନ୍ଦ ହାସେ ସେ । ୧ ।

ଖୋସିଛୁ ଶିରେ ମୟୂରଶିଖଣ୍ଡ
ଖଣ୍ଡ ସଘନରେ ଶକ କୋଦଣ୍ଡ
ଖଞ୍ଜି ଅଳଙ୍କାର ଗୁଞ୍ଜମାଳ
ଝଞ୍ଜି ପୁଞ୍ଜି ପୁଞ୍ଜି କାଚିଚମାଳ ସେ
ଖିଳ ବ୍ରହ୍ମାଣ୍ଡଠାକୁର ଗୋ
ଖୀନ ନୟନ ଅପାଙ୍ଗଶରେ ତନୁ
ଖଣ୍ଡ ଖଣ୍ଡ କଲା ମୋର ଗୋ । ୨ ।

ଗଣ୍ଡସ୍ଥଳେ ଲୁଟିଲ କୁଣ୍ଡଳ ବେନ
ଗ୍ୟାନ ଧ୍ୱଂସ ହୁଏ ଦେଖି ସଜନ !
ଗୋବନ୍ଦ ଗଳାରେ ପ୍ରବାଳ କଣ୍ଠି
ଗୋପସୁତ ସଙ୍ଗେ କରନ୍ତି ଗୋଷ୍ଠି ସେ
ଗଜମୁକ୍ତାର ହାର ଗୋ
ଗଳାରୁ ଜାନୁ ପଞ୍ଚରଙ୍ଗ ଲମ୍ବଇ
ବନକୁସୁମର ମାଳ ଗୋ । ୩ ।

ଘଟଣ ସୁନ୍ଦର ତ୍ରିଭଙ୍ଗୀ ଅଙ୍ଗ
ଘନ ଘନ ବଂଶୀ ବାଜେ ଶ୍ରୀରଙ୍ଗ
ଘୋଟିଲା ଅନ୍ତରେ ଅନଙ୍ଗଜ୍ୱର
ଘୂମାଇ ଯାଉଛି ମୋର ଶରୀର ସେ
ଘାଉକଲା ରଥବର ଯେ
ଘାଉଆ ହରଣୀ ପ୍ରାୟେ ମୁଁ ହୋଇଲି
ଶୁଣି ତା ବେଣୁ ସ୍ୱର ଯେ । ୪

ନୟନେ ତା ରୂପ ଦେଖିଲି ଯାହା
ନ ପାରଇ କହି ବଚନେ ତାହା

ନ ରୁଚଇ ମୋତେ ସଦନ ସୁଖ
ନ ଦେଖି ଦେଖିଲି କଳା ଶ୍ରୀମୁଖ ସେ
ନିବେଦନା ମୋର ଘେନ ଗୋ,
ନଚେଁ ପ୍ରାଣବନ୍ଧୁ ଦେଇ ମୋତେ ରଖ
ଆଜନ୍ମୁଁ ତୋର ଅଭିନ୍ନ ଗୋ । ୫
ଚଳ ସହଚରି ! ବୃନ୍ଦଚନ୍ଦ୍ରଟ !
ଚତୁର୍ବର୍ଗଦାୟୀ ନୀପନିକଟ
ଚଞ୍ଚଳାପତିଙ୍କ ପାଶେ ଜଣାଇଁ
ସ୍ୱଶ୍ରେ ଘେନିଆ ପଦ୍ମଣ୍ଡ ମଣାଇ ସେ
ଚତୁରାନନ ଯା ଦାସ ଗୋ,
ଚନ୍ଦ୍ରଶେଖର ପଲକ ନ ଟଳଇ
ସ୍ୱଚ୍ଛି ଚନ୍ଦ୍ରଧର ବେଶ ଗୋ । ୬ ।
କ୍ଷୀଣ ହୃଦର କ୍ଷୀଣ ପ୍ରେମାବଳୀ
ଛନ୍ନ ହୋଇବେ ଦେଖି ସୁରବାଳୀ
ଛାଡ଼ିବେ ପତି, ସୁତ, ଗୃହ ବାସ
କ୍ଷଣେ ନ ଛାଡ଼ିବେ ଶ୍ରୀକୃଷ୍ଣ ପାଶ ସେ
ତ୍ରିଜଗତେ ତା ରୂପ ଦେଖି ଯେ,
ଛାର କଳଙ୍କିଣୀ ଛାଡ଼ ମୁଁ ଅଇଲି
କ୍ଷମାକର ଦୋଷ ସଖି ଗୋ । ୭
ଜମ୍ବୁନଦ ଜିଣି ପୀତବସନ
ଦାମିନୀ ଜଳଦ ମେଘେ ଯେସନ
ଜଡ଼ିତ ବେନି ଫରହର ହରେ
ଯୋଗୀନ୍ଦ୍ରବୃନ୍ଦ ଦେଖି ହର ଛାଡ଼େ ସେ
ଯହିଁ ଶୋଭେ ଜଗବନ୍ଧୁ ଯେ,
ଯୁବତୀ ଜୀବନ କେତେକ ମାତର
ଦେଇ ରଖ କୃପାସିନ୍ଧୁ ଯେ । ୮ ।

ଝଁମିଣ୍ଟକେ ଦୂତୀ ତହୁଁ ଚଳିଲା
ଝଁାଉକାରେ କୃଷ୍ଣବନେ ମିଳିଲା
ଝଁସକେତନର ପିଅର ପାଣ
ଝଁଗଡ଼ି କହଇ ରାଧା ସନ୍ଦେଶ ଯେ
ଝୁଁରୁଅଛୁ ପ୍ରାଣସଖୀ ଯେ
ଝୀନପଉନୀ ତା' ପାଷାଣରୁ ଗରୁ
ଝଡ଼ପଡ଼େ ବେନି ବାହା ଯେ ।୯।
ନୟନରୁ ନୀର ନ ରହେ ତାର
ନିରନ୍ତରେ ନାମ ଜପଇ ତୋର
ନ ରୁଚଇ ଅନ୍ନ ନ ମାଡ଼େ ନିଦ
ନତନୁ ଫୁଲଶରେ ତନୁ ଭେଦ ଯେ
ନ ଜୀଅଇ ତୋ ନ ଗଲେ ଯେ
ନଚେଁ ଉଣ୍ଣ ହତ୍ୟା ଦୋଷକୁ ପାଇବୁ
ନାରୀଶିରୋମଣି ମଲେ ଯେ ।୧୦।

(ରସକୁଲ୍ୟା ଚଉତିଶା)

## ବଳରାମ ଦାସ

(୧୫ଶ—୧୬ଶ ଶତାବ୍ଦୀ)

### ଧନୁଭଙ୍ଗ

(ଦାଣ୍ଡି ବୃତ୍ତ)

ମଣ୍ଡପ ଭିତରେ ଶ୍ରୀ ରାମଚନ୍ଦ୍ର ପଶି ।
ବାମ ଭୁଜେ ଧନୁ ଧଇଲେ ଆକର୍ଷି ।୧।
ବାହାର ହୋଇଣ ଯେ ଅଇଲେ ରଘୁନାଥ ।
ଦେଖନ୍ତି ସର୍ବଜନେ କୋଦଣ୍ଡ ଅଛି ହାଥ ।୨।
ଆନନ୍ଦେ ଉଚ୍ଚେ ହୁଅନ୍ତି ନରନାରୀ ।

ଧଇଲା ଧନୁ ବୋଲି ଅଙ୍ଗେ ଗୋଳ କରି । ୩ ।
ଦେଖି ବିଶ୍ୱାମିତ୍ରର ପୁଲକଇ ଶରୀର ।
ସାଧୁ ସାଧୁ ଶବଦ ଶୁଭିଲା ଚନ୍ଦ୍ରପୁର । ୪ ।
ଧନୁ ଧରି ରାମ ଅଛନ୍ତି ଉଭା ହୋଇ ।
ଲକ୍ଷ୍ମଣ ବୋଇଲା ଦଶ ଦିଗକଇ ଚାହିଁ । ୫ ।
ହେ ପୃଥି ଦେବ ତୁ ଥିର ହୋଇ ଥାସି ।
ଅସମ୍ଭାଳ ହୋଇଲେ ହୋଇବୁଟି ଧ୍ୱଂସି । ୬ ।
ବାସୁକ ଧର ତୋତେ ସାବଧାନ ହୋଉ ।
କୁରୁମ ରାଜା ଥିର ହୋଇଣ ଯେ ଥାଉ । ୭ ।
ଦଶଦିଗପାଳମାନେ ତୁମ୍ଭେ ଶୁଣ ସାବଧାନେ ।
ଅଳପ କରି ଗର୍ବ ନ ଧର ତୁମ୍ଭେ ମନେ । ୮ ।
ମହାବୀର୍ଯ୍ୟ ହୋଇଲେ ଧଇର୍ଯ୍ୟ ପଣ ଯିବ ।
ଈଶ୍ୱର ଧନୁ ଆଜ ଶ୍ରୀରାମ ଆମଣ୍ଡିବ । ୯ ।
ସେ ସ୍ଥିତ ଅନନ୍ତରେ ଶୁଣିମା ରସବାଣୀ
ନିଶବଦ ହୋଇଣ ଦେଖନ୍ତି ସର୍ବପ୍ରାଣୀ । ୧୦ ।
କୋଦଣ୍ଡ ଧରିଣ ଅଛନ୍ତି ଦାଶରଥି ।
ଗୁଣ ଦେବାକଇ କରନ୍ତି ରାମ ମତି । ୧୧ ।
ଶ୍ରୀରାମଙ୍କୁ ଚାହିଁ ଲକ୍ଷ୍ମଣ ଯୋଡ଼େ କର ।
ବୋଲେ ମଉଳ ନୁଆଁଇ ସେ ଧନୁ ନ ଧର । ୧୨ ।
ରାଜାମାନେ ମିଳିଣ ଅଛନ୍ତି ସମସ୍ତ ।
ନମସ୍କାର କଲ ପ୍ରାପ୍ତ ହୋଇବ ରଘୁନାଥ । ୧୩ ।
ଶୁଣିଣ ରଘୁନାଥ ହସନ୍ତି ମନେ ମନ
ଭଲ ବଚନ ତୁରେ କହିଲୁ ଲକ୍ଷଣ । ୧୪ ।
ପୃଥିର ଭିତରୁ ହାଦେ ଶୁଭିଲା ବଚନ ।
ମୋତେ ତୁ ରକ୍ଷା କରସି ରଘୁନାନ । ୧୫ ।
ଧନୁଦ୍ଧଳ ଯେବେ ତୁ ଦେବୁ ମୋର ଚହିଁ ।

ନଷ୍ଟ ଏ ପ୍ରାଣ ମୂଢ଼ଂ ହାରବ ଗୋସାଇଁ । ୧୬ ।
ମେରୁତୁଂ ଶତେ ଗୁଣ କୋଦଣ୍ଡ ଅଟଇ ଗୁରୁ
ମୂଢ଼ଂ ତାହା ବଢ଼ିବାକୁ ନୁହଇ ବଳସ୍ଥାରୁ । ୧୭ ।
ଶୁଣିଣ ଶ୍ରୀରାମ ପୃଥ୍ୱୀଙ୍କ ଦୟା କଲେ
ନିଜ ବାମ ପାଦ ଆଗକୁ ବଢ଼ାଇଲେ । ୧୮ ।
ବୃଢ଼ା ଅଙ୍ଗୁଳିର ନଖର ଉପରେ
ତହିଁ ଧନୁତ୍ତୁଳ ବସାଇଲେ ରଘୁବୀରେ । ୧୯ ।
ଶରାସନ ମଣ୍ଡଳ ବାମକରେ ଧରି
ଗୁଣ ଦେବାକଇ ରାମ ଅନ୍ତେ ଉଚ୍ଚୁଡ଼ି । ୨୦ ।
ମଡ଼ ମଡ଼ ଶବଦ ଶୁଭଇ କୋଦଣ୍ଡ ।
ଥର ଥର କମ୍ପଇ ମେଦନୀ ନବଖଣ୍ଡ । ୨୧ ।
ଗୁଣର ଫାସି ରାମ ଯେ ଦକ୍ଷିଣ କରେ ଧରି ।
ଧନୁର ଉପର ଭୁଲେଣ ନେଇ ଭରି । ୨୨ ।
ଯତ୍ନଂ ସେ ଶରାସନ ନଢ଼ୁଆଇ ଦେଲେ ଗୁଣ ।
ଶିର ନୁଆଂଇଲେ ସକଳ ରାଜାଗଣ । ୨୩ ।
ବାର ବରଷର ପୁଅ ଏତେକ କର୍ମ କଲା ।
ଛତିଙ୍କର ମୁଖେ କାଳି ଲଗାଇଲା । ୨୪ ।
ଗୁଣ ଦେଇ ଯତ୍ନଂ ଧନୁ ଧଇଲେ ସଜକର ।
ସଭାଜନଙ୍କର ମନ ଆନନ୍ଦ ସବୁଙ୍କର । ୨୫ ।
ଧନୁ ଧରି ରାମ ଯେ ଗୁଣ ଟଙ୍କାରନ୍ତି ।
ଦେଖି ଜନକର ଫିଟିଲା ମନଭ୍ରାନ୍ତି । ୨୬ ।
ମନେ ବିଚାରଇ ସ୍ତେ ସେ ବାସୁଦେବ
ନୋହିଲେ ସ୍ତେ ଧନୁକ ଆନ ଅସମ୍ଭବ । ୨୭ ।
ରୁ ଦହିଁ ସେ ବଢ଼ିତ ଅଟଇ ସାମରଥ ।
ସ୍ୱୟଂ ନାରାୟଣ ହୋଇଅଛୁ ଜାତ । ୨୮ ।
ଥବହେଲେ ଧନୁ ସ୍ତେ କଲ୍କି ଅସ୍ତୁତ୍ତ ।

ନଷ୍ଟସ୍ପେଂ ସୀତା ସ୍ପେହାକୁ ହୋଇଲା ପରାପତ । ୨୯ ।
ଏଥୁଂଣ ଶ୍ରୀରାମ ସାସ୍ୱକ କରେ ଧରି ।
ଦକ୍ଷିଣ ଭୁଜେ ଗୁଣ ଅଣିଲେ ଉଚ୍ଛୁଳ୍ପ । ୩୦ ।
ଧନୁ ବୋଇଲା ରୁ ଶୁଣ ରଘୁନାଥ ।
ହେଲେ ନାଶ ନ କର ଯେ ମୋହର ପୁରୁଷାର୍ଥ । ୩୧ ।
ଅକଳବଳ ନାମ, ବଳ ମୋର ପାଇଂ ।
ଛତିଗଣଙ୍କର ମୁଂ ଯେ ଆକର୍ଷ ନ ଯାଇ । ୩୨ ।
ନାନା ଦେଶର ନୃପତିଗଣେ ଗଲେ ଲଜ୍ଜ ।
ଈଶ୍ୱର ମୋ ଗୁଣ ପାରଇ ହାଦେ ମାଜ । ୩୩ ।
ରୁ ଏବେ ଧଇଲୁ ଧନ୍ୟ ତୋର ବଳ ।
ଯଶ ପଢ଼ରୁଷ ରହିଲା ରବ ଭଲ । ୩୪ ।
ମୁଲ୍ଇଂ ପ୍ରସନ୍ନ ଯେ ହୋଇଲି ଯଦ୍ଦୁଂ ତୋତେ ।
ତେଣୁ କରି ରାମ ଯେ ଆମଣ୍ଟିଲି ମୋତେ । ୩୫ ।
ସ୍ପେବେ ଥିର କରି ଯେ ଉଚ୍ଛୁଡ଼ ରଘୁବୀର ।
କରୁଣା ସାଗର ବାନା ଅଟଇ ତୋହର । ୩୬ ।
ଧନୁର କାକୁସ୍ଥ ବଚନ ରାମ ଶୁଣି ।
ହୃଦ କମଳ ମଧ୍ୟେ ହସନ୍ତି ରଘୁମଣି । ୩୭ ।
ବୋଲନ୍ତି ତରସ୍ତ କପାଂ ହୋଇ ରୂପ ।
କଥା ନ ବୁଝିଣ ପାଇ ଗରୁ ତାପ । ୩୮ ।
ତୋତେ ଆକର୍ଷଣ ଯେବେ ନ କରିବ ମୁହିଂ
ଲଜ୍ଜା ପାଇବ ନା ରାଜାଙ୍କର ଠାଇଁ । ୩୯ ।
ରୁ ଧନୁ ଧାର୍ମିକ ଯେ ଅଟୁ ଜ୍ଞାନବନ୍ତ ।
କାର୍ଯ୍ୟକାଳେ କମ୍ପା ନ ବୁଝୁ କଥାନ୍ତ । ୪୦ ।
ତୋତେ ଯେବେ ହର ଦକ୍ଷର ଯଜ୍ଞ ନାଶି
ଦେବଙ୍କୁ କୋପିଲ୍ଲ ଯେ କପିଳାପବାସୀ । ୪୧ ।
ସେ କାଳର ପ୍ରାପ୍ତକ ମଶିଲ୍ଲି କ ଆଜ ।

ଏ ଦେହ ଦେଇଣ ରୁ କର ପରକାର୍ଯ୍ୟ । ୪୬ ।
ସ୍ନେହସନେକ ଯୋଗ ଅଛଇ ତୋତେ ପୂର୍ବେ ।
ଯାହା ସେ ଲେଖନ କଣଚୁ ଦଇବେ । ୪୩ ।
ସ୍ନେତେକ ସମସ୍ତ ଯେ ତୋହର ଅଯୁ ଥଳ୍ପ ।
କାହାର ବୋଲେ ସେ ହୋଇବ ଆନ କଲ୍ପ । ୪୪ ।
ଯେସନେକ ପୂର୍ବେ ଯେ ଅଛଇ ନମାଣ ।
ସୀତା ବନ୍ଧ କାଳେ ହାଇବ ତୋର ପ୍ରାଣ । ୪୫ ।
ସେ କଥା ନକଟ ହୋଇଲା ଏବେ ଆସି
ମୂର୍ଖମତ ପଣେ ରୁ ବମନ ନୃହସି । ୪୬ ।
ସ୍ନେହସନେକ ବଚନେ ତବଦ ଶବ୍ଦସନ ।
ଗୁଣ ଦେଇ ଶ୍ରୀମ ଉଚ୍ଚୁତନ୍ତି ଘନ ଘନ । ୪୭ ।
ଦକ୍ଷିଣ କର୍ଣ୍ଣପାଏ ଆକର୍ଷିଣ ଆଣୁ ।
ଲଠି ପ୍ରାସ୍ତେକ ଯେ ହୋଇଲା ଶିବଧନୁ । ୪୮ ।
ଶ୍ରୀରାମ ବକ୍ରମ ମୂର୍ତ୍ତି ଦେଖି ସୀତା ।
ମନ ପ୍ରକୃତ ଏକ ଭଣ ଜନକ ଦୁହତା । ୪୯ ।
ନୟନର ସଙ୍ଗେ ପେଷିଲା ଏହାକୁ ।
ବସ୍ତରଇ ଏ ମୋହୋର ଅଟଇ ନଜ କାନ୍ତ । ୫୦ ।
ଧନୁର ଗୁଣ ସନ୍ଧଂ ଶ୍ରୀମ ଆମଣ୍ଟଲେ ।
ସୀତଙ୍କାର ଦୃଷ୍ଟି ତହିଁ ସଙ୍ଗେ ନେଲେ । ୫୧ ।
ସ୍ୱର୍ଗେ ସାଧୂ ସାଧୂ କରନ୍ତି ଦେବଗଣ ।
ଧନ୍ୟ ରୁ ଶ୍ରୀରାମ ତୋହର ଷତିପଣ । ୫୨ ।
ସଭାର ଯେ ଲୋକମାନେ ଆଶ୍ଚର୍ଯ୍ୟ ହୋନ୍ତି ଗୁହିଁ ।
କେ ବୋଲଇ କେବଣ ପୁଣ୍ୟ ସୃଷ୍ଟି ଏହାର ଆଇ । ୫୨ ।
ଅଶକ୍ୟ କଥା ଯାହା ଶୁଣିଲା ନ ଥିଲା ।
ନୟନେ ଦେଖିଲୁ ବୋଲ ଥୋକାଏ ବୋଇଲା । ୫୩ ।
ସ୍ନେଥୁ ଅନନ୍ତରେ ଶ୍ରୀରାମ ଧନୁ ଧର ।

ପୃଣ ପୂଣ ଗୁଣ ଯେ ଆଣନ୍ତ ଅଟାଗ । ୫୪ ।
ଆତଯାତ କରି ଆକର୍ଷିଲେ ଯନ୍ତୁଂ ।
କୋଦଣ୍ଡର ବଳ ରାମ କଳିଲେକ ତନ୍ତୁଂ । ୫୫ ।
ଅତନ୍ତୁଂ ଆମସ୍ଥନ୍ତ୍ରେ ନବଳ ଶରାସନ ।
ମଡ଼ ମଡ଼ ଶବଦ ଶୁଭଇ ଘନ ଘନ । ୫୬ ।
ମଧ୍ୟରୁ ଭାଜିଲା ଯେ ବେନି ଖଣ୍ଡ ହୋଇ ।
ଦେଖି ରାଜାମାନେ ଯେ ଗଲେକ ପଳାଇ । ୫୭ ।
ପୃଥିବୀ କମ୍ପିଲା ଯେ ହଲୁକା ପାତ ହୋଇ ।
ଆଦିତ୍ୟ ଦେବତା ଯେ ଭୟେଣ କ୍ଷଣେ ରହି । ୫୮ ।
ସପତ ସମୁଦ୍ର ଲହରୀ ଯେ ହୋଇଲାକ ଥିର ।
ସ୍ୱର୍ଗରେ ତରସ୍ତ ଯେ ହୋଇଲେ ସର୍ବ ସୁର । ୫୯ ।
ଡରେ ସ୍ତମ୍ଭୀଭୂତ ହୋଇଲା ସମୀର ।
ଏଡ଼େକ ପ୍ରାକର୍ମ ଯେ ଅଟଇ ଧନୁର । ୬୦ ।
ପର୍ଶୁରାମ ଶୁଣି ଗୁଡ଼ିଲା ନିଜ ଗର୍ବ ।
ବୋଇଲା କମ୍ପୂତ ମୋତେ ହୋଇଲା ଅପୂର୍ବ । ୬୧ ।

(ଦାଣ୍ଡି ରାମାୟଣ—ଆଦିକାଣ୍ଡ)

## ଗୁହକର ପଦାନ୍ତ

ରଥରେ ବସିଣ ରାମ ତଡ଼ତ ଯେ ଗଲେ ।
ସରସ୍ୱତୀ ନଦୀତୀରେ ତକ୍ଷଣେ ମିଳିଲେ । ୧ ।
ତାହା ପାରି ହୋଇ ଯେ ପଶିଲେ ଘୋରବନ ।
ଗଙ୍ଗାନଦୀ କୂଳେ ରାମ ହୋଇଲେ ତକ୍ଷଣ । ୨ ।
ଶୃଙ୍ଗବେର ପୁର ଅଟେ ତହିଁର ନିକଟ
ଗୃହ ନାମେ ଶବର ବସାଇ ତହିଁ ରାଷ୍ଟ୍ର । ୩ ।
ସେ ଶବର ଅଟଇ ଯେ ଶ୍ରୀରାମ ମଇଛ

ଶ୍ରୀରାମ ପାଶେ ମିଳିଲା ଆସି ସେ ଭୂଶତ । ୪ ।
ସଙ୍ଗରେ ବଳ ତାହାର ଯେଉଁ ଅପ୍ରମିତ
ବପଗ୍ରାତ ବେଶେ ଯେ ସେମାନେ ମେଳେଛନ୍ତ । ୫ ।
କର୍ଣ୍ଣରେ ତାଡ଼କ ଯେ ବନ୍ଧନ୍ତ ପ୍ରୁଞ୍ଜି ପ୍ରୁଞ୍ଜି
ଲଲାଟର ଶୋଭାକୁ ଯେ ଗୁଞ୍ଜମାଳ ଗଞ୍ଜି । ୬ ।
କେ ଖୋସା ପାଶରୁ କେହୁ ବାନ୍ଧେ ଜୁଡ଼ା ବାନ୍ଧ
କାହାର ବେଣୀ ଅଛଇ କେହୁ ମୁଣ୍ଡ ବାନ୍ଧ । ୭।
ପିଠି କଉଳ କାହାର ଲମ୍ବି ଅଛୁ ଛଟ
ମନ୍ଦାର ଫୁଲେ ସୁନ୍ଦର ଦଶେ କାହା ଜଟ । ୮ ।
କେ କାଣୀ କହୁଞ୍ଜମାନ ମାଳମାଳ ଭଣ
ଶରଧା ନମଗେନ୍ତ କେ କଟିରେ ଅଛୁ ଭଣ । ୯ ।
କାହାର ବାହୁରେ ଯେ ଟସର ରଙ୍ଗ ସୂତା
ଅଜଗର ଚର୍ମ କାହା ଗଳାରେ ପଇତା । ୧୦ ।
ନାକ ଫୋଡ଼ି ପିତଳ ମୁଦ ଭଣ ଅଛଇ
ଲୁହାଶିକୁଳି କାହାର ଭୂଜରେ ଶୋଭାପାଇ । ୧୧ ।
କାହାର ଶିରେ ଟୋପର ମୟୂରର କଣ୍ଠା
ଭାଲୁଙ୍କର ଚର୍ମେ କେହୁ ମଣ୍ଡି ଅଛୁ ଅଣ୍ଟା । ୧୨ ।
କାହା ଅଣ୍ଟାରେ ଘଣ୍ଟାମାଳ ଧ୍ୱନି କରଇ
କାହାର ଚରଣେ ପୁଣି ବାଜଇ ଘାଗୁଡ଼ି । ୧୩ ।
ଖାଙ୍କର କେଶ କାହାର ଚିମା ଚିମା ଆଖି
ଭଲ ଭଲ ଲୋକେ ଯେ ଡରନ୍ତ ତାଙ୍କୁ ଦେଖି । ୧୪ ।
କାହାର ନଶ ଆରକ ଦେହରେ ଲଗଇ
ପିଙ୍ଗଳ କେଶ ଦେଖିଲେ ମନେ ହାସ ପାଇ । ୧୫ ।
କାହା ନାକ ପ୍ରଡାରେ ବାହାର ଦଶେ ବାଳ
ଡହିଁ ଗୁନ୍ଥା ହୋଇ ପ୍ରାୟେ ଦଶେ-ଗୁଞ୍ଜାମାଳ । ୧୬ ।
ଦେହର ରୋମକୁ ଯେ ଦେଖିଣ ଭୟ କର

କାହାର କାହାର ସେଷା ବୁର୍ହିତ ନଯାଉ । ୧୭ ।
କାହାର ବାଳରେ କେହୁ ଜଟ ପାରୁଅଛୁ
ଖଣ୍ଡି ଖଣ୍ଡି କରି ପୋଡ଼ି ମାଂସ କେ ଖାଉଛୁ । ୧୮ ।
ବିଭୁତିରେ ବିଲେପନ କାହାର ଶରୀର
ଗବ ଭେଲେ କାହା ମୁଣ୍ଡବାଳ ଜରଜର । ୧୯ ।
କାହା ଶରୀରରେ ଶୋଭା ପାଏ ଇଟା ଗୁଣ୍ଡି
ରଙ୍ଗମାଟି ଯେହ୍ନ କେ ଶରୀର ହୋଏ ମଣ୍ଡି । ୨୦ ।
କେହୁ ଲଟା ଗୁଡ଼ିଆଇ ହୋଇଥାଇ ପାଏ
ହାଣ୍ଡି ଭଙ୍ଗା ତାଳକୁ ଯେ ଖଙ୍କିଣ ଥୋକାଏ । ୨୧ ।
ଧାମଣା କାଠର କେହୁ କରିଣ କୋଦଣ୍ଡ
ଗୋରୁଚମ ଦୃଢ଼ ଯେ ନାହାଳ ବେହ୍ନ କାଣ୍ଡ । ୨୨ ।
ଏକ କରେ କୁଠାର କେ ଧନୁ କରେ ଯେହ୍ନ
ଜେ କରେ ଯେହ୍ନ ଅଛଇ ଖଙ୍କି ତାଳ ବେହ୍ନ । ୨୩ ।
ମୂଷଳ ମୁଦ୍‌ଗର ଶର ଯାଠିକ ପ୍ରହାର
ଶିକଳ ଲଗାଇ କେହୁ କୁକୁରକୁ ଧରି । ୨୪ ।
ଅଣ୍ଟାର ମେଖଳା କେହୁ ଝିଙ୍କିଣ ଝିଙ୍କନ୍ତି
ଭୃଙ୍ଗୀରଭୁ କାଣ୍ଡ କେ କାଟିଣ ସଳଖନ୍ତି । ୨୫ ।
କାଉଗର କରଇ କେ ବାଟେ ଯାଉଁ ଯାଉଁ
ମାର ମାର ବୋଲି କେ ଯୁଝନ୍ତି ଧାଉଁ ଧାଉଁ । ୨୬ ।
ଦଶ ଲକ୍ଷ ପଦାତି ଯେଜଣ ଗୃହଦ୍ୱାର
ଦରଶନ କଲା ଆସି ଶ୍ରୀରାମ ପୟର । ୨୭ ।

(ଦାଣ୍ଡି ରାମାୟଣ—ଅଯୋଧ୍ୟା କାଣ୍ଡ)

## ମାୟା ଲଙ୍କସାଇଁ

ଏମନ୍ତ ସମୟରେ ଯେ ଲଙ୍କା ମସ୍ତପତ
ବସୁରଇ ଏ ସମସ୍ତେ ଆଣିବଇଁ ସତୀ । ୧ ।
ତେବେ ସିନା ରବତଳେ ଥିବ ମୋ ଖ୍ୟାତ
ଏ ସୀତା ସମାନ ଆଉ ନାହିଁ ରୂପବତୀ । ୨ ।
ଶ୍ରୀରାମ ଅଇଲେ ଆଉ ନୁହଇ ଯେ ନେଇ
ଏମନ୍ତେ ସମସ୍ତେ ମୁଁ ନେବଇଁ ବଇଦେହୀ । ୩ ।
କେମନ୍ତେ ବେଶରେ ଯିବ ଜାନକୀର କତ
ମୋତେ ପୁଣ ଦେଖିକରି ଖିତ କରେ ସତୀ । ୪ ।
ସାକ୍ଷାତେ ସାଧବୀ ଏ ଅଟଇ ସୁକୁମାରୀ
ଅସୁର ଦେଖିଲେ ପୁଣ ଭୟନ କ କରି । ୫ ।
ଏତେକ ପାଞ୍ଚ ମନରେ ରଥରୁ ଉତ୍ତରି
ରାକ୍ଷସ ରୂପ ଛାଡ଼ି ତପସ୍ୱୀ ରୂପ ଧରି । ୬ ।
ଦୁଇ କର ଦୁଇ ଯେ ଚରଣ ଏକ ମୁଖ
କ ଜାଣି ଦୁର୍ବାସା ରିଷିଙ୍କର ରୂପରେଖ । ୭ ।
ଶିରରେ ଜଟା ବାନ୍ଧି ଯେ ନାଗ ବନ୍ଧ କରି
କର୍ଣ୍ଣରେ ତମ୍ବା କୁଣ୍ଡଳ ଅଛୁ ବେକ ଭରି । ୮ ।
ସର୍ବାଙ୍ଗେ ବିଭୂତ କଣ୍ଠେ ତୁଳସୀର ମାଳ
ସ୍ଫଟିକର ଅଳଙ୍କାର ଶୋହେ ବାହୁମୂଳ । ୯ ।
କଷା ବସ୍ତ୍ର ପିନ୍ଧଣ ଦୋସର ମୃଗ ଛାଲ
ଗୋମସ୍ତ ପାଉଁଶ ଚଢା କଣ୍ଠ କପୋଳ । ୧୦ ।
ବେଦକାଣ୍ଡି ପୋଥିଗଣ୍ଡି କାଖ ମୂଳେ ଅଛୁ
କରେ କୁଶବଟୁ ଯେନ ବଣ୍ଡବାର ବର୍ତ୍ତି । ୧୧ ।
ଧୀରେ ଧୀରେ ଆସଇ ଯେ ଶଙ୍କା ମନେ କରି
ମଢିଅ ଦୁଆରେ ଉଭା ହୋଇ ବହ୍ମଚାରୀ । ୧୨ ।

ଋଗବେଦ ଉଚ୍ଚାର କଣ୍ଠେ ସ୍ୱରେ ଗାଇ
ଓଁକାର ଆଦ ଗାୟତ୍ରୀ ସାବତ୍ରୀ ପଢ଼ଇ । ୧୩ ।
ସୀତା ଶ୍ରବଣେ ଶୁଣି ସୁସ୍ୱର ବେଦଧ୍ୱନ
ବିସ୍ମରନ୍ତ କାହୁଁ ଯେ ଅଇଲେ ମହାମୁନ । ୧୪ ।
ଶ୍ରୀରାମଚନ୍ଦ୍ର ନାହାନ୍ତ କେ କରବ ପୂଜା
ଏମନ୍ତ ବିସ୍ମରଣ ଯେ ଅବନୀ ତନୁଜା । ୧୫ ।
ସମସ୍ୟା ନ କର ଭିତରକୁ ଉଠିଗଲେ
ହୋହର ଅଗ୍ନି ଭିତରେ ଯାଇଣ ପଶିଲେ । ୧୬ ।
ଏହାର ଗୃହରେ କ ମନୁଷ୍ୟ କେହୁ ନାହିଁ
ଏମନ୍ତ ବୋଲି କହନ୍ତେ ମାୟା ଲଙ୍କସାଇଁ । ୧୭ ।
ଶୁଣି ସୀତା ମଢିଅ ଦ୍ୱାରେଣ ଋଷହୋଇ
ଲଜରେ ଯେ ସତୀ ଅତ ଉହାଡରେ ରହି । ୧୮ ।
ସଧୀରେ ବୋଇଲେ ତୁମ୍ଭେ କେଉଁ ଦେଶ ଯତ
ରାବଣ ବୋଇଲ ମୁହିଁ ପୁଲସ୍ତିର ନାତ । ୧୯ ।
ନକଟରେ ଯହୁଁ ମୁଁ ଦେଖିଲି ତୁମ୍ଭ ମଠ
ଇଚ୍ଛା ବଳିଲ ଅଇଲି ତୁମ୍ଭର ନକଟ । ୨୦
ତେଣୁ କରୁ ପ୍ରାର୍ଥନା କରଇ ତୋତେ ମୁହିଁ
ମୋ ଘରେ ସ୍ୱାମୀ ନାହାନ୍ତ ବୋଲେ ବଇଦେହୀ । ୨୧ ।

(ଦାଣ୍ଡି ରାମାୟଣ—ଆରଣ୍ୟକ କାଣ୍ଡ)

## ବଳରାମ ଦାସ

( ୬ସ୍ବ ? )

### କାନ୍ତ ମୋର ଗଲେ ମୃଗ ମାରି

କୋଇଲି ! କାନ୍ତ ମୋର ଗଲେ ମୃଗ ମାରି ।
କପଟେ ରାବଣ ମୋତେ ନେଉଅଛୁ ଧରି । ଲୋ କୋଇଲି । ୧
କୋଇଲି ! ଖଳ ବୋଲି ଜାଣି ନ ପାରିଲି
ଖଳ ଯେ କନକ ମୃଗ ଦେଖି ଲୋଭ କଲି । ୨
କୋଇଲି ! ଗୁରୁ ଶ୍ରଦ୍ଧା ବଳିଲା ମୋହର
ବୋଲେ ମୁଁ କୋଇଲି, ରାମ ଏ କରୁଙ୍ଗୀ ମାର । ୩
କୋଇଲି ! ଘଟ ମୋ ଯା କହୁଛୁ ବିଧାତା
ଘୋର ବନେ ମୃଗ ମାରି ଗଲେ ମୋ କରତା । ୪
କୋଇଲି ! ଲକ୍ଷ୍ମଣଙ୍କୁ ଜଗାଇ ଦୁଆର
ନାରାଚରେ ମୃଗ ବିନ୍ଧି ଗଲେ ରଘୁବୀର । ୫
କୋଇଲି ! ଚାପ ଧରି ଗଲେ ରଘୁନାଥ
ଚାପେ ଶର ସନ୍ଧି ମୃଗ ପ୍ରାଣ କଲେ ହତ । ୬
କୋଇଲି ! ଛାଡ଼ିବାର ବେଳେ ମୃଗ ପ୍ରାଣ
ଛଦ୍ମରେ ଡାକିଲା ମୋତେ ରଖ ହେ ଲକ୍ଷ୍ମଣ । ୭
କୋଇଲି ! ଜାଣି ନ ପାରିଲି ଛନ୍ଦ ମୁହିଁ
ଯାଅ ବୋଲି ଲକ୍ଷ୍ମଣଙ୍କୁ ଦେଲି ପଠାଇ । ୮
କୋଇଲି ! ଝଟଡରେ ଯାଆନ୍ତେ ଲକ୍ଷ୍ମଣ
ଝାଡ଼ର ଭିତରେ ଲୁଚି ଥିଲାଟି ରାବଣ । ୯
କୋଇଲି ! ନିର୍ମଳ ତପସ୍ବୀ ରୂପ ଧରି
ନିର୍ଭୟେ ଆସିଲା ବସି ଦୁଆର ଆବୋରି । ୧୦
କୋଇଲି ! ଝେଙ୍କଣ କହଇ ମାୟା ଯତି
ଟେକ ମୋତେ ଫଳ ଭିକ୍ଷା ଦିଅ ମହାସତୀ । ୧୧

କୋଇଲି ! ଠକ କଥା ଜାଣି ନ ପାରିଲି
ଠକ ଘଡ କରେ ପୁଣି ଫଳ ଭିକ୍ଷା ଦେଲି । ୧୨
କୋଇଲି ! ଢଙ୍ଗର ରାବଣ ବଡ ଦୁଷ୍ଟ
ତାହାର ଭୁଜକୁ ମୋର ଧଇଲା ପାପିଷ୍ଠ । ୧୩
କୋଇଲି ! ଡକାଇ ସୁନ୍ଦିଲା ଆକାଶକୁ
ଛାଲେ ରଥ ଶୂନ୍ୟ ଆସି ମିଳିଲା ତାହାକୁ । ୧୪
କୋଇଲି ! ଆଣି ମୋତେ ରଥରେ ବସାଇ
ଆକାଶ ମାର୍ଗରେ ରଥ ନେଲା ତହୁଁ ବାହୁ । ୧୫

(କାନ୍ତ କୋଇଲି)

# ଜଗନ୍ନାଥ ଦାସ

(୧୬ଶ ଶତାବ୍ଦୀ)

## ଏଣୁ କପୋତ ଗୁରୁ ମୋର

ଶୁଣ ସ୍ୱଜନ ସାବଧାନେ । କପୋତ ପକ୍ଷୀ ଘୋରବନେ ।। ୧
କପୋତୀ ସଙ୍ଗେ ସ୍ନେହଭରେ । ଅରଣ୍ୟେ ଗୃହବାସ କରେ ।। ୨
କପୋତୀ ସଙ୍ଗେ ଭୋଗ ଅତେ । ଦୁହେଁ ସନ୍ଧିତ ମୋହ ପାଶେ ।। ୩
ନିତ୍ୟେ କରନ୍ତି କ୍ରୀଡ଼ାରଙ୍ଗ । ନିମିଷେ ନ ଛାଡ଼ନ୍ତି ସଙ୍ଗ ।। ୪
ଦୁହିଁଙ୍କ ଦୃଷ୍ଟି ଅଙ୍ଗେ ଅଙ୍ଗ । ବୃକ୍ଷିକ ବୃକ୍ଷି କରି ସଙ୍ଗ ।। ୫
ସ୍ନେହ ବଚନ ସଙ୍ଗ ମେଳେ । କାଳ ବଞ୍ଚନ୍ତି କୁତୂହଳେ ।। ୬
ସଙ୍ଗ ବିଚ୍ଛେଦ ପଲ ମାତ୍ରେ । କେବେହେଁ ନ ଦେଖନ୍ତି ନେତ୍ରେ ।। ୭
ଏକତ୍ର ଭୋଜନ ଶୟନେ । ଏ ରୂପେ ବିହରନ୍ତି ବନେ ।। ୮
କପୋତୀ ଚିତ୍ତେ ଯାହା ସ୍ମରେ । କପୋତ ଆଣଇ ତତ୍ପରେ ।। ୯
ସେବକ ପ୍ରାୟେ ଅଣିଦେଇ । ଯାହା ତା ଘରଣୀ ମାଗଇ ।। ୧୦
ଏମନ୍ତେ କେତେ ଦିନ ଗଲା । କପୋତୀ ଗର୍ଭ ଉପୁଜିଲା ।। ୧୧
କେତେକ ଦିନ ଗର୍ଭେ ରହି । ଜନ୍ମ ହୋଇଲେ ଡିମ୍ବ ଦୁଇ ।। ୧୨

ପକ୍ଷୀ ପକ୍ଷିଣୀ ସ୍ନେହବଶେ । ତମ୍ଭ ଭାପନ୍ତି ପୁତ୍ର ଆଶେ ।। ୧୩
ପୁଣିହିଁ କେତେ ଦିନ ଅନ୍ତେ । ଫୁଟି ବାଳକ ହୃଦୁକନ୍ତେ ।। ୧୪
ଅତି କୋମଳ ବେନି ଭାଇେ । ଦେଖି ସାନନ୍ଦ ବାପମାଏ ।। ୧୫
ସଭ୍ରମ ଚଞ୍ଚେ ସେ କପୋତ୍ତି । ନରତେ ବାଳକ ପୋଷନ୍ତି ।। ୧୬
ପୁତ୍ରଙ୍କ କୋମଳ ବଚନ । ଶୁଣନ୍ତେ ମୁଦ୍ରିତ ଲୋଚନ ।। ୧୭
ପତଙ୍ଗ ଦେଇଣ ଆହାର । ପୋଷନ୍ତି ହୋଇ ସ୍ନେହଭର ।। ୧୮
ଏମନ୍ତେ ବେନି ଶିଶୁ ପାଳ । ପକ୍ଷୀ ସ୍ୱଭାବେ ପ୍ରେମାବଳୀ ।। ୧୯
ହଠନ୍ତି ବେନି ପୁତ୍ର ଦେହେ । ଦେଖି ସାନନ୍ଦ ବାପମାଏ ।। ୨୦
ପାଳନ୍ତି ଅତି ସ୍ନେହ ଭରେ । ବାଳକ କୋମଳ ଆହାରେ ।। ୨୧
କଷ୍ଟର ମାସ୍ୱାବଲେ ପକ୍ଷୀ । ପାଳନ୍ତି କପୋତ କପୋତ୍ତି ।। ୨୨
ଆହାର ଅର୍ଥେ ଏକ ଦିନେ । ବନେ ପଶିଲେ ବେନି ଜନେ ।। ୨୩
ଖୋଜନ୍ତି କୋମଳ ଆହାର । ଏମନ୍ତେ ଶୁଣ ନୃପବର ।। ୨୪
ପକ୍ଷୀ ବାଳକ ନିଜସ୍ଥାନେ । ବ୍ୟାଧ ମିଳନ୍ତି ଘୋରବନେ ।। ୨୫
ବୃକ୍ଷ ଉପର ବେନି ବାଳେ । ବନେ ଚରନ୍ତି ବୃକ୍ଷମୂଳେ ।। ୨୬
ଶବର ଦେଖି ତାହା ବେଗେ । ଜାଲ ପାତିଲା ଶ୍ରୀଘ୍ରବେଗେ ।। ୨୭
ଉପରେ ବାନ୍ଧିଲା ଦଉଡ଼ି । ପକ୍ଷୀଙ୍କି ଅଣିଲା ଘଉଡ଼ି ।। ୨୮
ଆହାର ଦେଇ ଜାଲତଳେ । ଅନ୍ତରେ ବସିଲା ନଗ୍ରେଳେ ।। ୨୯
ପକ୍ଷୀ ବାଳକ ଭସ୍ମ ପାଇ । ବେଗେ ପଶିଲେ ଜାଲେ ଯାଇ ।। ୩୦
ଆହାର ଦେଖିଲେ ନୟନେ । ପଡ଼ିଲେ ଲୁବ୍ଧକ ବନ୍ଧନେ ।। ୩୧
ତତ୍‌କ୍ଷଣେ କପୋତ କପୋତ୍ତି । ଆସି ମିଳିଲେ ବୃକ୍ଷକଟି ।। ୩୨
ତୁଣ୍ଡେ ଆହାର ଦୁଡ଼େ ଧରି । ଲୋଡ଼ନ୍ତି ବୃକ୍ଷେ ଅନୁସରି ।। ୩୩
ନ ଦେଖି ସୁହିଁ ଦଶ ଦିଗେ । ପୁଣି ଦେଖନ୍ତି ଭୂମିଭାଗେ ।। ୩୪
ବନ୍ଧନ ଜାଲ ମଧ୍ୟେ ଦୁହେଁ । ବେନି ବାଳକ ଧଡ଼ ପଡ଼େ ।। ୩୫
ଚଡ଼ନ୍ତି ପ୍ରାଣେ ଚକଳେ । ନାଦ କରନ୍ତି କୋଳାହଳେ ।। ୩୬
ଦେଖି କପୋତ୍ତି ଦୁଃଖଚଖେ । ଭୂମିରେ ପଡ଼ି ମୋହଗତେ ।। ୩୭
ବାଳକ ଦେଖି ବୃକ୍ଷ ତଳେ । କାନ୍ଦଇ ଜୀବନ ବଳକଳେ । ୩୮

ବାଳକ ସ୍ନେହଭର ଆଶେ । ତେଣୁ ପଡ଼ିଲା ଜାଲ ପାଶେ ॥ ୩୯
ସୁତଙ୍କ ମୁଖେ ମୁଖ ଦେଇ । ଦେଖି କପୋତ ବିଚାରଇ ॥ ୪୦
ମୁଁ ଏବେ ଏକା ବୃକ୍ଷେ ଥାଇ । କେମନ୍ତେ ଧରିବଟି ଦେହୀ ॥ ୪୧
ଏମନ୍ତେ କରଇ ରୋଦନ । କ୍ଷଣ କ୍ଷଣକେ ଅଚେତନ ॥ ୪୨
ପଡ଼ଇ ପୁଣ ପୁଣ ତଳେ । ବସଇ ପୁଣି ବୃକ୍ଷଡାଳେ ॥ ୪୩
ପ୍ରାଣୁ ଅଧିକ ମୋର ସୁତେ । ପଡ଼ିଲେ ଶବର ଆସୁତେ । ୪୪
ପତ୍ନୀ ପଡ଼ିଲା ଜାଲ ମଧ୍ୟେ । ପ୍ରାଣ ଧରିବି କେଉଁ ସାଧେ ॥ ୪୫
ପତ୍ନୀ ମୋହର ପ୍ରାଣସଖା । ସେ ମୋତେ ନରଖିଲା ଏକା ॥ ୪୬
ତାହାର ଗୁଣ ଅଛି ଯେତେ । ତେବେ ଧରିବି ମୁଁ କେମନ୍ତେ ॥ ୪୭
ସେ ମୋର ଜୀବନ ସୁବର୍ତ୍ତୀ । ତା ବିନୁ ମୋର କିବା ଗତି ॥ ୪୮
ବିଧି ହୋଇଲା ବାମ ମୋର । ଆପଦେ ବୁଡ଼ିଲା ମୋ ଘର । ୪୯
ଏତେ କଷଣେ ବନେ ଥାଇ । ମୋ ପ୍ରାଣ ରହି ନ ଯୋଗାଇ ॥ ୫୦
ଏ ବନେ ଘୋର ଗୃହୀ ପଣେ । ମୋ ଜନ୍ମ ଗଲା ଅକାରଣେ ॥ ୫୧
ଗୃହ ଆଶ୍ରମେ ମୋ ପୀରତି । କାମେ ନ ପୂରିଲା ମୋ ମତି ॥ ୫୨
ବିଧାତା ମୋତେ ବାମ ହୁଏ । ବନ୍ଧନେ ପଡ଼ିଲେ ମୋ ପୁଏ ॥ ୫୩
ଏ ପତିବ୍ରତା ଶିରୋମଣି । ମୋହର ପ୍ରାଣେ ଘରଣୀ ॥ ୫୪
ଆହାର ପାଣି ଯେତେବେଳେ । ମୁହିଁ ଭୁଞ୍ଜଇ ବୃକ୍ଷଡାଳେ ॥ ୫୫
ତେବେ ସେ ଭୁଞ୍ଜେ ମୋ ଘରଣୀ । ମୋ ବିନୁ ନ ଭକ୍ଷଇ ପାଣି ॥ ୫୬
ସେ ମୋତେ ଛାଡ଼ି ଗୃହ ମଧ୍ୟେ । ସ୍ୱର୍ଗେ ଚଳିଲା ମନସାଧେ ॥ ୫୭
ସକଳ ସୁଖ ମୋର ଗଲା । ପୁତ୍ର ସଙ୍ଗତେ ପତ୍ନୀ ମଲା ॥ ୫୮
ଏମନ୍ତ ବୋଇଲା ବିଳାପେ ॥ ପୁଣି କାନ୍ଦଇ ମନସ୍ତାପେ ॥ ୫୯
ଜୀବନ ନ ପାରିଲା ଧରି ॥ ଜାଲେ ପଡ଼ିଲା ହାହାକରି । ୬୦
ଦେଖି ଶବର ତୋଷମନ ॥ ପିଞ୍ଜରେ ଥୋଇଲା ବନ୍ଧନ ॥ ୬୧
କପୋତ କପୋତୀ ବାଳକ ॥ ଘେନିଣ ଚଳଇ ଲୁବ୍ଧକ ॥ ୬୨
ବେଗେ ମିଳିଲା ନିଜ ପୁରେ ॥ ଶୁଣ ସୁଜନ ତୋଷଭରେ ॥ ୬୩
ଏ ରୂପେ ସ୍ନେହେ ଅବଲମ୍ବୀ ॥ ସଂସାରେ ବନ୍ଧନ କୁଟୁମ୍ବୀ ॥ ୬୪

ଦୁଃଖ ସହଇ ଏ ଶରୀରେ ॥ ନିତ୍ୟ କୁଟୁମ୍ବ ପୋଷିବାରେ ॥ ୬୫
ନରକେ ଅକୂଳ ହୃଦୟ ॥ ଏଣୁ ବୋଲାଇ ଦୁଃଖମୟ ॥ ୬୬
ଧର୍ମେ ବର୍ଜିତ କଳେବର ॥ ମଜ୍ଜଇ ଏ ଘୋର ସଂସାର ୬୭ ॥
ତୁ ଏବେ ବୁଝି ମୋ ବଚନ ॥ ହେ ରାଜା ସ୍ଥିରକର ମନ ॥ ୬୮
ଦେଖ ମନୁଷ୍ୟ ଦେହ ମୋର ॥ କେବଳ ମୁକତିର ଦ୍ୱାର ॥ ୬୯
ଏ ଦେହ ପାଇ ମହୀତଳେ ॥ ହେଲେ ତରନ୍ତି ଭବଜଳେ ॥ ୭୦
ଦୁର୍ଲ୍ଲଭ ପାଇ ଏ ଶରୀର ॥ କୁଟୁମ୍ବେ ଦୃଢ଼ ମତ ଯାର ॥ ୭୧
ଧନ ବଞ୍ଚଇ ଦୁଃଖେ ସୁଖେ ॥ ଅନ୍ତେ ପଡ଼ଇ କୁମ୍ଭୀପାକେ ॥ ୭୨
ଏ ଭାବେ ବୁଝିଲି ସଂସାର ॥ ଏଣୁ କପୋତ ଗୁରୁ ମୋର ॥ ୭୩

(୧୧ଶ ସ୍କନ୍ଧ—୮ମ ଅଧ୍ୟାୟ)

## ବର୍ଷା

ଏବେ ଗ୍ରୀଷମ କାଳ ଗଲା । ବରଷା ଋତୁ ପ୍ରକାଶିଲା । ୧
ସକଳ ଋତୁଙ୍କର ସାର । ଶସ୍ୟ ସମ୍ପଦ ମଞ୍ଜୁ ପୁର । ୨
ମେଘେ ମିଳିଲେ ଶୂନ୍ୟପଥେ । ବିଜୁଳି ଶବଦ ସଙ୍ଗତେ । ୩
ଭୂମି, ସାଗର, ଶୂନ୍ୟେ ବ୍ୟାପି । ନୀଳ ଜୀମୂତ ବଣ୍ତ୍ରରୂପୀ । ୪
ଯେମନ୍ତେ ନବତ୍ୱ ଆକାଶ । ଭୂମିର ରସ ଅଷ୍ଟମାସ । ୫
ଆଦିତ୍ୟ କରିଥିଲା ଗ୍ରାସ । ସେ ତାପ ନଳ ମେଘନାଶ । ୬
ମହୀମଣ୍ଡଳ ଦୁଃଖ ଗୃହ୍ଣି । ଜଳ ଗୁଡ଼ିଲା ତୋଷ ହୋଇ । ୭
ଘୋର ଶବଦେ ମେଘମାଳ । ଗର୍ଜିଣ ବରଷନ୍ତି ଜଳ । ୮
ପ୍ରାଣୀ ଜୀବନ ଜଳ ରାଶି । କରୁଣା ଚିତ୍ତରେ ବରଷି । ୯
ପୃଥିବୀ ରବିତପ୍ତ ଗ୍ରାସେ । ତାପିତ ଥିଲା ଅଷ୍ଟମାସେ । ୧୦
ଜଳ ପାଇଲେ ତୋଷ ଚିତ୍ତେ । ତପସ୍ୱୀ ଜନଙ୍କର ମତେ । ୧୧
ତପସ୍ୟା ଫଳ ଯେମନ୍ତେ ପାଇ । ଭୁଞ୍ଜନ୍ତି ଅତି ସୁଖୀ ହୋଇ । ୧୨
ଖଦ୍ୟୋତ କୀଟ ନିଶାମୁଖେ । ଜଗତ ଆବୋରିଲେ ସୁଖେ । ୧୩
ପାଷାଣ୍ଡେ ଯେମନ୍ତେ କଳିଯୁଗେ । ବେଦ ନିନ୍ଦନ୍ତି ଯୋଗ ମାର୍ଗେ । ୧୪

ମଣ୍ଡୂକେ ମେଘ ନାଦ ଶୁଣି । ଗର୍ଜନ୍ତି ଆବୋରଣ ପାଣି । ୧୫
ଅଳପ ନଦୀଏ ପୂରଲେ । ଲଙ୍ଘନ୍ତି ମତେ ଉଚ୍ଛୁଳଲେ । ୧୬
ନାନା ପ୍ରକାରେ ଶସ୍ୟଶ୍ରେଣୀ । ଏଣେ ପୂରତ ମହୀ ଧଣି । ୧୭
ଛତ୍ରୁ ଯେ ଛତ୍ର ପାସୁ ହୋଇ । ସଜାର ପ୍ରାପ୍ତେ ଦଣେ ମହୀ । ୧୮
ଶସ୍ୟ ସଂପଦ କ୍ଷେତ୍ର ମତେ । ଦେଖି ସାନନ୍ଦ ପ୍ରାଣ ଚତ୍ତେ । ୧୯
ଅଶେଷ ଜୀବ ଜଳ ସ୍ଥଳେ । ଜଳ ଭକ୍ଷିଲେ ବୃତୂହଳେ । ୨୦
ଧନକୁ ଧନ ପୁଷ୍ଟ ହୋଇ । ହରି ସେବକ ପ୍ରାପ୍ତେ ଦେହି । ୨୧
ସମୁଦ୍ର ନଦୀଙ୍କର ମେଳ । ଲେଉଡ଼ି ପାଉଲେ ପୂର୍ଣ୍ଣ ଜଳ । ୨୨
ଅଳପ ଯୋଗୀଙ୍କର ଚିତ୍ତ । ଯେସନ୍ତେ ଚଞ୍ଚଳ ଗୁଣେ ଗ୍ରସ୍ତ । ୨୩
ପର୍ବତେ ଜଳଧାରଚୟ । ପଡ଼ନ୍ତେ ନ କରନ୍ତି ଭୟ । ୨୪
କୃଷ୍ଣ ଆଶ୍ରିତ ପ୍ରାଣୀ ଯେସନ୍ତେ । ଦୁଃଖିତ ନୁହନ୍ତି ବ୍ୟସନେ । ୨୫
ପଥ ହୋଇଲେ ତୃଣମୟ । ବାଟର ନ ମିଳିଲା ଥୟ । ୨୬
ବ୍ରାହ୍ମଣ ବେଦ ପାଶୋରିଲେ । ଯେମନ୍ତ ହୁନ୍ତି ପଶୁରଲେ । ୨୭
ଜଗତ ବନ୍ଧୁ ମେଘମାଳେ । ବିଜୁଳି ନ ରହେ ନିଶ୍ଚଳେ । ୨୮
ଗୁଣୀ ପ୍ରବୁଷଙ୍କର ଗୃଳେ । ବିଟପୀ ମନ ଯେସନ୍ତେ ଟଳେ । ୨୯
ଶବଦ ଗୃଳେ ଇନ୍ଦ୍ର ଚାପ । ଗଗନେ ଶୋଭି ସାତ ରୂପ । ୩୦
ଗର୍ଜନ୍ତି ଗୁଣେ ହୋଇ ଯୁକ୍ତ । ନିର୍ଗୁଣ ପ୍ରବୁଷ ଯେମନ୍ତ । ୩୧
ଚନ୍ଦ୍ର ନ ଦିଶେ ମେଘାଛନ୍ନେ । ମିଥ୍ୟା ବଚନେ ସତ୍ୟ ଯେସନ୍ତେ । ୩୨
ମୟୂରେ ଗିରି ପୃଷ୍ଠେ ଥାଇ । ନୃତ୍ୟ କରନ୍ତି ମେଘ ଚାହିଁ । ୩୩
ଅତିଥି ଦେଖି ଗୃହସ୍ଥନେ । ଯେସନେ ତୋଷ ହୁଅନ୍ତି ମନେ । ୩୪
ବୃକ୍ଷଙ୍କ ମୂଳେ ଜଳସିଞ୍ଚି । ଫଳ ପଲ୍ଲବ ଯେ ପ୍ରଶଂସି । ୩୫
ତପର ଅନ୍ତେ ଫଳ ପାଇ । ତପସ୍ୱୀ ଯେସନ୍ତେ ତୃଷ୍ଟ ହୋଇ । ୩୬
ବରଷା ଦେଖି ନରନାରୀ । ଯେସନେ ଗୃହ ବାସ କରି । ୩୭
ଜଳ ପ୍ରବାହେ ବନ୍ଧ ଭାଙ୍ଗେ । ଯେସନ୍ତେ ପାଷାଣ୍ଡେ ବେଦମାର୍ଗେ । ୩୮
ମେଘ ପବନ ଯୋଗେ ବେଢି । ଅମୃତ ପ୍ରାପ୍ତ ଜଳ ଗ୍ରହି । ୩୯
ନୃପଙ୍କ ବୋଲେ ମନ୍ତ୍ରୀପାଳେ । ଯେସନ୍ତେ ଧଅନ୍ତି ଦାନ କାଳେ । ୪୦

ବରଷା ରତେ ବନ ଭୂଇଁ । ଖର୍ଜୁର ଜମ୍ବୁ ମସ୍ତ ହୋଇ । ୪୧
ଗୋରୁ ଗୋପାଳ ସଙ୍ଗେ ଘେନି । ବନେ ବିଜୟ ଅନ୍ତର୍ଯ୍ୟାମୀ । ୪୨
ଗାଈଏ ତୃଣଭର ହୋଇ । ଉର୍ଦ୍ଧମେ ନ ପାରନ୍ତି ଯାଇ । ୪୩
କୃଷ୍ଣର ଡ଼ାକେ ଶୁଣି କର୍ଣ୍ଣେ । ନିକଟେ ମିଳିଲେ ବତ୍ସନେ । ୪୪
ବନରେ ଯେତେ ଜନ୍ତୁ ଥିଲେ । ଗିରି କାନନ ଆଶ୍ରେ ଗଲେ । ୪୫
ସଜଳ ବୃକ୍ଷେ ମଧୁ ଦ୍ରବ୍ୟ । ବରଷା ଋତୁର ସ୍ୱଭାବ । ୪୬
ଗାଈ ଚରନ୍ତି ବୃନ୍ଦାବନ । ଭକ୍ଷନ୍ତି କନ୍ଦମୂଳମାନ । ୪୭
ବସନ୍ତି ବୃକ୍ଷଙ୍କର ତଳେ । ଦିନ ହରନ୍ତି ବୃଷ୍ଟି ବେଳେ । ୪୮
ଦଧି ଅନ୍ନହିଁ ଘରୁ ଆଣି । ଜଳ ନିକଟେ ଚକ୍ରପାଣି । ୪୯
ଗୋପାଳ ମେଳେ ଚେନ ଖାଇ । ଭୁଞ୍ଜନ୍ତି ଶିଳାପରେ ଥୋଇ । ୫୦
କୋମଳ ଘାସେ ପଶୁମାନେ । ଶୁଅନ୍ତି ନିଦ୍ରିତ ଲୋଚନେ । ୫୧

(ଭାଗବତ-୧୦ମ ସ୍କନ୍ଧ, ୧୧ଶ ଅଧ୍ୟାୟ)

## ଭାଗବତ ବଚନ

ଲୀଳା ବିଧୃତ କଳେବର । ଦେବ ମାନବେ ଅଗୋଚର ।। ୧
ଦୁଷ୍ଟ ଦନୁଜ ଗଣ ମାରି । ମେଦିନୀ ଭାର ହେଲେ ହରି ।। ୨
କୁରୁ ପାଣ୍ଡବ ମଧ୍ୟେ ହରି । ମାୟା କନ୍ଦଳେ ଭେଦ କରି ।। ୩
ଭୀମକୁ ବିଷ ଲଡ଼ୁ ଦେଇ । ଜତୁର ଘରେ ଅଗ୍ନି ଦାହ ।। ୪
ଭାର ନିବାରି ଭଗବାନ । ଅନ୍ତେ ଚଳିଲେ ନିଜ ସ୍ଥାନ ।। ୫
ଏ ଯେ ମନୁଷ୍ୟ କଳେବର । ଦୁର୍ଲ୍ଲଭ କ୍ଷଣକେ ଭଙ୍ଗୁର ।। ୬
ଦେହ ସମ୍ପଦ ଦାର ସୁତ । ଏଣେ ମୋହିତ ଯାର ଚିତ୍ତ ।। ୭
ମାୟାରେ ମନ ଅଗୋଚର । ଭ୍ରମଇ ଅଶେଷ ପ୍ରକାର ।। ୮
ଏକ ନ ଥିଲେ କଣା ହୋଇ । ଦୁଇ ନ ଥିଲେ ଅନ୍ଧ ହୋଇ ।। ୯
ଦୁର୍ଗମ ପଥ 'ଏ ଭଜନ । ତତ୍ତ୍ୱେ ଭଜିଲେ ଯୋଗୀଜନ ।। ୧୦

ଅମୃତ ଶ୍ରବଣସ୍ଥ ବଚନ । କହୁ ତୋଷିବ ପ୍ରାଣୀ ମନ ॥ ୧୧
ସକଳ ଦେହେ ନାରାୟଣ । ବସନ୍ତି ଅନାଦ୍ୟ କାରଣ ॥ ୧୨
ଏ ଜୀବ ମାୟା ଦେହେ ଥାଇ । ପ୍ରକୃତି ରୂପେ ସମ୍ଭବଇ ॥ ୧୩
ସେ ରୂପେ ବଶ୍ୟ ପୁରୁଷ । ଈଶ୍ୱର ମାୟାରେ ପ୍ରବେଶ ॥ ୧୪
ଜୀବଙ୍କୁ ଭୁଞ୍ଜାଇ ଭୁଞ୍ଜଇ । ଅନ୍ତରେ ସାକ୍ଷୀରୂପେ ଥାଇ ॥ ୧୫
ଦୁଃଖେ ଅର୍ଜିତ ଯେତେ ଧନ । ସେ ନୁହେଁ ସୁଖେ ପ୍ରୟୋଜନ ॥ ୧୬
ସୁତ ତନୟ ଦାସୀ ଦାସ । ଏ ସର୍ବ ବିକଳ୍ପ ପ୍ରକାଶ ॥ ୧୭
କ୍ରମେ ସେ ଭୋଗ କ୍ଷୀଣ ହୋଇ । କର୍ମ ସରଲେ ଭୋଗ କାଢ଼ି ॥ ୧୮
ପରମ ଶାସ୍ତ୍ର ଭାଗବତ । ଅଭ୍ୟାସ କରୁଥିବ ନିତ୍ୟ ॥ ୧୯
ଅନ୍ୟଶାସ୍ତ୍ରର ଗୁଣଦୋଷ । ମୁଖେ ନ କରିବ ପ୍ରକାଶ ॥ ୨୦
ସତ୍ୟ କହିବ ନିତ୍ୟ ଶୁଣେ । କେବେହେଁ ନଥିବ ପାଷାଣ୍ଡେ ॥ ୨୧
ଯେ ଅବା ସୁତ ଦାସ ଧନ । କୃଷ୍ଣେ କରିବ ସମର୍ପଣ ॥ ୨୨
ନିର୍ଗୁଣ ନିରଞ୍ଜନ ହରି । ଧରଣୀ ତଳେ ଦେହ ଧରି ॥ ୨୩
ତ୍ରିଭୁବନ ଦେହ ଧରେ । ସୃଷ୍ଟି ପାଳନ ଅନ୍ତ କରେ ॥ ୨୪
ଧନ ତନୟ ସୁଖ ଆଶେ । ଶରୀର ଅନ୍ତେ ନର୍କେ ପଶେ ॥ ୨୫
ସକଳ ଜୀବ ମଧ୍ୟେ ହରି । ବସେ ଅନନ୍ତ ରୂପ ଧରି ॥ ୨୬
ଧନ ଅର୍ଜନେ ଧର୍ମ କରି । ଧର୍ମେ ପ୍ରାପତ ନରହରି । ୨୭
କେବଳ ଯଜ୍ଞେ ପଶୁ ବଧ । ଅନ୍ୟତ୍ର ବଧନ୍ତି ପ୍ରମାଦ ॥ ୨୮
ସକଳ ଜୀବେ ନର ହରି । ବସଇ ଆତ୍ମାରୂପ ଧରି ॥ ୨୯
ଇଚ୍ଛାନୁସାରେ ଅବତରେ । ସ୍ୱଭାବେ ନାନା ରୂପ ଧରେ ॥ ୩୦
ଯେ ନାଥ ତୁମ୍ଭର ମହିମା । କେ କହିପାରେ ଗୁଣ ସୀମା ॥ ୩୧
ଧନ ନାପଣ୍ଡ୍ୟ ସେବା ଫଳେ । କବା ଅସାଧ୍ୟ ମସ୍ତତଳେ ॥ ୩୨
ଏ ଘୋର କଳିଯୁଗ ଗତ । ଲୋକେ ହୋଇବେ ଦୁଷ୍ଟମତ ॥ ୩୩
ଅଗମ୍ୟ କରିବେ ଗମନ । ନିନ୍ଦିବେ ନିଗମ ବଚନ ॥ ୩୪
କେଣୁ ହୋଇବେ ଅଳ୍ପାୟୁଷ । ପାପେ ସକଳେ ଯିବେ ନାଶ ॥ ୩୫
ଆତ୍ମା କୌଶଳେ ସର୍ବସିଦ୍ଧି । ତରଇ ସଂସାର ଜଳଧି ॥ ୩୬

କର୍ମ ଆଦର ସହେ ଦୁଃଖ । କେବେହେଁ ନୁହଇ ବିମୁଖ ।। ୩୭
ଧନ୍ୟ ଜୀବନ ଏ ଜଗତେ । ଯେ ପ୍ରାଣ ଧରେ ପ୍ରାଣୀହିତେ ।। ୩୮
ଆହାରେ ଭଲମନ୍ଦ ନାହିଁ । ଯେ ସ୍ଥାନେ ଯେମନ୍ତେ ମିଳଇ ।। ୩୯
କର୍ମ କଷଣ ଦେହ ସହେ । ଅରଣ୍ୟେ ଅଜଗର ପ୍ରାୟେ ।। ୪୦
ସମ ମଣଇ ଦୁଃଖ ସୁଖ । ଅନ୍ତରେ ନ ହୋଇ ବିମୁଖ ।। ୪୧
ଧନେ ମୋ ନାହିଁ ପ୍ରୟୋଜନ । ତେଣୁ ଦରିଦ୍ର ମୋ ଜୀବନ ।। ୪୨
ମର୍ତ୍ତ୍ୟ ମଣ୍ଡଳେ ଦେହ ବହି । ଦେବତା ହୋଇଲେ ମରଇ ।। ୪୩
ଯହିଁ ଅନେକ ସଙ୍ଗ ମିଳି । ଅବଶ୍ୟ ଉପୁଜଇ କଳି ।। ୪୪
ଦୁର୍ଲଭେ ମନୁଷ୍ୟ ଶରୀର । ସ୍ୱଭାବେ ଅନିତ୍ୟ ସଂସାର ।। ୪୫
କର୍ମ କରଣେ ଫଳ ପାଇ । ପ୍ରାଣୀ ତା ଅବଶ୍ୟ ଭୁଞ୍ଜଇ ।। ୪୬
ବୁଦ୍ଧି ବିବେକ ଜ୍ଞାନ ବଳେ । ମରଣ ଜିଣିପାରେ ହେଲେ ।। ୪୭
ଏକଇ ବୃକ୍ଷେ ହଂସ ଦୁଇ । ବସନ୍ତି ପ୍ରିୟ ଭାବ ବହି ।। ୪୮
କ୍ଷୁଧେନୁ ବାନ୍ଧି ଗୃହେ ଯେତ୍ନେ । ନିରଣ ହୋନ୍ତି କ୍ଷୀରପାନେ ।। ୪୯
ଯେବା ମିଳିବ ଅକସ୍ମାତେ । ଆନନ୍ଦେ ସମର୍ପିବ ମୋତେ ।। ୫୦
ଦେଖ ଏ ଯେତେ ନଦ ନଦୀ । ପ୍ରବାହେ ମିଳନ୍ତି ଜଳଧି ।। ୫୧
ଲବଣ ଜଳେ ସେ ମିଶନ୍ତି । ସ୍ୱନାମ ଗୁଣ ପାଶୋରନ୍ତି ।। ୫୨
ଯାହାକୁ ଯେମନ୍ତ ଦିଶଇ । ସେ ଭାବେ ବେଦ ଅଭ୍ୟାସଇ ।। ୫୩
ସକଳ ସିଦ୍ଧି ଗୁଣେ ମୁହିଁ । ମୋ ଭନ୍ତୁଁ ଅନ୍ୟ କେହି ନାହିଁ ।। ୫୪
ସକଳ ଜୀବେ ଥିବ ଦୟା । କେବେହେଁ ନ କରିବ ମାୟା ।। ୫୫
ମୋର ବଚନ ଅନୁସର । ଏଭବ ଜଳୁଁ ହେବୁ ପାର ।। ୫୬
ସେ ଧର୍ମ କହୁପାରୁ ରୁହ । ତୋ ବିନୁ କର୍ତ୍ତାବନ୍ତା ନାହିଁ ।। ୫୭
ସକଳ ଜୀବନ ଥିବେ ଦୟା । କେବେହେଁ ନ କରିବୁ ମାୟା ।। ୫୮
ଦାନହିଁ ଦେଉଥିବ ନିତ୍ୟେ । ଲୋଭ ନକର କଦାଚିତେ ।। ୫୯
ଚଞ୍ଚଳ ମନ ସ୍ଥିର କର । ଅନିତ୍ୟ ଅସତ୍ୟ ଶରୀର ।। ୬୦
ପତ୍ନୀ ନିବେଶି ପୁତ୍ର ପାଶେ । ଅଥବା ଚଳିବ ସନ୍ୟାସେ ।। ୬୧
ମୋ ଭାବେ ଘାର ଚନ୍ତ ନାହିଁ । ସଂସାରେ ଦରିଦ୍ରଟି ସେହି ।। ୬୨

ଆପଣା ହସ୍ତେ କଲ୍ପା ଛେଦ । କେ ତାର ଅଛୁ ପ୍ରତିବାଦ ।। ୬୩
ଅନେକ ଜନ୍ମ ଉପଜିଲେ । ମନୁଷ୍ୟ ଜନ୍ମ ମସ୍ତାଇଲେ ।। ୬୪
ବିଶ୍ୱ ପ୍ରକାଶ ହେଉ ମୁହିଁ । ମୁଁ କାଳ ରୂପେ ସଂହାରଇ ।। ୬୫

(ଏକାଦଶ ସ୍କନ୍ଦ-ଭାଗବତ)

# ଅଚ୍ୟୁତାନନ୍ଦ ଦାସ

(୧୬ଶ ଶତାବ୍ଦୀ)

## ମୋ କାହ୍ନୁରେ

ଆଦ୍ୟ ମାର୍ଗଶୀର ଶିଶିରେ ଶୀତ । ଶ୍ରୀକୃଷ୍ଣ ଜାଣନ୍ତି ରାଧିକା ଚିତ୍ତ ।
ଦୁଃଖୀର ଜୀବନ ଦୁଃଖୀ ସଙ୍ଗାତ । କାହୁଁ ଆଣି ଦେବ କମଳା କାନ୍ତ ।
ମୋ କାହ୍ନୁରେ । ୧

ପୌଷେ ଚନ୍ଦ୍ରାବଳୀ ଜପଇ ବସି । ହସ୍ତେ ବର୍ଣ୍ଣମାଳା କଣ୍ଠେ ତୁଳସୀ ।
ସେ ଧନ ଗାଇବ ଗୋବିନ୍ଦ ବର । କୃଷ୍ଣ କଥା ଯାକ ପଡ଼େ ମନର
ମୋ କାହ୍ନୁରେ । ୨

ମାଘରେ ମାଧୋଇ ଆସିବେ ବୋଲି । ଶେଯ ସଜାଇଲି ପାଖୁଡ଼ା ମଲ୍ଲୀ ।
ଜାଳି ବସାଇଲି ମାଣିକ୍ୟ ବତୀ । ଚକ୍ଷୁ ଉଜାଗରେ ପାହିଲା ରାତି ।
ମୋ କାହ୍ନୁରେ । ୩

ଫଗୁଣ ମାସରେ ଦୋଳଗୋବିନ୍ଦ । ଫଗୁ ଖେଳୁଥାନ୍ତି ପରମାନନ୍ଦ ।
ଅବୀର ସଙ୍ଗେ ଝାଳେଣ୍ଡ ମିଶାଇ । ଫଗୁ ଖେଳୁଥାନ୍ତି ଯଦୁଗୋସାଇଁ ।
ମୋ କାହ୍ନୁରେ । ୪

ଚଇତ୍ର ମାସରେ ଫୁଟଇ ମଲ୍ଲୀ । ଚୁଆଚନ୍ଦନକୁ ମୁଁ ତେଜ୍ୟା କଲି ।
ମଲ୍ଲୀ ପୁଷ୍ପରେ ମୁଁ କଲି ବିଞ୍ଚଣି । ଯୋଗେ ଭେଟ ହେଲେ ସାରଙ୍ଗପାଣି ।
ମୋ କାହ୍ନୁରେ । ୫

ବୈଶାଖ ମାସରେ ଖର ଗ୍ରୀଷମ । ଚନ୍ଦନ କର୍ପୂର ଅଙ୍ଗେ ଲେପନ ।
ଅଳଟ ଚାମର ଧରନ୍ତି ବାଳୀ, । ମୋ ପୁରେ ବିଜୟ ଶ୍ରୀ ବନମାଳୀ ।
ମୋ କାହ୍ନୁରେ । ୬

ଜ୍ୟେଷ୍ଠ ମାସରେ ଏଡ଼େ ଗୁଳୁଗୁଳ । ସ୍ନାହାନକୁ ବିଜେ ଶ୍ରୀ ବନମାଳୀ
ସ୍ନାହାନ ସାରି ଅଣସର ଗଲେ । ଗୋପଯୁବତୀଙ୍କି ଅନାଥ କଲେ
ମୋ କାହ୍ନୁରେ । ୭

ଆଷାଢମାସରେ ଗୁଣ୍ଡିଚ୍ଚ ଯାତ । ରଥେ ବିଜେ କଲେ ଶ୍ରୀ ଜଗନ୍ନାଥ ।
ଆଗେ ବଳଭଦ୍ର ବସିଲେ ଯାଇ । ମର୍ଦ୍ଧେରେ ସୁଭଦ୍ରା ପଛେ କହ୍ନାଇ ।
ମୋ କାହ୍ନୁରେ । ୮

ଶ୍ରାବଣମାସରେ ଘୋରବରଷା । ସକଳ ଗ୍ରନ୍ଥ ଶ୍ରୀ କୃଷ୍ଣରେ ଆଶା ।
ନ ରୁଚଇ ମୋତେ ସୁବାସ ବାସ । ଅନ୍ନପାଣିଯାକ ଲାଗୁଛୁ ବିଷ ।
ମୋ କାହ୍ନୁରେ । ୯

ଭାଦ୍ରବମାସରେ ହରି ଜନମ । ପରେ ପରେ ପ୍ରଭୁ ହେଲେ ଜନମ ।
ଜନମ ହୋଇ ଗୋପରେ ବଢିଲେ । କଂସାସୁରକୁ ଶେଷରେ ନାଶିଲେ ।
ମୋ କାହ୍ନୁରେ । ୧୦

ଆଶ୍ୱିନ ମାସରେ କୁଆଁରୀ ଜହ୍ନ । ପଶା ଖେଳିବାକୁ ବଳୁଛୁ ମନ ।
ଚନ୍ଦ୍ର କିରଣରେ ଖେଳନ୍ତି ପଶା । କୃଷ୍ଣ କଲେ ମୋତେ ଭଗାରିହସା ।
ମୋ କାହ୍ନୁରେ । ୧୧

କାର୍ତ୍ତିକେ ସମ୍ପୂର୍ଣ୍ଣ ଏ ବାରମାସ । ବାଳୁଜା ପୂଜା କରନ୍ତି ହବିଷ୍ୟ ।
ଦାମୋଦର ପୂଜାରେ ମୋର ଆଶା । ସବରେ ଭଣିଲେ ଅଚ୍ୟୁତ ଦାସ ।
ମୋ କାହ୍ନୁରେ । ୧୨

(ବାରମାସୀ କୋଇଲି)

# ଘରଘରଣି ସମ୍ବାଦ

ଶୁଣସି ମୋ ପ୍ରିୟ ମିତଣି ପ୍ରାଣ ଚେତନ ମୋର
ସୁହାଗୀ ଶୁଣ ଗୋ ବଖାଣ ତେଜ କେଳି ବେଭାର ।
ଗଦ୍ଗଦ ବଚନ କହଇ ଶୁଣ ଚେତନ ଦେଇ
ମନ ସଙ୍ଗେ କେତେ ଭାବ ଲୋ ଶୁଣ ଗେଲ୍ହଗେଲ୍ହାଇ ।
ପଞ୍ଚଜଡ଼ ଜାତ ଚେତନୁ ପୁଣ ଜଡ଼କୁ ହେଜ
ଉଦାସୀ ହେଲଣି ସଖୀ ଗୋ ଗୋଲ୍ହ ହାଟକୁ ତେଜ ।
ପଗ୍ଭର ପଗ୍ଭର ଏବେ ଲୋ କାଳ ପୋଟୁଛୁ ଆସି
ତୋହର ମୋହର ବାନ୍ଧଣି ଏବେ ଯିବ ଲୋ ଖସି ।
ଚେହ୍ନିକ ଚେତନ ଉଠିଲ୍ଲ କେଶ ବସନ ଫେଇ
ପଗ୍ଭରଇ ମନ ମନାଇ ଶୁଣ ଅଲେଖ ବାଇ ।
ରାଧା ବୋଲି ଯେଉଁ ଶବଦ ଶୁଭେ କାହୁଁ ଯୋଗାଇ
କେଉଁ ଜାତ ତାର କେମନ୍ତ ତାର ଗୁଣ ଅଛଇ
କେଉଁଠାରେ ସେ ଥିଲା କେଉଁଠ ଜାତ ସେ ଗୁଆଳୁଣୀ
ସେ ପୁଣ କେସନେ ମିଳାଇ ହେଲା ପ୍ରାଣ ମିତଣୀ ।
ଶୁଣି ଏ ବଚନ କହନ୍ତ ପ୍ରଭୁ ଗୋପାଳ ହସି
ଶୁଣସି ଲୋ ପ୍ରାଣ ମିତଣୀ ଧ୍ୟାନ ଅଚ୍ୟୁତ ଭାଷି ।
ରାଧା ବୋଲି ଯେହୁ ଅକ୍ଷର ସେହୁ ଅଣଅକ୍ଷର
ରବୀଜ ବୋଲି ସେ ବୀଜ ଯେ ଅନାହତ ଛକାର
ଅନାହତ ପୁର ଅନ୍ଧାର ଘର ପଦ୍ମିଣୀ ଥିଲା
ରାଧା ବୋଲି କହନ୍ତେ ସେ ବାଟ ଅନାକାଶୀ ଫୁଟିଲା ।
ତା ମଧ୍ୟେ ଦଶିଲା ଉଜ୍ଜ୍ୱଳ ତ୍ରିକୋଣର ମେଦନୀ
ତା ଶବଦ ଚେତ ପ୍ରବଧ ହେଲା ଶ୍ରବଣ ବେନ ।
ତା ତେଜରେ ପୂର୍ବ ନନ୍ଦନ ପୁର ନଳ ଉଠିଲା
କୋଟି ରୂପ ଧରି ସେ ତେଜ ଶିଶୁମୂନା ଖେଳିଲା ।
ସେହୁ ଶିଶୁମୂନା ଓଲଟି ରାଧା ନାମ ତ କଲା
ବଙ୍କନାଳେ ପୁଣି ଓଲଟି ଧାରା ଶୋଷି ପିଇଲା ।
ସେହୁ ଉଜାଣିର ଶବଦ ରାଧା ବୋଲନ୍ତି ଜାଣ
ଅନନ୍ୟ ନବ ନବ ସ୍ୱାଦୃପ କେଲି କରଣୀ ପୁଣ ।
ଯେବେ ବପସ୍ୱିତ ରମଣ କଲେ ସୁବଜ୍ର ଶୋଭ
ମୃଣାଳ ତନ୍ତୁରେ ପୁଣି ସେ ନେଇ ଭଳେ ପଶଇ ।

ଯେବେ ବକ୍ରନାଳ ଗଣ୍ଡରେ ବେବେ ତଳକୁ ଯାଏ
ବସରଷ ଗଣ୍ଡ ପ୍ରାପ୍ତକ ଧାମ ରମଣ ସ୍ବଚ୍ଛେ ।
ଚମକ ଛଠଇ ରମଣି ମଣି ବୃନ୍ଦାବନରେ
ଖାଲି କୁମ୍ଭ ଧରି ପଶଇ ଯମୁନାର ଜଳରେ ।
ସେ ଜଳେ ଶୁଭଇ ମୁରଲି ଗଲି ଗଲି ମୁଁ ବୋଲି
ମଲି ମଲି ବୋଲି ବୋବାଳି ଗ୍ଲାଡ଼େ ଧାରକୁ ପେଲି ।
ଯେହ୍ନୁ ରାଧା ସେହ୍ନୁ ଧାରା ଯେ ସେହ୍ନୁ ନିତ୍ୟ ସ୍ରବଇ
ସେହି ଧାରା ପିଇ ବାଳୁତ ଯୁବା ରୂପ ଧରଇ ।
ଯୁବା ପୁଣ ସେହି ରସକୁ ଶୋଷି ହୁଏ ବାଳୁତ
ପାଞ୍ଚ ବରଷର ବାଳୁତ କେଳି ଅପାର ସେ ତ ।
ଜଗ ବୋଲି ଯା'କୁ ବୋଲନ୍ତି ସେ ତ ଜଗତଜିତା
ରାଧା ଗୁଣମାନ କହିଲି ଶୁଣ ନବ ବନିତା ।
ବୃଷଭ ବୋଲି ଯେ ଧରମ ପୁଣ ସ୍ବାନୁ ବୋଲାଏ
ଯେହ୍ନୁ ସ୍ବାନୁ ସେହ୍ନୁ ଅନଳ ଦିବ୍ୟ ଜ୍ୟୋତି କାୟେ ।
ଚନ୍ଦ୍ରା ବୋଲି ଯେହ୍ନୁ ସେ ନାଡ଼ି ଚନ୍ଦ୍ର ତତ୍ତ୍ଵ ଆବର
ଅନ୍ଧାର ଘରେ ସେ ଜଳଇ ଚନ୍ଦବୃନ୍ଦଆ ସାର ।
କ୍ଷେଣା ପେଲି ବାଡ଼ ପଶଇ ଠକ ପ୍ରେରିତି ଯେଣୁ
ଚନ୍ଦ୍ରଶେଣା ନାମ ବହିଛି ସ୍ବାନୁ ପୀରତ ତେଣୁ ।
ସେ ପ୍ରୀତରୁ ଜାତ ଏ ରାଧା କେତେ ପଣ ନାଚଇ
ନାଚୁଆ ନାଗର ଦେଖିଲେ ହୁଏ ମଉନମୁଦ୍ରି ।
ଯେତେ କୁଂଜ ସେତେ ଗମ୍ଭିର ସେତେ କଦମ୍ବ ତରୁ
ସେତେ ସହସ୍ରାର ସ୍ତବକେ ଛବି ମହିମା ମେରୁ ।
ରାଧା ଶବଦରେ ସ୍ତବଧ ସେହି ମେରୁ ଚହଲ
ଶୁଣ ଲୋ କହିଲ ଯୁବତୀ ରସ ପ୍ରେମ ସମ୍ଭାର
ରାଧାକୁ ଜଗିଲେ ପାଇବୁ ଧାର ଶୀତଳ ବାର
କହଇ ଅଚ୍ୟୁତ ଦାସ ଲୋ ରାଧା ନାମକୁ ଧର ।
ଘରଣୀ କହଇ ଓଲଗି ଧନ୍ୟ ମୋର ଜୀବନ
ତୋପଣ ଘର ମୁଁ ପାଇଣ ହୋଇଅଛୁ ଚେତନ ।

(ବ୍ରହ୍ମ ସାଙ୍କୋଳି—ଦ୍ୱାଦଶ ବୋଲି)

# ଯଶୋବନ୍ତ ଦାସ

(୧୫ଶ — ୧୬ଶ ଶତାବ୍ଦୀ)

## ହାଡି ତୁ ନ ବୋଲ ହାଡ଼ିପା ତୁ ବୋଲ

ଶୁଣ ଯେଉଁଦିନୁ ଗର୍ଭରେ ଉଦସ୍ତ ସେହି ଦିନୁ ଦୁଃଖ ନାହିଁ ।
ନଦୀ କୂଳେ ଯାଇ ବାଲୁକା ପୂଜଇ ଶହେ ପୁତ୍ର ହେବା ପାଇଁ ॥ ୧
ଦାଣ୍ଡ ଖରକଇ ଚଉରା ଲିପଇ ଧନକୁ ପାଇବା ପାଇଁ ।
ନ ଦେଖିଲେ ମନ ବିକଳ ହୁଅଇ କା ଆଗେ କହିବି ଯାଇ ॥ ୨
ତୋହର ପାଇଁ କି ଗୋବିନ୍ଦ ଚନ୍ଦ୍ରରେ ନାନା ତୀର୍ଥବ୍ରତ କଲି ।
ଭୁବନେଶ୍ୱରରେ ଊଣାକୋଟୀ ଲିଙ୍ଗ ସମସ୍ତଙ୍କୁ ସେବା କଲି ॥ ୩
ଯୋଡ଼ା ଯୋଡ଼ା କରି ଶହେ ଯୋଡ଼ା ନୀର ଶମ୍ଭୁ ଶିରରେ ଢାଳିଲି ।
ଲକ୍ଷେ ଚମ୍ପାପୁଷ୍ପ ଗଣେସ ଯେ ଆଉ ମାଳ ମାଳ ଚଢ଼ାଇଲି ॥ ୪
ପାର୍ବତୀ କହନ୍ତି ଈଶ୍ୱର ଶୁଣନ୍ତୁ ପୂଜା ଖେଳାନାଥେ ରହି ।
ନମଦେଇ ରାଣୀ ଜଣାଣ କରୁଛୁ ପୁତ୍ରମାନ ହେବା ପାଇଁ ॥ ୫
ପ୍ରଥମ ଗର୍ଭରେ ପୁତ୍ର ଜନ୍ମ ହେଲେ ତାକୁ ଯୋଗୀ କରାଇବ ।
ଦ୍ୱିତୀୟ ଗର୍ଭରେ ପୁତ୍ରଜନ୍ମ ହେଲେ ପ୍ରଜାଙ୍କୁ ସେହି ପାଳିବ ॥ ୬
ତହୁଁ ପଞ୍ଚମାସ ଗର୍ଭରେ ଧଇଲି ଅଙ୍ଗ ଅଳସ ଲାଗଇ ।
ଷଡ଼ମାସ ଯହୁଁ ଗର୍ଭରେ ରହିଲୁ ରୁଣ୍ଡ ସୁଆଦ ଲୋଡ଼ଇ ॥ ୭
ଭରି ଦଶମାସ ସମ୍ପୂର୍ଣ୍ଣ ହୋଇଲା ପୃଥ୍ୱୀରେ ଜନମ ତୋର ।
ବୁଦ୍ଧ ଯେତେବେଳେ ଜନମ ହେଲୁରେ ଚେତାନାହିଁ ଦେହେ ମୋର ॥ ୮
ସେତକ ବେଳରେ କୁମର ମଣିରେ ପୋଇଲି ନେଲେ ଛଡ଼ାଇ ।
ତାଙ୍କର ହସ୍ତରେ ନାଭି ନାଡ଼ କାଟି ସେକ ସାକ ଦେଲେ ଶ୍ୱାଇ ॥ ୯
ପୂର୍ବ ପାଞ୍ଚଦିନ ବଳାରେ ସ୍ୱଜନ ପଞ୍ଚୁ ଆଠ ଘର କଲେ ।
ସପତ ଦିନରେ ଗୋବିନ୍ଦ ଚନ୍ଦ୍ରରେ ସତ୍ୟପୀର ପୂଜା କରିଲ ॥ ୧୦
ଏକୋଇଶ ଦିନ ହୋଇଲାକ ଯହୁଁ ନାମରାଶି ଗଣାଇଲେ ।
ନାସ୍ତିକ ବ୍ରାହ୍ମଣ ଡକାଇଣ ଆଣି ନାମ କରଣ କରିଲେ ॥ ୧୧

ଷୋହଳ ଶତର ଅଠର ଯେ ଏକବିଂଶ ବରଷେ ନିଧନ ।
ଆଧି ବ୍ୟାଧି କଷ୍ଟ ପାଇଲି ଧନରେ ଧିକ ଜାଣି ଏ ଜୀବନ ।। ୧୨
ସେହିଦିନୁ ମୁଁ ହିଁ ବାଞ୍ଛା ଯେ କଲିଲି ପୁଅଯାଉ ଯୋଗୀ ଘର ।
ରହୁ ଯେବେ ପୁତ ଯିବୁ ସେହି ପଥ ତେବେ ହୋଇବୁ ଅମର ।। ୧୩
ବାଦ୍ୟ ବଡ଼କାଠ ବସାଇ ଧନକୁ ଯୋଗୀଜନଙ୍କ ମନାଯିଲି ।
ଏତେ, ଦିନ ଯାଏ ଗୁପତ ରଖି ତା ଆଜ ତୋ ଆଗେ କହିଲି ।। ୧୪
ଯୋଗୀତ ହୋଇଲେ ତରିବୁରେ ଧନ ରାଜା ହୋଇଲେ ମରିବୁ ।
ଘୋର ମରଣକୁ କପାଇଁ ଡରିବୁ ଯୋଗୀ ଲଉଡ଼ିରେ ଭରିବୁ ।। ୧୫
ଅଜ୍ଞାନ କାଳରେ ବାଳୁତ ବେଳରେ ଯୋଗୀ ନ କଲୁ କପାଇଁ ।
ଯେତେବେଳେ ଦାଣ୍ଡେ ଖେଳ ଖେଳୁଥିଲି ଧୂଳିଆଧୂସର ହୋଇ ।। ୧୬
ସେତେବେଳେ ମାତା ଯୋଗୀ ନ କଲୁ ଲୋ ହାଡ଼ିସୁଣ୍ଡାଲରେ ଦେଇ ।
ରଜାଘରେ ପୁତ୍ର ଜନମ ହେଲେ ଲୋ ସୁଖେ ଦୁଧଘିଅ ଖାଇ ।। ୧୭
ଏତେବେଳେ ମାତ ମୋ ସଙ୍ଗେ ଲାଗିଛୁ ରଜା ଯିବେ ଯୋଗୀ ହୋଇ ।
ଭଲ ଭଲ ଘର କନ୍ୟାଟି ମାନଙ୍କୁ ବିଭାକଲୁ କାହିଁ ପାଇଁ ।। ୧୮
ସେ କନ୍ୟାମାନଙ୍କ ନାମ ଜନନୀ ଲୋ ଶୁଣିକେ ଧରିବ ଦେଖି ।
ଏ ନବ ବୟସବେଳେ ଗୁଡ଼ିକରି ଦେହ ଧରିଛନ୍ତେ ମନ୍ତ୍ରୀ ।। ୧୯
କାହା ନାମ ସ୍ୱାଗ, କାହା ନାମ ଲୀଳା କାହା ନାମ ଜମ୍ବୁବନ୍ତୀ ।
ଧରି ଯନ୍ତ୍ରବୀଣା ବଜାଉ ଥିବେ ଗୋ ବ୍ରହ୍ମାଙ୍କର ସରସ୍ୱତୀ ।। ୨୦
ଏହିପରି ନାମ ବନ୍ଧବା ସୁନ୍ଦରୀମାନ ବିଭା କରାଇଲୁ ।
ଅନେକ୍ଷତ ରାଜାଙ୍କର ଆଣିକରି ଏତେ ଦଣ୍ଡ କପା ଦେଲୁ ।। ୨୧
ଯଦି ବୁ ଜନନୀ ହାଡ଼ପାଣେ ପୁଣି ମୋତେ ଦେଇଥାନ୍ତୁ ଟେକ ।
ଏମାନଙ୍କ କଷ୍ଟ ସହ ମୁ ନ ଥାନ୍ତି ଜଗତେ ବୋଲିବେ କ କ ।। ୨୨
ପୁତ୍ରର ବଦନୁ ଏ ବଚନ ଶୁଣି ବୋଲଇ ମୁକୁତା ଦେଇ ।
ଅଜର ଅମର ହେବୁରେ କୁମର ମୋ ବଚନ କର ରହି ।। ୨୩
ନାମ ବ୍ରହ୍ମକୁ ରୁ ଭଜରେ କୁମର ଏ ଦୁଃଖ ରହିବ ନାହିଁ ।
ନନ୍ଦନନ୍ଦନକୁ ଡାକ ବାର ବାର କରୁଣା କରିବେ ସେହି ।। ୨୪

ତରକବୁ ଯେବେ ରହସିବୁ ତେବେ ଦେବ ନାହିଁ ଯମ ଦୁଃଖ ॥
କାରଣ ନ ମାନ ନ ଶୁଣିଲେ କଥା ଠାବ ହେବ କୁମ୍ଭୀପାକ ॥ ୨୫
ଜାଣିଶୁଣି ଯେବେ ରତନ ଗୁଡ଼ବୁ କଣବୁ ଗରଡ଼ ଦ୍ୱାର ॥
ଟହ ଟହ ହସି କର ନାନା ଟାହୁ ଟାଣିବେ ଯମ କଙ୍କର ॥ ୨୬
ହାଡ଼ ଗୁ ନ ବୋଲ ହାଡ଼ପା ଗୁ ବୋଲ ହାଡ଼ପାଟି ବ୍ରହ୍ମଜ୍ଞାନ ॥
ସାତ ସମୁଦ୍ରରେ ପାଣି ନ ଲାଗିବ କଲେ ତା ନାମ ସ୍ମରଣ ॥ ୨୭

(ଟୀକା ଗୋବନ୍ଦ ଚନ୍ଦ୍ର)

## ନିତ୍ୟ ଧାମ

ପରମ ବଇକୁଣ୍ଠ ଏହୁ । କ୍ଷେତ୍ରମାନଙ୍କ ରାଜା କହୁ ॥ ୧
ସେହୁ ସେ ଗୋଲକ ଭୁବନ । ଅର୍ଜୁନ ଶୁଣ ମୋ ବଚନ ॥ ୨
ଏଥି ମଲେଣ ଦେବ ଦେହି । ଜନ୍ମଇ ଚତୁର୍ଭୁଜ ହୋଇ ॥ ୩
ଏ ଚକେ କେତନ ଯେ ପୁଣ । ଅନନ୍ତ ଜିହ୍ୱା ଏ ପ୍ରମାଣ ॥ ୪
ସେ ଚକେ ନେତ ବନ୍ଧା ହୋଇ । ପତିତ ଜନଙ୍କର ପାଇଁ ॥ ୫
ବାନା ଉଡ଼ଇ ଫରହର । ପତିତ ଜନଙ୍କ ଉଦ୍ଧାର ॥ ୬
ଯେବେ ପ୍ରାସାଦ ସ୍ପର୍ଶି ଯାଇ । ପ୍ରତିମା ଅନ୍ୟ ଅନ୍ୟ ହୋଇ ॥ ୭
ତେବେ ମୋ ସତ୍ୟ ଧନଞ୍ଜୟେ । ସେ ଥାନ ନ ଗୁଡ଼ ଉପାୟେ ॥ ୮
ଦେଖଏ ନିତ୍ୟ ନୀଳାଚଳ । ସକଳ ତୀର୍ଥଙ୍କର ଆଳ ॥ ୯
ଗୋପ ମଥୁରା ବୃନ୍ଦାବନ । ଦ୍ୱାରକା ଆଦି ଯେତେ ଥାନ ॥ ୧୦
ସକଳ ସେହୁ ଥାନ ପାଇଁ । ଆବର କାଶୀ ମଧ୍ୟ ହୋଇ ॥ ୧୧
କୋଟୀୟେ ତୀର୍ଥ ଏ କ୍ଷେତ୍ରରେ । ମହିମା କହିଲେ ନ ସରେ ॥ ୧୨
ସ୍ୱର୍ଗ ସକଳ ଦେବଗଣ । ଖଟନ୍ତି ଛନ ଧୂପେ ପୁଣ ॥ ୧୩
ବ୍ରହ୍ମା ଶଙ୍କର ପୁରନ୍ଦର । ଆବର ଶଶୀ ଦିବାକର ॥ ୧୪
ଖଟନ୍ତି ଧୂପ ଅବକାଶ । ସକଳ ଦେବତା ଜିଦଶ ॥ ୧୫
ପାନ୍ତି କୁହନ୍ତି ବୃହସ୍ପତି । କୁବେର ଭଣ୍ଡାର ରଖନ୍ତି ॥ ୧୬

ଯମ ନୈଋତ ଦିଗପାଳ । ସକଳ ତପୀ ଯତି ମେଳ ॥ ୧୭
ବ୍ୟାସ ବଶିଷ୍ଠ ପରାଶର । ଭୃଗୁ ମାର୍କଣ୍ଡ ପିଙ୍ଗବର ॥ ୧୮
ଗାର୍ଗବ ଭରଦ୍ୱାଜ ଶୁକ । ଅଗସ୍ତି ପୌଲସ୍ତି ଶୌନକ ॥ ୧୯
ସେ ଥାନ୍ତି କୃଷ୍ଣପାରୁଶରେ । ମନଗମନ କରନ୍ତରେ ॥ ୨୦
ନତ୍ୟେ ନାରଦ ବୀଣା ବା'ନ୍ତି । ଗନ୍ଧର୍ବେ ନୃତ୍ୟଗୀତ ଗା'ନ୍ତି ॥ ୨୧
ନାଚନ୍ତି ଅପଛରାମାନେ । ଦୁନ୍ଦୁଭି ବାଦ୍ୟ ଅନୁପାମେ ॥ ୨୨
ଭେରୀ ମହୁରୀ ଆଉ ତୁରୀ । କାହାଳ ଶଙ୍ଖ ସେ ଦୋସରୀ ୨୩
ସଜାଡ଼ ବାଦ୍ୟ ଘଣ୍ଟା ଝେଜ । ତାଳ ଝଞ୍ଜାଳ ସେ ତାନ୍ଦ୍ରେକ ॥ ୨୪
ଅବର ନାନା ବାଦ୍ୟ ଜାଣ । ଚର୍ମଜ ଆଦି ଯେତେ ପୁଣ ॥ ୨୫
ବ୍ରହ୍ମାଣ୍ଡେ ନରଅଙ୍ଗ ଯେତେ । ଆସନ୍ତି ଦର୍ଶନ ନିମନ୍ତେ ॥ ୨୬
ହରି ଶବଦ କରନ୍ତରେ ॥ ପଡ଼ଇ ସେ ଚଉ ଦିଗରେ ॥ ୨୭
ସମୁଦ୍ର ପ୍ରାନ୍ତେ ଶୋଭେ ଘୋଷ । ନ ଜାଣି ରାତ୍ର ଯେ ଦିବସ ॥ ୨୮
ଏଥିରେ ନର ଦେହ ଦେଖି । ଚତୁର ଭୁଜ ଜାଣି ମୋହି ॥ ୨୯
ଗନ୍ଧର୍ବ ପ୍ରାପ୍ତ ସେ ଦିଶନ୍ତି । ବିଷ୍ଣୁ କୈବଲ୍ୟ ସେ ଭୁଞ୍ଜନ୍ତି ॥ ୩୦
ସେଥି ନ ପଶେ ଯମତ୍ରାସ । ବିଷ୍ଣୁ ସେବକ ସର୍ବ ଦାସ ॥ ୩୧
ସେ ସ୍ଥାନ ମୁକ୍ତି କ୍ଷେତ୍ର କହି । ପୃଥ୍ୱୀ ବୈକୁଣ୍ଠ ଏ ବୋଲଇ ॥ ୩୨
ଯେବେ ପୃଥ୍ୱୀରେ ଦୁଷ୍ଟ ହୁନ୍ତି । ଦେବତା ବ୍ରାହ୍ମଣେ କଷନ୍ତି ॥ ୩୩
ଧର୍ମ ନ ସ୍ଥାପି ଦୁଷ୍ଟ ଦେଖି । ପୃଥ୍ୱୀ ନ ପାରେ ଭାର ସହି ॥ ୩୪
ତେବେ ସକଳ ଦେବମାନେ । ଗୁହାରି କରନ୍ତି ଏ ସ୍ଥାନେ ॥ ୩୫
ବ୍ରହ୍ମା ବଚନେ ହେତୁକରି । ଏଥି ମୁଁ ଜାତ ଦେହ ଧରି ॥ ୩୬
ସେ ଦୁଷ୍ଟଗଣ ସଂହରଣି । ଆସଇ ନିତ୍ୟସ୍ଥାନେ ପୁଣି ॥ ୩୭
ସେ ରୂପ ଯୁଗ ଅନୁସାରେ । କହିଲି ତୋହର ଆଗରେ ॥ ୩୮
ଦେଖିଲୁ ନିତ୍ୟମଧ୍ୟେ ସ୍ଥାନ । ରୂପତ ଅମୃତ ଭୁବନ ॥ ୩୯
ସେଥି ଗୁଣ୍ଡିଚ୍ଚା ଯାତ୍ରା ହୋଇ । ମିଥୁନମାସେ ମଧ୍ୟ କହି ॥ ୪୦
ଗୁମୁଟ ଅପସରେ ହରି । ବିଚିତ୍ର ଚନ୍ଦ୍ର ବେଶ ଧରି ॥ ୪୧
ପହଣ୍ଡି ବିଜୟେ କରନ୍ତି । ତିନି ରଥରେ ତିନି ମୂର୍ତ୍ତି ॥ ୪୨

ବିଜୟେ ଏ ବଡ଼ ଦାଣ୍ଡରେ । ଚତୁର୍ଦ୍ଧା ରୂପ ଧିରେ ଧିରେ ।। ୪୩
ରଥ ଦିଶନ୍ତି ମେରୁଜାଣି । ଚନ୍ଦ୍ରମଣ୍ଡଳ ପରମାଣି ।। ୪୪
ପାଞ୍ଚ ପତଙ୍ଗା ମଣ୍ଡିଫେରା । ବସ୍ତ୍ର ଝଲକ ଚନ୍ଦ୍ରତାରା ।। ୪୫
ଚାମର ପତାକା ବିଶେଷେ । ସିନ୍ଧୁଳହସ୍ତ ପ୍ରାନ୍ତେ ଦିଶେ ।। ୪୬
ରଥ ସେ କରନ୍ତି ବାରଣ । ଗୁଣ୍ଡିଚ୍ଚ ଘରେ ପରବେଶ ।। ୪୭
ବାଲ୍ମନବର ନିତ୍ୟ ସ୍ଥାନ । ଅନନ୍ତ ପାଦେ ସିଂହାସନ ।। ୪୮
ତହିଁରେ ନବ ଦିନ ରହି । ଭକ୍ତଙ୍କ ସ୍ତବେ ସ୍ତବଗ୍ରାହୀ ।। ୪୯
ବାହୁଡ଼ି ନବ ଦିନେ ଦିଶ । ଉଠନ ରଥରେ ବିଜେକରି ।। ୫୦
ବଡ଼ ଦେଉଳେ ପରବେଶ । ଲକ୍ଷ୍ମୀ ଖଟନ୍ତି ତାଙ୍କପାଶ ।। ୫୧
ଏମନ୍ତେ ଚତୁର୍ମାସ୍ୟାହୋଇ । ଶୟନଯାତ୍ରା ସେ ଭୁଆଇ ।। ୫୨
ରହନ୍ତି ନିଜ ସୁଖଭରେ । ଅର୍ଜୁନ କହିଲି ତୋହରେ ।। ୫୩
କୋଟିଏ ତୀର୍ଥ ନୁହେଁ ଶେଷ । ଯେତେକ କହିଲି ଉପଦେଶ ।। ୫୪
ଏ ସର୍ବ ଦର୍ଶନ ସାରଣ । ଗଲ ସେ ଆପଣା ପୁରେଣ ।। ୫୫
ହରି ଅର୍ଜୁନ ସେ ହରଷ । ଦ୍ୱାରକା ପୁରେ ପରବେଶ ।। ୫୬
ଅର୍ଜୁନ ପାଇ ଦିବ୍ୟଜ୍ଞାନ । ଯେତେ ସେ ପାଇ ଦରଶନ ।। ୫୭
ସେ କ୍ଷେତ୍ର ନୀଳାଚଳଧାମ । ନାମ ଯା ଶ୍ରୀ ପୁରୁଷୋତ୍ତମ ।। ୫୮
ଏ ବ୍ରହ୍ମ ପାଦେ ଧ୍ୟାସ୍ତି ଛଉ । କହଇ ଦାସ ଯଶୋବନ୍ତ ।। ୫୯
ଯେ ଦେଇ ପାର୍ଥେ ଉପଦେଶ । ସେ ପାଦେ ଯଶୋବନ୍ତ ଦାସ ।। ୬୦
ଶରଣ ଗଲ୍ଲ ନିରନ୍ତରେ । ଏ ମାୟା ସଂସାର ସାଗରେ ।। ୬୧
ରଖ ନ ରଖ ସେ ଜାଣନ୍ତି । ସେ ପାଦୁଁ ଅନ୍ୟ ନାହିଁ ଗତି ।। ୬୨

(ପ୍ରେମଭକ୍ତି ବ୍ରହ୍ମଗୀତା)

# ନରସିଂହ ସେଣ ମହାପାତ୍ର

(ଷୋଡ଼ଶ ଶତାବ୍ଦୀ)

## ତିଳୋତ୍ତମାର ନୃତ୍ୟ

ଗାଇଲେ ଗାୟେଣୀ ମଧୁରସେ ରସ ଗୀତ ।
ସଭାରେ ସମସ୍ତଙ୍କର ବଳିଅଛି ଚିତ୍ତ ।। ୧
ମୃଦଙ୍ଗ ବଂଶୀ କଂସାଳ ଦୋସରି କାହାଳ ।
ଉପାଙ୍ଗ ତାଳ ବୀଣାର ଶବଦ ଚହଳ ।। ୨
ସକଳ ବାଦ୍ୟଙ୍କର ସେ ନାଦ ଏକ ହୋଇ ।
ବ୍ରହ୍ମଲୋକ ଭେଦି ନାଦ ବୈକୁଣ୍ଠଲୋକ ଯାଇ ।। ୩
କ୍ରମେଣ ଶବଦ ଛୁରେ ସର୍ବ ଦ୍ୱୀପାନ୍ତର ।
ତାଳ ଶବ୍ଦ ମୁଦ୍ରା କରି ଗୀତ ମନୋହର ।। ୪
ତିଳୋତ୍ତମା ପଶି ତହିଁ ପାଦଘାତ କଲା ।
ବିବିଧ ବିନୋଦ କରି ନୃତ୍ୟ ରଙ୍ଗେ କଲା ।। ୫
ଅଣ୍ଟାରେ ହାତ ବାଙ୍କ ନୟନରେ ଚାହିଁଲା ।
ସମସ୍ତ ସଭା ଜନଙ୍କ ମନ ହରି ନେଲା ।। ୬
ଦକ୍ଷ ଭାବ କରି ନାଚୁଅଛି ଯେ ସୁନ୍ଦରୀ ।
ତ୍ରିଭଙ୍ଗୀ ଲଳିତ ତନୁ ଅତି ମନୋହାରୀ ।। ୭
କାଞ୍ଚୁଲି ଫିଟିଣ ଯେ ଦିଶଇ କୁଚଭାର ।
ହୃଦେ ଲମ୍ବିଅଛି ଗଜ ମୁକ୍ତାର ହାର ।। ୮
ହସ୍ତକ କରିଣ ସେ ନାଚଇ ଭାବ ଘେନ ।
ପ୍ରତିଭାବ ଲୀଳାଭାବ ନାଚଇ କାମିନୀ ।। ୯
ଚଳଇ ଅଳକା ଗୁରୁ କପୋଳର ତଟ ।
କମଳ ଲୋଭେ ଉଡ଼ନ୍ତି କମଳର ପନ୍ତି ।। ୧୦
ପାଦାଘାତ ବାଜୀ ଯେ ଦିଅଇ ଘନ ଘନ ।

ନେପୁରର ଶବଦ ଶୁଭଇ ରୁଣୁ ଝୁଣ ॥ ୧୧
ଲୁଗାଫେର ଦେଖି ତାର ପୀଡଇ ମଦନ ।
ହୃଦ ଦମ ଦମ ହୋଇ ଅଙ୍ଗୁ ହୁଏ କ୍ଷୀଣ ॥ ୧୨

(ପଦ୍ମମଳା—୨୪ଶ ଗ୍ରନ୍ଥ)

# ମାଧବୀ ଦାସୀ

(ଷୋଡଶ ଶତାବ୍ଦୀ)

## ଚକାନୟନ ହେ

ଚକାନୟନ ହେ, ଜଗଜ୍ଜୀବନ ଶ୍ରୀହରି ।
କାତରେ ଜଣାଣ କରୁଛୁ ଶ୍ରୀମୁଖରେ ଶୁଣ ପ୍ରଭୁ ଶ୍ରୁତି ଡେରି । ୦ ।
କେତେ ସଙ୍କଟୁ କାହାକୁ ରଖିନାହିଁ ଦୟାଳୁ ସାରଙ୍ଗଧାରୀ,
ତା ବର୍ଣ୍ଣି ବସିଲେ ପୋଥିକର ପାଠ କି ବର୍ଣ୍ଣିବ ଏ ପାମରୀ । ୧
ଜାବନ୍ତୀ ପିଙ୍ଗଳା ଆଦି ବାରବାଳା ସଂସାରୁ ଗଲେ ନିସ୍ତରି,
ଅପାର ମହିମା କେତନ ଉଡାଇ ରଖିଛ ଖାରଡ ଶିରୀ । ୨
ମୁଁ ଛାର କମୀଣୀ ତୁମ୍ଭର ସେବକୀପଣକୁ ଅଯୋଗ୍ୟ ନାରୀ
କରୁଛୁ ଦଣ୍ଡିନ ଯୋଡ଼ି କର ବେନି ଶୁଣ ମାଧବୀ ଗୁହାରି । ୩

# ଶଙ୍କର ଦାସ

(ଷୋଡ଼ଶ ଶତାବ୍ଦୀ)

## ଆରେ ବାବୁ ଚାପଧାରି

ଆରେ ବାବୁ ଚାପଧାରି ! କି ଦଣ୍ଡ ହେଲା ତୋହରି
ନାଦ କଉଶଲ୍ୟା ବୋଲନ୍ତି କୈକେୟୀ ଅରଜିବ କେଉଁ ଶିଷ୍ଟ,
ଲୋ କୋଇଲି । ୧

ଏହି ମଗୁଶିର ମାସ । ଜାକର ପଡ଼େ ବିଶେଷ ।
ଶୀତଳ ପବନ ବହେ ଘନ ଘନ ମୋ ପୁତ୍ର କରିବ କିସ,
ଲୋ କୋଇଲି । ୨

ପୁଷମାସେ ବଡ଼ ଶୀତ । କଷ୍ଟ ହବ ଅପ୍ରମିତ ।
ବିନା ବସନରେ ବୃକ୍ଷ ବକଳରେ କି ଦୁଃଖ ନ ହେବ ଜାତ,
ଲୋ କୋଇଲି । ୩

ମାଘରେ ତହୁଁ ଅଧିକ । ଶରୀର ଦୁଃଖଦାୟକ ।
ଅମୂଲ୍ୟ ସୁପାତ ତେଜ ରଘୁପତି ବୁଲଇ କାନନ ସାକ,
ଲୋ କୋଇଲି । ୪

ଫଗୁଣେ ଫଗୁ ଖେଳରେ । ମାତନ୍ତି ଘରେ ଘରେ ।
ମୋ ଅନ୍ଧୁଣୀ ଧନ ମୋତେ ହୋଇ ଭିନ୍ନ ଭସାଇଲା ଶୋକନୀରେ.
ଲୋ କୋଇଲି । ୫

ଚଇତ୍ର ମାସର ଖରା । ନୀରସ କରଇ ଧରା,
ଶରୀରରୁ ଝାଳ ବହେ ଅନଗଳ ପତ୍ନୀ ହୁଏ ଘାବରା,
ଲୋ କୋଇଲି । ୬

ବଇଶାଖ ଖରା ବୃଦ୍ଧି । ବାହାରକୁ ନୋହେ ଯାଇ,
କେଉଁ ବୃକ୍ଷମୂଳେ ଜୀବନ ବିକଳେ ଥିବ ମୋର ପୁତ୍ର ରତ୍ନ,
ଲୋ କୋଇଲି । ୭

ଜ୍ୟେଷ୍ଠେ ମୋ ଜ୍ୟେଷ୍ଠ ନନ୍ଦନ । ଜାନକୀ ସହ ଲକ୍ଷ୍ମଣ

ନାନା ପକ୍ୱ ଫଳ ଖୋଜ ବୁଲୁଥିବେ ବଧୂର ଏ ବଡ଼ମୃନ,
ଲୋ କୋଇଲି । ୮

ଆଷାଢ଼ ମାସରେ ମେଘ । ଗରଜନ୍ତି ଯେସନ୍ତେ ବାଘ ।
ବେଳେ ବେଳେ ଦୃଶ୍ୟ ହୁଅଇ ଅଦୃଶ୍ୟ ଘୋଟିଯାଏ ଚଉଦଗ
ଲୋ କୋଇଲି । ୯

ଦେଖ ଧାଏ ଶିଖିବଣ । ଜଳ ପଡ଼େ ଅନୁକ୍ଷଣ ।
ଘର ଘାଟ ନାହିଁ ମୋ ଦୁଃଖୀ ଘଖାଲୀ କି ରୂପେ କାଟିବ ଦନ,
ଲୋ କୋଇଲି । ୧୦

ଶ୍ରାବଣ ହେଲେ ପ୍ରବେଶ । ପୁନର୍ମିଳ ଦଶ ଦଶ ।
ଅଠ ସୁକୁମାରୀ ଜନକ-କୁମାରୀ ମନେ ଶଙ୍କୁ ଥିବେ କସ,
ଲୋ କୋଇଲି । ୧୧

ଆଶ୍ୱିନେ ଚନ୍ଦ୍ର କିରଣ । କରଇ ମନ ହରଣ ।
କେତେ ମତେ କେତେ ଉତ୍ସବ କରନ୍ତେ ଘରେ ଥିଲେ ରଘୁଗଣ,
ଲୋ କୋଇଲି । ୧୨

ଏ ମହା କାର୍ତ୍ତିକ ମାସ । ଭଣିଲେ ଶଙ୍କର ଦାଶ ।
ସୀତା ସଙ୍ଗେ ଯେନ ରଘୁ-କୁଳମଣି ଖେଳ କଲେ ବାରମାସ,
ଲୋ କୋଇଲି । ୧୩

(ବାରମାସୀ କୋଇଲି)

# ଦେବଦୁର୍ଲ୍ଲଭ ଦାସ

(୧୬ଶ—୧୭ଶ ଶତାବ୍ଦୀ)

## ଦ୍ୱାରକାରେ ଶ୍ରୀକୃଷ୍ଣ

ପ୍ରାଣହୁଁ ଅଧିକ ଅଟଇ ଯେହୁ,
ହୃଦ ବେଦନା ସମ୍ଭାଳଇ ସେହୁ
ଅମ୍ଭର ଏଥି ପ୍ରାଣସଖୀ ନାହିଁ
ତେଣୁ ନ କହୁ ହୃଦହୁ ଦେହୀ ।
ସ୍ନେହ ପ୍ରମାଦ ବ୍ୟଥା ।
ପ୍ରାଣ ମୂରୁଛୁ ନ କହୁ ସେ କଥା । ୧ ।
ଅପଙ୍ଗେ ପଡ଼ି ଯାଉଅଛୁ ମର ।
ଦୁସ୍ଥାଳେ ବଞ୍ଚୁଁ ଏ ଦ୍ୱାରପୁରୀ ।
ଲଲାଟେ ଲେଖିଅଛୁ ଯାହା ବିହୁ ।
ଦୁଖ କାଳେ ସୁଖ ଲୋଡ଼ି କ ପାଇ ।
କ କହିବା ଆମ୍ଭେ ।
ଶୁଣିଲେ ପରତେ ନ ଯିବ ତୁମ୍ଭେ । ୨ ।
ଯାହାର ମନ ଯହିଁ ରମିଥାଇ ।
ତହୁଁ ସମ୍ପତ୍ତି ତାର ବଡ଼ ନାହିଁ ।
ଧନଜନ ପଣ ସବୁ ବିରଙ୍ଗ
ନତ୍ୟେ ହେଁ ଲୋଡ଼ଇ ତାହାର ସଙ୍ଗ ।
ସେ ପ୍ରାଣରୁ ପର ।
ବ୍ୟର୍ଥ ଜୀବନ ତା ବିନୁ ତାର । ୩ ।
ଦୁଇ ମନକୁ ଦୁହେଁ ଚକୋଟକ ।
ଝଳନ୍ତ ପ୍ରୀତ ରୁଚି ଥାଇନକ
ବାଢେ ବଢ଼ାନ୍ତି ଅଖଣ୍ଡ ପୀରତ ।

ପ୍ରାଣକୁଁ ଅଧିକ କରି ସୁକୃତ ।
ସେ ସୁକୃତ ଜନ
ପୀରତ ଲାଗି ମୁରୁଛନ୍ତ ପ୍ରାଣ । ୪ ।

(ରହସ୍ୟ ମଞ୍ଜରୀ—୩ସ୍ତୁ ଛାନ୍ଦ)

# ସଖୀ ତୁ ଯାଉକିନା

ଚରଣ ଅରୁଣ ରାଜେ
(ତହିଁ) କନକ ନୂପୁର ସାଜେ
ଭଡି କଙ୍କଣୀ-ଘଣ୍ଟି ଠଣରଣ କଙ୍କଣ ଝଙ୍କାବାଜେ ।
ସଖୀ ତୁ ଯାଉକନା ,
(ଗୋ) କହ୍ନାଇ ପାଶକୁ ଯାଉକନା,
ରତନ ବସନ ହାର କଙ୍କଣ ଯାହା ମାଗୁ ତାହା ନଉକନା । ୧ ।
ସଜଲ ଜଳଦ କାନ୍ତି,
ନୀଳମଣି ଦଣି ଭ୍ରାନ୍ତି,
ଅମଳ କମଳ ମୁଖ ମଣ୍ଡଳ ଅଳକ ଅଳକା ପନ୍ତି,
ଗୋ ଦୂତୀ ତୁ ଯାଉକନା । ୨ ।
ଅରୁଣ ଅଧର ରାଜେ,
ମୁରଲୀ ମଧୁର ବାଜେ,
ନାସେ ମୋତିବର ଗଗନେ କି ଶୁକ୍ର ଅଧର ପରେ ବିରାଜେ,
ଗୋ ସଖି ତୁ ଯାଉକନା । ୩ ।
ଭାଲେ ଚନ୍ଦନର ବିନ୍ଦୁ,
(ଗୋ) ନବଡ଼ ଜଳଦେ ଇନ୍ଦୁ
ମଣ୍ଡିତ କୁଣ୍ଡଳ ଗଣ୍ଡ ମଣ୍ଡଳ ଚଣ୍ଡ କିରଣ ନିନ୍ଦୁ,
ଗୋ ଦୂତ ଯାଉ କନା । ୪ ।
କୁଟିଳ କୁଣ୍ଡଳ ଚଳେ,

ରଞ୍ଜିତ ବନ୍ଧ ଫୁଲେ,
ବାନ୍ଧେଁ ଝଲମଲ ମୟୂର ପୁଚ୍ଛ ମଞ୍ଜୁ ମଧୁକର ଭୁଲେ
ସଖି ରୁ ଯାଉକନା । ୫ ।
ମୋତେ ସଜକର ସଖି
(ମୁଁ) କହ୍ନାଇ କ ଯିବି ଦେଖି
ମୁରଲୀ ବଜାଇ ମନ୍ଦ ମନ୍ଦ କର ଦୂରୁଁ ଚାହୁଁଥାଇଁ ଅଖି ।
ଗୋ ଦୂତ ରୁ ଯାଉ କ ନା । ୬ ।
ମୋର ଚରଣେ ଦଅ ପାହୁଡ଼,
(ମୁଁ) ବନେ କରୁଥିବ ଧାଉଡ଼
ପାଦ ରୁଣ ଝୁଣ ଶବଦ ଶୁଣିଣ କହ୍ନାଇ ଆହୁଡ଼ ବାହୁଡ଼ ।
ଗୋ ସଖି ରୁ ଯାଉ କ ନା । ୭ ।
ନେତ ପିନ୍ଧିସ୍ବା ମଣ୍ଡା ପଡ଼ିସ୍ବା,
(ମୁଁ) କହ୍ନାଇ କ ଯିବ ଲୋଡ଼ିସ୍ବା,
ଖଞ୍ଜିକରେ ଚୂଡ଼ ଗୁନ୍ତୁରବନ୍ଧ ସମନାଥ ଗଡ଼ ଗଡ଼ିସ୍ବା
ଗୋ ସଖି ରୁ ଯାଉ କ ନା । ୮ ।
କୁଣଦାମ ପର ବନ,
(ମୋର) ବାହୁଟି ଉପରେ ବାନ୍ଧ,
ଶ୍ରବଣେ ଭର ମୋ ଝଲକ ଚକ ଫେରଣ ମୁକୁତା ବନ୍ଧ ।
ଗୋ ସଖି ରୁ ଯାଉ କ ନା । ୯ ।
(ମୋର) ମୁକୁତା ପାଞ୍ଚ ଗୋଟିଆ,
(ଝଞ୍ଜିଦେ) ମୋର ନାସା ପୁଟିଆ,
କହ୍ନାଇ ପାଣକୁ ବାଜ ଯାଉଥିବ ଝମକ ଝମକ ଝୁଣ୍ଟିଆ,
ଗୋ ସଖି ରୁ ଯାଉ କ ନା । ୧୦ ।
ଏତେ କହୁ କର ବାଳୀ,
ମୋହେଣ ପଡ଼ିଲ ଢଳି,
ଧାଇଁ ଧର ସଖୀ ଖେଦନ କରନ୍ତ ଆଳଟ ଚାମର ଢ଼ାଳି

ଗୋ ସଖି । ୧୧ ।

ଗୋବର୍ଦ୍ଧନ ଗୋବର୍ଦ୍ଧନ ବାଦ୍ୟ,
ଗଗନେ ଉଚ୍ଛୁଳେ ନାଦ
ଦେବ କହେ ପ୍ରଭୁ କେବେ ହେଁ ନୋହିବ ଗୋବର୍ଦ୍ଧନସଙ୍ଗ ବିଚ୍ଛେଦ । ୧୨ ।

(ରହସ୍ୟ ମଞ୍ଜରୀ-୧୦ମ ଛାନ୍ଦ)

## ଫୁଲତୋଳା

(ସଖିଗୋ) ଦ୍ୱାରକା ଯୁବତୀ ମୋହ ହୋଉଛନ୍ତି
ରାଧା ରୂପ-ଶୋଭା-ସ୍ମୃତି,
ଏମନ୍ତେ ବୃଷ୍ଟି ଫୁଲବନେ ପଡ଼ିଲା
ଗୋପୀ ଫୁଲ ତୋଳା ଠାଇଁ ଗୋ,
ଦେଖ ଦେଖ ସଖି ଏହୁ ବୃନ୍ଦାବନେ
ବିହରନ୍ତି ଗୋପବାଳୀ,
ବିବିଧ ବର୍ଣ୍ଣେ ପୁଷ୍ପମାନ ତୋଳନ୍ତି
ନାନା ରଙ୍ଗେ କୁରୁହଳୀ ଗୋ । ୧ ।
(ସଖିଗୋ) ସହଜେ ଗତି ନୃତ୍ୟ ରଙ୍ଗେ ଚଳନ୍ତି
ବିବିଧ ଭଙ୍ଗିମା ହୋଇ,
କଥା କହନ୍ତି ଗୀତସ୍ୱରେ ଆଳପି
ସ୍ୱଚ୍ଛନ୍ଦେ ହୃଦୟ ଦେଇ ଗୋ
ହସନ୍ତି ଖଳନ୍ତି ରସନ୍ତି ପିଶନ୍ତି
ତୋଷନ୍ତି ଏକୁ ଆରକେ,
କୃଷ୍ଣଙ୍କୁ ଭାବନ୍ତି ବସନ୍ତେ ଗାବନ୍ତି
ମଦନ-ମଦ ଉଲ୍ଲସକେ ଗୋ । ୨ ।
(ସଖିଗୋ) କେହୁ ବୃକ୍ଷେ ଉଠି କୁସୁମ ତୋଳନ୍ତେ
ମୁଖ ପଦ୍ମଗନ୍ଧ ପାଇ

ପୁଷ୍ପ ଚେଳ ଭୃଙ୍ଗ ବଦନ ଚୁମ୍ବନେ
ବୃକ୍ଷରୁ ପଡ଼ନ୍ତି ତେଣୁ ଗୋ
ପଳାନ୍ତେ ଗୋଡ଼ାନ୍ତି ଚୁମ୍ବନେ ଛଡ଼ାନ୍ତି
ଛଡ଼ାନ୍ତେ ପଶନ୍ତି ବାସେ
କେଶ ବସନ ଦୂରେ ଫେଡ଼ ଝାଡ଼ନ୍ତେ
ଦୂରେ ସଖୀଜନ ହସେ ଗୋ । ୩ ।
(ସଖିଗୋ) କୋଟି କୋଟି ଚନ୍ଦ୍ର ଉଦେ କି ହୋଇଛୁ
ଉଜ୍ଜ୍ୱଳ ଏ ବୃନ୍ଦାବନ
ମୁଖ ଚନ୍ଦ୍ର ଜ୍ୟୋତ ରସାଣିକ୍ଷ ଷଡ
ସ୍ଫଟିକ ପୀତ ଯେସନ ଗୋ ।
ଗୋଟି ଗୋଟି ହୋଇ ବାର ଦଣ୍ଡଛନ୍ତି
ଯାହାର ଯେମନ୍ତ ବର୍ଣ୍ଣ,
ଫୁଲ ଫଳ ତରୁ ଲତା ଖଗ ମୃଗ
ସର୍ବ ଦ୍ରବ୍ୟ ରୂପ ଚଞ୍ଚ ଗୋ । ୪ ।
(ସଖିଗୋ) ଗୋପୀ ଅଭିରଙ୍ଗୀ କେତେ ଜାଣେ ଭଙ୍ଗି
ଛବ ଛଟେକକୁ ଦେଖ,
ସୃଷ୍ଟିବା ସ୍ୱରୂପ କନ୍ଦର୍ପ କରୂପ
ପୁରୁଷ ହୃଦକୁ ଯୋଷ ଗୋ
ଦେଖ ଦେଖ ସଖି ବୃନ୍ଦାଣୀ ତେଜଛ
ବାଟେ ପାଷାଣ ତରଳବ ।
କାଷ୍ଠ ପ୍ରତିମା ଭେଦ କାନ୍ଦ ଉଠିବ
ମଦନ ସରେ ମଜ୍ଜି କି ଗୋ । ୫ ।
(ସଖିଗୋ) ବଚଦ୍ରୁ ଗଢ ଆଡ଼ ଚଢ ମାରଣ
ବୃକ୍ଷରେ ବସନ୍ତି ତେଣୁ
ବନ୍ଧଧ ପୁଷ୍ପମାନ ରଙ୍ଗେ ତୋଳନ୍ତି
ଗୋବର୍ଦ୍ଧନ ଗୀତ ଗାଇ ଗୋ

ଭଙ୍ଗଣୀ ଚୂଡ—                    ଅଙ୍କୁର ଅରବନ୍ଦ
ନଗନ୍ଧ, କୁନ୍ଦ, ପୁନ୍ନାଗ,
ଯାତ, ଯୂଥୀ, ମଲ୍ଲୀ,                    ମାଳତୀ, ସେବତୀ
ଧାତକୀ ମୃଦୁ ଲବଙ୍ଗ ଗୋ । ୬ ।
(ସଖିଗୋ) ନାନା କୁସୁମେ                    ଝାଡ଼ ଚୂଡ଼ ଯାଜଲେ
ଭୁଜ ଲତାକୁ ବନାଇ,
ବଚତ୍ର ପୁଷ୍ପଦ୍ରୁମ                    ପ୍ରାସ୍ୱେଁ ବଣିଲେ
ଝମସ୍ତେ ବଅ ଅନାଇ ଗୋ,
ମଦନ ଶର                    ସ୍ମରଚମାନ କ ଏ
ସମରେ ଅଛନ୍ତ ସାଜ ?
ପୁଷ୍ପ ଲତାରେ କ                    କୋକଳ ଭୃଙ୍ଗୁ
ବାଣୀ ଶୁଣି ମନ ମଜ୍ଜି ଗୋ । ୭ ।
(ରହସ୍ୟ ମଞ୍ଜରୀ—୧୮ଶ ଛାନ୍ଦ)

## ଉନ୍ମାଦ

କେଳ କଳାନଧି କଦମ୍ବ ମୂଳେ
ଗୋପ କଦମ୍ବ କତମ୍ବିନୀ ମେଳେ । ୦ ।
ରଞ୍ଜିଲେକ ରାସମଣ୍ଡଳୀ ଲୀଳା,
ବାଦ୍ୟ ବନୋଦେ ନୃତ୍ୟରଙ୍ଗେ ଖେଳା,
ନଟବର ନାଗର ମଧ୍ୟେ ବରାଜେ,
ମୋହନ ବଂଶୀ ବମ୍ବାଧରେ ବାଜେ । ୧ ।
ହଙ୍କାର ଆଳାପି ରାଗ ସଞ୍ଚାରେ,
ତେଟେନା ତେନାତେ ତାନ ଉଚ୍ଚାରେ,
ତାନ ଭେଦ ତାଳ କଟପାଳେ ଦଏ,
ସଙ୍ଗୀତ ସୁସ୍ୱରେ ଗୋପିନୀ ଗାଏ । ୨ ।

କାମଜ ଛତିଶ ସହସ୍ର ଲକ୍ଷେ,
ଚନ୍ଦ୍ରକ ଲକ୍ଷକ ସହସ୍ର ବଂଶେ,
ଅଠାଣି ସହସ୍ର ଶୃଙ୍ଗାର ସାଜେ,
ଷୋଳଶୀ ସହସ୍ର ଚର୍ମ୍ମକ ବାଜେ । ୩ ।
ଧେଁକ୍ ଧେଁକ୍ ଥେଇ ଥେଇ ଦୁନ୍ଦୁଭି ବାଜେ,
ଝିଙ୍ଗିର ଗଡ଼ି ଗିଡ଼ି ଥେଇ ଥେଇ ସାଜେ,
ଝେଁ ଝଙ୍କ ଝଙ୍କ ଝଙ୍କ ଝଞ୍ଜାଳ ଝାଙ୍କେ,
ଝେଁଗୁଣା ଝିଣା ଭଣା ଗୁଣିତ ଗୁଣାଙ୍କେ । ୪ ।
ଝମକ ଝମକ ତାଳ ଝମକେ,
କଙ୍କିଣୀ ରୁଣ ଝୁଣ ଚଉ ଚମକେ,
ଠଣରଣ ଘରଘଣ୍ଟ ଘଣ୍ଟିର ନାଦେ,
ମୁଞ୍ଜରିତ ମଞ୍ଜୀର ପାଦେ ବିବାଦେ । ୫ ।
ଭେରୀ ମୃଦଙ୍ଗ ନାନା ବାଦ୍ୟ ନାଦେ,
ବ୍ରହ୍ମାଣ୍ଡ ପୂରି ବ୍ରହ୍ମଲୋକ ଭେଦେ
ଭୂମି ଭେଦି ତାଳ ପାତାଳେ ପଶେ,
ବେଣୁ ମେଳି ବାଦ୍ୟ ପଞ୍ଚମ ରସେ । ୬ ।
କୃବେଲି ଚାମର ସହସ୍ରେ ପଡ଼େ,
ଚନ୍ଦ୍ର ଉଦୟା ଦାଣ୍ଡ ଦାଣ୍ଡ ଝଡ଼େ,
ପୁଷ୍ପର ଆଳଟ ସହସ୍ରେ ଢ଼ାଳି,
ସହସ୍ରେ ଫୁଲଛତ୍ର ଧରେ ତୋଳି । ୭ ।
ସହସ୍ରେ ଦର୍ପଣ ସ୍ତମ୍ଭରେ ଧରେ,
ମୁଖେ ମଧୁପାତ୍ର ତାମ୍ବୁଳ କରେ,
ଚନ୍ଦନ ମୁଦା କାହ୍ନା କରେ ଶୋହେ,
ବିବିଧ ବନ୍ଧେ କୃଷ୍ଣମନ ମୋହେ । ୮ ।
ଗାବନ୍ତ ବାବନ୍ତ ନୃତ୍ୟନ୍ତ ବାଳା,
ଉନ୍ମଦ ମଦନ-ଶରେ ବେଭୋଳା,

ଗଣ୍ଡ ଭ୍ରାନ୍ତ ସ୍ୱରୂପ ମାଧୁର୍ଯ୍ୟ ଯାକେ,
ସ୍ମର ଘୋର ଯୁଦ୍ଧ ଗାରିମା ଗାଜେ । ୯ ।
ଝଲମଲ ଝଟକତ ତାଟଙ୍କ ଗଣ୍ଡେ,
ବିଦ୍ୟୁତ ଖେଳା କି ଜୀମୂତ ମଣ୍ଡେ,
ରଙ୍ଗିମା ଅଧରେ ଭଙ୍ଗିମା ଗାଏ,
ଲୋଚନ ବନ୍ଦେ କୃଷ୍ଣ ମୁଖ ଚାହେଁ । ୧୦ ।
ହେର ଶ୍ରୀହରି ମୁଖ ପୂର୍ଣ୍ଣ ଇନ୍ଦୁ,
ଉଚ୍ଛୁଳ ଉଠେ ଗୋପୀ ପ୍ରେମ ସିନ୍ଧୁ,
କାଞ୍ଚିଦାମ ରୁଚି କାଞ୍ଚଲୀ ଖସେ,
ଯୌବନ ହେରିଇ ଢାଙ୍କନ୍ତି ଘସେ । ୧୧ ।
ପୁଣି ଖସଇ ପୁଣି ପୁଣି ଢାଙ୍କି,
ଯେମନ୍ତେ ଯୌବନ ବଣେ ହରିଙ୍କି,
କୃଷ୍ଣଙ୍କୁ ନ ଚାହିଁ ସଖୀଙ୍କି ଚାହେଁ,
ଗୀତ ଭିତରେ ଅନୁଆନ କହେ । ୧୨ ।

(ରହସ୍ୟ ମଞ୍ଜରୀ—୧୯ଶ ଛାନ୍ଦ)

## ସାଲବେଗ

(୧୬ଶ—୧୭ଶ ଶତାବ୍ଦୀ)

### ବଂଶୀ ଧ୍ୱନି

ସଖି, କୁଞ୍ଜବନେ ବଂଶୀ କେ ବଜାଇଲା ଗୋ ।। ପଦ ।।
ଶୁଷ୍କ ତରୁମାନେ ଥିଲେ    ଧ୍ୱନି ଶୁଣି ପଲ୍ଲବିଲେ
ପବନ ସ୍ଥଗିତ ହୋଇ ରହିଲା ଗୋ ।। ୧
ପାଷାଣ ଦ୍ରୁଅନ୍ତି ପାଣି    ଯମୁନା ନେତ୍ରେ ଉଜାଣି
ଜଳ ତେଜି ମୀନ କୂଳେ ରହିଲା ଗୋ ।। ୨
ବାଜି ଧାରେ କ୍ଷୁଦ୍ର ଗଣ୍ଡି    ଲଜ୍ଜାବନ୍ତ ଗଲି ଫିଟି

ବସନ ପିନ୍ଧନ୍ତେ ତର ନୋହିଲା ଗୋ ।। ୩

ଋଷିଙ୍କ ଆସନ ଟଳି     ରସରେ ପଡ଼ିଲା ଢଳି

ବ୍ୟାଘ୍ର ପଛେ କୁରଙ୍ଗୀ ଗୋଡ଼ାଇଲା ଗୋ ।। ୪

କହେ ସାଲବେଗ ହୀନ     ଜାତିରେ ଅଟେ ଯବନ

ରାଧାକୃଷ୍ଣ ପଦେ ଚିତ୍ତ ରହିଲା ଗୋ ।। ୫

## ମୋତେ ସେହି ରୂପ ଦେଖାଅ

ମୋତେ ସେହି ରୂପ ଦେଖାଅ ହରି,

ଜୟ ଶ୍ରୀରାଧେ ରାଧେ ବୋଲି ଡାକେ ବାଂଶରୀ,

ଯେଉଁ ରୂପେ ବଳି ଦ୍ୱାରେ ହେଲ ଭିକାରୀ । ୦ ।

ଡାହାଣେ ଶ୍ରୀହଳପାଣି     ମଧ୍ୟେ ସୁଭଦ୍ରା ଭଉଣୀ

ବାମ ପାଶେ ବସିଛନ୍ତି ଶଂଖ-ଚକ୍ର-ଗଦା-ଧାରୀ । ୧

କହେ ସାଲବେଗ ହୀନ     ଜାତିରେ ଅଟେ ଯବନ

କଂସ ଅଷ୍ଟମଲ୍ଲ ମାରି କାହାକୁ ନ ଅଛ ଡରି ? । ୨ ।

## ଆହେ ନୀଳଶଇଳ

ଆହେ ନୀଳଶଇଳ ପ୍ରବଳ ମତ୍ତ ବାରଣ,

ମୋ ଆରତ-ନଳିନୀ-ବନକୁ କର ଦଳନ ।। ଘୋଷା ।

ଗଜରାଜ ଚିନ୍ତା କଲା ଥାଇ ଘୋର ଜଳେଣ ।

ଚକ୍ର ପେଷି ଗ୍ରାହ ନାଶି ଉଦ୍ଧରିଲ ଆପଣ ।। ୧

ଘୋର ବନେ ମୃଗୁଣୀକି ପଡ଼ିଥିଲା କଷଣ ।

କେତେ ବଡ଼ ବିପତ୍ତିରୁ କରିଅଛ ତାରଣ ।। ୨

କୁରୁ ସଭା ତଳେ ଶୁଣି ଦ୍ରୌପଦୀର ଜଣାଣ ।

କୋଟିବସ୍ତ୍ର ଦେଇ ହେଲେ ଲଜ୍ଜା କଲ ବାରଣ ।। ୩
ରାବଣରେ ଛାଡି ବିଭୀଷଣ ଗଲା ଶରଣ ।
ଶରଣ ସମ୍ଭାଳି ତାକୁ ଲଙ୍କେ କଲ ରାଜନ ।। ୪
ପ୍ରହ୍ଲାଦ ପିତା ସେ ଯେ ବଡ଼ ଦୁଷ୍ଟ ଦାରୁଣ ।
ସ୍ତମ୍ଭରୁ ବାହାରି ତାକୁ ବିଦାରିଲ ତକ୍ଷଣ ।। ୫
କହେ ସାଲବେଗ ହୀନ ଜାତିରେ ମୁଁ ଯବନ ।
ଶ୍ରୀ ରଙ୍ଗା ଚରଣ ତଳେ କରୁଅଛି ଜଣାଣ ।। ୬

# ଶିଶୁଶଙ୍କର ଦାସ

(୧୬— ୧୭ଶ ଶତାବ୍ଦୀ)

## ଗୀତ

ଏମନ୍ତେ କହୁ ଦିନ ହୋଏ ଶେଷ । ଗଗନ ଢାଙ୍କି ମେଘୁ ପରବେଶ ।
ରବି ଶଶୀ ତାରା ନୋହେ ପ୍ରକାଶ । ପଙ୍କିଲ ମହୀ ଦାବ ତାପ ନାଶ ।
ତା ବୁମର ଦେଖି । ପ୍ରିୟା-ପଙ୍କଜ-ବଦନ ନିରେଖି । ୧ ।
ଜାନୁରେ ବସାଇ କାନ୍ଧରେ ଭୁଜ । ଚିବୁକେ ଦେଇ କର ସରସିଜ ।
ଦେଖ ସ୍ୱଜନୀ ବିଦ୍ୟୁ ମେଘକୋଳେ । ମତ୍ତ ମୟୂର ଶିଖୀ ସଙ୍ଗେ ମିଳେ ।
ଦାଦୁର ବାଣୀ । ମଣ୍ଡୂକୀ ଅଦ ମତ୍ତ ଯାହା ଶୁଣି । ୨ ।
ନିଜ ସଦନ ମିଳନ୍ତି ବିଦେଶୀ । ନଦୀ ଜଳ ଯେସନ୍ତେ ସାଗରେ ମିଶି ।
ଚିର ସନ୍ତାପ ତେଜିଲେ ସ୍ୱଜନ । ମେଘ ତୋଷକଲା ସକଳ ଲୋକ ।
ଶୁଣ ଗୋ ସଜନି । ବରଷ ଏକା ଦିବସ ରଜନୀ । ୩ ।
ଘୋର ଜଳଧରେ ଦିଶେ ନ ଦିଶେ । ବାର ନୋହେ କେହୁ ରାତ୍ର ଦିବସେ ।
ଚନ୍ଦ୍ରକୁ ନ ଦେଖି ଚକୋର ଦୁଃଖୀ । ଯାଦବେ ତେସନେ ମୋତେ ନ ଦେଖି ।
ଦେଖ ଇନ୍ଦ୍ରଚାପ । ଧରିଛୁ ମୋର ପିତାମ୍ବରରୂପ । ୪ ।
ଦେଖ କୁସୁମିତ କଦମ୍ବ ଶୋଭା । ଚୁମ୍ବନ କାଳେ ତୋର ଗଣ୍ଡଆଭା ।

ଜଳ ଲୁବ୍ଧର ବଢ଼ନ୍ତେ ପଙ୍କଜ । କୁଳାଙ୍ଗନାକୁ ଯେସନ୍ତେ କୁଳଲଜ ।
ଧନ୍ୟ ଜଳସ୍ନାନ । ସଧୀରେ ଗନ୍ଧ କେତକୀ ପବନ । ୫ ।
ମୂର୍ଖ ଗଜ ଭୂମି ଚନ୍ଦ୍ର ଆଘ୍ରାଣି । ତୋ ମୁଖ-ବାସ ସମତା ନଜାଣି ।,
ଲୋଧ କୁଟଜ ମଲ୍ଲିକା ମାଲତୀ । ଲୋଭେ ଅଛନ୍ତି ମଧୁକରେ ମାତି ।
ଏ ମଣ୍ଡୂକ ବାଣୀ । କୋକଳେ ମଉନ ହୋଇଲେ ଶୁଣି । ୬ ।
ସରୋବର ତଟେ ତମାଳ ବନ । ପାର୍ଶ୍ୱେ ଜମ୍ବୁଜଳ ପଡ଼େ ଘନ ।
କୁସୁମ ଲତା ଭୂମିତଳେ ଲୋଟେ । ବନ୍ଦ ପବନେ ଉପରକୁ ଉଠେ ।
ଏ ଭୁଚର କାନ୍ତି । ନୀଳ ମେଘରେ କି ବଳାକା ପନ୍ତି । ୭ ।
ଏମନ୍ତେ ନାନାବିଧ ସୃଷ୍ଟି ଲକ୍ଷି । ବର୍ଷିଲେ ବରଷା ଦିବସନିଶି ।
ଶରଦ ସମୟେ ନିର୍ମଳ ନଦୀ । ମାନଗଲେ ଯେସନ୍ତେ ମାନିନୀ ହୃଦ ।
ରବି ଶଶୀ ଦିଶେ । ସ୍ୱପଦ ଅନ୍ତେ ସାଧୁଜନ କି ସେ । ୮ ।
ଚନ୍ଦ୍ରଶୋଭା ଦେଖି କୁମୁଦ ବନେ । ଜଗତେ ଉତ୍ତ୍ରାସ କାମ ନନ୍ଦନେ ।
ଚନ୍ଦନେ ଭୂଷିତ ଅଙ୍ଗେ ସୁକେଶୀ । କି ଏ ମଣ୍ଡଳଗଣ ଛଇଳ—ହଂସୀ ।
ତେଜି ମାନସର । ମିଳିଲେ ବିଳାସ ସରସୀ ତୀର । ୯ ।
ଚତୁରୀ ସୁଚନ୍ଦ୍ରମୁଖ ବୃନ୍ଦି । ସୃଷ୍ଟି ପ୍ରକାରେ କୁମର ବୁଝାଇ ।
ଦେଖ ସଖୀ ନୀଳ ଉତ୍ପଳମାଳ । କୁସୁମ ତେଜି ତୋରପାଶେ ମିଳି ।
ତା ଦେଖି ପଙ୍କଜ । ମୁଦ୍ରିତ ହୋଇଲା ମନରେ ଲାଜ । ୧୦ ।
ମନୋରମା ଯହୁଁ ନଦୀ ପୁଳିନ । ମୋ ମନ ହରଇ ତୋର ଜଘନ ।
ମରାଳ ଦେଖି ତୋ ନୂପୁର ନାଦ । ଗତି ହୁଡ଼ିଲେ ମହନ ବିଷାଦ ।
ଗୋ ଚକୋର ଦେଖ । ଚନ୍ଦ୍ରେ ଭସିଲେ ତୋ ନପାଇ ମୁଖ । ୧୧ ।
କୁମୁଦ ପାଶେ କୋକନଦ ନ୍ୟୋଥ । ଶେଫାଳିକା ଶୋଭା ପାଇଲା ମୋତି ।
ରଙ୍ଗ ଶୁକଳ ବନ୍ଧୁ କଳା ଯୋଗ । ସ୍ୱଚ୍ଛ ହୃଦୟେ ସ୍ନେହ ଅନୁରାଗ ।
ପଲ୍ଲବିତା ଲତା । ବନ୍ଦୁଛନ୍ତି ତୋର ଚରଣରତା । ୧୨ ।
କୁନ୍ଦ ସେବତୀ ମଲ୍ଲୀ କୋବିଦାର । ଇନ୍ଦୁ କିରଣ କି ଭୂମି ଗୋଚର ।
ତୋ ମୁଖ ଶୋଭାକୁ ନ ପାରେ ଜିଣି । କିରଣ ଲୁଚିଲା ଏ ନିଶାମଣି ।
ଯେ ଅତି ପିଶୁନ । କଳାଶେଷ ହୋଏ ଉଆଁସ ଦିନ । ୧୩ ।

ଅବଶେ ପାଣ୍ଡୁର ଶଙ୍କାଶେ ଜଣି । ଚନ୍ଦ୍ରକୁ ନଦେଖି କୁମୁଦ ଶୋଷି ।
ଦେଖି କର୍ମେ ତନୁ ଶୁଖେ ଅଧର । ଲେଉଟି ମିଳବେ ବଉଶ୍ରୀପୁର ।
ବିବିଧ ବିଳାସେ । ରଜନୀ ବଞ୍ଚିଲେ ଅତି ଉଲ୍ଲାସେ । ୧୪ ।

(ଉଷାଭିଳାଷ—ଦଶମ ଛାନ୍ଦ)

# କାର୍ତ୍ତିକ ଦାସ

(୧୬ଶ—୧୭ଶ ଶତାବ୍ଦୀ)

## ରୁକ୍ମିଣୀ ବିଭା

ଏଥୁ ଅନନ୍ତରେ ସପତମ ଛାନ୍ଦ ଗୀତ
ବିଭାଘରେ ଆନନ୍ଦ ଉତ୍ସବ ନୃତ୍ୟ ଗୀତ
ଅନେକ ନୃପତି ବୃନ୍ଦ, ବାଦ୍ୟମାନ ବାଜେ
ରଥୀ, ହାତୀ, ଗଉଡ ମାହୁନ୍ତ ଦଳ ସାଜେ । ୧ ।
ରତ୍ନ କଞ୍ଚୁକିତ ପାଟର ଯେ ଶାଢ଼ୀ ଘର
ନାମଗିର ଟେରା ଟେକ ଝଲେକ ଉହାଡ
ଚନ୍ଦ୍ରାତପ ଚଉପାଶେ ଝୁମର ମଣ୍ଡିଲେ
ଅନେକ ଆଚ୍ଛାଦ ଛାମୁଣ୍ଡିଆ କରାଇଲେ । ୨ ।
ସୁବର୍ଣ୍ଣେ ଗଢ଼ିଲେ ବେଦୀ ସ୍ଫଟିକ ପାବଛ
ଗୃହକୋଣେ ନେଇଣ ଥୋଇଲେ ଦଧିମାଛ ।
ସୁବର୍ଣ୍ଣ କୁମ୍ଭ ଉପରେ ଚୂତପତ୍ର ଡାଳ
ତଥି ଉପରେ ଥୋଇଲେ ନେଇ ନଟୀକାଲ । ୩ ।
ରତ୍ନ ସିଂହାସନ ତଥି ଠାବେଣି ଠାବେଣି
ବସିଲେକ ଅନେକ ଆସିଣ ନୃପଗଣ
ଶିଶୁପାଳ ବରବେଶ ହୋଇକରି ଆସେ
ଶଏଯୋଡ଼ା ଖୀରଢ଼ୋଲ ବାଜୁଅଛି ପାଶେ । ୪ ।
ଦୁଇପାଖେ ଅଛନ୍ତି ସହସ୍ରପାଟ ଛତ୍ର

ବରବେଶେ ଅସୁଅଛୁ ଦମଘୋଷ ସୁତ
ଜରାସନ୍ଧ ବୋଲନ୍ତି ରୁକ୍ମଣ ମୁହଁ ଚାହିଁ
ଘେନ ଆସ ବରକୁ ପାଗ୍ରେନି ବେଗହୋଇ । ୫ ।
ଗଲେକ ରୁକ୍ମଣ ସଙ୍ଗେ ଘେନ ନିଜ ବଳ
ବାଟୁ ବର ଘେନଣ ଅଇଲା ଶିଶୁପାଳ
ବସିଲେକ ଶିଶୁପାଳ ସଭାର ମଧ୍ୟେଣ
ଦେଖିଣ ହରଷ ହୋନ୍ତି ଦୁଷ୍ଟ ରାଜାଗଣ । ୬ ।
ଏମନ୍ତ କହୁଣ ତହୁଁ ଶୁଭିଲେକ ଗୋଳ
ଧାଇଁଣ ଅଛନ୍ତି ଲୋକେ କରଣ ଚହଳ
କେ ବୋଲନ୍ତି କେଣେ ଗଲା କେ ବୋଲନ୍ତି କାହିଁ
ବାରତା କହନ୍ତି ଏକ ଅରେକକୁ ଚାହିଁ । ୭ ।
ଗୋବନ୍ଦେ ଅଇଲେ ବୋଲି ଶୁଣିଲେକ ତହିଁ
ବଳବାର୍ଯ୍ୟମାନ ଗଲା ଗର୍ଭସ୍ରାବ ହୋଇ
କଣ୍ଠୀରବ ଧ୍ୱନ ଶୁଣି ଯେସନେ ହରଣୀ
ତେସନେକ ପରସ୍ତେ ହୋଇଲେ ନୃପମଣି । ୮ ।
କ୍ଷତ୍ରିଗଣେ ଅବୋଲନ୍ତେ ଜରାସନ୍ଧ କହେ
ତୁମ୍ଭେମାନେ ଭସ୍ମ କମ୍ପା ପାଉଛ ସଭଏଁ
ବରଣ ନଥାଇ ଯେବେ ଅଇଲେ ଗୋପାଳ
ଏ କଥାକୁ ତୁମ୍ଭେମାନେ କାହିଁ ପାଇଁ ଭାଳ । ୯ ।
ଯେ ଯାହାର ବଳମାନ ଭୁଅ ପାଞ୍ଚଥିବା
ଆମ୍ଭେମାନେ ବସିଥାଇଁ ବଞ୍ଚନଗ୍ରଇବା
ଦୁଷ୍ଟପଣ ଆଚରିବ ଯେବେ ଚକ୍ରଧର
ତେବେ ଆମ୍ଭେମାନେ କରି ପାରି ତ ସମର । ୧୦ ।
ରୁକ୍ମଣେ ବୋଇଲେ କନ୍ୟାକୁ ଘେନ ଅସ
ବରଣ ହୋଇବ ତ ବଢିଲା ଗନ୍ଧବାସ
ରୁକ୍ମଣ ବୋଇଲା କନ୍ୟା ଅର୍ଯ୍ୟସ୍ଥାନେ ଥିବ

ରଥୀ, ହାତୀ, ଶତ ଶତ ତାର ସଙ୍ଗେ ଥିବ । ୧୧ ।
ଭବାନୀଙ୍କ ଦର୍ଶନ କରାଇ ବେଗେ ଆଣ
ଦାସୀଙ୍କୁ ବୋଇଣ ଆଜ୍ଞା ଦେଲେକ ରୁକ୍ମଣ
ତତକ୍ଷଣେ ନିଜ ପରିବାରମାନେ ଗଲେ
ରୁକ୍ମିଣୀକି ଗନ୍ଧଜଳେ ସ୍ନାନ କରାଇଲେ । ୧୨ ।
ପିନ୍ଧାଇଲେ ଅପୂର୍ବ ପଡଦା ଝୀନ ବାସ
ମଲ୍ଲିକା କୁସୁମେ ଭରି ସଜାଡ଼ିଲେ କେଶ
କପାଳେ ତିଳକ ଅଙ୍ଗେ ଚନ୍ଦନ ଲେପିଣ
ମୁକୁତା ସୀମନ୍ତି ଦେବ ତାହାଙ୍କ ଭୂଷଣ । ୧୩ ।
ସୁବେଶ କରାଇ ଦାସୀ ପହଣ୍ତ ମଣୋଇ
ହାନ୍ଦୋଳା ଉପରେ ବିଜେ କରାଇଲେ ନେଇ
ପାଟଛତ୍ର ବିମଳ ଆଲମ୍ବ ପରହର
ଦୁଇ ପାଶେ ସୁନାବେଣ୍ଟ ସହସ୍ରେ ଚାମର । ୧୪ ।
ମୂଦୁସୂଲ୍ଲମାନେ ସଙ୍ଗେ ଅଛନ୍ତି ଗୋଡାଇ
ଧୂପଦୀପ ଗନ୍ଧ ପୁଷ୍ପ ନଇବେଦ୍ୟ ବହି
ଅକ୍ଷତ ତାମ୍ବୂଳ ଦୀପ ବସାଇଣ ଥାଳୀ
ଗାବନ୍ତି ମଙ୍ଗଳ ଗୀତ ଦେଇ ହୁଳହୁଳି । ୧୫ ।
ଦାଣ୍ଡ ପହରାଇଣ ଚନ୍ଦନ ଛେଡ଼ା ଦେଇ
ରୁକ୍ମଣୀ ଚଳିବା ପଥେ ପୁଷ୍ପ ବରଷଇ
ତାକୁଛନ୍ତି ପରିବାର ମହିମା ଗୋ ମାସ୍ତେ
ଭଗବତୀ ମନ୍ଦିର ଦ୍ୱାରେଣ ଯାଇ ହୋସ୍ତେ । ୧୬ ।
ଅମ୍ବିକା ପୂରକୁ ସହୁଁ ଗଲେକ ରୁକ୍ମିଣୀ
ଶ୍ରୀକୃଷ୍ଣ ନନ୍ଦଘୋଷ ବାହିଲେ ତାହା ଶୁଣି
ଶଂଖପୁର ହୋଇଣ ପଡନ୍ତି ପଟୁଆର
ଲଢ଼ି ଯାଇ ବିଜୟେ କଲେକ ଚକ୍ରଧର ।
ହାନ୍ଦୋଳା ଉପରୁ ଓହ୍ଲାଇଲେ ନେମାଦେଇ

ରତ୍ନମୟ କଟାହ ଚରଣେ ଆଣିଦେଇ
ଚରଣ ଧୋଇଣ ତହିଁ ଆଚମ୍ବନ ଯାଇ
ପତିବ୍ରତା ବ୍ରାହ୍ମଣୀମାନଙ୍କ କରଧରି । ୧୮ ।
ଦେଉଳ ଭିତରେ ଯାଇ ପଶିଲେ ରୁକ୍ମିଣୀ
ସାଷ୍ଟାଙ୍ଗେ ପାଦେ ପଡ଼ିଣ ସ୍ତୁତି କଲେ ପୁଣି
ଜୟ ଜୟ ଦେବୀ ମାଗୋ ଅନାଦି ଶକତି
ଗିରିଶ-ନନ୍ଦନୀ ଗହେଶୀ ଭଗବତୀ । ୧୯ ।
ଚଣ୍ଡ,ମୁଣ୍ଡ ନାଶିନୀ ମହିଷା ଦର୍ପହାରୀ
ପ୍ରସନ୍ନ ହୋଇବା ମୋତେ ଦେବୀ ଶାକମ୍ଭରୀ
ତୁମେ ଦେବୀ ଅନାଦି ଅଭୟା ମହାମାୟେ
ଶିଶୁପାଳ ମୂର୍ଖୁଁ ମୋତେ କର ଗୋ ଅଭୟେ । ୨୦ ।
ଏମନ୍ତ ପ୍ରକାରେଣ ଅନେକ ସ୍ତୁତି କଲେ
ଚନ୍ଦନ ଲେପିଣ ଗଳେ ପୁଷ୍ପମାଳା ଦେଲେ
ଧୂପଦୀପ ଗନ୍ଧପୁଷ୍ପ ନଇବେଦ୍ୟ ଦେଇ
କାମନା କଲାକ ବାଳୀ କୃଷ୍ଣ ପାଇବଇଁ । ୨୧ ।
ଏମନ୍ତେଣ ପ୍ରସନ୍ନ ହୋଇଲେ ମହାମାୟେ
ପାଇବ କୃଷ୍ଣଙ୍କୁ ଏଥେ ନାହିଁ ଗୋ ସଂଶୟେ
ପୁଣି ପାଦତଳେ ପଡ଼ି ଉଠିଣ ରୁକ୍ମିଣୀ
ବାହୁଡ଼ିବା ବେଳକୁ ମଙ୍ଗଳ କଲେ ପୁଣି । ୨୨ ।
ସଧୀରେ ସଧୀରେ ବାଳୀ ପଦଶୁ ମଣାଇ
କମଳ ନୟନ ରୂପ ମନେ ଅଛୁ ଧ୍ୟାୟି
ଘନ ଘନ ଫୁରଇ ତା ବାମ ବାହୁ ଆଖି
ଦେଉଳରୁ ବାହାର ହୋଇଲେ ଚନ୍ଦ୍ରମୁଖୀ । ୨୩ ।
କୃଷ୍ଣଙ୍କୁ ନ ଦେଖି ତାର ଦେହେ ଜ୍ଞାନ ନାହିଁ
ବଦନ ତୋଳିଣ ବାଳୀ ଦେଲାକ ଅନାଇଁ
ଦେଖିଲାକ ଅଭିନବ ମଦନ ସୁନ୍ଦର

ନୟନେ ନୟନ ଭେଟ ପଡ଼ିଲା ତାହାର । ୧୪ ।
ଅତି ବେଗେ ରଥରୁ ଓହ୍ଲାଇ ଯଦୁସାଇଁ
ରୁକ୍ମିଣୀଙ୍କ କର କରେ ଧଇଲେକ ଯାଇଁ
ଅଶ୍ୱଗଜ ରତ୍ନହାର ଅଛନ୍ତି ଅପାର
ନେଇ ବସାଇଲେ ନନ୍ଦୀଘୋଷର ଉପର । ୧୫ ।
ଯେସନେକ କଣ୍ଠୀରବ ନଥଇ ହରିଣୀ
ତେସନେକ କରଣ ନେଲେ ଚକ୍ରପାଣି
ନାଗମଧ୍ୟୁଁ ଯେସନେ ଗରୁଡ଼ ନେଇ ବଳି
ତେସନେ କରଣ ଘେନ ଗଲେ ବନମାଳୀ । ୧୬ ।
ନେଲା, ନେଲା, ଗଲା, ଗଲା, ବାଜିଲାକ ଢୋଲ
ଧାଇଁଲେକ ରଥୀ ହାଥୀ ନୃପତି ସକଳ
ଜରାସନ୍ଧ ବଳ ଘେନ ଅଛଇ ଗୋଡ଼ାଇ
ଆଗେ ଓଗାଳିଲେ ଆସି ରେବତୀର ସାଇଁ । ୧୭ ।
ରୁକ୍ମିଣୀଙ୍କୁ ଘେନିଣ ସେ ଗଲେ ଚକ୍ରଧର
ହାଥୀ ହାଥୀ ରଥେ ରଥେ ଲାଗିଲା ସମର
ନଗ୍ନଲୋକେ ବୋଲନ୍ତି ସେ ଯଦୁଁକ ଗଞ୍ଜନ
ବିଧାତା କେମନ୍ତେ ଆନ କରିବ ଘଟଣ । ୧୮ ।
ବେଦୀର ଉପରେ ଆହ୍ନ ବସିଛୁ କପାଇଁ
ଜନ୍ମକୁ ମୁଖେ ଲାଜ କାଳିଛନ୍ତି ନାହିଁ
ବୋଲୁଛନ୍ତି ଆମ୍ଭେ ବଡ ବ୍ରାହ୍ମଣା ବଳୀୟାର
କୋଡ଼ି ଘେନ ଯାଉଛନ୍ତି କନଥ ଏହାର । ୧୯ ।

(ରୁକ୍ମିଣୀ ବିଭା—ସପ୍ତମ ଛାନ୍ଦ)

# ଭୀମା ଧୀବର

(୧୬ଶ—୧୭ଶ ଶତାବ୍ଦୀ)

## ବାରୁଣାବନ୍ତରେ ଦୁଃଶା

ଶୁଣ ଆହେ ସୁଜ୍ଞ ନର ବାରୁଣାବନ୍ତ ନଗର
ହସ୍ତିନାକୁ ଦ୍ୱାଦଶ ଯେ ଜନ ଅଟଇ
ପବନଙ୍କ ଖରତର ଧାଇଁଲା ସେ ଦୁଃଶାବୀର
ପ୍ରବେଶ ହେଲା ବାରୁଣା ବନ୍ତରେ ଯାଇଁ
ପାଦ ଘାତେ ମହୀ ଚମକେ
ଆରେ ଆରେ ପାଣ୍ଡବାରେ ବୋଲିଣ ଡାକେ ।। ୧
ଭୟ ପାଇ ନରଲୋକେ ପଳାଇଣ ଗଲେ ଥୋକେ
ସିଂହଦ୍ୱାରେ ଦୁଃଶାସନ ପଶିଲା ଠେଲି
ଦ୍ୱାରେ ଦ୍ୱାସ୍ଥମାନେ ଥିଲେ କୁନ୍ତୀଙ୍କ ଆଗେ କହିଲେ
ଦୁର୍ଯ୍ୟୋଧନ ଭ୍ରାତ ଦୁଃଶା ଆସୁଛି ପେଲି
ଶୁଣି କୌନ୍ତ ଭୋଜ କୁମାରୀ
ଯାଇଁ ସିଂହଦ୍ୱାର ମାଡ଼ି ବସିଲେ ନାରୀ ।। ୨
କୁନ୍ତୀ ବୋଇଲେ,ରେ ବାରୁ ରହରହ କଥାଏକୁ
ପଞ୍ଚଶରା କମ୍ପା ଗୃହ ଭିତରେ ପଶୁ
ସିଂହର ଭୁବନେ ଆସି ଶୃଗାଳ ପଶଇ ଧାଁସି
କହ ଏ ଚଣ୍ଡ ମନୁ ସଂଶୟ ନାଶୁ
ଦୁଃଶା କର ଯୋଡ଼ି ଜଣାଏ
ମନ୍ଦ କୃତ୍ୟ କଲେ ମାଗୋ ତୁମ୍ଭର ପୋଏ ।। ୩
ଯୁଧିଷ୍ଠି ହସ୍ତିନା ଗଲେ ମାନଗୋବିନ୍ଦର ତୁଲେ
ପଶାଖେଳ ରସେ ମାତ ହୋଇଥିଲେ ଖେଳ
ରାଜ୍ୟଦଣ୍ଡ ସିଂହାସନ ନକୁଳ ଭୀମ ଅର୍ଜୁନ

ଦ୍ରୌପଦୀ ସହିତେ ପାଶ ଖେଳେ ସକଳ
ହାରିଲେ ସେ ଧର୍ମଙ୍କ ସୁତ
ଜିଣିଲେ ମାନଗୋବିନ୍ଦ ଶୁଣ ଗୋ ମାତ ॥ ୪
ଆଜ୍ଞା ମୋତେ ଛନ୍ଦ ଦେଇ ରାଜା ସାନ୍ତୁମରାସାଇଁ
ଦ୍ରୌପଦୀର କେଶ ଧରି ଦେନ୍ ମୁଁ ଯିବି
ଆଗେ ମାତ ଶୁଣ ଦ୍ୱାର ଯିବଇଁ ଉତର ପୁତ୍ର
ଉତ୍ତର ହୋଇଲେ ପରୀକ୍ଷିତ ପାଇବ
କୁନ୍ତୀଦେବୀ ପୁଚ୍ଛିଲେ ସବୁ
କେଉଁ ପାଶେ ଦ୍ରୌପଦୀଙ୍କି ହାରିଲେ ବାବୁ ॥ ୫
ଦୁଃଶାସନ ବୋଇଲେ ମାତ ପ୍ରଥମେ ଧର୍ମଙ୍କ ସୁତ
ହାରିଲେ ସକଳ ଘର ଧନ ଭଣ୍ଡାର
ଦ୍ୱିତୀୟରେ ପାଶକରି ଦଣ୍ଡ ସିଂହାସନ ହାରି
ତୃତୀୟେ ହାରିଲେ ଭୀମ ଧୀର କୁମର
ଚତୁର୍ଥେ ହାରିଲେ ଅର୍ଜୁନ
ପଞ୍ଚମେ ହାରିଲେ ମାଗୋ ମାଦ୍ରୀନନ୍ଦନ ॥ ୬
ଷଷ୍ଠ ବେଳେ ପାଶ କରି ହାରିଲେ ଦ୍ରୌପଦୀ ନାରୀ
ସପ୍ତବେଳେ ହାରି ଅଙ୍ଗ ହେଲେ ମଳିନ
କୁନ୍ତୀ ବୋଇଲେ ଦ୍ରୌପଦୀ ପ୍ରଥମ ବଡାସୀ ସତୀ
ପ୍ରଥମ ପାଶେ ହାରିଲେ କଥନ୍ତ ପୁଣ
ଘରି ଘରି କରିଛ ଗୋଳ
ଏ ଗୁର କଥ କୁ ଦୁଃଶା କରୁ କଟାଳ ॥ ୭
ସୋଦରେ ସୋଦରେ ପୁଣି ହେଉଛନ୍ତି ହଣାହଣି
କହ ଦ୍ରୌପଦୀ କ ଦୋଷ କରିଛୁ ତହିଁ
ଶୁଣି କରି ଦୁଃଶାସନ ବୁଲାଇ ବେନ ନୟନ
ଆଡ଼ ହୁଅ ବୋଲି କୁନ୍ତୀ ଦେବୀଙ୍କି କହି
ଠେଲି କରେ ଦେଲା ପକାଇ

କବାଟ କଣରେ ଦେଖୀ ପଡ଼ିଲେ ଯାଇ ।। ୮

କୁନ୍ତୀ ଉଚ୍ଚେ କଲେ ସ୍ୱର    ଦ୍ରୁପଦ ରାଜକୁମାରୀ
ସୁଭଦ୍ରାଙ୍କ ଘେନଯାଇଁ ଭିତରେ ପଶ
ବଳାତ୍କାରେ ଦୁଃଶାସନ    ପଶିଲେ ଆମ୍ଭ ଭବନ
ଗୁପତ ଗହ୍ୱରେ ରହ ହୁଅ ଅଦୃଶ୍ୟ
ତାହା ଶୁଣି ସୁଭଦ୍ରାଦେଈ
ଚନ୍ଦଣାଳା ପୁରେ ବେଗେ ଲୁଚିଲେ ଯାଇ ।। ୯

ଦ୍ରୌପଦୀ ସେ ଭୟ ପାଇ    ଆକୁଳେ ଅଙ୍ଗ ଥରଇ
ତରତର ହୋଇ ଉଠି ଗଲେ ପଳାଇ
କେଶ ପାଶ କଟୀବାସ    ଫିଟି ବହେ ଖରଶ୍ୱାସ
ରୋଷେଇଶାଳ ମଧ୍ୟରେ ଲୁଚିଲେ ଯାଇ
ବ୍ୟାଧ ଭୟେ ଯେହ୍ନେ ମୃଗୁଣୀ
ଚଞ୍ଚଳ ନୟନ ମୁଖୁଁ ନ ଫୁଟେ ବାଣୀ ।। ୧୦

ପୁରେ ପୁରେ ଦୁଃଶାସନ    ଖୋଜଇ ସର୍ବ ଭୁବନ
ନେତ୍ରପୁର ବାସପୁର ଡ଼ାଳିମ୍ବ ପୁର
ଝୀନପୁର ରତ୍ନପୁର    କଉସ୍ତୁଭ ମଣିପୁର
ଇନ୍ଦ୍ରଅବକାଶପୁର ଖୋଜଇ ବୀର
ଯୁଧିଷ୍ଠିର ଶୋଇବା ପୁରେ
ଇନ୍ଦ୍ରପୁର ସମ ନୋହେ ତାକୁ ଲକ୍ଷ୍ୟରେ ।। ୧୧

ଚତୁଷ୍କୋଣ ଦୀର୍ଘ ପ୍ରସ୍ଥ    ଅଟଇ ସେ ପୁର ସ୍ଥିତ
ସ୍ୱର୍ଣ୍ଣମାଳା ଖଞ୍ଜା ଅଛି ଅସ୍ତରତନ
କ୍ଷୁଦ୍ର ମୋତି କେବ କେବ    ଲମ୍ବିଛି ମୁକୁତା ଝରା
ପ୍ରବାଳର ସ୍ତମ୍ଭ ହୋଇଅଛି ଶୋଭନ
ଦିବ୍ୟ ପାଟ ବସ୍ତ୍ର ଚାନ୍ଦୁଆ
ମରକତ ଚାମର ମାନ ଲମ୍ବିଛି ନୂଆ ।। ୧୨

ସେ ପୁରରେ ଦୁଃଶାସନ    ନ ପାଇ ଦ୍ରୌପଦୀ ଚିହ୍ନ

ବସ୍ତ୍ର ହୋଇ ବହନ କେହ୍ନଟି ଅସେ
ଖୋଜ ନ ପାଇଣ ଶେଷ ସେପେଇଣାଲ ଦନ୍ତ
ଆଣୁ ଭଗ୍ନ ଦେଇ ସ୍ୱର୍ଗେ ସ୍ୱଣ ପାରୁଣେ
ପୂର୍ବଦଗେ ଉଦେ କ ଭାନୁ
ସେହୁମତ ଦଶୁଅଛୁ ଦ୍ରୌପଦୀ ତନୁ ॥ ୧୩
ଦେଖିଣ ଦୁଃଶା ଚକତ ବୋଲଇ କ ଦନନାଥ
ଆକାଶକୁ ଛାଡ଼ିଆସି ଏଥେ ରହିଲା
କ ଅବା ଗନ୍ଧର ଉତ୍ସବ ଶଶଧର ଏଣ୍ଟ ରହେ
କେବଣ ଚରିତ ମୋତେ ଜଣା ନଗଲା
ପୁଣି ଗଲା ପାଣ୍ଡବଙ୍କ ସ୍ଥଲ
ନକଟେ ଜାଣିଲା ବୀର ଦ୍ରୌପଦୀ ବୋଲ ॥ ୧୪
ଶୁଣନ୍ତୁ ସୁଜନ ଜନ ମୁଁ ଛାର ପାମର ଦୀନ
କହିବାକୁ ଯୋଗ୍ୟ ନୁହେଁ ମହାଭାରତ
ଅର୍ଥକୁ ଅର୍ଥ ମିଶାଇ ପଦକୁ ପଦ ପକାଇ
ଛନ୍ଦ ପ୍ରତ ବନ୍ଧରେ ମୁଁ କଲଇଁ ଗୀତ
ସାଧୁ ଜନ ନ ଘେନ ଦୋଷ
କହେ ଦୀନ ଶ୍ୟାମା କୃଷ୍ଣ ଚରଣେ ଆଶ ॥ ୧୫

(କପଟ ପାଶା—ତ୍ରିପଦୀ ଛନ୍ଦ)

## ବିଷ୍ଣୁ ଦାସ

(୧୭ଶ-୧୮ଶ ଶତାବ୍ଦୀ)

### ରେ ମନ୍ଦାକିନି

କୃପା-ଲୋଳ-ଲୋଚନା    କଳକଣ୍ଠ-ବଚନା
କନକ-ପ୍ରତିମ-ବରନା,
କୁନ୍ଦ-ସୁନ୍ଦର-ଦନ୍ତୀ    କମନୀୟ ମୂରତି
କନକ-କମଳ-ବଦନାରେ
ମନ୍ଦାକିନୀ !
କଠିନ ମୋହ ପାଇଁ ଯିବୁ
କୋମଳେ ପ୍ରେମନ୍ତ କହିବୁ
କରୀନ୍ଦୀତା ଗମନ !    କୃପା ନଜରୁ ଯେବେ
ରସିକଯୁବା ଜାଆଇବୁ,ରେ ମନ୍ଦାକିନି । ୧ ।
ଖଞ୍ଜନ ନୟନା ସେ    କୋମଳା ସୁଦୟାକୁ
ଯେନରୁ ମୋହୋ ଉପଗତ,
ଖଣ୍ଡେନ୍ଦୁ ଶେଖରଙ୍କ    କରବେ ସେ ଦୟାକୁ
ମଙ୍ଗଳ ହୋଇବ ଜୀବତରେ
ମନ୍ଦାକିନି !
ଖର ଅପାଙ୍ଗ ଚନ୍ଦ୍ରମୁଖୀ
ଖେଳନ୍ତା ନେତ୍ରାନ୍ତେ ଅନାଇଁ
ଖଣ୍ଡା ମଦନ ହାଥେ    ଶାଣ ଧର ମୁଁ ଦେଲି
ଆପଣା ଶିରଚ୍ଛେଦ ପାଇଁ,ରେ ମନ୍ଦାକିନି । ୨ ।
ଗାଢ ହୃଦୟା ସେଣୁ    ମୋହୋର ଅନୁନୟ
ଶୁଣିଲେ ବଢିବ ମଦନ,
ଦୃଢହୃଦୟ ହେଲେ    ଭିତରେ ସୁରସ

କୁମୁଦନାୟିକା ଯେସନ ରେ
ମନ୍ଦାକିନ !
ଗର୍ବ ମନରେ ନ କରିବୁ
ଗୁପତ ସମସ୍ତ ଝାକିବୁ
ଗନ୍ଧର୍ବସନ୍ଧ୍ୟା ମନ ଯେମନ୍ତେ ମୋହୁଥାରେ
ବଳଇ ତେମନ୍ତ କରିବୁ,ରେ ମନ୍ଦାକିନ । ୩
ଘନଜଘନା ନଶ୍ଚେ ଯେଜାବ ମୋ 'ବେଦନା
ଘେନାଇ କହିବୁ ଯେମନ୍ତ,
ଘଟଣ ତୋ ବଦନ ଦରଶନ ବଶ୍ୱେନେ
ମଦନ ହୋଇଲା କୃତାନ୍ତ ରେ
ମନ୍ଦାକିନ !
ଯେଜାବ ଜୀବନ ତାହାର
ଘନସ୍ତନ ! ତୁ ପ୍ରତିକାର
ଯେନରୁ ଯେବେ ସେ ବ— ନସ୍ତ ଶ୍ରବଣ ପଥେ
'ଜୀବନ ହୋଇବ ଲୋ'ହୋର,ରେ ମନ୍ଦାକିନ । ୪ ।
ନଳନ ଇନ୍ଦୀବର 'ମୀନ ଜଣୁ ଚକୋର
ମଧୁର ମୀନ କାମଶର,
ନୟନ ତୁଳନାକୁ କେଉଁ ଗୁଣେ ସେ ସମ
ଚଞ୍ଚଳାସ୍ତୁତଲୋଚନାର ରେ
ମନ୍ଦାକିନ !
ନାଗଶ୍ରୀଚନ୍ଦ୍ର ମୋତେ ଗୁହିଁ
ନେତ୍ର ମନ୍ତରେ ଉଲଟାଇ
ନ ଗୁହିଁଲା ପଚ୍ଛେ ସେ କରି ସେ ଗୁହିଁଗଲା
ନୟନରୁ ତା ଯାଉ ନାହିଁ,ରେ ମନ୍ଦାକିନ । ୫ ।

× × × ×

ଜୁଆକାନ୍ତୁ ସିଂହାଣୀ    ଛଇଲରେ ସ୍ୱହାଣୀ
ଶୁଣିଲେ ବନସ୍ଥ ମୋହେ'ର ;
ଛାଡ଼ ସମସ୍ତ ଶ୍ଳେଷ    ମନୋଗତ ବିଳାସ
ଉତ୍ସାହ ବଢିବ ତାହାର ରେ
ମନ୍ଦାକିନ !
ଛୀନୋଦଶ୍ରୀ ମନ ନ ପାଇ
ଛାଡ଼ି ପଡ଼ିବ ରୁମ୍ନେ ନାହିଁ
ଛଳମଣ୍ଡନା ଯେବେ    ମନେ ଆନ ଘେନିବ
ଏମନ୍ତ କହିବୁ ବୁଝାଇ,ରେ ମନ୍ଦାକିନ । ୬ ।
ଯଥା ସିନ୍ଦୂର ରଜ    ମସ୍ତକରେ ମଣ୍ଡନ
ଚନ୍ଦନ ସର୍ବାଙ୍ଗ ମଣ୍ଡନ,
ଜାଣିଲେହେଁ ଏମନ୍ତ    ସମସ୍ତ ଲୋକଙ୍କର
ଚନ୍ଦନଠାରେ ବହୁମାନ ରେ
ମନ୍ଦାକିନ !
ଯେବେ କରିବ ବାଳା କୋପ
ଜାଣି ମୁଁ ସେ ସ୍ନେହକଳାପ
ଯେମନ୍ତେ ନାନା କାଷ୍ଠ—    ଧୂମ ଧୂମରେ ଲେଖା
ଯଥା ଅଗୁରୁ ଧୂମ ଧୂପ,ରେ ମନ୍ଦାକିନ । ୭
କେଳିଦଶମୀ ପ୍ରିୟା    ସହଚରୀମାନଙ୍କୁ
ସୃଷ୍ଟି କହିବ ଅନକ୍ଷରେ,
କେଳି କଥିତ ଭାବ    ଗର୍ବ ବିଭ୍ରମ ଲବ
ଜୁଳିଥିବ ସେ ବଚନ ରେ
ମନ୍ଦାକିନ !
କେଉଁଠେ କରିବୁ ତୁ ଠାବ
କେଉଁ କହାସୀ ଗୃହସ୍ଥବ
କେସନସ୍ତନା ନୋହୁ    ପ୍ରସନ୍ନ ଅପ୍ରସନ୍ନ

ନୟନନନ୍ଦନ ପୁଷ୍ପେଭବ,ରେ ମନ୍ଦାକିନ । ୮ ।

ନୃପବଲ୍ଲଭ ବୋଲି ଭରସା ହେଉ ନାହିଁ

ନୃପରକ୍ଷକରେ ମଣ୍ଡନା ;

ନଳିନ ନାଳୀ କଣ୍ଟ— କରେ ବେଷ୍ଟିତ ହେଲେ

ମଧୁପ ଉଦ୍‌ଗମନା,ରେ

ମନ୍ଦାକିନ !

ନିସର୍ଗ ଚଞ୍ଚଳ ନେତ୍ରାକୁ

ନିର୍ମଳ କେତକୀ ଗାତ୍ରାକୁ

ନ କରୁ ଆଶଙ୍କା ଏହି କଥା ବସ୍ତୁରେ

ସୁରତତ୍ତ୍ୱସ୍ୱରପାତ୍ରାକୁ,ରେ ମନ୍ଦାକିନ । ୯ ।

(ମନ୍ଦାକିନୀ ଚଉତିଶା)

# ପୁରୁଷୋତ୍ତମ ଦାସ

(୧୭ଶ—୧୮ଶ ଶତାବ୍ଦୀ)

## ମାଣିକ୍ୟ

ଦର୍ଶିଲ ମସ୍ତକ କି ସେ ହେମନଟିକାଳ
ସିନ୍ଦୂର ବିନ୍ଦୁ ଲଲାଟେ ନୟନେ କଜ୍ଜଳ । ୧
ସୁଦିବ୍ୟ କରଣ ଶୋଷା ଶୋଭିଛି ସୁନ୍ଦରୀ
କପାଳେ ସୁନ୍ଦର ଚିତା ମୁନି-ମନୋହାରୀ । ୨
କୁରଙ୍ଗୀ-ନୟନରେ ତା ଅଞ୍ଜନ ରଞ୍ଜିଛି
ବନ୍ଧୁକ କୁସୁମ ପ୍ରାୟେ ବଦନ ଶୋଭୁଛି । ୩
ତିଳଫୁଲ ନାସାରେ ବର୍ଣ୍ଣି ଚନ୍ଦ୍ରଗୁଣା
ଗୁରୁ ଶୁଦ୍ଧ ପ୍ରାୟେ କଣ୍ଠେ ତାଙ୍କ ପ୍ରବୀଣା । ୪

କଣ୍ଠେ ମଲ୍ଲୀକଢ଼ି ତାର ଶୋହେ ବନ୍ୟ ଫୁଲ
ଏକକୁ ଆରେକ ଜିଣି ସମସ୍ତେ ଅମୂଲ । ୫
କର୍ଣ୍ଣରେ ଯେ କର୍ଣ୍ଣମାଳ ଚନା ଅଛି ଜଡ଼ି
କନକ ଖଚିତ ଶୋଭା ଦଶେ ହସ୍ତେ ଚୂଡ଼ି । ୬
ବାହେ ତାଡ଼ବନ୍ଧ ତହିଁ ଝଲେ ପାଟଫୁଲ
ପଞ୍ଚାଙ୍ଗୁଳିରେ ମୁଦ୍ରିକାମାନ ଦଶେ ଝଳ । ୭
କଳାମେଘୀ ହିନ ଶାଢ଼ୀ ପନ୍ଧରଣ ଭଲ
ବାମକନ୍ଧେ ପଣତ ଯେ ହାଟେ।ଇଙ୍କ ପର । ୮
ଜାନୁ ଭଳଟ ରମ୍ଭା କି କନକର କାନ୍ତି
ବାମ ଚରଣରେ ବଳା ପଟିଏ ଶୋହନ୍ତି । ୯
ପଦ୍ମରେ ଅଳତା ପ୍ରପଦରେ ତା ହୁଣ୍ଡିଆ
ପାଦ ଚଳାଇବା ଭଙ୍ଗୀ ମନହୁଲିପିଆ । ୧୦
ମୋହେ ହଂସଗତି କଟୀ ଡମରୁ ଆକାର
ସଞ୍ଚଧଣ ତହିଁ ଅଟେ ତାର କୁଚଭାର । ୧୧
ତାଳମୂ କି ଦନ୍ତପନ୍ତ ମୃଦୁ ମୃଦୁ ହାସ
ଅଣ୍ଡିର କୋକିଳ ପ୍ରାୟେ ବଚନ ସରସ । ୧୨

× ×

କହ ଅଗୋ ଗୋପାଳୁଣୀ ତୁମ୍ଭ ନାମ କସ
କେଉଁ ଗ୍ରାମ ହିଏ ତୁମ୍ଭ ବାସ କେଉଁ ଦେଶ । ୧୩
ଶାଶୁଘରେ ଖଟିଅଛ କି ନା ବାପ ଘରେ
କେତେ ଦହି ଦୁଧ ଆଣି ବିକଲ ହାଣ୍ଡରେ । ୧୪
ତରକ ଯେ ବିକା କଣା ଜାଣିଛି କି ଛନ୍ଦ
ଦେଖିଣ ପାରନ୍ତିକି ଶାଶୁ ସେ ନଣନ୍ଦ । ୧୫
ଅଳ୍ପ କଥଣ ତୁମ୍ଭେ ଘରଠାରୁ ଅଣି
ବହୁତ ହେବା ପାଇଁ ପୂରାଅ କି ପାଣି । ୧୬
କୁସ ହସ ହୋଇଣ ଯେ ବୋଲଇ ମାଣିକା

ଆମ୍ଭର ତ ଜୀବିକା ସେ ତାହା ନ ଜାଣନ୍ତି । ୧୭
ବୃଝ ଦେହେଶ୍ୱର ହିଁଅ ଚନ୍ଦ୍ର ମୋର ପନ୍ଥ
ଏହୁ ବାଟେ ଦୁଧ ଦହି ବନ୍ଧୁଥାଇ ନନ୍ଦ । ୧୮
ଛନ୍ଦବନ୍ଧ କଥା ଯାହା କହିଲ ଗୋସାଇଁ
ଛନ୍ଦ ନ ଶିଖିଲେ ଦାଣ୍ଡେ ଅଯୋଗ୍ୟ ବୋଲାଇ । ୧୯

(କାଞ୍ଚିକାବେରୀ)

୦

# ପ୍ରତାପରାୟ

(୧୭ଶ—୧୮ ଶତାବ୍ଦୀ)

## ଶଶିସେଣା

ରାଗ :—ବସନ୍ତ

ଶରଦ ଚନ୍ଦ୍ରମା ଆନନ, ବେନି ଚକୋର କି ସେ ?
ଫୁଲ୍ଲାରବିନ୍ଦ ସୁଗନ୍ଧେ କି ଅଳି ଲାଳସେ ବସେ ? । ୧
ଭ୍ରୂଲତା କି କାମ କମାଣ ଶର ଲୋଚନ ବେନି
ତାଙ୍କ ଶାଣେ ବସାଇଣ, ବନ୍ଧେ ଅପାଙ୍ଗ ଯେନି । ୨
ମଳୟ ସମୀର ମନ୍ଦର ନାସା ଅଟଇ ତାର,
ବସନ୍ତ ଅସେ ଉଦ୍‌ଘସିତ ଦୁଏ କିଂଶୁକଧର । ୩
ଘନ କୁଟୀଳ ଭୃଙ୍ଗ ନନ୍ଦେ ତାର ସ୍ନିଗ୍ଧ ଚକୁର
ଦଳିତ ଅଞ୍ଜନ ଚିକ୍‌କଣ ମୃଗମଦ ସୁନ୍ଦର । ୪
କୁସୁମେ ସାଜେ ସୁକବରୀ ଭଣେ ବିରହୀ ମନ
ଫାନ୍ଦେ ବନ୍ଧନ କି କରନ୍ତି ମନସିଜ ସ୍ୱଜନ । ୫
କମ୍ବୁ-ରୂପ ଗ୍ରୀବା ବିଳାପ, ପିକ ସୁସ୍ୱର ବାଣୀ
ଅମୀସ୍ୱମାନ ଠୂଳ କରି ବ୍ରହ୍ମ କଣ୍ଠ ନ ଜାଣି । ୬
ଶୁକ, ସନକ, ସନାତନ ମୁନି ଶୁଣିଲେ ବାଣୀ

ଯୋଗ ତେଜ ଭୋଗ ଇଚ୍ଛିବେ ମନେବାଞ୍ଛା ତରୁଣୀ । ୭
ବଳେ ବାହୁ ମୃଣାଳ ଯାର ବହେ ମୁକୁର ଜ୍ୟୋତ
କଣ୍ଠସ୍ଥ ଲତାର ଶିଖରେ କି ବସେ ଭୃଗୁପତ । ୮
ହେମ କୁନ୍ଦନ ପୀନସ୍ତନ ବେନି ଶଇଳ କସେ
ହୃମଲସ୍ଥ ଗିରିଦୁଇ ଏକ ଠାବରେ ବସେ । ୯
ଛତ୍ରଦ୍ୱୟରୁ ଯେନ ଅନଙ୍ଗ ବାସ ଜଣନ୍ତୁ ତହିଁ
ତ୍ରିଭୁବନ ଜିଣି ନଭସ୍ଥ ସେତୁ ହରକୁ ପାଇ । ୧୦ ।
ମୋଡସର ମେରୁତଟରୁ ବହେ ଜାହ୍ନବୀ ନଦୀ
ରୁଞ୍ଚ ହୃଦରେ ପ୍ରେମରାଜ କି ସେ ମିଶେ କାଳନ୍ଦୀ । ୧୧
ସରସ୍ୱତୀ କୂପ ଅଟଇ ତାର ଗମ୍ଭୀର ନାଭି
ତ୍ରିବେଣୀ ସଙ୍ଗେ ପୂର୍ଣ୍ଣ୍ୟସ୍ଥଳେ, ଏହୁ ତୀର୍ଥକୁ ଲଭି । ୧୨
ନିତମ୍ବ କଟୀ କୁମ୍ଭକଟୀ ରହେ କେଶରୀ ତହିଁ
ଜାଣି ବିଧାତା ବନ୍ଧକଲା ରକ୍ତ ତ୍ରିବଳୀ ଦେଇ । ୧୩
ଉରୁ ସେ କନକ କରଭ, ଦେଖି ରମଣୀ ମୋହେ
ପ୍ରବୁଦ୍ଧର ଧଇର୍ଯ୍ୟ କାହିଁ, ଯୋଗୀ ଭଙ୍ଗିବ ଲହେ । ୧୪
ଶୋଣ ପଦ୍ମଚରଣ ବେନି, ରତ୍ନମଞ୍ଜୀର ସାଜେ
ଅଳ ତେଜ ଜଳ ମଗ୍ନେ ଦେଖି ପଶିଲେ ଲାଜେ । ୧୫
ଗଜଯୂବତୀ ଗଜରାଜ ଜିଣି ଦେଖେ ଅବନୀ
ସୁନ୍ଦର ପଟଣେ ସମ ନାହିଁ ସ୍ୱେହୁ ଭୁବନ ତନ । ୧୬

(ଶଶିସେଣା ୨ୟ ଛାନ୍ଦ)

# ରଘୁନାଥ ହରିଚନ୍ଦନ

(୧୭ଶ-୧୮ଶତାବ୍ଦୀ)

## ନଟୀ

ରାଗ—ନଳିନୀ

ନଟୀ ଅତି ଶାଳୀ କରି ଜୁଡ଼ା ପାଡ଼ିଅଛି
ଚୂଳର ମୂଳରେ କରି ପାନଆ ଖୋଷିଛି । ୧ ।
ବଣମଲ୍ଲୀ କୁସୁମେ ବେଢ଼ାଇ ଅଛି ଗନ୍ଧ
ଚୂତ ପଲ୍ଲବ ଡ଼ାଳେ ହେ ପାଉଅଛି ଶୋଭ । ୨ ।
ଅପ୍ରମିତ କଳନାରେ ଯୋଗିଛି କଜ୍ଜଳ
ବେନି ସୃକ୍କଣୀରୁ ବହି ଯାଉଛି ତାମ୍ବୂଳ । ୩ ।
ଧୂପଶିର ପାନପତ୍ର ଚିତାଇଲେ ଶୋଭେ
ରଙ୍ଗପାଟ ବଉତେ ବାନ୍ଧିଛି ବାମ ବାହେ । ୪ ।
ଗଳାରେ କେଶାଇ ବୋଳି ବାନ୍ଧି କାଚମାଳି
ବନ ସ୍ଥଳପାରେ ଅଛି ତନୁ ଭୂମି ଶାଳୀ । ୫ ।
ଦକ୍ଷିଣ ବାହାରେ ବାନ୍ଧି ଅଛି ବଦମାଳୀ
ମସ୍ତ୍ର ଆଡରେ ପଶିଇ ଅଛି ନଖାବଳୀ । ୬ ।
ରତ୍ନ ମୁଦିରେ ମଣ୍ଡିତ ବାମ ହସ୍ତାଙ୍ଗୁଳି
ଅଙ୍ଗୁଷ୍ଠେ ଆଉ ଦର୍ପଣ ମୁଦି ମହାଝଳ । ୭ ।
କାଖରେ ପନ୍ନଗ ପେଡ଼ି କରେ ଧରି ଡାକ
ବକ-ଶ୍ୟାମଳ ବାନାଏ ପାଇଛି ମସ୍ତକ । ୮ ।
ବେନି ପାଦେ ଅଛି ରଜତର ବେନି ବଳା
ବାମ ପାଦରେ ଅଛି ପୁଣି ଧଣ୍ଡ ପିକୁଳା । ୯ ।
ବିଛିଅ କାମରେ ବେନି ପାଦରେ ଅଳତା

ବଦମାଳୀ ସଙ୍ଗେ ବାନ୍ଧେ ଅଛୁ ରୂପାସୂତା ।୧୦
ପରହାସ ସହଇ କାଳେ ପୁଣି କହୁ
ପ୍ରଗଲ୍‌ଭ ପଣେ କାହାକୁ ଭ୍ରୂକ୍ଷେପ ନାହିଁ ।୧୧।

(ଲୀଳାବତୀ—୯ମ ଛାନ୍ଦ)

## ଧନଞ୍ଜୟଭଞ୍ଜ

(୧୭ଶ-୧୮ଶ ଶତାବ୍ଦୀ)

### ଚିତ୍ରମୃଗ

ରାଗ—ଚିନ୍ତାକେଦାର

ଶୁଣି ସଚିବ ବଚନ ରାଜା, କ୍ରୋଧେ କମ୍ପି ବଢ଼ାଏ ପଦ୍ମଜା
ଯେବେ ମୋର ଆଜ୍ଞା କରିବୁ ଅବଜ୍ଞା
ବେଗେ ସଞ୍ଜିବନୀ ପୁର ଯା,ଯା ରେ ସଚିବ ।୧।
ଏହୁ ସ୍ୱରୂପ ବଚନ ଶୁଣି ମନେ ମନେ ସେ ମାରୀଚ ଭଣି
ରାମହସ୍ତେ ହତ ହୋଇବା ମଙ୍ଗଳ
ଏହା ହସ୍ତେ ମୃତ୍ୟୁ ହୀନ ପୁଣି, ହେ ଦଇବ ।୨।
ଏତେ ବିଚାରି କଲା ସମ୍ମତ, ରାଜା ସଙ୍ଗେ ଚଳିଲ ତୁରିତ
ଏହୁ ବିଚାର ତାର ମନେ ଜାଣିଣ
ମନେ ଚିନ୍ତେ ଦଶରଥ ସୁତ, ହେ ଦଇବ ।୩।
ଏହା ଜାଣିଣ ସେ ରାବଣାରି, ଏକାନ୍ତରେ ସୀତାଙ୍କୁ ହକାରି
କହନ୍ତି ଶୁଣରେ ଚନ୍ଦ୍ରମା ବଦନୀ
ଦୁଷ୍ଟ ଆସୁଅଛି ତୋତେ ହରି,ରେ ସୁନ୍ଦରୀ ।୪।
ଅନ୍ତର୍ହିତ ତୁ ଅନଳେ ହୁଅ, ମାୟାରୂପ ତୋ ମନ୍ଦିରେ ଥୁଅ
ବିଧାତାର କଥା ତୁମ୍ଭରେ ବିଦିତ
ଯେଣେ ମରିବ ବିଶ୍ରବା ପୁଅ,ରେ ସୁନ୍ଦରୀ ।୫।
ରାମ ଆଦେଶ ପାଇ ଅବଳା ଅନଳରେ ରହିଲ ନିର୍ମଳା

ଛାୟା ସ୍ୱରୂପ ସେ କୁଟୀରେ ରଖନ୍ତେ
ଦେଖି ସୁଖୀ ହେଲେ ରଘୁବଳା, ହେ ଦଇବ । ୬ ।
ଏହି ସମୟେ ସୁନ୍ଦ ନନ୍ଦନ ହେଲା ହେମ ମୃଗ ତତକ୍ଷଣ
ବନମୃଗଗଣ ସଙ୍ଗତେ ମିଳଣ
ହେଲା ସୀତା ସୁରତେ ବହନ, ହେ ଦଇବ । ୭ ।
ଅଦୂରେ କରୁଅଛୁ ଲୀଳା ତାହା ଦେଖିଲା ନେତ୍ରେ ଅବଳା
ନାନା ରତ୍ନଗଣେ ହୋଇଛୁ ନିର୍ମିତ
ଦେଖେ ହୋଇଲା ମତ ଚଞ୍ଚଳା, ସେ ଜାନକୀ । ୮ ।
ବୋଲେ ଶୁଣିବା ପ୍ରଭୁ ଶ୍ରୀରାମ ଏହୁ ମୃଗରେ ବଢ଼େ ମୋ କାମ
ଏହାକୁ ବନ୍ଧନ କରି ଅଣି ଦିଅ
ଶଯ୍ୟା କରିବ ମୁଁ ଏହା ଚର୍ମ, ହେ ରାଘବ । ୯ ।
ଶୁଣି ଅବଳା ବାଣୀ କୋମଳ, ଉଠି ରାଜ ଦଶରଥବାଳ
ବୋଲନ୍ତି ଲକ୍ଷ୍ମଣ ଦେଖ ଚିତ୍ର ମୃଗ
ଏଥେ ହେଲା ସୀତା ମତ ଲୋଳ, ହେ ଲକ୍ଷ୍ମଣ । ୧୦ ।
ଶୁଣି ଲକ୍ଷ୍ମଣ କହେ ବଚନ, ଏହୁ ମୃଗ ନୁହଇ ରାଜନ
ଏ ମାରୀଚ ବନେ ଏ ରୂପ ଧରିଣ
ରାଜ କୁମାର କରେ ବନ୍ଧନ, ହେ ଶ୍ରୀରାମ । ୧୧ ।
କାହିଁ ନାହିଁତ ଏସନ ଶୁଣି, ରତ୍ନ ମୃଗ ଅଛଇ ଧରଣୀ
ତୁମ୍ଭେ ସୁଜାଣ ରଘୁକୁଳ-ଅଗ୍ରଣୀ
ଏଥେ ଲେଖା ହେଉଅଛ ଜାଣି, ହେ ରାଘବ । ୧୨ ।
ଶୁଣି ସୌମିତ୍ରୀ ବଚନ ରାମ, ହସି ବାଣୀ କହେ ମନୋରମ
ଜାଣ ବାବୁ ଏହୁ ବିଧାତାର କୃତ
ଏଥେ ନ ହୁଅ ତୁ କେବେ ବାମ, ହେ ଲକ୍ଷ୍ମଣ । ୧୩ ।
ଯେବେ ରାଜା ମାତେ ମୃଗୟାର, ନାଶ କରନ୍ତି ଶ୍ୱାପଦବର
ଆହାର ନିମନ୍ତେ ହରିଣ ମାରନ୍ତି
ଏହା ମନେ ନକର ବିସ୍ମର, ହେ ଲକ୍ଷ୍ମଣ । ୧୪ ।

ଯେବେ ଅସୁର ନଷ୍ଟଯେ ଜାଣ          ତେବେ ବଧାର୍ହ ଅଟେ ଏ ପୁଣ
ଋଷିମାନଙ୍କୁ ଏ କରଇ ଅଧାର
ତେବେ ବାଣେ ନାଶିବ ଜାଣ, ହେ ଲକ୍ଷ୍ମଣ । ୧୫ ।
ଅଶ୍ୱତଷ୍ଠୀ ଗର୍ଭ ପ୍ରାପ୍ତେ ହୋଇ,          ମୃଗ ରୂପକୁ ଅଛୁ ଏ ବହି
ଏସନ ପ୍ରକାରେ ଲକ୍ଷ୍ମଣଙ୍କୁ କହି
ପୁଣି ବୋଲନ୍ତି ଶୁଣିମା ବୁଦ୍ଧ, ହେ ସୌମିତ୍ର । ୧୬ ।
ବାରୁ ସୀତାଙ୍କୁ ରକ୍ଷିଣ ଥିବ          ଏହୁ ସ୍ଥାନୁ କେଣିକ ନ ଯିବ
ରଜନୀଚରଚଟେ ଏଥୁ ପୁରଛି
ଏଥି ଜାନକୀ ଭସ୍ମ ଲଭିବ, ହେ ଲକ୍ଷ୍ମଣ । ୧୭ ।
ତୁମ୍ଭେ ଜଟାୟୁସ ବେନଜନ          ସୀତା ରକ୍ଷି ଥାଅ ଏହୁ ସ୍ଥାନ
ଆମ୍ଭେ ମୃଗ ମାରି ଅସିବାର ଯାଏ
ତୁମ୍ଭେ କେଣେ ନ କର ଗମନ, ହେ ସୌମିତ୍ରି । ୧୮ ।
କିଛୁ ନ କହ ମୋହର ଆନ,          ଏଥି ହୋଇଥାଅ ସାବଧାନ
ଏତେ ବୋଲିଣ ସେ ଗମେ ରଘୁବୀର
କରେ ଧରଣ ସେ ଧନୁବାଣ, ହେ ଦଇବ । ୧୯ ।
(ରଘୁନାଥ ବିଳାସ—୨୨ଶ ଛାନ୍ଦ)

## ତ୍ରିବିକ୍ରମ ଭଞ୍ଜ

(୧୭ଶ—୧୮ଶ ଶତାବ୍ଦୀ)

### ବଡ଼ ବରଷା ହେଲା ପରବେଶ

ବର ବରଷା ହେଲା ପରବେଶ । ସଂସାର ସାରକୁ କଲା ପ୍ରକାଶ । ୧ ।
ଘନ ଘନ କରି ଡାକଇ ଘନ । ଦନ ଦିନ କରି ଗିଳିଲା ଦିନ । ୨ ।
ଆଶା ଅପାରେ ପୂର୍ଣ୍ଣ ହୋଇଗଲା । ଝଟ ଝଟ କ୍ଷଣପ୍ରଭା ଦିଶିଲା । ୩ ।
ଝାଙ୍କି ଝାଙ୍କି ଝଞ୍ଜାବାତ ବହଇ । ଝାଡ଼ି ଝାଡ଼ି ଲତା ଧାଡ଼ି ଦିଅଇ । ୪ ।
ମାଳ ମାଳତୀ ବାସରେ ବାସିଲେ । ଅଳି ଆଳୀ ମଧୁପାନେ ରସିଲେ । ୫ ।
ତାଣ୍ଡ ତଣ୍ଡ ତାତ ତା ତାଣ୍ଡ ତାତ । ତତ ତନ୍ତ୍ରୀ ତନ୍ତୁ ତତ ତପତ । ୬ ।
ଏହା ମୃଦଙ୍ଗ ଧ୍ୱନିରୁ ମନ୍ମଥରେ । ଶିକ୍ଷା କଲେ ସୁଖେ ଦଶମୁଖରେ । ୭ ।
ଭୂକେ କଙ୍କ କଳୁ କେକୀ କେକାକୁ । କକୀ କାକାଙ୍କ କୋକ କୋକଡାକୁ । ୮ ।
ଭେକ ଭେକୀଙ୍କ ମଣ୍ଡଳନ୍ତ ଭେକ । କୋକଙ୍କ ତୃଷ୍ଣା ହୋଇଗଲା ଶୋକ । ୯ ।
କମଳରେ ଭୃଙ୍ଗ ଟଳେ ଯେ କମଳ । କୋମଳ ଧ୍ୱନିକି କଲେ କମଳ । ୧୦ ।
ନଗକୁଞ୍ଜରେ ଦିଶିଲେ କୁଞ୍ଜ । କେତେ ବୋଲେ ଏହୁ କାମକୁଞ୍ଜ । ୧୧ ।
ଏହୁ କାଳରେ କେଦାରେ ସୁନ୍ଦର । ଏହୁ କାଳରେ କେ ଦାରେ ସୁନ୍ଦର । ୧୨ ।
କେତେ ସୁଭାଗ୍ୟବନ୍ତ ଜଗତରେ । ଶ୍ୟାମା ଘେନି ବସିଲେ ଜଗତରେ । ୧୩ ।
ପରବାସେ କେତେ ହେଲେ ପ୍ରବେଶ । ତାପ ପାଇଲେ ଦେଖି ପ୍ରିୟା କୃଶ । ୧୪ ।
ଏହୁ ସମୟରେ କେତେ ବିଳାସୀ । କହେ ପ୍ରିୟାକୁ କୋଳେ ଧରି ବସି । ୧୫ ।
ଏହୁ କାଳ ଦେଖ ରେ ପ୍ରାଣଧନ । ଧାତା ସର୍ଜ୍ଜନାକୁ କଳଶି ଆନ । ୧୬ ।
ହେଲା ଜୀମୂତ ଗମନ ଆକାଶେ । ଜାତକୂଳ ମଧୁପ ଶୋଭା ଦିଶେ । ୧୭ ।
ରଜନୀକର ବନେ ହେଲେ ଲୀନ । ଷଟପୀ ବୋଲେ ଶୁଭେ ଦ୍ୱିଜସ୍ୱନ । ୧୮ ।
ଘନତର ବାଣଧାର ପତନେ । ମୋଦେ ହସିଲେ ଯେ ଗଣିକାମାନେ । ୧୯ ।
ନୀଳକଣ୍ଠ ଗିରୀଶେ କଲେ ନୃତ୍ୟ । କଲେ ଅମୃତ ଧନସ୍ତ୍ରସ୍ୱ ହୃତ । ୨୦ ।
କବନ୍ଧ ତେଜିଲେ ଯେ ଅନ୍ତଶସ୍ତେ । ଦେଖି କୁମୁଦ ହୋଇଲା ହୃଦସ୍ତେ । ୨୧ ।

ଏହିପରି ଯେ କେତେ ପରକାରେ । ପ୍ରିୟା ଧରି କଉତୁକେ ବିହରେ । ୨୨ ।
ଯାହା ସମୀପରେ ନ ଥିଲ କାନ୍ତା । ତାକୁ ସ୍ମର ଜଣା ମହା ଅହନ୍ତା । ୨୩ ।
ଏହି ଋତୁକୁ ଦେଖି ନୃପସୁତ । ଚଟପଟ ଦେଖି ହେଲ ମୂର୍ଚ୍ଛିତ । ୨୪ ।
କଛୁ ବେଳ ଉତ୍ତାରୁ ପାଇ ଜ୍ଞାନ । ଶୋକେ ବୋଇଲେରେ, ସୁମାରଜନ । ୨୫ ।
କୋହ ସଙ୍ଗେ ମୋତେ କେଉଁ କରିବ । ଏ ଦୁଃଖ ସିନ୍ଧୁରୁ ଉଦ୍ଧରି ନେବ । ୨୬ ।
କେଉଁ ତପସ୍ୟା ଅବା ଅଛୁ ମୋର । ଯୋଗେ ରଷି ଦସିବୁ ସୁମାବର । ୨୭ ।
ହର କାହିଁକି ବା ଦୟା କରିବେ । କେଉଁ ସେବାରୁ ଭୂପଜାକୁ ଦେବେ । ୨୮ ।
ଏହା ଦେଖି ବୋଲଇ ମନ୍ତ୍ରୀସୁତ । ଏ ଚରିତ କି ତୁମ୍ଭଙ୍କ ଉଚିତ । ୨୯ ।
ମକରଙ୍କୁ ସିନା ଭୂପପ୍ରବର । ଦରଶନ କରିବେ ଶୀଘ୍ରତର । ୩୦ ।
ଦେଖ ଯେମା ଅନୁରୂପରେ ବଧୂ । ବରିବେ ସେ ନରେନ୍ଦ୍ରଶେଖର । ୩୧ ।
ଏବେ ହୋଇଅଛୁ ଘନ ସମସ୍ତ । ଅମ୍ବୁକୂଳରେ ଦୁସ୍ତର ଯେ ରସ୍ତ । ୩୨ ।
ଏଥି ଉତ୍ତାରୁ ହୋଇବ ଶରଦ । ସ୍ପଷ୍ଟେ ପ୍ରକାଶିବ ମନ୍ତ୍ରୀ ସମ୍ପଦ । ୩୩ ।
ତଦୁତ୍ତରେ ହେବ ହେମ ପ୍ରବେଶ । ଯେଣୁ କରିବ ତୁମ୍ଭ ମନ ତୋଷ । ୩୪ ।
ଏହି ରୂପରେ ନାନା ପରି ବାଣୀ । କୁମାରକୁ ସଚିବସୁତ ଭଣି । ୩୫ ।
କରି କାମ୍ବିତ ଚଉ ତାର ତୋଷ । ଯେଣ ହରୁଥାନ୍ତି ନାଶି ଦିବସ । ୩୬ ।
ତେବେଣେ ଏ ଋତୁ ଦେଖି ଭୂପଜେମା । ହୋଇ ଅନ୍ତଶଯ୍ୟରେ ଦୁଃଖୀତମା । ୩୭ ।
ଦେଖି ସଜଳ ଜଳଦରେ ଦୃଷ୍ଟି । ହେଲକୁ ହେଲ କ୍ଷୀଣ ବମ୍ଭୁଷ୍ଟି । ୩୮ ।
ସୁନତରେ ଜନତରେ ନରେ ଭୟ । ଚଞ୍ଚଳାକୁ ଚମକେ ଅନ୍ତଃଶୟ । ୩୯ ।
କେକୀ ଭେକୀ ଡାହୁକ ନିନାଦରେ । ମନ୍ଦିରରୁ ନ ବାହାରଇ ଡରେ । ୪୦ ।
ମନୁ ତେଜିଲ ଆହାର ବିହାର । ହାସ୍ୟ ଲାସ୍ୟ ମଣ୍ଡନ ହେଲ ଛାର । ୪୧ ।
ନାନା ବିରହଶାନ୍ତିମାନ କଲେ । ଅତି ଯତ୍ନେ ପ୍ରାବୃଟକାଳ ନେଲେ । ୪୨ ।
ଆହେ ବଧୂମା ଧନଞ୍ଜୟପ୍ରିୟ । ଭଞ୍ଜଭୂଜାର ନାଶ ତାପତ୍ରୟ । ୪୩ ।

(କନକ ଲତା—୧୩ଶ ସ୍ତନ)

# ଦୀନକୃଷ୍ଣ ଦାସ

(୧୭ଶ-୧୮ ଶତାବ୍ଦୀ)

## କେଉଟ ନନା

ଏମନ୍ତ ବିଚାର କରନ୍ତେ ଏଣେ । ନାବ ଗୋଟାଏକ ଦିଶିଲା ତେଣେ ।
କୃଷ୍ଣ ବୋଲି ତାଙ୍କୁ ନ ଜାଣୁ କେହି । ମାୟାରୂପେ ଛନ୍ନ କେଉଟ ହୋଇ ।
ଅଣ୍ଟାଳି ଦଉଡ଼ି ବାନ୍ଧିଛି ଟାଣି । ଦଦରା ନାବରୁ ବହୁଛି ପାଣି ।
ପାକଲା ଦଉଡ଼ି କାନ୍ଧରେ ପାଡ଼ି । ନାବ ପୁଅ ମଙ୍ଗେ ବସିଛି ମାଡ଼ି ।
କରେଣ ବଉଁଶି କଙ୍କଣ ଆସ୍ତ । ମୟୂର ଖୁଲଣ ମଥାରେ ଶୋଭ ।
ମୀନ ଖାଳୁଆଏ ଅଛି ପାଖର । ଜାଲି ପଡ଼ିଅଛି ନାବ ଭିତର ।
ଢ଼ମାଳି କରି ଗୀତ ପଦେ ଗାଇ । ସ୍ଥିର କରି ନାବ ଦେଉଛି ବାହି ।
ଏତେ ହଟିଦ୍ୱା ଗୋ ନନ୍ଦର ବସ୍ତି । ବୃଦ୍ଧ ରୂପ ଧରି ନାବ ବାହୁଛି ।
ଅଠ ପରପଞ୍ଚ ଖାଙ୍କର କେଣ । ଦେଖି ନ ଯୋଗାଏ ଏମନ୍ତ ବେଶ ।
ବେନ ନୟନରୁ ପେଚଡ଼ା ବହେ । ବାଙ୍କ ନୟନେ ଟେରିଆଇଁ ଚାହେଁ ।
ଗୋଦଡ଼ ହୋଇଛି ଡାହାଣ ଗୋଡ଼ । ଚୁକୁଚେ ପଡ଼ିଛି ପାକଲା ଥୋଡ଼ ।
କଳା ଦେହ ତାର ବସ୍ତ୍ରର ମୋଟା । ଦାନ୍ତ ନାହିଁ ବୁଢ଼ା ପାକୁଆ ଗୋଟା ।
ବଚନ କହୁଲେ କୋମଳ ସ୍ୱରେ । ହସିଲେ ବୁଢ଼ା ପରପଞ୍ଚ ଦଶେ
ଆମେ ଦେଖି ତାକୁ ହରଷ ହୋଇ । ନାବ ଆଣ ବୋଲି ଡାକିଲୁ ଗୋଇ ।
ଜଣେ ଜଣେ ତୋତେ କଉଡ଼ି ଦେବୁଁ । ପାରି କରି ଦେଲେ ମଥୁରା ଯିବୁଁ ।
ଆମ୍ବିଳ ହୋଇଲା ଶକା ଗୋରସ । ଆଉ ଘଡ଼ିକେ ସବୁ ଯିବ ନାଶ ।
ସକାଳ ପହରୁ ଅଛୁଁ ଅନାଇ । ବେଗେ ନାବ ଆଣ କେଉଟ ଭାଇ ।
ଅନେକ ପ୍ରକାରେ ଡାକିଲୁଁ ତାକୁ । କେବେଁ ନ ଆସିଲା ଆମ ପାଖକୁ ।
ବଦନ ଟେକି କଣିଆଇଁ ଚାହେଁ । ଏତିକି କହିଲେ ତେତିକି ଯାଏ ।
କାଳି ଯେସନେ ଥାଇ ପାଶେ ରହି । ଡାକ ଡାକ ମଲେ ଶୁଣଇ ନାହିଁ ।
ମନ ତାପ କରି ଅଠ ଅଳକାରେ । ଗାଳିଦେଲୁଁ ତାକୁ ନାନା ପ୍ରକାରେ ।

ପଡ଼ ନ ମଲୁ ରେ ଜାଡ଼ୁଆ ଗୋଟା । କାଲ ହୋଇଲୁ କି ଆରେ ଜେହୁଟା ।
ଡ଼ାକ ଡ଼ାକ ଆମ୍ଭେ ମରୁଛୁ ଏଣେ । ପାପ ଖାଉ ତୋର ବେନ ଶ୍ରବଣେ ।
ଦଇବ ଯେମନ୍ତେ ହୋଇବ ସନ୍ତ । ବୁକୁରେ ତୋର ମାଡ଼ ବସୁ ଭୂତ ।
ନାବ ମଙ୍ଗ ଖଣ୍ଡ ପଡ଼ିବ ଛିଣ୍ଡ଼ି । ମଝିନଈରେ ତୁ ମରିବୁ ବୁଡ଼ି ।
ଅନ୍ଧାର ଦଉଡ଼ି ଛିଡ଼ିଣ ଯାଉ । ନାବ ବୁଡ଼ି ତୋତେ କୁମ୍ଭୀର ଖାଉ ।
ଏକମୁଖ ହୋଇ ସବୁ ଗୁଆଳୀ । ନାନା ପ୍ରକାରେ ଦେଉଅଛନ୍ତି ଗାଳି ।
ଏମନ୍ତ ଶ୍ରୀ କୃଷ୍ଣ ତ ଲଜ୍ଜ ଭଲେ । ଯେ ତୁମ୍ଭେ ବୋଲ ତ କୋପେ ବୋଇଲେ ।
ଦଦଶ ନାବରେ ଅଛଇଁ ଚଢ଼ି । କାହିଁକି ମଗୁଛ ବୋବାଳି ପାଡ଼ି ।
ଆମ୍ଭେ ତ ତୁମ୍ଭର ଡଗର ନୋହୁଁ । ମୀନ ମାରିବାକୁ ନଦୀରେ ଥାଉଁ ।
ସ୍ୱତ ବରତନ ଦେଇଛ କେତେ । ତହିଁକି ତେଜ ଲୋ କାଟୁଛ ଏତେ ।
ଗୋପୀଏ ବୋଇଲେ ଭଗ୍ନଇ ସ୍ୱଇ । ହଟତ କଥାକୁ ଚଳୁ କମ୍ପାଇଁ ।
ତୋର ଦୁଃଖ ମୂଲ କଉଡ଼ି ଦେବୁଁ । ପାରକର ଦେଲେ ମଥିରୁ ଯିବୁ ।
ପଟେଣ ପଟେଣ ଦେଲେ ଅଣ୍ଟଇ ଯିନା । କାହିଁକି ସ୍ୱତ୍ତୁଛୁ କେଉଁଟ ନନା ।
ତୋର ପେଟ ସ୍ୱତ ନ ଦେବୁଁ ନକି । ବେଗେ ପାର କର ସବୁ ଗୋପୀଙ୍କି ।

(ନାବକେଳି)

## ଅଛି

ରାଧା ବୋଲନ୍ତି କୃଷ୍ଣଙ୍କୁ ଉତ୍ତର । ତାରୁ ଆଣିଛ କି କି ଅଳଙ୍କାର ॥
କୃଷ୍ଣ ବୋଇଲେ କହିଲେ କି ହେବ । ନ ଦେଖିଲେ କି ମନକୁ ଆସିବ ॥
ଯେବେ ଥୋକାଏ ଶୁଣିବ କହିବା । କାହା ପାଇଁ ତୁମ୍ଭ ବୋଲ ଭାଙ୍ଗିବା ॥
ମୁହିଁ ଯେତେ ଅଳଙ୍କାର ଆଣିଛୁ । ବାହୁନିବାକୁ ତହିଁ ନାହିଁ କିଛୁ ॥
ସବୁ ମୋହର ଗଢ଼ା ଅଳଙ୍କାର । କମ ବାହାର ଭିତର ସୁନ୍ଦର ॥
ଅଛୁ ଝମକ ଝୁଣ୍ଟିଆ ଅପାର । କମ କଣ୍ଠ ବଳା ନାନା ପ୍ରକାର ॥
ଅଛୁ ବାଜେଣି ନୂପୁର ଅପାର । ପାଦେ ଥିଲେ ମୋହିଥିବ ସଂସାର ॥
ଅଛୁ ବହୁତ ରତନ ପାହୁଡ଼ । କେତେ ଯତନେ ହୋଇଛୁ ଜବାଡ଼ ॥
ଅଛୁ ଗୁଞ୍ଜଣ ଅତୁଲ ଅନେକ । ତାକୁ ଦେଖିବ ନ ଯେଉଁବା ଲୋକ ॥

ଅଛୁ ବହୁତ କମ ନୂଆ ଚୂଡ଼ି । ସ୍ୱର୍ଣ୍ଣ ବସିଛୁ ତହିଁ ଧାଡ଼ି ଧାଡ଼ି ॥
ଅଛୁ ଅପାର କମ ନୂଆ ନାଡ଼ । ରସବନ୍ତୀ ଧଇର୍ଯ୍ୟ ବନ୍ଧ ଖଡ଼ ॥
ଅଛୁ ଅପାର ଜାଠ ବଦମାଳ । ଭୁଜେ ବାନ୍ଧଲେ ପଡ଼ିବ ଉଛୁଳ ॥
ଅଛୁ ତେଉଁଗଆ ମାଳ ଅପାର । ତା'ର ତଳକୁ ଦିଶିବ ସୁନ୍ଦର ॥
ଅଛୁ କାଞ୍ଚନ ସୁନା ସୂତା ମାନ । ଯେଝା ମନକୁ ଠୁଳେ ବାଛୁ ଘେନ ॥
ଅଛୁ ବହୁତ ଗଠଣ କର୍ଣ୍ଣିଣୀ । ବାଛୁ ଘେନ ଗୋ ବରଜ ତରୁଣୀ ॥
ଅଛୁ ମୋଠ ମାଳ ଅଠ ଘଡନ । ସାନ ବଡ଼ ନାହିଁ ସବୁ ସମାନ ॥
ଅଛୁ ଗରଗଡ଼ିଆ ଗଣ୍ଠିମାଳ । ଟଣ୍ଠି ପଡ଼ ନାହିଁ ସୁନା ଶିକୁଳି ॥
ଅଛୁ ବସୁଣିଆ ମାଳ ଅନେକ । ସୁନା ତୋଡ଼ିଏ ମାଡ଼ରୁ ଅଧିକ ॥
ଅଛୁ ଚନ୍ଦ୍ର ଅର୍ଦ୍ଧଗୁଣା ଅନେକ । ତହିଁ ମାଣିକ୍ୟ ହୋଇଛୁ ନାୟକ ॥
ଅଛୁ ବଜୁଳ ପର ଗୁଣାମାନ । ନାକ ତଳକୁ ଦିଶିବ ଘଡନ ॥
ଅଛୁ ଗଣନା ନାହିଁ ନୂଆ ଗୁଣା । ଗୁଣା ଗୋଟିଏ ନୁହଇ ପୁରୁଣା ॥
ଅଛୁ ନିର୍ମ୍ମୋଚନ ଗୁଣା ଅନେକ । ତହିଁ ଶରଧା ଯୁବତୀମାନଙ୍କ ॥
ଅଛୁ ନୂଆ ଫୁଲଗୁଣା ଅପାର । ମନ୍ଦହାସୀକି ଦିଶିବ ସୁନ୍ଦର ॥
ଅଛୁ ଓଲଟ ମୁହାଁ ନାକ ଚଣା । ଥଣ୍ଡା ମାଣିକ୍ୟ ଅଛି ଦୁଇ ତେଣା ॥
ଅଛୁ କଣ୍ଠି ନାକ ଚଣା ଅପାର । ସବୁ ଜମ ଭିତରୁ ସେ ବାହାର ॥
ଅଛୁ ସବୁ ନାକଚଣା ଅପାର । କହ ଶରଧା କାହିଁକି କାହାର ॥
ଅଛୁ ବଉଳ ଟୋଳ ନାକଚଣା । ସେ ଯେ ନାଗସ୍ତ୍ରୀମାନଙ୍କର ଗୁଣା ॥
ଅଛୁ ମୁଲୁତା ଥୋପି ନାକୁଆସି । ଆଗ କର ଘେନିବ ତା ପ୍ରଶଂସି ॥
ଅଛୁ ଅପାର କମପଟିଆମ । କର୍ଣ୍ଣେ ପୁଟକୁ ହେବ ଅଭିରାମ ॥
ଅଛୁ ନୂଆ କମ କାମ ଅନେକ । ଖସା ବସିଛୁ ଗୃହପାଖ ଘାକ ॥
ଅଛୁ ଗଣ୍ଠିଆ କମ ଗୃହଜାଠ । ଠଳ ଚହଦ ମାଡ଼ ତେର ରଠ ॥
ଅଛୁ ନଗଡ଼ାଏ ନଦା ବନ୍ଦିଆ । ଶଏ କରଫେ ହୋଇଥିବ ନୂଆ ॥
ଅଛୁ ମାଣିକ୍ୟ ତାଟଙ୍କ ବହୁତ । ମଝି ବେଢ଼ରେ ବସିଛୁ ମର୍କତ ॥
ଅଛୁ ଅପାର କମ ଝିଣ ଫିସ୍ । ଫଳ କାନକୁ ଦେହ ସିନା ତୋଷ ॥
ଅଛୁ ଦକ୍ଷିଣୀ କଳାବଳ ଗୁଣା । ମୂଲ ବାରସୁନଆ ତେର ଅଣା ॥

ଅଛି ସାସ୍ୱବସା ପେଣ୍ଡି ଝଲକା । ସୁନା ସାତମାଢ଼ ଦୁଇ ପଦକା ।।
ଅଛି ଫୁଲ ତନ ଜାତ ଅନେକ । ଫୁଲ ମଝିରେ ବସିଛି ଅନେକ ।।
ଅଛି ସୁନ୍ଦର ଝଲକା ଅପାର । କାନେ ଥିଲେ ମୋହୁଥିବ ସଂସାର ।।
ଅଛି ସ୍ୱାସ୍ୱ ମାଣିକ୍ୟ ମଲ୍ଲୀକଢ଼ି । ମୂଲ ସହସ୍ର ସୁନଥା କହ୍ଲଡ଼ି ।।
ଅଛି ଗଚ୍ଛଆଣି ଜମ ଅପାର । କହ କାହିଁକି ଶରଧା ଭ୍ରମର ।। ୪୦

(ଅଲଙ୍କାର ବୋଲି)

## ଗୋପୀ ଧାଇଁଲେ

କର୍ଣ୍ଣେ ନନ୍ଦସୁତ ହେବା ଶୁଣିଲେ । କଳାକର-ମୁଖୀ ଗୋପୀ ଧାଇଁଲେ ।
କୋଟିନିଧି ପାଇଲା ପରି ହୋଇ । କେଉଁ ଗୋପୀ ଆନନ୍ଦରେ ଗମଇ ।
କରୁଥିଲା ଯେ ଗୃହ କର୍ମମାନ । ଜଳ ଶ୍ରବଣ ମାତ୍ରକରେ ଆନ ।
କଲା ଭୂଷଣ କେହୁ ବିପରୀତ । କରାଇଲା ବିଭ୍ରମ ସ୍ନେହଚିତ୍ତ ।
କରୁଥିଲା କେ କୁନ୍ତଳ ମାର୍ଜନ । କରାଇଲା ଉଚ୍ଚାଟ ତା ବର୍ଜନ ।
କେଶ ରଞ୍ଜନୀ କରେ ଧରି କର । କସ୍ୱବରଗତ ଦେଲା ବସ୍ତ୍ରାଗ୍ର ।
କେତେ ରୂପେ ଧାଇଁଲେ ଗୋପବାଳୀ । କେ କହିବ ଅବା ତା ମନେ ଭାଳି ।
କାଦମ୍ବିନୀ କୋଳେ ଯେସନ୍ତେ ବିଜୁଳି । କରେ ଝଟକ ସବୁ ଦିଗେ ମିଳି ।
କଳ ଧଉତ ଲତା ବାତେ ଯେସନ୍ତେ । କାମିନୀଙ୍କ ଗମନ-ଅଙ୍ଗ ତେସନ୍ତେ ।
କାହା କବରୀରୁ ଫୁଲ ଖସଇ । କବି ମନେ ଏମନ୍ତ ଆଶ୍ୱସଇ ।
କଳାକର କି ରାହୁ କବଳରୁ । କ୍ରମେ ଗଳିପଡ଼ୁଅଛି ଗଳରୁ ।
କଳା ମେଘୁଁ ଚନ୍ଦ୍ର ହୋଏ ବାହାର । କରେ ଚରମରେ କିବା ବିହାର !
କାହା ନିତମ୍ବ ବିମ୍ବ ଅତି ଗୁରୁ । କଟି ସରୁ କେଶପାଶମଧ୍ୟଠାରୁ ।
କଳହଂସ ପ୍ରାୟେ କରେ ଗମନ । କରେ ହଂସକ ହରଷରେ ସ୍ୱନ ।
କାବ୍ୟ ତାର ମୁକୁତା ହାର ଛଳେ । କରୁ-ଭୁଜ ସଙ୍ଗତ ସେ ଉଚ୍ଛୁଳେ ।
କେତେ ରୂପେ ଧାଇଁଲେ ଗୋପନାରୀ । କହିବାକୁ ତା ବଚନ ନ ପାରି ।

(ରସକଲ୍ଲୋଳ—୩ୟ ଛାନ୍ଦ)

# କାଳୀୟ ଦଳନ

ରାଗ—ଭୈରବ

କର ସାଧୁଜନମାନେ ଏକମନ କର୍ଣ୍ଣ ଦେଇ କୃଷ୍ଣକଥାକୁ ।
କାଳକୁ ଯଶସ୍ୱ ନ ଥାଉ ଏ ଭବ-ଭୟ କାଳଦଣ୍ଡ ବ୍ୟଥାକୁ ।
କୃଷ୍ଣବଳ୍ଲାଶି, ବିହରନ୍ତେ ଗୋପ ନଗର ।
କଂସ ଆଜ୍ଞା ଆସି ଲାଗିଲା ନନ୍ଦଙ୍କୁ ଦେବ କମଳ ଶତେ ହାର । ୧
କଲେ ନନ୍ଦ ଭୟ କ ଦଣେ ଉପାୟ କେ ଯିବ ପଦ୍ମଫୁଲ ତୋଳି ।
କର୍ଣ୍ଣେ ଶୁଣି କରି ଭୟ ପରିହରି ଆଗ ହୋଇଲେ ବନମାଳୀ ।
କାଳୀଭୟରେ, କେହ୍ନ ନ ପଶେ କାଳିନ୍ଦୀରେ ।
କୃଷ୍ଣ ଆନନ୍ଦରେ ପ୍ରବେଶ ହୋଇଲେ ନଟ ଯେସନ୍ତେ ନାଟମଧ୍ୟରେ । ୨
କମଳନୟନ କମଳକରରେ କମଳ ତୋଳନ୍ତି ସଧୀରେ ।
କାଳୀ-ଫଣୀ ଆସି ଦଂଶିଲା କମଳ ପାଦରେ କୁଟିଳ ବୁଦ୍ଧିରେ ।
କମେ ଅଙ୍ଗକୁ, ଛନ୍ଦିଲା, ଅଙ୍ଗ ଆବଳୀରେ ।
ନୀଳ ବଧାତା ମର୍କତ—ଶମ୍ଭୁକୁ କ ଶୋଭା ଇନ୍ଦୀବର-ମାଳରେ । ୩
କଜ୍ଜ୍ୱଳ ପର୍ବତେ କଳା ମେଘ ପ୍ରାୟେ ଶୋଭା ପାଇଲା ବେନି ଅଙ୍ଗ ।
କ ହୁଅନ୍ତା ଅବା ନୟନେ ଦେଖିଲେ କର୍ଣ୍ଣେ ଶୁଣିବାକୁ ଏ ରଙ୍ଗ ।
କାଳ ବଳରେ, ଉଠି ତା ଉତ୍ତମ ଅଙ୍ଗରେ ।
କଲେ ନଟବର ପରାୟେ ତାଣ୍ଡବ ଶ୍ରୀରଙ୍ଗ ଶ୍ରୀଅଙ୍ଗଭଙ୍ଗୀରେ । ୪
କଦା କାଳୀହ୍ରଦ କାଳେ ଉତପାତ ଇନ୍ଦ୍ରଧନୁ ଉଦେ ଜଳରେ ।
କାଦମ୍ବିନୀ କୋଳେ କ ନବ ତମାଳେ କେକୀ ନାଚେ ମତ୍ତ ହେଳରେ ।
କାଳୀ ଉପରେ, ସେହ୍ନ ରୂପରେ ବନମାଳୀ
କରନ୍ତି ମର୍ଦ୍ଦନ କାଳନ୍ଦୀ କର୍ଦ୍ଦନ କଲେ ଗୋପାଳ ପୋଏ ମିଳି । ୫

(ରସକଲ୍ଲୋଳ—୯ମ ଛାନ୍ଦ)

# ଗ୍ରୀଷ୍ମ

## ରାଗ—ବସନ୍ତ ବରାଡ଼ୀ

କ୍ରମେ ମଧୁ ଶେଷ ହୁଅନ୍ତେ ପ୍ରବେଶ ହୋଇଲା ଗ୍ରୀଷମ ସମୟେ ।
କରମାଳି-କର ମହାଃଖରତର କମଳ କୁମାର ପରିୟେ ।
ସୁଜନେ, କି କହିବା ମହା ତପତ ।
କରାଇଲା ନୃତ୍ୟ ପଥିକ ପାଦକୁ ସନ୍ତାମ ଭୂମି ଅଣ୍ୱମତ । ୧
କୁଶଳ ନର୍ତ୍ତକୀ ଭ୍ରମସ୍ତା ପରିୟେ ଭ୍ରମିଲେ ବାତଚକ୍ରମାନେ
କୁଟ୍ଟମ୍ବୀ-ବାନଜନ-ମନ ପରିୟେ ସନ୍ତାପୀ ହେଲେ ଏକାବେନେ ।
ସୁଜନେ, କୃଶ ହୋଇଲା ନଦୀ ଜଳ ।
କାନ୍ତ ଘନରସ ବର୍ଷାନେ ଯେମନ୍ତ ଦଶନ୍ତ ବିରହିଣୀକୁଳ । ୨
କୃପଣଧାମନ୍ତ ସେବକ ପରିୟେ ତାପେ ଜର୍ଜ୍ଜର ସୂର୍ଯ୍ୟକାନ୍ତ ।
କାନ୍ତରହିତ କାନ୍ତା ପ୍ରାୟେ ହୋଇଲେ ସରସୀମାନେ ବେଣଅନ୍ତ ।
ସୁଜନେ, କେବଳ ଭକ୍ତ-ରଙ୍କ ପ୍ରାୟେ
କଚ୍ଛପ ମତ୍ସ୍ୟ ମଣ୍ଡୂକମାନଙ୍କର ଦୁର୍ବଳ ହୋଇ ଗଲା କାୟେ । ୩
କମଳ ବିରହେ କଣ୍ଟବର ରହେ ମହାଗହନ ଆଶ୍ରେ କରି ।
କର୍ଦ୍ଦମରେ ପଡ଼ି ଫେନମୁଖେ ରଡ଼ି ଗ୍ରହନ୍ତ ଗନ୍ଧବ-ବଇରୀ ।
ସୁଜନେ, କୁଞ୍ଜ ଭିତରେ ପକ୍ଷୀମାନେ ।
କେବଳ ଯୋଗୀ ଧ୍ୟାନ କଲା ପରିପ୍ତ ନିଶ୍ଚଳେ ରହିଲେ ମଉନେ । ୪
କରିବାକୁ ପ୍ରାଣରକ୍ଷା ନିଜ ପ୍ରାଣ ପରକୁ ଦେଲା ପ୍ରାୟ ହୋଇ
କୋକମୃଗ ଯାଇଁ ଭୟକୁ ପକାଇ ସିଂହଗୁହାରେ ହେଲେ ଥିଇ ।
କୋବିଦେ, କୁଣ୍ଡଳୀକୁଳ ବହୁରୂପେ ।
କଳାପିକଲାପ ତଳରେ ରହିଲେ ପାଇ କପଟିକ ଆତପେ । ୫
କାହିଁ ଗଲା ବନଲତା ଶୋଭବନ କାନ୍ତହୃତ କାନ୍ତା ପରିୟେ ।
କରିଥିଲା ଯିନା ବସନ୍ତ ତାହାକୁ ନବପଲ୍ଲବେ ତୋରିମୟେ ।
କୋବିଦେ, କାଳେ ସେ ଅନ୍ତର ହୋଇଲା ।

କନ୍ଦର୍ପ ଦର୍ପ ରହିତ ହୋଇ ସଖା ଅସ୍ତବେ ହୃଦରେ ଶୋଇଲା । ୬
କୁଞ୍ଜେ କୁଞ୍ଜେ ବସି ଝିଙ୍କାରୀ ଡାକିଲେ କାମକେଳି ବାଟ ପଡ଼ିଲା ।
କୁସୁମକାଣ୍ଡ ମଣ୍ଡି ହୋଇ ଅର୍ଜୁନ ବିଯୋଗୀ ହୃଦୟ ତାଡ଼ିଲା ।
କୋବିଦେ, କହି ପଥିକ ତାପ ବଳେ
କରନ୍ତେ ଗମନ ଶ୍ରମ ପାଇ ଯାଇଁ ବସନ୍ତି ବନ୍ଧୁ-ପାଦ-ତଳେ । ୭
କୃପଣ ଧନ ସଞ୍ଚିଲା ପ୍ରାୟେ ମଧୁ ସଞ୍ଚିଲେ ମଧୁକରମାନେ
କେ ଜଳଛତ୍ର ପବତ୍ରମାନ ଦେଲେ ବ୍ରାହ୍ମଣକରେ ସ୍ଥାନେ ସ୍ଥାନେ ।
ସୁଜନେ, ଭଣି ଈଶ୍ୱର ଅନୁକମ୍ପା ।
କର୍ପୂର ଚନ୍ଦନ ଅଙ୍ଗେ ବୋଳି ହୋଇ ଧାରାମଣ୍ଡିତ ଘରେ ରହି । ୮
କେ ଗୀତ କବିତ୍ୱ ବେଣୁ ବୀଣା ନୃତ୍ୟରଙ୍ଗେ ଦିନମାନ ହରନ୍ତି ।
କେ ବସି ଏକାନ୍ତେ କାମିନୀ ସଙ୍ଗତେ ଚନ୍ଦନ ପିଚକା ମାରନ୍ତି ।
ସୁଜନେ, କେ କରେ ନଉକା ବିହାର ।
କେ ସ୍ୱେଦ ଭୟରେ କରତଳୁଁ ତାଳ ବୃନ୍ତ ନ କରଇ ବାହାର । ୯
କେ ଦିନ ଶେଷରେ ଦିନକର-କରେ ତାପ ପାଇ ଜଳେ ବୁଡ଼ଇ ।
କେ ମହା ସକଳେ ବସି ଶୀତ ସ୍ଥଳେ ଶୀତଳ ପବନ ଲୋଡ଼ଇ ।
କୋବିଦେ । କେତେ କହିବି ଏ ପ୍ରସଙ୍ଗ ।
କେବଳ ଶୀତକାରକ ଦ୍ରବ୍ୟ ବିନୁ ଆନ ଲୋଡ଼ିଲା ନାହିଁ ଅଙ୍ଗ । ୧୦

(ରସକଲ୍ଲୋଳ—ପଞ୍ଚଦଶ ଛାନ୍ଦ)

# କୃପାସିନ୍ଧୁ ବଦନ

## ରାଗ—କାମୋଦୀ

କୃପାସିନ୍ଧୁ ବଦନ          କର ଅବଲୋକନ
କଉଁ କରମ ସ୍ୱାନ ଜନ
କାକୂଛ୍ୱର ହୋଇ          କର ଯୋଡ଼ି ଜଣାଇ
ଗରୁଡ଼ ସ୍ତମ୍ଭ ସନ୍ନିଧାନ ହେ
ମହାପ୍ରଭୁ ।
କୃପାସରିତପତି ହୋଇ
କରମ ସ୍ୱାନ ଜନ ତହିଁ
କରୁଣା କଲ ନାହିଁ          କମ୍ପା ହେ ସବସ୍ଥାସ୍ୱୀ
କହ ମୁଁ ବିଚିତ୍ର ମଣଇ ହେ । ୧
ଖିଳ ବ୍ରହ୍ମାଣ୍ଡୋଦରେ          କର୍ମସ୍ୱାନ ଜନରେ
ଯେଣୁ ମୋ ସମ ଆନ ନାହିଁ
ଖଗ-ଚଳକ-ଜାନ୍ତ          ସେ କାରଣୁ ଏମନ୍ତ
ଖେଦ ଆରତେ କହୁଲଇଁ ହେ
ଖଣ୍ଡିଲ ନାହିଁ ଯେଣୁ ମୋର
ଖେଦ-କରୁଣା-ରତ୍ନାକର
ଖିଳ-ବ୍ରହ୍ମାଣ୍ଡ-ଧର          ଖଣ୍ଡି ନାହଁ କାହାର
କେଉଁ ବିପତ୍ତି ବିଶ୍ୱମ୍ଭର ହେ । ୨
ଗଜ-ରାଜକୁ ଜଳେ          ଗ୍ରାହ ଗ୍ରାସିବା କାଳେ
ଡ଼ାକିଲା ରଖ ଆଦିମୂଳ
ଗୁରୁତର ଆତଙ୍କ          ଜାଣିଣ ତା ଶ୍ରୀ ଅଙ୍କ
ରଥାଙ୍ଗ ପେଷି ତତକାଳ ହେ ।
ଗ୍ରାହ ଜୀବନେ ନିବାରିଲ୍
ଗଜ ବିପତ୍ତିରୁ ତାରିଲ

ଗରୁଡ଼ସ୍ଥାନ ଭେଟନ ନାମ କର୍ମକୁ ସ୍ଥାନ
ନତ୍ୱଣ ମୀରନଧ୍ୱ ହେଲ ହେ । ୩

(ଆର୍ତ୍ତତ୍ରାଣ ଚଉତିଶା)

# ବୃନ୍ଦାବତୀ ଦାସୀ

(୧୭ଶ—୧୮ଶ ଶତାବ୍ଦୀ)

## ତ୍ରିଭଙ୍ଗୀ

ଶ୍ରୀବୃନ୍ଦାବନର ଭିତରେ । ସପତାବରଣ ମଧ୍ୟରେ ।
ସନ୍ତାନ ପାଦପ ମୂଳରେ । ମଣି ନିର୍ମିତ ବେଦୀ ପରେ ।
ବ୍ରଜସ୍ୱେ ଅଖିଳ ନିଧାନ । ସେ ଯେ ମୋହର ପ୍ରାଣଧନ ।
ବାମ ଚରଣ ଭରେ ରହି । ଦକ୍ଷିଣ ପାଦ ବଙ୍କେ ନେଇ ।
ସେ ପାଦେ ଅଙ୍ଗୁଳି ବଙ୍କରେ । ତଳେ ଦେଇଣ ଅବନୀରେ ।
ପ୍ରଥମ ଭଙ୍ଗୀ ଜାଣ ଏହି । ବେନି ବଙ୍କରେ ଅଛି ହୋଇ ।
ଦ୍ୱିତୀୟ ଭଙ୍ଗୀ କଟି ଜାଣ । ବଙ୍କ ଦିଶଇ ଶୋଭାବନ ।
ତୃତୀୟ ଭଙ୍ଗୀ ଗ୍ରୀବାଦେଶେ । ବଙ୍କେ ଢ଼ାଳନ୍ତି ବାମ ଅଂସେ ।
ଏମନ୍ତ ପ୍ରକାରେ ତ୍ରିଭଙ୍ଗୀ । ଗୁଞ୍ଜରେ ଭକ୍ତ ବ୍ରଜ ସଙ୍ଗୀ
ବଂଶୀ ଧରଣ ବଙ୍କ ହୋଇ । କର ବେନି ଅଛନ୍ତି ରହି ।
ଅଧର ବଂଶୀ ବାଦନରେ ବଙ୍କତା ହୋଇଛି ବେଶରେ ।
ଲୋଚନ ଅନ୍ତ ବଙ୍କ ଭାବେ । ରାଧାଙ୍କ ମୁଖାନ୍ତେ ସ୍ୱଭାବେ ।
ବଂଶୀ ବାଦନେ ଭ୍ରୂ ବେନି । ବଙ୍କେ ଟେକନ୍ତି ପୁଣି ପୁଣି ।
ଚନ୍ଦ୍ରିକ ଚୂଳ ଶିରଦେଶେ । ବଙ୍କେ ସୁମଞ୍ଜୁଳ ଅଭାସେ ।
ଏମନ୍ତ ଭାବେ ବଙ୍କନବେ । ସୁନ୍ଦର ଦିଶନ୍ତି ସ୍ୱଭାବେ ।
ବଙ୍କେ ଅଟନ୍ତି ଅସୁନ୍ଦର । କାଳିମା ଭାବେ ସେ ଆବର ।
ସେ ଯେ କାଳିମା ବଙ୍କ ହୁଅ । କୃଷ୍ଣତନୁ ଦେଶକୁ ଯାଇ ।

କେ କହୁ ତାହାଙ୍କ ସୁନ୍ଦର । ନାହିଁ ଦେବାକୁ ପଟାନ୍ତର ।
ସେ ଅଙ୍ଗେ ଅଲଙ୍କାର ଥାଇ । ସୁନ୍ଦର ନୋହିବେ କିମ୍ପାଇଁ,
ବାମ କୁଣ୍ଡଳ ଅଂସେ ଲୋଟେ । ଭ୍ରୂଲତା ମନ୍ଦେମନ୍ଦେ ଚଳେ । ୧୦
ସେ ଭ୍ରୂରୁ ଚଳିବାକୁ ଚାହିଁ । ଧଇର୍ଯ୍ୟ କେ ପାରିବ ରହି ।
ବଂଶୀବାଦନେ ମନୋହର । କୁଞ୍ଚିତ ଦଶଇ ଅଧର ।
ଇଷିତ ହାସ ପରକାଶେ । ହୋଇଲା ପରି ହୋଇ ଦଶେ ।
ମରିବ ମରିବ ତା ଚାହିଁ । ଧର୍ଯ୍ୟ ଧରି ନ ପାରଇ ।
ମଞ୍ଜୁଳ ଅଙ୍ଗୁଳି ନିକରେ । ଚଳନ୍ତି ବଂଶୀର ଉପରେ । ୧୫
ଧରି ବଂଶୀର ରନ୍ଧ୍ରମାନ । ପୂରନ୍ତି ଅଧର ପବନ ।
ଲୋଚନ ଦଶଇ ପ୍ରସାରି । ନାହିଁ ଦେବାକୁ ପଟାନ୍ତର ।
ସେ ଥାନ ଚକ୍ଷୁର ନିମେଷ । ହରନ୍ତି ନ ରହନ୍ତି ଲେଶ । ୧୮

(ପୁରୁଷୋତ୍ତମ ଚନ୍ଦ୍ରୋଦୟ—୯ମ ଅଧ୍ୟାୟ)

## ଭୂପତି ପଣ୍ଡିତ

(୧୭ଶ—୧୮ଶ ଶତାବ୍ଦୀ)

### ରମ୍ଭା ଓ ନାରିକେଳ

କୃଷ୍ଣ ମହିମା ଯହିଁ ଶୁଣି । ସେ ସବ ବାକ୍ୟରେ ମୂର୍ଚ୍ଛନ । ୧
ଯେବେ ନଥାଇ କୃଷ୍ଣ ରସ । ସେ ପଦକୃତେ କାର୍ଯ୍ୟ କିସ ।
ପାଟ ବସନେ ଗୁଞ୍ଜ ଫଳ । ଥିଲେ ନୁହଇ ବହୁମୂଲ୍ୟ ।
ଚିରା କନାରେ ମଣିବର । ଥିଲେ ନ ତୁଟେ ମୂଲ୍ୟ ତାର ।
ସୁର-ସଖା ହିଁ ରସମୟେ । ସେ ନାରିକେଳ ଫଳ ପ୍ରାୟେ । ୫
କ୍ଳେଶେ ହୋଅଇ ରସଭୋଗ । ସବୁଙ୍କୁ ନୁହେଁ ଉପଯୋଗ ।
ଯଥା ସୁପକ୍ୱ ରମ୍ଭାପ୍ରାୟେ । କୋମଳ ସ୍ୱାଦୁ ରସମୟେ ।
ଅକ୍ଳେଶେ କର ତାକୁ ଭୋଗ । ସବୁ ଜୀବନେ ଉପଯୋଗ ।

କି ପ୍ରାକୃତ କି ସଂସ୍କୃତ । ସେ ସବୁଶାସ୍ତ୍ର ନନ୍ଦସୁତ ।
ଗାଳି ଶୁଣଇ ଗୋପୀ ମୁଖେ । ବେଦ ନ ଶୁଣେ ତେଡ଼େ ସୁଖେ ।
ଏ ସବୁ ମନରେ ବିଚାରି । ଶାସ୍ତ୍ରକୁ ଅବଜ୍ଞା ନ କରି ।
(ପ୍ରେମପଞ୍ଚାମୃତ—ପ୍ରଥମ ଛାନ୍ଦ)

## ରାଧା ଓ ବୃନ୍ଦାବତୀ

ଜ୍ଞାନ ବୋଲନ୍ତି ମନ ଶୁଣ । ମୁନି କହନ୍ତି ହେ ସ୍ୱଜନ,
ଶୁଣି ହୋଇଲେ କୃତ କୃତ । ବିଚିତ୍ର ଗୋବିନ୍ଦ ଚରିତ ।
ଯାହାକୁ ଛାଡ଼ି ଗଲେ ହରି । ଘୋର ବିପିନେ ଏକା କରି ।
ଘନ ଅନ୍ଧାର ଅର୍ଦ୍ଧରାତ୍ର । ସେ ଏକା ଅବଳା ଯୁବତୀ ।
କାନ୍ଦନ୍ତି ଅତହିଁ ବିକଳେ । ମୋତେ ନାଶିଲେ ସନାଜାଳେ ।
ଘର ଛାଡ଼ିଲି ଗୋପୀ ମେଳେ । ଗୋପୀଙ୍କି ଛାଡ଼ିଲି ତୋ ବୋଲେ ।
ତୁ ଏବେ ମୋତେ ଛାଡ଼ିଗଲୁ । କେଉଁଣି ଆଉ ତ ନ କଲୁ ।
ତୋ ରୂପ ମୃଗତୃଷ୍ଣା ଜଳେ । ମୁଁ ପିନା ବୁଡ଼ିଲି ଅଥଳେ ।
ଅବୋଧ ଅବଳା କୁମାରୀ । ମୁଁ ତ ନୁହଇଁ ତୋ ବଇରୀ ।
ସେନେହ ସରୋବର ଜଳେ । ମୁଁ ଥିଲି ଗୋପୀ ମୀନ ମେଳେ ।
ଚୁମ୍ବନ ସ୍ୱାଦ ମୁଖେ ଦେଲୁ । କଟାକ୍ଷ ବଣ୍ଡା ଲଗାଇଲୁ ।
ବଡ଼ଶୀ ମୀନ ପ୍ରାୟେ କରି । ମୋତେ ତୁ ଆଣିଲୁ ଓଟାରି ।
ଦେଖାଇ ମିଥ୍ୟା ଅନୁରାଗ । ଘୋଡ଼ ତୋ ଏମନ୍ତ ସୁଆଗ ।
କାହିଁତେ ଦୟା ନ ବହିଲୁ । ବନସ୍ତେ ଏକା ଛାଡ଼ି ଦେଲୁ ।
ବଜ୍ରହୁଁ ହୃଦୟ ତୋ ଅଣ୍ଟ । କି କର୍ମ କଲୁ ଆରେ ଶଠ ।
ତୁ ତ ମନୁଷ୍ୟ ନୋହୁ ଭୂତ । କେମନ୍ତେ କଲି ତୋ ଚିନ୍ତ ।
ଫେଡ଼ିଲୁ ବେଣୀ କଲୁ ଜୁଡ଼ା । ଖୋସିଲୁ କେତକୀ ପାଖୁଡ଼ା ।
ଉଚ ଉରଜେ ପତ୍ରାବଳି । ବିଚିତ୍ର ମୃଗମଦ ବୋଳି ।
ଲେଖିଲୁ ମୋ ଲେଖିଲି ପୋଛି । ତୋ ତହୁଁ ରସିକେ ଅଛି ।

ପୁରୁଷ ଭ୍ରମ ବୋଲଇ । କେମନ୍ତେ ସନ୍ଦେହ ତୋ ଦେଖି ।
ମୁଁ ନବ ଯୁବତୀ ରତନ । ଏ ମୋର ଦ୍ରବ୍ୟ ସଦ୍ଭବନ ।
କୁନ୍ଦନ ସୁନା କଳେବର । ଝ କ ଝୀନ ନୀଳାମ୍ବର ।
ସୁବର୍ଣ୍ଣ ରତ୍ନ ଅଳଙ୍କାର । ନାନା ସୁଗନ୍ଧ ଆମୋଦର ।
ସୁନ୍ଦର ସୀମ ରୂପ ମୋର । ବିଚିତ୍ର ବେଶ ମନୋହର ।
ଯା ପାଦ ନଖ କୋଣ କୋଟି । ଲକ୍ଷ୍ମୀବତିକ ରମ୍ଭାରତି ।
ସୁରତ-ଚରିତ-ପଣ୍ଡିତା । କନ୍ଦର୍ପ କେଳି କଳ୍ପଲତା ।
ମଦନ ବିଜୟ ମଙ୍ଗଳ । ନାଦ ମୋ ନୂପୁର ଯୁଗଳ ।
ନିତମ୍ବ ବିମ୍ବ ସୁଗଠନ । ମଦନ ଦେବ ସିଂହାସନ ।
ମୋ କଟି କିଙ୍କିଣୀ ଝମକ । ସୁରତ ସଂଗ୍ରାମେ ଢମକ ।
ମୋ ଉଚ୍ଚ ଉରଜ ଆରମ୍ଭ । ମଦନ ପାଟ ଗଜ କୁମ୍ଭ ।
ଏ ମୋର ଅଧରେ ସାକ୍ଷାତ । ସୁଣନ୍ତୁ ଅବ୍ୟୟ ଅମୃତ ।
ମୋ ନେତ୍ର ଈଷିତ କଟାକ୍ଷ । ମଦନ ଶର ଲକ୍ଷ ଲକ୍ଷ ।
ମୋର କୋମଳ କଳେବର । କନ୍ଦର୍ପ କୁବେର ଭଣ୍ଡାର ।
ରତି ରତନ ମନୋହର । ତୁ ଯେତେ କରିପାରୁ ଜର ।
ଅପୂର୍ବ ରସ ଅଛୁ ପୁଣ । ଅତି ବଢ଼ଇ କଲେ ଗ୍ରେହ ।
ରୁଚିବା କଥାକୁ ନ ଡର । ମନ ସନ୍ତୋଷ ବେଗ କର ।
କନ୍ଦର୍ପ ଗ୍ରନ୍ଥ ଯିବା ଦୋଷ । ମୁଁ ଏବେ କ୍ଷମାକଲି ଆସ ।
ଦେଖ କୁସୁମିତ କାନନ । ଶରଦ ପୂର୍ଣ୍ଣମୀର ଜନ୍ମ ।
ସେବନ୍ତି କୁନ୍ଦ କନଅର । ମାଳତୀ କୋଳେ ମଧୁକର ।
ଏହା ତ ଦେଖୁଛ ନୟନେ । କ କେଳେ ପଶିଅଛ ବନେ ।
କାଳିନ୍ଦୀତରଙ୍ଗ ସୁନ୍ଦର । ଚନ୍ଦ୍ର ପ୍ରତିବିମ୍ବ ଝୋଟର ।
କୁମୁଦ ପାଇ କାନ୍ତିରସ । ଆନନ୍ଦ ମନେ ହସ ହସ ।
ଭ୍ରମର ଅଛୁ ବୋଲେ ଯେନ । ତେଣୁଟି ଲଜ୍ଜିତ ପଦ୍ମିନୀ ।
ସାରୀଳୀ ହଂସ ଚକ୍ରବାକ । କୋଳ୍ଲି କୋକିଳ ଶାରୀଶୁକ ।
ନାନା ସୁଦ୍ୱିଜ ବାକ୍ୟ ଗୋଳ । ମଦନ ଅଭିଷେକ ବେଳ ।

ଭୃଙ୍ଗ ଶବଦ ମଲ୍ଲୀ ଫୁଲେ । ମଙ୍ଗଳ ଶଙ୍ଖଧ୍ୱନି ଭଳେ ।
ତୁ ଏହି ଅନୁକୂଳେ ଆସ । ରମଣୀ ରତ୍ନ ଯେଣେ ବସ ।
ବୃକ୍ଷ ଗୁମ୍ଫାରେ ଜନ୍ମମଣି । ବିଚିତ୍ର ଚିତ୍ର ଭୂମି ବଣି ।
ବାଲି ବେଦୀରେ ଫୁଲଶେଯ । ଯେତେକ ସୁଖରସେ ଭଜ ।
ବସ ତୁ କୋଳେ ଯେଣେ ମୋତେ । ଇନ୍ଦ୍ରସମ୍ପଦ ଛୁର କେତେ ।
ମୋ ପାଦ ପଦ୍ମ ଅଙ୍ଗେ କର । ବ୍ରହ୍ମ ସମ୍ପଦହିଁ ପାଶୋର ।
ଯେବେ ଛାଡ଼ିବୁ ଏତେ ରସ । ତୁ ନଷ୍ଟେ ନୋହୁରେ ମନୁଷ୍ୟ ।
ଏ ରସ ରହସ୍ୟ ନ ରସୁ । ପୂର୍ବଜନ୍ମେ କି ଥିଲୁ ପଶୁ ।
ଶୂକର କୂର୍ମ ଅବା ମୀନ । ଏ ଅନୁମାନୁ ନୋହୁଁ ଆନ ।
ପାଶେ ପଦ୍ମିନୀ ବନ ଛାଡ଼ି । ପାଣି-ପଙ୍କରେ ଥାଇ ବୁଡ଼ି ।
ମାଟିର ସ୍ୱାଦ ସିନା ଜାଣୁ । ପାତାଳେ ଥିଲେ ଖୋଜି ଆଣୁ ।
ବୁଝିଲି ତୋହର ବିବେକ । ବିଧିରେ ତୁ ପଶୁ ପାଳକ ।
ଗୋପଭୂପତ ତୋହା ଲୋକ । ତୁନକ ଆମ୍ଭର ନାୟକ ।
ମୋ ଦେହ ଦେବ ଗଜେ ସ୍ୱୋଗ । ଗହ୍ୱଡ଼ ତୋହା ନୋହୁ ଯୋଗ୍ୟ ।
ପୂର୍ବେ କି ତପ କରି ଥିଲୁ । ଭାଲୁ ପବିତ୍ର ମାଝ କଲୁ ।
ଏ ରୂପେ ନାନା ଛଳବାଣୀ । ବୋଲି କାନ୍ଦଇ ସେ ଗୋପିନୀ ।
ଗୋପୀଏ ଶୁଣନ୍ତି ତା ଶୋକ । ବୋଲନ୍ତି ଏକକୁ ଅନେକ ।
ଯାହା ବୋଇଲେ ଠାକୁରାଣୀ । ବିଧାତା ଭେଟାଇଲା ଆଣି ।
ଗୋବିନ୍ଦ ଗଲେ ଏକା ଛାଡ଼ି । ତେଣୁ ଗୋ ଦେଉଅଛୁ ରଡ଼ି ।
ବନଲେ କାନ୍ଦୁଅଛୁ ଡରି । ଆମ୍ଭଙ୍କୁ ଯାହା ଅଛୁ କରି ।
ଆମ୍ଭର ନାହିଁକି ନିଶ୍ୱାସ । କପା ନୋହିବ ସେ ନିରାଶ ।
ରାଧା ବୋଲନ୍ତି ତାହା ଶୁଣି । ଶୁଣ ଗୋ ସକଳ ଗୋପିନୀ ।
କୃଷ୍ଣ ଯେ ଅପମାନ ଦେଇ । ବନରେ ଯାଇଛି ପଳାଇ ।
ତୁମ୍ଭେ ତାହାଙ୍କୁ ନେହ କରୁ । କୃଷ୍ଣକଥା ନ ବୋଲିବ ବାରୁ ।
ଆମ୍ଭର ରାଣଟି ତୁମ୍ଭଙ୍କୁ । ଅଦ୍ୟାପି ନିନ୍ଦିବ ତାହାଙ୍କୁ ।
ଏମନ୍ତ ଶୁଣି ଗୋପୀମାନେ । ବୋଲନ୍ତି ଆଜ୍ଞା ପରମାଣେ ।

ଆମ୍ଭର ନାହିଁ କହିବାକୁ
ଧର୍ମ ଦଣ୍ଡି ଲଣି ତାହାକୁ ।
ଏ ରୂପେ କୃଷ୍ଣ କୃଷ୍ଣ ହୋଇ ।
ଭେଟିଲେ ଗୋପୀବୃନ୍ଦ ଯାଇ ।
ଗୋପିଙ୍କି ଦେଖି ହଚ ସ୍ୱରେ ।
କାନ୍ଦି ମିଳଳ ଧାଡକାରେ ।
ରାଧିକା ଗଲେ ଗଳା ଛଢ ।
କହିଲ ସବୁ କଥା କାନ୍ଦି ।
ଚଞ୍ଚଳ ନେତ୍ର କୋଣେ ଠାଣ ।
ମୋତେ ଡାକଲ ବୃନ୍ଦକଣ ।
ବୋଇଲ ଦେଖିଅଛ ଫୁଲ ।
ସୁଗନ୍ଧ ଶୀତଲ ଅମୂଲ୍ୟ ।
ସ୍ଥଳ ଆମ୍ଭର ବେନ ଜନେ ।
ସେ ଫୁଲ ଆଣିବା ବହ୍ନେ ।
ଗୋପିଙ୍କି ଲୁଚକଣ ଆସ ।
ଏ କଥା ନ କର ପ୍ରକାଶ ।
ଜାଣିଲେ ପଡ଼ିବେ ସେ ଧାଇଁ ।
ଆମ୍ଭେ ପାଇବା ଆଉ କାହିଁ ।
ମୁଁ ତାର ବଶ୍ୱାସେ ପଡ଼ିଲ ।
ତୁମ୍ଭଙ୍କୁ ନ କହି ଅଇଲ ।
ତହିଁର ପ୍ରତଫଳ ଠୂଳେ ।
ଦେଖ ପାଇଲ ଏକାବେଳେ ।
ବାଟେ ଫୁଟିଲ ମୋର ଦେହ ।
ବକୁଳ ତଳେ ଥିଲ ରହି ।
ବୋଇଲ ନ ପାରଇ ଯାଇ ।
ଆଣିଲ କନ୍ଧରେ ବସାଇ ।
ପୁଣି କ ମନେ ବସ୍ମରଲ ।
ବାଟେ କସ୍ମଡ଼ ଛାଡ଼ି ଗଲ ।
ରାଧା ବୋଲନ୍ତ ଏ ବଚନେ ।
ତୁ ଗର୍ବ କରଥିଲୁ ମନେ ।
କୃଷ୍ଣର ନଜ ଏ ସ୍ୱଭାବ ।
କାହିଁକେ ନ ସହଇ ଗର୍ବ ।
ଅଣୁ ପ୍ରମାଣେ ଗର୍ବ ପାଇ ।
ନଜ ସ୍ୱରଜା ସେ ଗ୍ଲାଡଇ ।
ଆମ୍ଭେ ପୀରତ ଲୋକସିନା ।
ଆମ୍ଭଙ୍କୁ ତାର କ ବେଦନା ।
ଏ କଥା ବୃନ୍ଦାବତୀ ଶୁଣି ।
କଛି ନ ବୋଲି ହେଲେ ତୁନି ।
ଚନ୍ଦ୍ରା ବୋଲନ୍ତ ବୃନ୍ଦାବତୀ ।
ତୁମ୍ଭର ଆମ୍ଭର ପୀରତ ।
ତୁମ୍ଭର ହାନଲଭ ଯହିଁ ।
ଆମ୍ଭର ସ୍ୱାର୍ଥିକ ତହିଁ ।
ଏକାନ୍ତେ ଆଣି ବେଣୁଧର ।
ସମ୍ପଦ ଅଛନ୍ତି ଅପାର ।
କପାଇଁ ହେଉଛ କୃପଣ ।
ଆମ୍ଭର ସ୍ୱଗ ବେଗେ ଆଣ ।
ତୁମ୍ଭର କଣ୍ଠ ଯେ କୋକଳ ।
ଏ ଲଭ ହଂସ ପ୍ରାପ୍ତେ କଲ ।
ଲୋଚନ ଅମଳ କମଳ ।
ଏ ଲଭ କୋକନଦ କଲ ।
ଅଧିକ ଅଧରେ ରକତ ।
ଏ ଲଭ ହୋଇଛ ବ୍ୟକତ ।

ମୁକୁତା ପ୍ରାୟ ଅଶ୍ରୁ ଧାର । ଏ ଲଭ ହୋଇଛୁ ଅପାର ।
ଅମ୍ଭ ନୟନେ ରେଖେରେଖେ । କାଳୀ ପଡ଼ିଛୁ ତୁମ୍ଭ ମୁଖେ ।
ଗୋପିଙ୍କ ସଙ୍ଗ ଗୁଡ଼ବାର । ଏ ଲଭ ଏଥେ ମୂଳକର ।
ସବୁ ମିଶାଇ କର ଗାଏ । ଠୂଳେ ପାଇନ୍ତୁ କଚଡ଼ାଏ ।
ଏ କଥା ଶୁଣି ଗୋପିମାନେ । ହସିଲେ ମୁକତ ବଦନେ ।
ରାଧିକା ବୋଇଲେ ନ କହ । ଦହନ ଉପରେ ନ ଦହ ।
ଦେଖି ସପତ୍ନୀଙ୍କ ହସ । ବୃନ୍ଦା କାନ୍ଦଇ ରସ ବସ ।
ବଧାତା କଲା ଏତେ ସଣ । ମୋତେ ହସିଲେ ଗୋପନାରୀ ।
ଯାହାଟି କୁଆକୃଷ୍ଣ କଲା । ଏଥୁଁ କପାଳି ଉଭୁଶଲା ।
ପର୍ବତ ନ ପଡ଼ିଲା ମାଡ଼ି । ବୃକ୍ଷ ପଡ଼ିଲା ତାକୁ ଗୁଡ଼ି ।
ଭୁଜଙ୍ଗ ମୁଣ୍ଡ ମାଡ଼ି ଥିଲା । ତା ବିଷ କେଣେ ଉଡ଼ିଗଲା ।
ଘୋଡ଼ା ଯେ ଭୂଜ ଗିଳିଥିଲା । ତା ଦାନ୍ତ ପୋଡ଼ିଯାଇଥିଲା ।
ଗିଳଣ ଉଡ଼ିଗଲା ବକ । ଶକଟେ ପଡ଼ିଲା ଚଡ଼କ ।
ପୋଡ଼ୁ ସେ ଅଜଗର ତୁଣ୍ଡ । ଷଣ୍ଢାର ପୋଡ଼ୁ ବସ ମୁଣ୍ଡ ।
ପୋଡ଼ୁ ସେ ତୃଣାବର୍ତ୍ତ ପଣ । ପୋଡ଼ୁ ପୂତନା ବିଷସ୍ତନ ।
ଭଣ୍ଡି ଖାଇଲେ କଂସ ଧନ । ମୁଁ ଯେ ହୋଇଲି ସ୍ଥାନମାନ ।
ରାଧା ବୋଲନ୍ତି ଶୁଣ ପ୍ରାଣ । ହସିବା ଦୋଷ ଗୋ ନ ଘେନ ।
ଗୁଆଳୀ ସ୍ୱଭାବେ ଷୋଡ଼ଶୀ । କହନ୍ତି ସବୁ କଥା ହସି ।
କି ଭଲ ମନ୍ଦ ଲଭ ହାନି । କି ଆଗ ପଛ ଶୟ୍ୟରଣୀ ।
ଏ ମାନ ମନରେ ନ ଘେନ । ହସନ୍ତି ନବ ଯଉବନା ।
ତାଙ୍କ ସ୍ୱଭାବେ ହାସ ମୁଖ । ତୁମ୍ଭେ ନ କର ମନ ଦୁଃଖ ।
ଏ ଯେ ତୁମ୍ଭର ଅବେଶ୍ୱର । ବିଧିରେ ନୋହେ କି ଅମ୍ଭର ।
ଏକ୍ଷଣି ତା କସ କହିବା । ଭେଟ ହୋଇଲେ ଗୋ ବୁଝିବା ।
ଆଗତ ହେଉ ଗୃହ ଆସି । ଦେଖିବୁ କି କରିବ ସଖି ।
ସମସ୍ତେ ବେଢି ଧରି କଡ଼ । ଗୁଡ଼କୁ ଯେସନେ ପିମ୍ପୁଡ଼ି ।
ଏହୁ ଅଞ୍ଚଳେ ବାନ୍ଧିଥିବୁଁ । ତୋ ପାଦତଳେ ପକାଇବୁଁ ।

ତୋହର ଶାନ୍ତ ହେଲେ ରୋଷ । କ୍ଷମା କରନ୍ତୁ ତାର ଦୋଷ ।
ନୋହିଲେ ପାଦେ ପଡ଼ିଥିବ । କୋକିଳ ଏଡ଼େ କା ଗରବ ।
ତୋର କରୁଣା ଆଜ୍ଞା ଶୁଣି । ତେବେ ସେ ଫେଡ଼ନ୍ତୁ ବାନ୍ଧେଣି ।
ଏହା ମୁଁ କରିବି ପ୍ରମାଣ । ହେ ସଖି ଛାଡ଼ ଅଭିମାନ ।
ମୁଁ ଯେବେ ବୃଷଭାନୁ ଝିଅ । ମୋର ମହିମା ବୁଝି ନିଅ ।
ଏମନ୍ତ ବୋଲି ଠାକୁରାଣୀ । ଅଞ୍ଚଳେ ଗଣ୍ଠି ଦେଲେ ଟାଣି ।
ବୋଇଲେ ଖୋଲ ଲେଉଟିବା । ଆମ୍ଭେ ତାହାକୁ ନ ଲୋଡ଼ିବା ।
ଯଇଲେ ଆପୁ ତା'ର ପୁଖେ । ଆମ୍ଭେ ଖୋଜିବା କେଉଁ ମୁଖେ ।
ବୃନ୍ଦାକୁ ଯାହା ଗୋ କରିଛୁ । ସବୁ ଗୋପୀଙ୍କି ସେ ଆଣ୍ଡିଛୁ ।
ଏ ବନେ କଲୁ ଆଣି ଏତେ । କହ ଗୋ ଲଜ ଥାଇ କେତେ ।
ଯେବେ ବେଶରେ କାର୍ଯ୍ୟ ଥିବ । ତାହାର ଇଚ୍ଛାରେ ଆସିବ ।
ତେବେ ଥୋକାଏ ତା ମହତ । ରହିବ କହିଲୁଟି ସତ ।
ରାଧା ଏ ରୂପେ ବୋଲି କରି । ଉଠିଲେ ବୃନ୍ଦା କର ଧରି ।
ବାହୁଡ଼ି ବନେ କରି ଗଲେ । ଷୋଳ ସହସ୍ର ଏକାବେଳେ ।
ଯମୁନା ନଦୀ ଜଳେ ଯାଇ । ବୃନ୍ଦାର ମୁଖ ଆଖି ଧୋଇ ।
ରାଧିକା ଆପଣା ଅଞ୍ଚଳେ । ବୃନ୍ଦାର ମୁଖ ପୋଛି ଦେଲେ ।
ଦେଖି ରାଧାର ସ୍ନେହ ଅତି । ଶୋକ ଛାଡ଼ିଲେ ବୃନ୍ଦାବତୀ ।

(ପ୍ରେମ ପଞ୍ଚାମୃତ—ତୃତୀୟ ଅଧ୍ୟାୟ)

## କଳା ଲୋକ

କୃଷ୍ଣ ଗୁଣ ଗୁଣି ବରଜ ତରୁଣୀ ଉଦ୍ଧବେ କହନ୍ତି ଏକ
କଳା ଲୋକଙ୍କର ସଙ୍ଗତେ ପୀରତି କଲେ ଲୋକେ ଅବିବେକ
ଉଦ୍ଧବ ହେ !
କସ୍ତୁରୀ, ଭୃଙ୍ଗ, କୋକିଳ
କୃଷ୍ଣକେଶ, ଫଣୀ, ରାହୁ, ଯମ, ଶନି, କାଳିଆ କେଉଁଟା ଭଲ । ୧
ଖଣ୍ଡ, ଶାକର, ଦୁଧ, ସର ଖୁଆଇ ଖେଳାଉତ ବଂଡ଼ କଲୁ

ଖଣ୍ଡ ତପୁ ଅମ୍ଭେ କୃଷ୍ଣ ଫଳ ଲଭି ରମ୍ଭା ତରୁପ୍ରାୟେ ହେଲୁଁ ।
ଉଦ୍ଧବ ହେ !
କ୍ଷୀଣ ହେଲୁ ବଡ଼ କାୟେ
ଖଣ୍ଡ ପରତେ ପରମାନନ୍ଦ ପ୍ରୀତି ପ୍ରାଣ ରଖିବା ଘଣସେ । ୨
ଗରୁ ଯଉବନୀ ଗରବେ ଆମ୍ଭେ ଯେ ମତ୍ତ ସିଂହ ପ୍ରାୟେ ହେଲୁଁ
ଗମ୍ଭୀର କୂପ ଗୋବିନ୍ଦ ପ୍ରତିବିମ୍ବ ପ୍ରେମରେ ବୁଡ଼ି ପଡ଼ିଲୁ
ଉଦ୍ଧବ ହେ !
ଗତ ମଧ୍ୟମାହ୍ଣ ପ୍ରାୟେ
ଗିରିଗହ୍ୱର ବନଲତା ଖୋଜିଣ ନ ଭେଟୁ ମୋହନ ରାୟେ । ୩
ଘନନୀର ବିନୁ ଚାତକର ଯେସନ୍ତେ ଅନ୍ୟ ନୀର ନୋହେ ପାନ
ଘନଶ୍ୟାମ ବିନୁ ଘରେ କି ବାହାରେ ନୟନେ ନ ଦେଖୁ ଆନ
ଉଦ୍ଧବ ହେ !
ଘୋଟି ଅଛୁ ଚଉପାଶେ
ଘଟଣ ମୁକୁର ପ୍ରତିବିମ୍ବ ଯେସନ୍ତେ ଆଲିଙ୍ଗନକୁ ନ ଆସେ । ୪
ଆଖିରୁ ଅମୃତ ପ୍ରତିଚକ୍ଷୁ ପ୍ରାୟେ ଶ୍ରୀକୃଷ୍ଣ ଅଙ୍ଗରେ ହେଲୁ
ଅକ୍ଷର ମାତ୍ରା ଅନୁସ୍ୱାର ସହିତେ ପ୍ରେମ ପୂପ୍ରନ ହୋଇଲୁ
ଉଦ୍ଧବ ହେ !
ଅନୁଭବ କରୁଁ କରୁଁ
ଆମ୍ଭେ କି କୃଷ୍ଣ କୃଷ୍ଣ ଆମ୍ଭ ଶରୀର ଦ୍ୱିତୀୟ ଭାବ ପାସୋରୁଁ । ୫
(ଉଦ୍ଧବ ଚଉତିଶା)

# ଲୋକନାଥ ବିଦ୍ୟାଧର

(୧୭ଶ-୧୮ଶ ଶତାବ୍ଦୀ)

## କଳିଯୁଗ କଥା

କହନ୍ତି ଯୁଦିଷ୍ଠି ସହଦେବ ରାଇ ଶୁଣ ତୁମ୍ଭେ ମନ୍ତ୍ରୀବର
କଳି ଯୁଗରେ ଯେ ଦେବତାବ୍ରାହ୍ମଣ କେମନ୍ତ ଅଛେ ଆଗ୍ଭର ବା
କହ କଳିଯୁଗ କଥା
କହ ଫେଡ଼ ହୃଦୁ ମନୁ ବ୍ୟଥା ବା । ୧ ।
ଖଡ଼୍ଗ ଧରଣ ସହଦେବ ବୋଲନ୍ତି ଶୁଣ ତୁମ୍ଭେ ନୃପବର
ଖଣେ ରାଜା ପରଜାକୁ ଦୟା ନୋହିବ ବନ୍ଧୁଣ ନେବେ ସକଳ ବା
ଖାନ୍ଦ ଥାଉଁ ଶାଧିଥିବେ କର
ଖଣେ ପରଜା ହେବେ କାହାର ବା । ୨ ।
ଘରେ ଘରେ ସରୁମିଛ ଉପୁଜିବ କେହି ନ କହିବେ ସତ
ଘେନିବେ ବ୍ରାହ୍ମଣେ ମୂର୍ଖ୍ୟ ଶବଦାନ ନୀଚ ଲୋକକୁ ପାତିବେ ହାଥ ବା
ଘୃତ ନ ଦେବେଟି ଅଗ୍ନିମୁଖ
ଘରେ ଘରେ ମାଗୁଥିବେ ଭିକ ବା । ୪ ।
ନୀଚ ଲୋକମାନେ ଉଚରେ ଉଠିବେ କହିଡ଼ରେ କରି ପ୍ରୀତ ।
ନୀଚ ଉଚ ଦୁହେଁ ସରସମ ହେବେ ନ କରିବେ ଭୟ ଭ୍ରାନ୍ତ ବା
ନିଜ ଭାଥାକୁ ଛାଡ଼ିବେ ନାରୀ
ନର୍ଥ ଗିଳିବେ ସାହାସ କରି ବା । ୫ ।
ଜାତ ଅଜାତ ଏକକାର ହୋଇବ ଘରେ ଘରେ ହେବ ଛତି
ଜଉତଷ ମାନେ ଲଗ୍ନ ନ ଜାଣିବେ ଜଳ ଅକାଳେ କରିବେ ବୃଷ୍ଟି ବା
ଜୀବ ଜନ୍ତୁରେ ନ ଥିବା ଦୟା
ଜଗନ୍ନାଥେ କରିଛନ୍ତି ମାୟା ବା । ୮ ।
ଝିଅ ବର୍ତ୍ତକରି କହିଡ଼ ଘେନିବେ ଡହିଁ ନ ସରିବ ଧନ

ଝିଅର କଉଣ୍ଣ ଝିଅ ଯେଣସିବ ସଂସାରେ ବୋଲିବେ ସ୍ଥନ ବା
ଝଳ ସୁବର୍ଣ୍ଣ ଦଶେ ଯେସନ
ଝିଅ ନ ଦେବେଟି କନ୍ୟାଦାନ ବା । ୯ ।
ନସତ ହୋଇବେ ନସ୍ତମ କଣବେ କେନ୍ଦ୍ର ନ କହିବେ ସତ
ନବ ଯୁବାସ୍ତ୍ରିସ୍ତ ଘରେ ଆଉ ଆଉ ବଂଟପୀ ସ୍ତ୍ରିସ୍ତକ ଚଢ଼ି ବା
ନ କଣବେ ଭୃଷ୍ଟାମଣ୍ଡା ପୂଜା
ନଷ୍ଟେ ମଣବେ ଗୋ ଜନ୍ତୁ ପ୍ରଜା ବା । ୧୦ ।
ଟାଡ଼ୁ କରିବେ ଶୂଦ୍ର ଯେ ବ୍ରାହ୍ମଣଙ୍କୁ ଟେକଛୁ ଯେଉଁ ସାହାଣ
ଟଙ୍କାଟିକୁ ଧାନ ଭରଣେ ହୋଇବ ନ ମିଳିବ ଅନ୍ନବସ୍ତ୍ର ବା
ଟେକ କହ କବା ଧର୍ମଗ୍ରନ୍ଥେ
ଟେକଅଛୁ ଯେଉଁ ଦେବତାଏ ବା । ୧୧ ।
ଥୋଇଲା ମାଇପ ଘର ଯେ କରିବେ ବ୍ୟାହ ମାଇପକୁ ଛାଡ଼ି
ଥାନା ଲୋକମାନେ ଥାନ ଛାଡ଼ି ଯିବେ ବଥାନା ବସିବେ ମାଡ଼ି ବା
ଥସ୍ତେ ନୋହିବ କାହାର ବୁଦ୍ଧି
ଥେଣ୍ଟ ଗଣ୍ଡିଆ ଖାଇବେ ଭୁଞ୍ଜି ବା । ୧୨ ।
ଧର୍ମ ଲୋକମାନେ ଅଧର୍ମକୁ ଯିବେ କାହାରେ ନେବେ ପଣେ
ଧର୍ମ ଭଳି ଅଛୁ ଅଢ଼ାଇ ବୋଢ଼ିକ ସମସ୍ତେ ଜଣେ ଜଣେ ବା
ଧରି ନେବେଟି ଚକଣି ଟଙ୍କା
ଧର୍ମ କାହାକୁ ନୋହିବ ସଖା ବା । ୧୯ ।
ଫଳିବ ନାହିଁଟି ଜଉ କୃଷି କଅଣ ବକାରେ ହୋଇବ ଟାଣ
ଫନ୍ଦାକଲେ ଫଳ ଯାଚ ନ ଅର୍ଣ୍ଣିବ ସାହୁକୁ ନ ଦେବ ଋଣ ବା
ଫଳ ଜଗୁଁ ଜଗୁଁ ନ ରହିବ
ଫୁଲ ଫୁଟିଲେ ଫଳ ନ ନୋହିବ ବା । ୨୨ ।
ମୁଗୁଲ ଖାଇବେ ଓଡ଼ିଶା ରାଇଜ ଯୁକେଷ୍ଟି ଅଛନ୍ତି ଦେଇ
ମଲେଟି ପରଜା ହୁଲୁ ସଲୁ ହୋଇ ଭୁଅଙ୍କର ଶାପ୍ୟ ପାଇ ବା
ମାତା ପିତା ନ ମାନମେ ପୁଅ

ମାଇପଙ୍କ ଠାରେ ବଡ଼ ସ୍ନେହ ବା । ୨୫ ।
ରାଜା ନ ଶୁଣିବେ ପରଜା ଗୁହାରି ମନ୍ତ୍ରୀଙ୍କି ରାଇଜ ଦେଇ
ରାଇଜ ଯାଉ ବାହାପିଅ ଖାଇବେ ଚଠି ପତ୍ରମାନ ବନ୍ଧୁ ବା
ରାଜା ଜଗଫ ଜାକରେ ପଡ
ରାଜା ଯୁତ୍ରେଜେଷ୍ଟି ପ୍ରଭୁ କହନ୍ତ ବା । ୨୭ ।
ଛପନ କୋଟି ଜୀବଜନ୍ତୁ ଉପରେ ଜଗନ୍ନାଥ ପ୍ରଭୁ ଦାତା
ଛୟାଣୋଇ ସହସ୍ରେ ରାଜାଙ୍କ ଉପରେ ଓଡ଼ିଶା ରାଜା କରତା ବା
ଷଣେ ଚନ୍ଦ୍ରା କରେ ପଦ୍ମମୁଖ
ଘୁର ଲୋକା ବୋଲେ ମୋତେ ରଖ ବା । ୩୪ ।

(ବା ଚଉତିଶା)

## ସ୍ୱୟମ୍ବର

ଏଥି ଅନରସ ଶୁଣ ହେ ବଦୂଷ ସୁନ୍ଦରମଣିର ସ୍ୱୟମ୍ବର ।
ବିମ୍ବ ପ୍ରତିବିମ୍ବ ଧାରଣୀ ମୁକୁରହୃଦୟା ସଖୀ କହେ ଗିର । ସକଳ ।
ଭୂପାଳ କୁଳ ବଳ ଗୁଣ । ଦେଶ ସୁଯଶ ପ୍ରତାପ ନାମ ଆଦି କରଇ
ତୋତେ ନିବେଦନ । ୧ ।

ଦେଖ ରସବତି ଏହେ ସୁରପତି ସୁନ୍ଦରସୀମା ପୁରନ୍ଦର ।
ତୋ ସମ ଗମନ ସମ ଅଛୁ ବୋଲି ଐରାବତ ଗଜେ ଆଦର । ବାଳାରେ ।
ଶଚୀପ୍ରିୟ ହୋଇ ବିବେକୀ । ଜାନୁ ଉପମା ନାମ ମିତ୍ରମାନଙ୍କେ ପ୍ରିୟତମା
କଲା ନର୍ତ୍ତକୀ । ୨ ।

ଦେଖିବାକୁ ତୋର ସକଳ ସୁନ୍ଦର ମନ୍ଦର ନିରୁପମା ବେଶ ।
ବହିଛି ବିଶାଳ ପଦ୍ମଦଳ ପ୍ରାୟେ ସହସ୍ର ଅନିମିଷ ଦୃଶ । ବାଳାରେ ।
ମାଳା ଦେଲା ମାତ୍ରେ ଏହାଙ୍କୁ । ଲୋହ ପରଶ ପରଶେ ହେମପ୍ରାୟେ ହୋଇବୁ
ଦେବତା ସବଙ୍କୁ । ୩ ।

ଯେଉଁ ଦିଗପାଳ ତରବାଳ ଘୋର ତପରେ ଜ୍ୱଳନ୍ତ ସାକ୍ଷାତ ।

ଦେଖ ନୃପାତ୍ମଜା ଏ ଯେ ଶେଷ ରାଜା ଗିରିଜାବଲ୍ଲଭ ଭୂଷଣ ।
ଅପୂର୍ବ ବାସ ଅନର୍ପିତ ଅଶେଷ ଅଶ୍ରବଣ ବହୁ ଶ୍ରବଣ ।  ବାଳାରେ,
ପାଶକ ନେତ୍ର କର୍ଣ୍ଣର ।  ଏଜା ବେଲକରେ ଯେନ ପାରଇ ଏ
ତୋର ରୂପ ଗିର ମଧୁର । ୫ ।

ଏ ଯେ ଓଡ୍ରରାଷ୍ଟ୍ର ନରେଶ ସମସ୍ତ ବଳିଷ୍ଠମାନଙ୍କରେ ଶ୍ରେଷ୍ଠ
ପ୍ରକଟ ଜଗତେ ମନ୍ତ୍ରୀବଇକୁଣ୍ଠନବାସୀ ସେବା ଅକପଟ ।  ବାଳାରେ,
ଭବ ପଣ୍ଡିତ ଗୃହେରାସ୍ମି ।  ଯାହା ଶତ୍ରୁନାରୀ ସୁଲୋଚନା ବାରିଭରେ କର୍ଦ୍ଦମ
ହେଲା ମହୀ । ୬ ।

ଶ୍ରୀ ପୁରୁଷୋତ୍ତମ ବୋଲି ଏ ଉତ୍ତମ ନରେଶ ଦେଶ ଏକଦେଶ
ଅଛୁ କ୍ଷେତ୍ରବର ଦାରୁ କଲେବର ହୋଇ ଯହିଁ ବିଷ୍ଣୁ ପ୍ରକାଶ ।  ବାଳାରେ,
ହୋଇଛୁ ଏ କଥା ପ୍ରକଟ ।  ଯହିଁ ପାପୀ ନରମାନେ କଲେବର ସଙ୍ଗେ
ଛାଡ଼ନ୍ତି ସାକଲୁଟ । ୭ ।

ଦେଖରେ ସୁକେଶୀ ଏ ଯେ ବାରାଣସୀ ନୃପତି ସୁର ପୁରନ୍ଦର
ରସବତୀବର ବାହୁକ ପୀଡାରେ କଳୁରିକା କର ଯାହାର ।  ବାଳାରେ,
ଯହିଁ ଶରୀର ଅବସାନେ ।  ଭବ ଛାଡି ଭବ ସ୍ୱବଳ୍କୁ ଧରନ୍ତି ଭୂତେ
ଭୂତେଶ ପରସନ୍ନେ । ୮ ।

ମନ୍ଦୋଦରୀ ନାଥ ମନୋରଥ ରଥ ମହାରଥ ଏ ଚରଷ୍ଟ୍ରୀମୀ
ସୁରାସୁର ଶିରସରୋଜେ ପୂଜିତ ଚରଣେ ଅତୁଳ ପଦବୀ ।  ବାଳାରେ,
ପୁଣ୍ୟଜନ ବିଷ୍ଣୁସେବକ ।  କ୍ଷିତିଭୂଷଣ ଅଗ୍ନିଷଣ ଏ ବର୍ଣ୍ଣିଷଣ
ଦୂଷଣ ଦୂରନ୍ତକ । ୯ ।

କ୍ଷିତିବଳୟସ୍ଥ ବଳସ୍ଥ ହତ ଶଙ୍କ ଲଙ୍କାପୁର ପୁର ମଣ୍ଡନ
ଯାହା ଉପବନ ନନ୍ଦନ ନନ୍ଦକ ମଧୁ ଆଶ୍ରମ ମଧୁବନ ।  ବାଳାରେ,
ମାଳାଦେଲେ ଏହା ଗଳାରେ ।  ସାଧବୀ ଅଗ୍ରଣୀ ସୁଶ୍ରେଣୀ ମହୀ ଗଣ୍ଡି ହେବ
ନିଜ ନାମରେ । ୧୦ ।

ଯାହା ଏକ ସେନା କଣପାରେ ଚୂନା ମୁଷ୍ଟି ପ୍ରହାରେ ଚନ୍ଦ୍ରକୂଟ
ହେମ ଯେଉଁ ପୁରେ ମୁଣ୍ଡିକା ସଙ୍ଗରେ ଆଦରକୁ କଲା ପାଳଟ ।  ବାଳାରେ,

ନାହିଁ ସେ ପୁରକୁ ଉପମା । ସ୍ୱର୍ଗୁ ଅଧିକ କରି ଯାହା ଭସ୍ମରୁ ନିର୍ମାଣ
କଲା ବିଶ୍ୱକର୍ମା । ୧୧ ।

ଦେଖରେ ସୁକାନ୍ତି ଏ ହାଟେ ବିରାଜି ବଂଶୋଦ୍ଭବ କାନ୍ତିରାଜନ
ଯାହା ଯାଗବଳେ ଦିଗପାଳେ କାଳେ ନ ଦେଖିଲେ ପ୍ରିୟା ବଦନ । ବାଳାରେ,
ଏ ଯେ ଶ୍ରୁତିପଥ ପଥିକ । ସଜ୍ଜନ ଗଣାଙ୍କ ଦୁଃଖବିନାଶକ ବିବେକ
ଦରିଦ୍ର ପୋଷକ । ୧୨ ।

ଏ ଯେ ମଧୁବନ ନୃପନନ୍ଦନ ବିଚକ୍ଷଣ ବିଧୁବଦନ
ଲାବଣ୍ୟ ସଦନ ମୁକୁନ୍ଦଚନ୍ଦନ ଏହା ଇଷ୍ଟଦେବ ମଦନ । ଏ ହାଟେ,
ଦକ୍ଷିଣନାୟକ ସଙ୍ଘାତ । ଦରଶନେ ହତ ପତିବ୍ରତାବ୍ରତ ପଦ୍ମନେତ୍ର
ମଧୁବ୍ରତ । ୧୩

ଦେଖରେ ସୁମଧ୍ୟା ଏ ହାଟେ ଅଯୋଧ୍ୟା ନରନାୟକ ପଞ୍ଚଶର
ସପତ ଦ୍ୱୀପର ମହୀପ ଅନେକ ଦର୍ପଦଳନେ ହରବର । ବାଳାରେ,
ପଙ୍କ୍ତିରଥିକ ଏହା ଦର୍ଶି । ମହତ୍ପଦ୍ମବକ୍ତ୍ର ଶିଶଦଗ୍ଧ ଗୃହେ ମଣିଲେ
କୃଷ୍ଣାଷ୍ଟମୀ ନିଶି । ୧୪ ।

ଯାହାଠାରୁ ଦୃଷ୍ଟି ନେଉଛୁ ବିମ୍ବୋଷ୍ଠୀ ଦେଉଛୁ ଅପମାନ ସୃଷ୍ଟି
ଯାହାକୁ ସ୍ୱପ୍ନରୁ କରୁଛୁ ତାହାର ଉପରେ ସୁଧାସାର ବୃଷ୍ଟି । ସଜନୀ,
ଯେତେ ରାଜାମାନ କହିଲି । କେବଳ ଶ୍ରବଣେ ଶୁଣି ସରୋଜାକ୍ଷୀ ନେତ୍ରପଥକୁ
ନ ଆଣିଲି । ୧୫ ।

ଦେଖରେ ଅବଳା ଏ ଯେ ରତ୍ନମାଳା ନରେଶ ଅବନୀତଳକ
ଅବଲୋକନରେ ଅନଙ୍ଗଶରରେ ଦହିବ ରଜନୀ ସାନ୍ଧ୍ୟକ । ବାଳାରେ,
ଦେଖିଲେ ଯକ୍ଷିଣୀନିକରେ । ଧନଦ ରାଜ ରାଜଭ୍ରମେ ସେବିବେ ପାରୁଣେ
କୁବେର ବୁଦ୍ଧିରେ । ୧୬ ।

କରପଦ୍ମ ଗଦା ବଳପ୍ରତାପକୁ ବ୍ରହ୍ମପ୍ରିୟା ଯେବେ ଦେଖିବ
ପରମ ଆନନ୍ଦେ ପ୍ରେମଭରେ ମୁଦେ ପାବକ ଅଙ୍କ ପାସୋରିବ । ବାଳାରେ,
ଯଜ ଦେଖି ଶଶଲାଞ୍ଛନ । ପାର୍ବତୀରମଣ ରମଣ ହୋଇଣ ଆଜହିଁ
ହେଉଅଛୁ କ୍ଷୀଣ । ୧୭ ।

ଆଳୀମୁଖୁଁ ବାଳୀ ଗୁଣାବଳୀ ଶୁଣି ଆନନ୍ଦସମୁଦ୍ରେ ବୁଡ଼ିଲ
ଅତି ସ୍ନେହ ବଳେ ମାଳା ଦେଇ ଗଳେ ଅନ୍ତର ଆଲିଙ୍ଗନ କଲ । ବାଳାରେ,
ଦେଖି ନ ଦେଖି ମୁଖଶଶୀ । ଅନଙ୍ଗଘୋର ଅନ୍ଧକାରେ ଆକୃଷ୍ଟ ପଥ ନ
ପାରେ ତେଣୁ ଆସି । ୧୮ ।

ଯେତେବେଳେ ତାର ଗଳେ ପୁଷ୍ପମାଳା ମଣ୍ଡିଲ ମନ୍ଦଗତି ବାଳା
ପ୍ରତ୍ୟକ୍ଷ ହୋଇ କି କୁମାର କଣ୍ଠରେ ପଡ଼ିଲ କାମଶର ମାଳା । ତଦ୍ଧିରେ ।
ପରାଣ କେମନ୍ତେ ରହିଲା । ଏତ ରଜନୀ ସଜନୀ ଅଙ୍କେ ନେବା ଆଶାଂସନା
ଯେବେ ନ ଥିଲା । ୧୯ ।

ଆହେ ସାଧୁଜନେ ନ ଧରିବ ମନେ ବିଷସ୍ତୁବିଷ କଳପନା
ଭବଜନ୍ତୁଁ ତର ଜଗନ୍ନାଥ ନାମ ନିରତେ କରି ସୁମରଣା । ସୁଜନେ,
ଆହେ ବୃନ୍ଦାବନ ଚନ୍ଦ୍ରମା । ଲୋକନାଥ ଦାସ ରଜନୀ ଦିବସ ଉକ୍ତିତ
ଦୋଷ ନର କ୍ଷମା । ୨୦ ।

( ସର୍ବାଙ୍ଗ ସୁନ୍ଦରୀ—୧୧ ଛନ୍ଦ )

# ଉପେନ୍ଦ୍ର ଭଞ୍ଜ

(୧୭ଶ—୧୮ ଶତାବ୍ଦୀ)

## ବନ୍ଦଇଁ ଦୀନବାନ୍ଧବ

ରାଗ—ପାହାଡ଼ିଆ କେଦାର

(ଅଜ୍ଞାନ ଅନ୍ଧକାର ନାଶ, ଖଳଙ୍କ ମୂଳୋତ୍ପାଟନ ଓ ଗୁଣୀଲୋକଙ୍କର ଆହ୍ଲାଦ ବର୍ଦ୍ଧନ ପାଇଁ ବୈଦେହୀଶ ବିଳାସ କାବ୍ୟାରମ୍ଭରେ କବି କାବ୍ୟର ନାୟକ ବିଷ୍ଣୁରୂପୀ ରାମଚନ୍ଦ୍ର ଓ ସୂର୍ଯ୍ୟବଂଶର ଜନକ ସୂର୍ଯ୍ୟଦେବଙ୍କ ବନ୍ଦନା ଏକତ୍ର କରିଅଛନ୍ତି । ତାହାର ମତରେ ଏଥିରେ ପଞ୍ଚ ବା ଷଡ଼ ଦେବତାର ବନ୍ଦନା ମଧ୍ୟ ଅଛି ।)

ବନ୍ଦଇଁ (ଦ) ଦୀନବାନ୍ଧବ ହରି ଯେ ତମ-ଚୟଖଣ୍ଡନକାରୀ
ସଦା କମଳାନନ୍ଦ ବିସ୍ତାରି ପ୍ରିୟବେ ଇନ ଯେ । ବନ୍ଧୁ ଅନନ୍ତ-ଅଙ୍କ-ବିହାରୀ

ଭର ପ୍ରତାପ ଯାର ସଞ୍ଚର ନଶାଚରଙ୍କ ଉଲ୍ଲାସ ହର ସୁଜେ ସୂମନ ଯେ ।
ବଇନତେଜସ୍କ ଯାହା ଅସ୍ତ୍ରତେ ସ୍ଥିତ ଯେ । ବଇକୁଣ୍ଠ-ପଙ୍କଜ-ଲୋକ
ତୋଷିତ ଯେ ।

ବକାଶ ଅଖଣ୍ଡିତ-ମଣ୍ଡଳେ ସିଂହସ୍ତବରେ ନୀଡ଼ିତ କାଳେ ଭବେ ତରଣୀ
ହୋଇ ମଣ୍ଡଳେ ଗିର ଉଦତ ଯେ । ୧ ।
ବହୁତ ଯେହୁ ବୋହଡ ମୂର୍ତ୍ତି (ସ୍ନ) ଶ୍ରୁଚ ରଞ୍ଜନ କାରକ ଅଠ
ହଂସ ହୋଇଣ ଯାହା ପ୍ରଶସ୍ତି ଅଛୁ ପ୍ରବର୍ତ୍ତି ଯେ ।
ବଗଳ ରୂପ ଯାହାର ପୁଣି ଦ୍ୱିଜ ଚନ ଯା ଦର୍ଶନ ଗୁଣି ଆମ୍ଭୁ ପର ହସାରେ
ଭଣୀ କ ଶୁଭ୍ର କାନ୍ତି ଯେ । ବୁଧଜନଙ୍କ ଶିରଭୂଷଣ ଯେହୁ ଯେ । ବନସ୍ଥରୁ
ଯେ ଆନ ବାଣୀ ନ ଜହୁ ଯେ । ବଳ ଯାହାକୁ ସଦା ନାହିଁ (ଦ୍ୱି) ଦ୍ୱୀପ
ପ୍ରସନ୍ନ କରତା ସେହୁ ପୁନତ ଧର୍ମ ସ୍ୱରୂପସ୍ତାହୀ କ ସ୍ତୁତ ତହିଁ ଯେ । ୨ ।

(ବୈଦେହୀଶବିଳାସ— ୧ମ ଛାନ୍ଦ)

## ତ୍ରିକାଳ

ରାଗ—ଚନ୍ଦ୍ରାଦେଶାକ୍ଷ, କାଫି କାମୋଦୀ, ମାଳ ବସନ୍ତ

(ଖାଠିଏ ଧାଡ଼ି ବିଶିଷ୍ଟ ଏହି ବଚତୁ ଛାନ୍ଦରେ ଭଞ୍ଜ ଅକ୍ଷର ଲୋପ ନୟମରେ ଚାନ ବଭିନ୍ନ ରାଗରେ ତନ ଋତୁର ବର୍ଣ୍ଣନା କରନ୍ତ୍ର । ବସ୍ତୁତଃ ଏହା ତନୋଟି ଛାନ୍ଦ ।)

ଆଷାଢ ସଘନଜାଳ ହୋଇ ଉଦୟ
ଅସିତ ପରବଳରୁ ଦରଣମୟ । ୧ ।
ସ୍ତନନ୍ତ ହିଁ ସ୍ଫୁଟ କଳକଣ୍ଠ ସବୁତ
ଅତରପ୍ରକ୍ଷ ହିଁ ତାର ଦଶେ ଦଶେ ତ । ୨ ।
ନେକୀର ସଙ୍ଗୀତରେ କାମୁକ ଉଲ୍ଲାସ
ଧରମଣୀ ଆଚ୍ଛାଦନେ ଘନ ବିଳାସ । ୩ ।
ନୀପବନ ସୁଖ ଦାନ କର ରଭସେ

ସ୍ତୋକରଟ ମସୃଣ ଯେ ଝିଲିକା ବସେ । ୪ ।
ସେ ଅଦ୍ଭୁତକର ଦ୍ୱାର ଚକ୍ର ମୋହନ
ନଦୀ ବଣ ସଲିଳେ ଅଧିକ ହୋଇଲା । ୫ ।

(କୋଟିବ୍ରହ୍ମାଣ୍ଡସୁନ୍ଦରୀ—୨୫ଶ ଛାନ୍ଦ)

## କରୁଣାକର ହେ କରୁଣାକର

ରାଗ—ରାମକେରୀ

କମଳଧର ହେ କମଳଧରଜିତ ନାୟକ ।
କମଳଧର ଯାର ରାମନାମ ସଦା ଧାୟକ ।।
କମଳା ସାକ୍ଷାତ କମଳାପାର ସୀତାନାୟକ ।
କମଳାସନ ଦିବ୍ୟରୂପେ ନନ୍ଦେ ପୁଷ୍ପଶାୟକ ।।
କଦମ୍ବ କଦମ୍ବ ରୂପିଏ ନାଶ୍ରେ ହେବା ଲାୟକ ।
କଦମ୍ବ ଫୁଲକୁ ତ ତନୁ ବାନ୍ଧି ଶୋଭା ଦାୟକ ।।
କଳାପ କଳାପ ବାନ୍ଧନେ ଜଟା ଯେ ବିଧାୟକ ।
କଳାପ କନ୍ଦରେ ରଞ୍ଜିତ ଧୃତ ଧନୁଶାୟକ ।।
କବନ୍ଧ ନୃତ୍ୟ କହୁରୁକ୍ଷ ହେ କବନ୍ଧକ୍ଷୟକ ।
କବନ୍ଧ ଗଣ ଯାହା କୋପ ବୃଦ୍ଧି ଅଣ ଉଦୟକ
କର୍ବୁର ନଗରେ କର୍ବୁରବାରବର ଶାୟକ ।
କର୍ବୁର ସ୍ତମ୍ଭନେ ସାଗରେ ବନ୍ଧ ଯେ ଉପାୟକ ।।
କବ କବରେ ଅଗୋଚର ଖ୍ୟାତ କୀର୍ତ୍ତିଚୟକ ।
କବ କଣଅଛୁ ହୋଇବ କବ ହେ ପଞ୍ଚାୟକ ।
କରୁଣାକର ହେ କରୁଣା କର ହୋଇ ହେରୁକ ।
କହତ ଚନ୍ଦ୍ରାବଳୀ କୃତ୍ତିକଳା କେଳିକୁରୁକ ।।
କଳାକଉତୁକ ଏ ରୀତି ନାମ ହେବ ଖ୍ୟାତକ ।
କରୁଥିବେ ପ୍ରଭୁ ପାଦରେ ବାସ ଆଦ୍ୟ ପ୍ରାନ୍ତ ଭ ।

(କଳାକଉତୁକ—୧ମ ଛାନ୍ଦ)

# ଅର୍ଚ୍ଚନା

ରାଗ :—ମାଳବ

ଜୟ ଭକତବତ୍ସଳ ଜଗତ ଈଶ୍ୱର । ଦଶରଥ ନନ୍ଦନ ବନ୍ଦନ ଜନଙ୍କର ।
ବରଧନ ଅନନ୍ତ ଯଶ ଏ ଜଗତର । ବରଧନ ଅନନ୍ତ ସହଜ ଭକତର ।
ରକ୍ଷ ଚକ୍ର ଦର୍ କର ସଜଳ ସମସ୍ତ । ରକ୍ଷ ଚକ୍ର ଦର କର ନବରସମସ୍ତ ।
ଲକ୍ଷଣ ବନ୍ତ ଅଲକ୍ଷ ଲପନ ସହଜ । ସକଳ ଲକ୍ଷଣବନ୍ତ ଲକ୍ଷ୍ମଣ ଅଗ୍ରଜ ।
ଧର୍ମବନ୍ତ ବରମଖ ରକ୍ଷଣ ତତ୍ପର । ଇନ୍ଦ୍ରପଦ ଦତ୍ତ ତପସ୍ବର ସଙ୍ଗତର । ✦ ।
ବଢ଼ ଦମ୍ଭପଣ ହତ କର ରକ୍ଷଗଣ । ଅଶରଣ ଶରଣ ଅମର ପ୍ରବରଣ ।
ଅକଥନ କର୍ମ କର ପଦ ସ୍ମରଣର । ନବ ଅବସ୍ଥବନ୍ତ ପଥର ପଥର ।
ନଦ ତରଣର କାଇବର୍ତ୍ତି ଅଘହର । ଜନକ ଜନପଦ ଗମନ ତତପର ।
କରକଣ କରକଣ ବଶର ପ୍ରସ୍ତବ । ଦଣ୍ଡନ ଏରଣ୍ଡଦଣ୍ଡବତ ଅଜଗବ । ୯ ।

(ଅର୍ଚ୍ଚନାରସତରଙ୍ଗ—୧ମ ଗ୍ରନ୍ଥ)

# ବିନୟ ପତର

ରାଗ— ଶଙ୍କରାଭରଣ

୧

ନିର୍ମଳ ଚନ୍ଦ୍ରମଣ୍ଡଳ ଶରଦେ ବିରାଜ
ଦିଶେ ଯଥା ଦର୍ପକ ଦର୍ପଣେ ଥିଲେ ମାଜ ।
ବୁଦ୍ଧି କୁମର କାତର,
ଲେଖି ଆରମ୍ଭିଲ ବସି ବିନୟ-ପତର ।

୨

ଜାନକୀ ବଲ୍ଲଭ-ପଦ୍ମପାଦେ ଚିତ୍ତ ଥାଉ

ରାଜସୁତା ପ୍ରୀତି-କଉଶଳାକୁ ଚିତାଉ ।
ଏବେ ମରୁଅଛୁ ଝୁରି,
ଦରିଦ୍ର ରତନ ପାଇ ହରାଇଲା ପରି ।

୩

ତୁ ମୋ ପ୍ରତିଚକ୍ଷୁ ଯେଣୁ ହୋଇଛୁ ଅନ୍ତର
ଦଶୁନାହିଁ କିଛୁ କାହିଁ ଆନ ପ୍ରତିକାର
ନୂଆ ଅନ୍ଧପ୍ରାୟେ ହୋଇ,
ଅନୁକ୍ଷଣେ ଆକୁଳ ବଢ଼ୁଛୁ ପ୍ରାଣସନ୍ଧୁ ।

୪

ଦୂରେ ଥିଲେ ପାଶେ ଥିଲା ପରି ଥିବୁ ଯେନ
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ ।
ପ୍ରୀତି ଅଭେଦ ତାଙ୍କର
ଯେତେ ଦୂରେ ଥିଲେ ସେ ଯାହାର ସେ ତାହାର ।

୫

ଯେତେ ଦୂରେ ପଡ଼ ପଡ଼ିଥିଲେ ରେ ନବୀନା
ଚହ୍ନାକ ନୁହଇ ଆନେ ବୃକ୍ଷ ନାମ ବନା ।
ବନ୍ଧୁ ତୋ ମନ୍ତ୍ର ମୁଁ ତୋର,
ସବୁଠାରେ କୁହାଉଛୁ ସୁନ୍ଦରୀ ଜୋସ୍ନର ।

୬

ଯେଣେ ଅନାଇଲେ ଇନ୍ଦ୍ର ଜାଲ ପ୍ରାୟେ ଦଶୁ
ମୁକୁର-ବିମ୍ବ ପରାୟେ ପାଶକୁ ନ ଆସୁ ।
ଏତେଁ ହୃଦ ଭାହିଁ ପାଇଁ,
ମୋହ ଜାଣିବାରେ ମୁଁ ତ ଦୋଷ କରି ନାହିଁ ।

୭

ରବିକର ନ ଛାଡ଼ିଲା ପର୍ଯ୍ୟନ୍ତେ ମେରୁକୁ
ମୋ ମନ ନ ଛାଡ଼େ ତୋ ପୃଥୁଳ ଉରଜକୁ ।
ଶିବେ ଆଶ୍ରେ କରି ବୃଷ
ଯାପ ଗ୍ରୀଷ୍ମ ପର୍ଯ୍ୟନ୍ତେ ନ ଗଲା ମୋର କ୍ଲେଶ ।

୮

ତୋ ପ୍ରୀତରେ ଦ୍ରବେ କାମ ବିଶିଖକୁଁ ସନ୍ଧ
ବର୍ଦ୍ଧୂଶୀଳ ପ୍ରାପ୍ତେ ବି ହୋଇଲା ମୋର ଦେହ ।
ମନ ଲୋହ ହୋଇଥିଲା,
ତୋ ଚମ୍ବୁ ଚୁମ୍ବକ ବଳେ ହୃଦୁଁ କାଢ଼ି ନେଲା ।

୯

ବିଦଗ୍ଧ ଶାମୁକାରେ ଜଳ ହେଲା ପ୍ରାପ୍ତେ ।
ସନ୍ତାପିତ ହୋଉଛି ବିରହ ଯୋଗୁଁ କାନ୍ତେ ।
ଚନ୍ଦନାଦି ଉପଚାର,
ହେଉଛି ତପତ ଲୋହ ଜମ୍ବାଳ ପ୍ରକାର ।

୧୦

ବିରହକୁ ଉପଚାର ମାତ୍ର ମନୋହାରୀ
ପଲ୍ଲବ ଶଯ୍ୟାଦି ଯେତେ ବିଷଥରେ କରି ।
ଏବେ ଅନୁଭବ ହେଲା,
ଛନ୍ଦରେ ମଙ୍ଗଳ ପଦ ଯେମନ୍ତ ରହିଲା ।

୧୧

ବୃଷ୍ଟି-ନଦୀ ତଟ-ତରୁ ପର୍ଯ୍ୟନ୍ତେ ଜୀବନ
ସନ୍ଦେହ ପଡ଼ିଛି ଏଥୁଁ ତରିବ କେସନ
ଗ୍ରହଦଶା ପ୍ରାପ୍ତେ ମୋର

ସୁଧାପାନ ଉତ୍ତରୁ ଛେଦନ ହେଲା ଶିର ।

୧୨

ଚନ୍ଦ୍ରକୁ ଚକୋର ଜଳଧରକୁ ଚାତକ
ପ୍ରାପ୍ତେ ତୋତେ କରିଥାଇ ମୁଁ ଆଶା ଅନେକ ।
ଧାତା ନଟଙ୍କାର ପରି,
ଦେଖାଇ ତ ହରି ନେଲା କନକଗଗରୀ ।

୧୩

ସ୍ୱପନ ସମ୍ପତ୍ତି ପ୍ରାପ୍ତେ ହେଲା ତୋ ସଙ୍ଗତ
କି କରିବ ପ୍ରିୟତମା ରସିକ-ଯୁବତୀ ।
ଚନ୍ଦ୍ର ଜଣି ପ୍ରାପ୍ତେ ହୋଇ,
ଏ ବରଷା କାହିଁ ଥିଲା ତୋହ ମୋହ ପାଇଁ ।

୧୪

ବାହାର ଅତି କଠିନ ଭିତର ସରସ
ନାଗରୀ ହୃଦସ୍ଥ ନାରିକେଳର ସଦୃଶ ।
ଆଲିଙ୍ଗନେ କୃପାବଶେ,
ଜାଣିଥିଲି ଆନ ହେଲା ବକ୍ଷେଦୁ ଏବେ ସେ ।

୧୫

ଏତେ କାଳେ କଲୁ ନାହିଁ ପତ୍ରିକା ପ୍ରଦାନ
ଦୂତ ପେଷି ଥରେ ହେଲେ ନ ସଞ୍ଚୋଳୁ ଧନ ।
ସହ ସେହ ହୃଦ ତୋର,
ରସାଳ ପଲ୍ଲବ କି ହୋଇଲା ଗ୍ରାବର ।

୧୬

ଛାଇ ପ୍ରାପ୍ତେ ପାଶେ ଲଗିଥାଇ ଅନୁକ୍ଷଣେ ।
ଆଜ୍ଞାକାରୀ ପ୍ରାପ୍ତେ ପୁଣି ତୋ ଅନୁସରଣେ ।
ନାରୀ କ୍ଷୀର ପ୍ରାପ୍ତେ ପ୍ରୀତି,

କାଦମ୍ବ ପର୍ଯ୍ୟେ ହେଲା ବଚ୍ଛେଦ ବପତ୍ତି ।

୧୭

ମନ୍ତ୍ର ପ୍ରାପ୍ତେ କର ରଜେ ଧର୍ମ ହୋଏ ଘୋଷି
କେଉଁଜନ ପୁହ୍ଲାଇବ ତୋ ସଙ୍ଗତେ ନଶି ।
ପଶ୍ଚାତ୍ତାପ ହେଲା ମୋର,
ଏଣେ କଳହାନ୍ତରିତା ନାମ୍ନ ପରକାର ।

୧୮

ଭାରତୀ ପର୍ଯ୍ୟେ ଗୁଣବନ୍ତୀ ତୁ ଯୁବତୀ
ଅଧିକା କସ ଲେଖିବ ଜଣାଣ ବନଠ ।
ଅପରାଧୀ ହେବେ ଦାସ,
ନକଟେ ପାଶକୁ ଯିବ କ୍ଷମା କର ଦୋଷ ।

(ପ୍ରେମସୁଧାନିଧି—୧୪ଶ ଛାନ୍ଦ)

## ଜଳକ୍ରୀଡ଼ା

(ରାଗ—ରାମକେରୀ—ଯୋଗୀ ସମାଧ ବାଣୀରେ ଗାଇବ)

ମନ ଦେଇ ଶୁଣ କୋବଦେ ନୃପ ସୁତା ସୁକେଶୀ ।
କୂଳରେ ବକୁଳ ମୂଳରେ ପୀଠ ଉପରେ ବସି । ୧ ।
ସରସୀ ଶୋଭିତ ଅନାଇ ମନ ନେଜ ଲୋଭିତ ।
ତଟ ଘଟନା ବଦ୍ରୁମରେ ପକ୍ଷୀପନ୍ତ ବର୍ମ୍ମିତ । ୨ ।
କ ମାଳ ଶାଢ଼ୀ ରଙ୍ଗ-ଧଡ଼ି ହଂସାବଳୀ ହୋଇଛୁ ।
ଅବନୀ ବନତା ବସ୍ତ୍ରାରେ କବା କାଣିବା ଲଛୁ ।
ପାବଛୁ ସ୍ୱଚ୍ଛ ସ୍ଫଟିକରେ ନୀର ତୀର ପ୍ରଗତ ।
·ସୁବେଣୀ ସ୍ମରଣ ସ୍ୱବ କ ତହିଁ ତ୍ରିବେଣୀ·ଖ୍ୟାତ । ୪ ।
ପାପ ଦଣ୍ଡୀ ଲଭି ମଗ୍ନଳପନ୍ତ ହଏ ଭଉଁଷ୍ଣ ।

ବଡ଼ ବଡ଼ଲ୍ଲୀକ ବେଢ଼ି କ ଶୋଭ୍ଲ ଚୂର୍ଣ୍ଣ ଚଉଁସ୍ତ । ୫ ।
ଜଳ ଜମ୍ବାଳ ଆବଳରେ ସ୍ନାନ ମନ ହରୁଛୁ ।
ଜଳ ନିର୍ମଳରେ ଅଦର ଆଦରଣୁଁ ଯାରୁଛୁ । ୬ ।
ଗମ୍ଭୀର ଗୁଣକୁ ପଣ୍ଡିତଠାରୁ ଗୃହୀତ କର ।
ନର୍ତ୍ତକୀ ଠାବରୁ ଭଉଁସ ଶିକ୍ଷା ପଦ୍ମ ଏହାର । ୭ ।
ଅମୃତ ସଙ୍ଗତେ ହୋଇଛୁ ମିତ ମଧୁର ପଣେ ।
ବଧୂର ସ୍ନେହକୁ ବଧୂର କରେ ଶୀତଳ ଗୁଣେ । ୮ ।
କାମ ଶର୍ବରୀକର ପ୍ରକାଶ ମାନ ସୁଖ ଦାନରେ ।
କୁମୁଦରେ ଯେଣୁ ବନ୍ଧତ ତେଣୁ ହର ପ୍ରକାରେ । ୯ ।
ସର ଶୋଭ୍ଲ ଦେଖୁଁ ଦେଖୁଁ ସେ ସରେ ମର୍ଦ୍ଦନ ବଧି ।
ବକ୍ଷ ପ୍ରମାଣ ଜଳେ ଯାଇ ବଳେ ଲାବଣ୍ୟ ନିଧି । ୧୦ ।
କବ ବସ୍ତ୍ରଶଲ୍ପ ବଚନ ହେଲ ରମ୍ଭୀ ବୁଡ଼ିଲା ।
ନ ବୁଡ଼ି ଶଇଳ ସଲିଳ ଉପରରେ ରହିଲା । ୧୧ ।
କଚ ପୁଣି ଦେଖା ନ ଯାଇ ଯେବେ ଥାଇ ଜଳରେ ।
ବିଷମ ସମସ୍ୟା ପୂରଣ ହେଲା ଏହି ଠାବରେ । ୧୨ ।
ଅପୂର୍ବ ଅମ୍ବୁଜ ମୁଖକୁ ସେବ ଭୃଙ୍ଗ ଚକୋର ।
ଚୁମ୍ବିବା ଲୋଭରେ ଧାଇଁଲେ ଶ୍ରୁତି ବୁଦ୍ଧି କାତର । ୧୩ ।
କେଶ ଦରଶନେ ରଥାଙ୍ଗ ଥାଇଁ ଆହାର ବଣେ ।
ବିଚ୍ଛେଦ ଭୟରୁ ପଳାଇ ଗଲେ ନ ରହି ପାଶେ । ୧୪ ।
ନୟନ ଉଜ୍ଜ୍ୱଳ କଜ୍ଜ୍ୱଳ ଲାଞ୍ଛି ଅଛାଇ ଦେଇ ।
ଗମ୍ଭୀର ଜଳରେ ପଶିଲେ ମୀନ ଭୟକୁ ପାଇ । ୧୫ ।
ଭ୍ରୂ ନୟନ ଅଞ୍ଜନକୁ ବୃଦ୍ଧି ଖଞ୍ଜନମାନେ ।
କୁରୁଙ୍ଗ ହେ ଆମେ ମଲୁଁ ବୋଲି ଡାକଲେ ସ୍ୱନେ । ୧୬ ।
ସମ୍ମୁଖରେ ସଜନୀ ଅମ୍ଭରେ ସେହି କାଳେ ପଶିଲେ ।
ହାସ ପରିହାସ ସରସ ଉକ୍ତିମାନ ଭଣିଲେ । ୧୭ ।
ଦେହରେ ନଳିନ ନଳିନୀ ନଳିନୀରେ ପୂରିତ ।

ଭ୍ରମନ୍ତ ଭ୍ରମରର ଭ୍ରମରର ଭ୍ରମରେ ଏ ଶୋଭିତ । ୧୮ ।
ବ-ରାଜ ବରାଜ ଅଛନ୍ତି ମୀନ ଭକ୍ଷଣ ପାଇଁ ।
ରାଜୀବ ରାଜୀବନୟନା ଏଥି ଖେଳା କରଇ । ୧୯ ।
ସଲିଳେ ହୃଦ୍ରୂପ ଦେଖରେ ହୋଇଅଛୁ ଶୋଭନ ।
ସଲିଳେ ହୃଦ୍ରୂପବଦନ ଦେଖିବାକୁ ମୋ ମନ । ୨୦ ।
ନବୀନ ଜୀମୂତ ଜୀମୂତସ୍ତନୀ କି ଏ ଉଦିତ ।
ଏ ନଳ କମଳ କମଳବନ୍ଧୁ ବନ୍ଧୁ ତେମନ୍ତୁ । ୨୧ ।
ଭୁବନ ଏଥିରେ ପୂରିତ ମୋହେ ସର୍ବ ଭୁବନ ।
ଜୀବନ ବନ୍ଧୁ ଏ ନିଷ୍ଟେ ପ୍ରାଣୀଙ୍କର ଜୀବନ । ୨୨ ।

× × ×

ଆଜ କି କୁସୁମ ନାରଙ୍ଗ ରଙ୍ଗ ବହୁତ ଲୀଳା ।
କରୁଛୁ ତେମନ୍ତ ଶୋଭାକୁ ପୁଣି ବହିଲେ ବାଳା । ୨୩ ।
ବୁଝି କେ କାହାର ଚରଣ ଧରୁଁ ଜାଣି ସେ ଗତି ।
ଗଡରେ ଗଜ ଅଛୁ ବୋଲି ମୋତେ କୁମ୍ଭୀର ଗ୍ରାସି । ୨୪ ।
ନାଗ ନଦୀ ବାଟ ନୋହିଲେ ତହିଁ ଘଡ଼ିଏ ଯାଏ ।
ହାସ କୁମୁଦ, ନେତ୍ର ମୀନ, ମୁଖ କମଳ ପ୍ରାୟେ । ୨୫ ।
ଜଘନ ପୁଳିନ, ଉରଜ ଚକ୍ରବାକ ମିଥୁନ ।
ରୋମାବଳୀ ଅଳିଆବଳୀ, ଗତି ହଂସ ସମାନ । ୨୬ ।
ହୃଦୟ କମଳ ପଲାଶ, ନାଭି ଜଳ ଭଉଁରୀ ।
କର କୋକନଦ, ସୁବାହୁ ସହି ମୃଣାଳ ସରି । ୨୭ ।
ବାଳୀ ଜଳେ ମିଳି କରନ୍ତି କେଳି ଏ ହୋଏ ଜଣା ।
ସଖୀ ସଙ୍ଗେ ମିଶି କ୍ରୀଡ଼ଇ ନାହିଁ ଚଞ୍ଚଳେକ୍ଷଣା । ୨୮ ।
କାହିଁକି ଏମନ୍ତ ହୋଇଲେ ବୋଲି କେବା ବୋଲିବ ।
ସୁଲକ୍ଷଣାକୁ ଏ ଲକ୍ଷଣା କାହୁଁ ସମାନ ହେବ । ୨୯ ।

(ଲାବଣ୍ୟବତୀ—୬ଷ୍ଠ ଛାନ୍ଦ)

# ପଲ୍ୟଙ୍କ ଅଙ୍କରେ ଲାବଣ୍ୟବତୀ

ଦଶା-ଚୋଖି (ସପନଚେଢଆ ବାଣୀ)

ଅଣିମାଦ୍ୟ ସୁଖ ଦାତ୍ରୀ ଶୋଇଅଛୁ ଅଣି ହୋଇ
ପଲ୍ୟଙ୍କ ଅଙ୍କରେ ଦଶେ ଏମନ୍ତ ଶୋଭା ।
ରତ୍ନାଣ ରଜତ ବାଡେ କନକ ଲତା କି ଜଡ଼େ
ବଣଦ ଘନରେ କି ସେ ଚପଳା ପ୍ରଭା ।
ବାମକର କପୋଳତଳ ।
ନେନ୍ଦୁ ପଲ୍ଲବେ ଥୁଆ କି ଫୁଲ୍ଲକମଳ । ୧
ଭୂଜବାରୁ ଶୋଭା ନେତ୍ର କି ନୀଳେନ୍ଦୀବର ପତ୍ର
ଉଲଟାଇ ଦର୍ପଣେ ଥୋଇଛୁ କୁରୁକେ ।
କି ଅବା ଖଞ୍ଜନ ଯୁଗ ନିଷ୍ଫଳ ହେବାରୁ ଯୋଗ
ଅଞ୍ଜନ ଅଠାଳାଠିରେ ଏକାବେଳକେ ।
ମୀନ ଗ୍ରଣି ଉଦସ୍ତ ଆସି ।
ମୃଗାଙ୍କ—ଅଙ୍କରେ ହେଲୁ ପରସ୍ପେ ଦଶି । ୨
ବାମା ବାମଦେବ ଦୃଇ ଯେଣୁ ତ୍ରିପୁର ବିଜୟୀ
ଦ୍ୱନ୍ଦ୍ୱକଣ ପୂର୍ଣ୍ଣଚନ୍ଦ୍ର ଦ୍ୱିଜଗ ଜଲେ ।
ଖଣ୍ଡେ ଖଣ୍ଡେ ଖଲ ଦେଖେ ଖାରଦ ପ୍ରକାଶ ଅଶେ
ନିର୍ଣ୍ଣେ ପ୍ରମୋଦ ମାନସେ ଆଣି ବଢ଼ିଲେ ।
ଯେଣୁ ଅଛୁ ଚନ୍ଦନ ପାଟୀ
ଲୋକନେ ଏହି ଉପମା ମନେ ପ୍ରକଟି । ୩
ଝିଲମିଲ ମାଳ ଯାନ— ପଡିରେ ଅତ ଶୋଭନ
ମାର ମଙ୍ଗଳ ପଲ୍ଲବ-ତୋରଣ ପରି ।
କରୁର କୁରୁଳ ଝଳ ବାତେ ଚଳେ ଅଳ ଆଳ
ପକ୍ଷ ଗୁଳ କବା ଉଡ଼ିବାକୁ ବ୍ୟଗ୍ର ।
ମୁକ୍ତା ସୀମନ୍ତୀ ଉପରେ ।
କାଳିନ୍ଦୀ ମଧ୍ୟେ କି ବହେ ଜାହ୍ନବୀ ଧାରେ । ୪

ଶ୍ରଦ୍ଧାରୁ କରିଛୁ ଘୋଷା    ଚୀନ ଚିକୁରକୁ ଖୋଷା
ଦିଶୁଛୁ ଯହୁ ତରିଷା ରହୁ ଉରିଷା
କେତୁମୁଣ୍ଡ ରୁଣ୍ଡେ ପଶି    ଗଳିଜ ଶରଦ ଶଶୀ
କେବଳ କରଣ ଦର୍ଶି କରୁ ମାଧୁର୍ଯ୍ୟ ।
ଆଡ଼ ଖୋପା କୁସୁମ ଚୋର ।
ହାହାକାର କରେ ଲୁଣ୍ଠିଭୂତ କ ତାରା । ୫

× × ×

ଅଛୁ ବକ୍ର ମଲ୍ଲୀ କଢ଼ୀ    ବିଧାତା କ ବକ୍ରେ ଗଢ଼ି
ସୁନ୍ଦରୀ ଫସାରେ ଇନ୍ଦ୍ରକର ଦେଇଛୁ ।
ଧଇର୍ଯ୍ୟ-ବୃଷ-ଅପୂର୍ବ    ନାଶ କରିଣ ଏଥିର
ଥିରଗମନା କ ଥିର ହୋଇ ବସିଛୁ ।
ଜନ୍ମୁଛୁ ଝଲକା ଝଲକ ।
ମୂର୍ଚ୍ଛି ରଖିନାହିଁ ସୁରନେତେ ପଲକ । ୬
ପାନ କଲ ପୁରି ରୁଣ୍ଡେ    ଫୁଟି ଦିଶୁଅଛୁ ଗଣ୍ଡେ
ମୁକୁରେ ଜବା କୁସୁମ ପ୍ରତିବିମ୍ବେ କ ।
ଶ୍ୱାସବଶେ ଦୋଲେ ଘୋଣା    ତହିଁ ମୀଳା ନାକଚଣା
ଉତ୍ଫୁଲ୍ଲ ଦଳ ଫୁଲକୁ ଭୃଙ୍ଗ ଚୁମ୍ବେ କ,
ଥୋପି ପଡ଼େ ରଙ୍ଗ ଅଧରେ ।
ଉପସ୍ଥିତ ପକ୍ୱବିମ୍ବେ ମନ ନ ଧରେ । ୭

× × ×

ଭଜୁ ନ ଭଜୁ ବାନ୍ଧବୀ    ଆଗ ମୁଁ ନିଦ୍ରା ଖଣ୍ଡିବି
ତନୁ ହେଲେ ଛୁଇଁଥିବି ଏ ବଡ଼ ଲଭ ।
ଯେ ପାରେ ବାଳା ମନାଇ    ନିଶ୍ଚେ ମଞ୍ଚେ ଇନ୍ଦ୍ର ସେହୁ
ମନରେ ଭାବନା କରି ପରମ ଶୁଭ ।
ଜାନୁ ଧରି ଦେଲ ଝୁଲାଇ ।
ପୁଂସ କର ଲାଗି ନିଦ୍ରା ବିନାଶ ହୋଇ । ୮

(ଲାବଣ୍ୟବତୀ—୧୧ଶ ଛାନ୍ଦ)

# ଚେଛି ଚଉରା

ରାଗ-କଉଶିକ; କୁମୁଦ କାନ୍ତ ଚଉଢଗା ବାଣୀ ।

ଚେତ ଚଉରା ବୁହିଲ ଝଣି ନାଶେ ପାଶେ ନାହିଁ ଦିବ୍ୟ ତରୁଣ ।
ମାର ହୃଦେ ହାଥ ନାଥ ନାଥ ବୋଲି ଅତ ଉଚେ କଲା କାରୁଣ ।
ଖୋଜେ ଅଧୀରେ । ଚେତନା ହତ ସେ ବାଧ୍ୟରେ ।
ଶେଯ ଲେଉଟାଇ କବରୀ ଫିଟାଇ କର ଭରି କୁଚ ସନ୍ଧରେ । ୧ ।
ପୁଣି ବୋଲଇ ହେ ଜାଣି ମୁଂ ନ ଥିଲି ଦଇବ ରୁ ଏଡ଼େ ଦାରୁଣ ।
କ୍ଷୁଧାତୁରକୁ ସୁଧାତୁଲ୍ୟ ଭୋଜନ ପରଶିଲୁ କେଉଁ କାରଣ ।
ଭୁଞ୍ଜି ବସିବା—ବେଳେ କୁଳିଶ ବୃଷ୍ଟି କଲୁ ।
ଯେବେ କଲୁ ତେବେ ପରାଣ ନ ନେଲୁ ଏଡ଼େ ବ୍ୟାକୁଳ କମ୍ପା କଲୁ । ୨ ।
ଏ ବାଣୀ ଶ୍ରବଣେ ଶୁଣି ସଖୀଗଣେ ପଚାରିଲେ ଏ କି ବିଷୟ ।
ତାର ତରଳ ନୟନରେ ସଜଳହ୍ରଦସ୍ଥା ପୂରିଇଛି ଲୁଅ ।
ବାଲୀ ରତନ । ବାଳଣ ପଚାରନ୍ତେ ହୋଇଲୁ ।
ପୁରୁଷ ପଦ ଦିବାକର ଅଗମ୍ୟ ପୁଟରେ କାହୁଁ ପ୍ରିୟ ପାଇଲୁ । ୩ ।
ବୋଲେ ନାଗରୀ ସାଗରେ ସ୍ନାନ କରି ଯେମନ୍ତ ତୃଷା ନ ତୁଟିଲା ।
କଳ୍ପତରୁରେ ଫଳ ନାହିଁ ଯେମନ୍ତ ତେମନ୍ତ ଦଶାକୁ ଘଟିଲା ।
ଦିବ୍ୟ ପୁରୁଷେ । ଆସି ରସି ବସି ମୋ ପାଶେ
ଅଙ୍ଗେ ଅଙ୍ଗ ମେଳେ ରସ ଜାତବେଳେ ବିଚ୍ଛେଦ ହୋଇଲା କି ଦୋଷେ । ୪ ।
ଆଳୀ ଭାଳିଲେ ଚନ୍ଦନ ମସ୍ତାରୁଢ଼ ପଚାରନ୍ତେ ଏହି ଅନ୍ତଃପୁର ।
ଉରଗ—କଞ୍ଚୁକେ ବେଷ୍ଟିତ ହେବାରୁ ଗଣି ଦିବସେ ଭୟଙ୍କର ।
ଅଛୁ ତହିଁରେ, ପବନର ମାତ୍ର ସଞ୍ଚରଣ ।
ଏ କେଉଁ ଦେବରେ ଗମ୍ୟ ହୋଇଥିବ ଭେଦ ତ ଥିବ ମନୁଷ୍ୟ । ୫ ।
ଜେମାକୁ ପୁଚ୍ଛିଲେ ତାଣ୍ଡବ ଚନ୍ଦ୍ରକୁ ଦେଖିଛୁ ତ ଶିବ ସଦନେ ।
ତହୁଁ କେଉଁ ଦେବେ ବଶ ହେଲୁ ଏବେ କି ଅବା ରସିଲୁ ମଦନେ ।
ଶୁଣି ସୁନ୍ଦରୀ, ଶିର କମ୍ପାଇ କଲା ନାହିଁ ।

ଧାତ୍ରୀ ପ୍ରଜୀ ମନ୍ତ୍ରୀ ସୁତାକୁ ବୋଇଲା ସ୍ୱପନରେ ଭୁଲ କପାଇଁ । ୬ ।
ଚକୁରଶୋଷ ମୁକୁର ପ୍ରତିବିମ୍ବ ଆଲିଙ୍ଗନେ ଯେବେ ଅସିବ
ମୃଗ ତୃଷ୍ଣା ଜଳ ତୃଷ୍ଣାକୁ ନାଶିବ ସ୍ୱପ୍ନଟିତବେ ସତ ଦଶିବ ।
କହେ ସଚିବ—ସୁତା ସବୁ ବଡ଼ ପଢ଼ିବ ।
ଭାହା ମନେ ଥିଲ, ଅଗାଧ ସମୁଦ୍ର ଚଳୁଭିତରେ ସମ୍ଭାଇବ । ୭ ।

(ଲାବଣ୍ୟବତୀ—୧୨ଶ ଛାନ୍ଦ)

## ମାଳିନୀ

(ରାଗ—କଲ୍ୟାଣ—ମୁନିବର ବାଣୀରେ ଗାଇବ)

ଏଥୁ ଅନନ୍ତରେ ରସ ଶୁଣ ହେ ମାଳିନୀ ବେଶ
ଝଷ୍ଟଫଳ ପତ୍ର ଶୋଭା, ଖୋଷିଛି ଯୋଷା ସ୍ନେହେ । ୧ ।
ଗର୍ଭକ ଜଲ ଚଉଁରୀ ପ୍ରକାଶେ ରତ୍ନ ଉଇଁରୀ
ଖଞ୍ଜି ଅଛୁ ଗୋଟି ଚମ୍ପା । ଧନ୍ଦିର୍ଣ୍ଣି କମ୍ପା ଏ । ୨ ।
ଅନ୍ଧାର ନିଶାରେ ନଭେ ନିର୍ମଳ ତାରା କି ଶୋଭେ
ଦିଶଇ ଯେମନ୍ତ ପତ୍ର । ଲୋଚନ କାନ୍ତ ଏ । ୩ ।
ଏଥକୁ କେଶ ବିଭଙ୍ଗେ ଧାଇଁ ଦେଖାଇଛୁ ମାଙ୍ଗେ
ଘନ ଗନ୍ଧ ଭୃଙ୍ଗ ଶ୍ରେଣୀ । ଅଛୁ ମୁଁ ଜାଣି ଏ । ୪ ।
ଲଲାଟେ ଚନ୍ଦନ ଟୋପା ସିନ୍ଦୂର ବିନ୍ଦୁ ଶୋଭିତା
ଚନ୍ଦ୍ର କୋଳେ କି ସବିତା । ଏହୁ ଭଙ୍ଗିତା ଏ । ୫ ।
ଶ୍ରବଣେ ସ୍ୱର୍ଣ୍ଣ କୁଣ୍ଡଳ ଦୋହଲେ ଖଣ୍ଡ ମଣ୍ଡଳ
ସୁବର୍ଣ୍ଣ ପାଣୀ ଉପରେ । ଚନ୍ଦ୍ରକୁ ହରେ ଏ । ୬ ।
ଫୁଲଗୁଣା ମାଠ ଗୁଣା କରଇ ବିବେକ ବଣା
ନାସା ପୁଟକେ ପୁଟକେ । ଥାଇ ଝଟକେ ଏ । ୭ ।
ଲଞ୍ଚି ବସ୍ତ୍ରନେ କଜ୍ଜଳ ନୟନେ ଦିଶେ ଉଜ୍ଜ୍ୱଳ
ପଦ୍ମେ କି ଭ୍ରମର ଖେଳା । ଯେମନ୍ତ ଡୋଳା ଏ । ୮ ।

କଣ୍ଠେ ସୁନାକଣ୍ଠି ମାଳୀ ପ୍ରବାଳେ ହୋଇଛୁ ଝଳି
ପଞ୍ଚଲୁ ଭୁଚର ଫଳି । ମାନସ ଭୁଲି ଏ । ୯ ।
ଉଚ ପୀନ କୁଚ ବେନ ହେମଲଦନୁ ଘଢ଼ବନୀ
ଦେଖି ତ ନାହିଁ ଅବନୀ । ଲୋଚନ ବେନ ଏ । ୧୦ ।
ମାଣବାକୁ ଯୁବାକୁଳ କାମ ଗଣ ଅନୁକୂଳ
ଟେକିଛୁ କି ଶାଢ଼ୀଘର । ତଥା ସୁନ୍ଦର ଏ । ୧୧ ।
ବଦମାଳୀ ପାଟବ୍ରତ ଛାତ୍ରରେ ଭୁଜ ସାପିତ
କମ ଆଦ ଖଡ଼ୁବାସ୍ତୀ । ହସ୍ତରେ ଶୋଭ୍ଭ ଏ । ୧୨ ।
ବାମ କରର ଅଙ୍ଗୁଳି ହିଙ୍ଗ ମୁଦ୍ରାରେ ଝଳି
ଚରଣକେ ବଳାପଟେ । ନାଦ ପ୍ରକଟେ ସ୍ୱେ । ୧୩ ।
ସ୍ୱପଦରେ କଂସା ମୁଦ୍ରୀ ଶବଦେ ଧଇର୍ଯ୍ୟ ଖେଦ
ବେଢ଼ଲେ ଅଳତା ଛଟ । ଅଣ୍ଠ ବଣଟ ସ୍ୱେ । ୧୪ ।
ବ୍ୟକ୍ତ ବାଞ୍ଛଣୀ ପଣନ୍ତ ଉରୁଭପରେ ଲମ୍ବୁ ତ
ବନ୍ଧନ ଛନ୍ଦନ ମଣ୍ଡୀ । ମୋହନ ଛବ ସ୍ୱେ । ୧୫ ।
ସ୍ତନ ଉର୍ଦ୍ଧ୍ୱେ ଗଣ୍ଡ ତଳେ ମଣିବନ୍ଧେ କର ମୂଳେ
ପାଦପରେ ଚରୁଭରେ । କି ମନୋହରେ ସ୍ୱେ । ୧୬
ହଣ୍ଡତାଳୀ ନାଳୀ ଛତା ଉଲୁଟାଇଛୁ ବନିତା
ଦେହ ତ ଅତ୍ୟନ୍ତ ଗୋରି । ତହିଁକ ଢୋରି ସ୍ୱେ । ୧୭
ନୋହେ ଉଚ ଖର୍ବ ଅଣ୍ଠ କଥା ଏ ନୋହେ ଯୁବତୀ
ପୀନ ନୋହୁ କ୍ଷୀଣ ନୋହୁ । ଏମନ୍ତ ଦେଖି ସ୍ୱେ । ୧୮
ବବର୍ଜିତ ଗଣ୍ଡଶିରି ପାଚଲା ରସାଳ ପରି
ବସ୍ତ୍ରସ ଖୋଲ ସତର । ଏଥି ଭିତର ସ୍ୱେ । ୧୯
କୁସୁମ ଗୁଙ୍ଗଡ଼ା କରେ ଶୋଭାଇଛନ୍ତି ଭ୍ରମରେ
ଗଜପତ୍ରିସ୍ୱେ ମନ୍ଥର । ଗମନ ତାର ସ୍ୱେ । ୨୦
ପଣନ୍ତି ଦେଉଛୁ ଶିରେ ଧରିଛୁ ଦକ୍ଷିଣ କରେ
ମୁଖ ହସିଲ ପଦ୍ମସ୍ୱେ । କି ଶୋଭା ପାଏ ସ୍ୱେ । ୨୧

(ଲାବଣ୍ୟବତୀ—୧୩ଶ ଛାନ୍ଦ)

# ନଟଭଣ୍ଡୀ

## ରାଗ—ବସନ୍ତ ଭୈରବ ବା କଳସା ବାଣୀ

ଶୁଣ ଜନେ ଏଣୁ ବିଧାତାଙ୍କୁ ବଡ଼ ବୋଲି ।
ବ୍ୟାଜେ ଧନ ଅର୍ଜ୍ଜନେ ଅନେକ ଦେଶ ବୁଲି ସେ ।
ସିଂହଳ ଦ୍ୱୀପେ ପ୍ରବେଶ ହେଲା ନଟବର ।
ଲୋକବଶକାରୀ ସେ ବିନୋଦ ନାମ ତାର ଯେ ।
ହସ୍ତେ ଡ଼ାକ କାଖେ ଯାକିଅଛି ସର୍ପପେଟୀ ।
ଦେହେ ଘଷି ହୋଇଛି ଚନ୍ଦନ ପତ୍ର ମାଟି ଯେ । ୧ ।
ମଲ୍ଲବିଦ୍ୟା ପଣ୍ଡିତ ଫୁଲାଛି ବାହୁ ବେକ ।
ଚାହିଁ ତ ଶୋଭିତ ଯେ ମୟୂର ଝୁଲ ଯେପନ ଯେ ।
ବନ୍ଦ ଜୁଡ଼ାକୁ ବେଢ଼ିଛି ଅଏଁଲାର ଫୁଲ ।
ହଙ୍କର ଧରିଛି ଭଲ କଳା ଓରମାଲ ଯେ ।
ସୁନାମୋଡ଼ିଆ ପନସକଣ୍ଟିଆ କୁଣ୍ଡଳ ।
ଦୋହଲି ଶୋଭା କରୁଛି ତା ଗଣ୍ଡ ମଣ୍ଡଳ ଯେ । ୨ ।
ହସୁଁ ଦଶେ ସୁନା ଖିଲ ଝଲ ଝଲ ଦନ୍ତ ।
ପାନେ ପାଚି ଯାଇଛି ସେ ଜମ୍ବୁ ଫଳ ମତ ଯେ ।
ସିନ୍ଦୂର ଚିତାହିଁ ତା ହଟକେଶ୍ୱର ପଣେ ।
ବିଭୂତି ଘଷିହୋଇଛି ଯୁଗଳ ଲକ୍ଷଣେ ଯେ ।
ବଜଣାମଲ ବାନା ତା ଭୁଜଙ୍ଗ ପଇତା ।
ମହା ମହା ମଲ୍ଲମାନଙ୍କର ଦର୍ପହନ୍ତା ଯେ । ୩ ।
ଧଣ୍ଡି ଶିକଳା ଚରଣେ କର କଙ୍କଣରେ ।
ବସିଛି ହେମ ବାଳୀ ବାମ ଶ୍ରବଣରେ ଯେ ।
ପିନ୍ଧିଛି ପତନୀଫେଟା ପରି ନୀବୀ କରି ।
ରଙ୍ଗପାଟ ଖଣ୍ଡିଏ କଟିରେ ମାଧୁରୀ ଯେ ।
ବେଢ଼ିଛନ୍ତି ଶିଷ୍ୟ ଉପଶିଷ୍ୟ ବେଶ ହୋଇ ।

ନେ ଚଉତନା ନେ ପାଗ ମୁଣ୍ଡେ ମୁଣ୍ଡିଅଇ ଯେ । ୪
ପିନ୍ଧି ଚଳନାକାଛକୁ ବାନ୍ଧଛନ୍ତ ତଦ୍ଧି ।
ଖଳେ କାଳୀ ଚଡା ନେ ଦଭୂଢଭୂଷା ଦେଖି ଯେ ।
ବହୁଛନ୍ତି ସେ ବଣ ଶଳାକା ଆଦ ଢ଼ୋଲ ।
ଘାଟନାଟ ଅରଣୀ ରଣପାଦ ମଞ୍ଜୁଳ ଯେ ।
ମଧ୍ୟବର୍ତ୍ତୀ ପ୍ରେମରୂପା ନାମେ ନଟୀସାର ।
ବୟସରେ ଷୋଡ଼ଶୀ ବେଶରେ ମନୋହର ଯେ । ୫ ।
ସେ ବଟପୀ ବାଟପଧଇର୍ଯ୍ୟ ବଟପିକ ।
ଛେଦନେ କୁଠାର ପସ୍ ମନରେ ତରକ ଯେ ।
ଚନ୍ଦ୍ରେ କଳ ଧରବାକୁ ଦର୍ପଣ ଝଟକ ।
ମୁଖ ମାଠି ତଇଲେ କରୁଛୁ ଜକ ଜକ ଯେ ।
ଅଙ୍ଗେ ସଙ୍ଗ କରଅଛୁ ସେ ବନ ହଳସୀ ।
କାନ୍ତ ହୋଇଛୁ ପାଚଲ ଆମ୍ବ ପ୍ରତଦ୍ୱନ୍ଦୀ ଯେ । ୬ ।
କରୁସାରେ ଅଳକାକୁ ନୂତନେ ଖଣ୍ଡିଛୁ ।
ଫୁଲ ଗୁଡ଼ାଏ ଜୂଡ଼ାରେ ଯତନେ ମଣ୍ଡିଛୁ ଯେ ।
ଦଣ୍ଡିଛୁ ସେ ଜଳଦ ବଜାଳୀ ମହୋଜ୍ଜ୍ୱଳ ।
ବହଳ କଇ ଘେନଛୁ ନୟନେ କଜ୍ଜ୍ୱଳ ଯେ ।
ମୃଗ ହୋଇଲକୁ ଅଛୁ ଅଞ୍ଜନ ବୃରୁଷ ।
ଖେଳାଭୂମିଯାକ ବସ୍ତ୍ର ଦେଇଛୁ କସ୍ତୁରୀ ଯେ । ୭ ।

(ଲାବଣ୍ୟବତୀ—୧୫ଶ ଛାନ୍ଦ)

# ଦେଖି ନବ କାଳିକା

(ରାଗ—କାମୋଦୀ, ହଂସପ୍ଳୁତ ଚତୁର୍ଦ୍ଦଶୀ ବାଣୀ)

ଦେଖି ନବକାଳିକା ବଳାଳିକା ମାଳିକା ଅଳୀ କାଳିକାକାନ୍ତ ସ୍ମର ।
ରକ୍ଷା କେମନ୍ତେ କରି କରିବା ମଧୁକରିଗଞ୍ଜନ ଏମନ୍ତ ବିସ୍ମୟ ଯେ । ସହଚରି ।
ଯିବେ ବଞ୍ଚିଲେ ଏ କାଳକୁ । ଯଥା ଥିବ କାଳକାଳକୁ ।
ଏବେ ତ କ୍ଷୀଣ ଘନ ହେଲା ଦୁର୍ଦ୍ଦିନ ଘନ ନ ଲଭି ବଲ୍ଲଭମେଳକୁ ରେ । ୧ ।
ହତ ଆନମାନଙ୍କ ସତ କାମିଜନଙ୍କ ଅନ୍ତ ପଥ ଅନ୍ତକ ଏଣୁ ।
ହତ କୃଶାନୁ ସାନୁମାନଙ୍କୁ ଭାନୁ ଭାନୁ-ତାପରୁ ନିସ୍ତରିଲି ମହୀରେ । ସହଚରି ।
ବିରହାନଳ ହୃଦ ସ୍ଥଳେ । ଜଳେ ଯେ ହତ ନୋହେ ଜଳେ ।
କରୁଛି ଜାତ ଜାତବେଦଙ୍କୁ ସତ ଶତହ୍ରଦା-ଛଳରେ ଘନକୋଳେରେ । ୨ ।
ଯେଉଁ ସୁନ୍ଦରୀ ଦଶଭୂତରୁ ଗଣ୍ଡଧରି ଧରିତ୍ରୀ ଶୟନ କରିଛି ।
କଣ୍ଠେ ଜୀବନ ବନ-ପୁଷ୍ପ ନୟନ ଘନ ଘନ ନିଶ୍ୱାସକୁ ଗ୍ରହିଛିରେ । ସହଚରି ।
ପକାଇ ଆପଣା ଅଙ୍କର । ଲେଉଟଲେ ନ ଲଗଇ କର ।
ଯେହୁ ଏବେ ଦୁର୍ବଳ ଝଞ୍ଜାନିଳ ପ୍ରବଳ ହେଉଯାଇଛି ସହି କର ରେ । ୩ ।
ଘୋଟୁଁ ଘଟକୁ ମାରି ଚନ୍ଦ୍ରେ ଘଟକୁମାରି ପିକ ଡାକକୁ ଶୁଣି ଯେହୁ ।
ଏ ନାଦ ସହି ସହ ହୋଇ ମହାବିରହୀ ରହିବ ଜୀବନେଟି ନେହରେ । ସହଚରି ।
ସ୍ତନତ ବେଳେ କଣ୍ଠେ କର । ଦେବତା ଏ ଉପାୟ କର ।
ପୟୋଧରକୁ ଧରି ବିସ୍ମୃତ ପୟୋଧର ଗ୍ରାସେଟି ପୂର୍ବାଦରେ ଭରିରେ । ୪ ।
ଜରି ପିକକୁ ମୂକ ମକମକ ଶାମୁକ କାମୁକ ଚମକକୁ ନଚେଁ ।
ଗ୍ରାମା ହେବାକୁ ଶିବା ଶିବାଗଣ ପୋଷିବା ଶିବାଙ୍କୁ ମନାଇବା ବ୍ରତେ ରେ । ସହଚରି
ତୋଷି ଖଣ୍ଡ ପରଶୁଧର । ନାଢ ଲୁପାଅ ସୁଧା ପ୍ରୁର ।
ଧନକୁ ହୃପଶ୍ବର ଧନକୁ କି ବିସ୍ମରି ପେଷ ଗୋ ସ୍ମର ନ ପସ୍ମର ରେ । ୫ ।
ଦେଖ କେକୀକଲାପ ନାଚେ ଟେକି କଲାପ ବିପ୍ରଲାପ କରୁଛି ଚେତେ ।
ଏହାର କି ଲବଧ କରି ଅବଧ ବଧ ବ୍ୟାଧଙ୍କୁ କହିବା କି ହେତେ ରେ । ସହଚରି ।
ପର୍ଣ୍ଣବାଡ଼ ଲଗୁଡ଼ ପାଣ । ଯେନ ଜରଲୁ ଦେବେ ନାଶ ।

କଣ ଏ ପତ୍ରଗୋତ୍ର ବ୍ୟଜନ ଅର୍ପଣ ଦେବାକୁ ଦେବଙ୍କୁ ମନାସ ରେ । ୬ ।
ନୃପ ଏଥେଁ ଉଦାସ ଦାସ କରବା ଦାସ ଆଣୁ ସେ ପାଣେ ପାଣେ ଧର ।
ତାନେ କାଳକଣ୍ଠନ ବରଦ୍ଧଣୀ କଣ୍ଠକ ଯାହ ତା ଉତପାତ ସରରେ । ସହଚର ।
ଉପାଡ଼ିଦା ପୁଷ୍ପଲତାକୁ ।    ବିମନା ନକର ରୁ ତାକୁ ।
ସୁମନାରେ ସୁମନାଶୋଣି ଭୃଙ୍ଗ ସୁମନା କର ତାପିବ ସୁମନାକୁ ରେ । ୭ ।

(ଲାବଣ୍ୟବତୀ—୨୨ଶ ଛାନ୍ଦ)

# ହେମନ୍ତ

ରାଗ—କୁମ୍ଭକାମୋଦୀ

ହେମନ୍ତ ଋତୁ ପ୍ରବେଶ ହୋଇ ହେଲା ନବୀନ ବଧାତା ।
ବେନି ତନୁ ଏକ କଲା ଶୟନରେ ପୁରୁଷ ବନିତା ।
ଜଳ ଆଦର ଅନଳରେ ନବେଶି ଅନିଳ ଅସ୍ନେହ ।
ଜଳରେ କରାଇ ପୁଷ୍ପବତୀ କଲା ସେବତୀ ସନ୍ଦୋହ । ୧ ।
ପ୍ରଦୀପ ଛଳେ ଜଳାଇଲା ମଦନେ ଦମ୍ପତୀମାନଙ୍କୁ ।
ନଶି ନଦାବେଳେ ନତ କରାଇଲା ଉନ୍ନତ ଜନଙ୍କୁ ।
ଚନ୍ଦ୍ର ଚନ୍ଦନକୁ ଆଦର ଛୁଟାଇ ରଖିଲା ବସନେ ।
ସମସ୍ତ ତନୁକୁ ଆଚ୍ଛାଦିତ କଲା ଯୁବତୀ ବଧାନେ । ୨ ।
ଦନ କ୍ଷୀଣ କଲା ରଜନୀ ବୃଦ୍ଧିକି କରାଇ ହରଷେ ।
ସକଳ ଅଙ୍ଗେ ବେପଥୁ ଜାତ କଲା ପବନ ସ୍ପରଶେ ।
ରବ କରଣରେ ଆଦର କରାଇ ଚନ୍ଦ୍ରମା ପ୍ରକାରେ ।
ଜାନୁ ଆଲିଙ୍ଗନ କରାଇଲା ଏନା ଦରିଦ୍ର ଜନରେ । ୩ ।
ସକଳ ଗାତ୍ର ମସୃଣ ହରି ଦେଲା କରକେନକରେ ।
ଶୁକ ଶିଶୁଙ୍କ ପାଳନକୁ ଉଦଯ୍ୟ କରାଇ ଲୋକରେ ।

ଜର ଯେନାଇଣ କୃପକଳୁଲକୁ କରାଇ ଅରୁଣୀ ।
କପୋତରୁକେ କୁହାଇ ଏ କାଳକୁ ଗଢନ୍ତି ତରୁଣୀ । ୪ ।

(ଲାବଣ୍ୟବତୀ—୪୩ଣ ଛାନ୍ଦ)

## ଚନ୍ଦ୍ରକୂଟ

ରାଗ—ପଞ୍ଚମ ବରାଡ଼ି

ବସୁରାଇ ମାଳ ଗମନରେ ଜବ ମନେ ।
ବୁଲେ ରାମ—ରାମ ରାମନେତ୍ରୀ ଯେନ ବନେ ଯେ ।
ବୃହଭାନୁ ଭାନୁ ଭାନୁ ପ୍ରଭା ତାପ ନାହିଁ ।
ବୃତ ତମାଳମାନ ମାଳତୀଲତା ତହିଁ ଯେ । ୧
ବହଇ ନର୍ଝର ଝରଝର ଅବିରତ ।
ବଶେଷ ତରଙ୍ଗ ରଙ୍ଗ ରଙ୍ଗଣୀ ଶୋଭିତ ଯେ ।
ବହୁ ଚନ୍ଦ୍ର ଚନ୍ଦ୍ର ଚନ୍ଦ୍ର ଶୀତଳକୁ ବାତ ।
ବହେ ମନ୍ଦ ମନ୍ଦ ମନ୍ଦସୁତ କରେ ଭୂତ ଯେ । ୨
ବୃକ୍ଷେ ଘନ ଘନ ଘନ କୁଣଜଣ ଯଥା ।
ବୃଷ୍ଟି ମଧୁର ମଧୁର ମଧୁରକେ ତଥା ଯେ ।
ବଭ୍ରାଜିତ ଭୃଙ୍ଗ ଭୃଙ୍ଗ ଭୃଙ୍ଗ ଜରେ କେଳି ।
ବମୀ ବମୀ ବନତା କ ପୁଷ୍ପହାସେ ଝଲି ଯେ । ୩
ବୋଧେ ଶୃଙ୍ଖଳାରେ ରଘୁନାଥ ସୀତା ମତ ।
ବଚନ ଚନ୍ଦ୍ରକୂଟ ଯେ କୂଟକେ ବ୍ରତଶ ଯେ ।
ବ୍ରତଶତତ ଜୟନ୍ତୀ ଅଢଭ ବାସନ୍ତ ।
ବାସନ୍ତୀ ସତରେ ଫୁଲ୍ଲ ଫୁଲରେ ପ୍ରବନ୍ତି ଯେ । ୪
ବର୍ତ୍ତିକ ଢକ ଅଳି ଅଳି ଯେ ବହୁରତ ।
ବହୁରତ ମାନ ମାନ ଶୁକ ସୁକବତ ଯେ ।
ଢତର ତରଳ ନେତ୍ର ନେତ୍ର ସୁବାସିନୀ ।

ବାସିନୀ ସୁକାଠ ଜାଗା ସୁଷ୍ଠବ ଶ୍ରବନୀ ଯେ । ୫
ବନସ୍ପତ ସ୍ତତ ଶୋଭିତ ଖ୍ୟାତ ବୈଭ୍ରାଜ ।
ବୈଭ୍ରାଜ ସୁରସା ରସା ନରକର ବୀଜ ଯେ ।
ବଜନ ମିତ ସିତ ହରଷ ରସବାର ।
ବାରଣ ବୃଷା ବୃଷାଲ ସାଲ ପ୍ରିର ପୂର ଯେ । ୬
ବୋଧନ୍ତ୍ର ଗ୍ରମ ସିଂହାବଲୋକନେ ଅବଳା ।
ବଳାକାପନ୍ତ୍ର କରନ୍ତୁ ଧ୍ରୁବକୁ ଧବଳା ଯେ ।
ବଳାଇ ମାନସ ମାନ ଅନା ପ୍ରାଣବନ୍ଧୁ ।
ବନ୍ଧୁକ ରଞ୍ଜନ ଅଣ୍ଡ ରଙ୍ଗ ନରବନ୍ଧୁ ଯେ । ୭
ବନ୍ଧୁର ପଥକି ହେଜ ହେଜ ପଦ ବଳା ।
ବଳାଧ୍ୱନ ପ୍ରାସ୍ତେ ଝିଲ୍ଲୀ ଶବଦ ପ୍ରବଳା ଯେ ।
ବଳାପନ୍ତ୍ର ଫଳବତୀ ପ୍ରଫୁଲ୍ଲ ସେବତୀ ।
ବତଶଲକ୍ଷଣା ଦେଖ ବହଟରେ ପାଙ୍ଗତୀ ଯେ । ୮
ବଣାର୍ଣ୍ଣ ଅପୂର୍ବ ହୋଇ କେତେ ନାଗବଲ୍ଲୀ ।
ବଲ୍ଲିକାତଳେ ଶଯ୍ୟନ ଭ୍ରମଣ ଆବଳୀ ଯେ ।
ବଳବ ଚଇଷ ରଥୁଁ ଏମନ୍ତ ଭାବନା ।
ବନାଳୀ ପ୍ରଭୁ କରଣ କର ସମ୍ଭାବନା ଯେ । ୯

(ବୈଦେହୀଶବିଳାସ—୧୯ଶ ଛାନ୍ଦ)

## ଜାହ୍ନବୀ

ରାଗ—ଗୈଷି

ବଡଳକୁ ଆଲିଙ୍ଗନ          କର ଜାହ୍ନବୀ ଶୋଭନ
ହରେ ସୁରବର ଚାପ ଋଜୁ ଧାରା ଯେ,
ବହେ ମକର କେତନ          ଉଚ୍ଛନ୍ନ ରଥ ସମାନ
ପୂରତ ହୋଇଛୁ ତହିଁ ଅଶେଷ ରସେ,
ବଦ୍ୟ ହୈମବତୀ ପଦରେ

ଚଷଭଣ୍ଡ-ଚୋଷ-ଦାମ ବେନ ମତରେ । ୧ ।

ବିଷ୍ଣୁପଦୀ ବିଷ୍ଣୁପଦ ଇକାର ଭେଦ ଶବଦ
ତରଣୀର ଗତାଗତ ତହିଁ ହଚତ,
ବିଶାରଦ ସେ ସାମନ୍ତ ମନ୍ଥରେ ଦାସ ସେବତ
ତାଙ୍କୁ ନ ଶୁଣନ୍ତେ ରଘୁନାଥ କଥିତ ।
ବିଷଧର ପ୍ରାପ୍ତେ କି ବୃଦ୍ଧି
ବେଳେ ନେତ୍ର ଢାଳି ଶୁଣ ଉଦାର ନୋହୁ । ୨ ।

ବଧିବ ନୁହଇ ବୀର ବୋଇଲା ତହିଁ ଧୀବର
ଶୁଣିଲଣି ପଥରେ ପଥର ଅବଳା,
ବାଲି ପଡ଼ି ତୋ ଚରଣୁ ଆଶଙ୍କା ଉପୁଜେ ଏଣୁ
ନଉକା ନାୟିକା ହେଲେ ବୁଡ଼ିବ ଭେଳା ।
ବୃତ୍ତି ଏ ମୋ ପୋଷେ କୁଟୁମ୍ବ
ବସାଇ ନ ଦେବି ପାଦ ନ ଧୋଇ ନାବ । ୩ ।

ବଢ଼ାଇ ଦେଲେ ପଯୁର ସ୍ୱବସ୍ଥାସ୍ଥ ରଘୁବୀର
ପଯୁରେ କ୍ଷାଳିତ କରି ବସନେ ପୋଛୁ,
ବ୍ରହ୍ମାରେ ଧୌତ ଯେ ପଦ ନୋହୁଛୁ ଶିବ ପ୍ରସାଦ
ନ ପାଇ ଚରଣାମୃତ ପାନକୁ ଇଚ୍ଛି
ବିଜ୍ଞାନୀ କୈବର୍ତ୍ତ ଧୋଇଲା
ବିଶ୍ୱେ ପତିତପାବନ ନାମ ରହିଲା । ୪ ।

ବିନ୍ଧ ପଲ୍ଲବ ନାବରେ ପଦ ବିକଳ୍ପି ମନରେ
ପ୍ରତିଦ୍ୱାସ୍ଥ ପରରେ ମଣାଇ ବସାଇ
ବିଶ୍ୱାମିତ୍ରଙ୍କ ଶ୍ରୀରାମ ପଚାରିଲେ ଗଙ୍ଗାନାମ
ଭାଗୀରଥୀ କଥା ହେଲା କହ ଗୋସାଇଁ ।
ବିଷ୍ଣୁ ନଖ କୋଣେ ଏ ଥିଲା
ବାମନାବତାରେ ଭଗୀରଥ ଆଣିଲା । ୫ ।

(ବୈଦେହୀଶବିଳାସ—୯ମ ଛାନ୍ଦ)

# ବାରବାହ୍ନ ହେ

ରାଗ—କଲ୍ୟାଣ ଆହାରୀ

ବାହାର ପଞ୍ଚବାସୁଁ ସ୍ନିଗ୍ଧ ବୋଇଲେ ବିଭ୍ରମେ ସରାଗୁଁ ରାବଣ ।
ବୈଦେହୀ ହରଣେ ଜଟାୟୁ ମାରଣେ ଗରୁଡ଼ ଡରେ ପକ୍ଷିଗଣ ।
ବେଢ଼ିଛନ୍ତି ଯେ, ବିକାଶି କେ ଶିଖା କେ ଡାକେ ।
ବହିଣ ମରୁତ ରଥେ ଶର ବୃଷ୍ଟି କରେ ଯୁକ୍ତ ହୋଇ କାମୁଁକେ । ୧ ।
ବାଳାକୁ ମୋର ଚରଣେ ଲୁଚାଇଛୁ ନ ଦିଶେ ତେଣୁ ଶଶୀମୁଖ ।
ବିଦ୍ୟୁତ କାନ୍ତି ଦିଶି ନ ଦିଶି ଯାଉଛୁ ଅଙ୍ଗ ପ୍ରଚଳେ ତାର ଦେଖ ।
ବାଣୀ କୋକିଳ । ବହୁଛୁ ଗଦ୍‌ଗଦ ଶୋକରୁ ।
ବଢ଼ାଇ ସମର ଛଡ଼ାଇ ଯେବେ ମା ସାର ନାହିଁ, ଏହା ବିସ୍ମରୁଁ । ୨ ।
ବରଷା ହେଲାଣି ଘନ ନଭେ ଖେଳେ ଖସିଲେ ଶକ୍ରଧନ ଜ୍ୟୋତ୍ସ୍ନ ।
ବନଠ ହେଲେ ହନ୍ମଠ ଗୁଡ଼ ଦୂତ ହୁଅ ବୋଲଣ ହୋଇ ହୃଷ୍ଟ ।
ବାଣବାନ୍ଧ ହେ ! ବିନାଶିଛ ଦବଦଳ ।
ବନଭ୍ରମର ମୂର୍ଚ୍ଛି ରାମ ବିନାଶ କାମାନଳତାପ ଚପଳ । ୩ ।
ବିରହରେ କ୍ଷୀଣ ଖିରୁମଣି ଧନ ନ ନଅ ପ୍ରଖର ପବନ ।
ବଜ୍ର ପତନ ସ୍ତନତ ନ କରିବ ପ୍ରବେଶ ହେବ ସନ୍ନିଧାନ ।
ବାଣବାନ୍ଧ ହେ ! ବନ୍ଧୁନବାନୁଭବୀ ସତ ।
ବୋଲିବ ଯେମନ୍ତେ ଶିବ ଶିବ କରୋ ସେ ରୂପେ ମନାଇବ ଚିତ୍ତ । ୪ ।
ବୃନ୍ଦାଅ ରୁ ପର ପରାଣକାନ୍ତର କୋ ହତେ ସେ ତ ନ ଜାଇବ ।
ବରରସିକା ସ୍ନେହାଧୀନା ଏ ଶଙ୍କା ବହୁଛି ଜୀବନେ ରହିବ ।
ବାଣବାନ୍ଧ ହେ ! ବଚନେ ରଚିବ ଏତେକ ।
ବିଚ୍ଛେଦେ ଅନେକ ଦିଶୁ ରୂ ତ ଏକ ଏ ପୁଣି କେଉଁ କଉତୁକ । ୫ ।
ବୃକ୍ଷ ନୟନ ଶୟନେ ଲୀଳାମାନ ଦଶିଯାଇ ଯେଣୁ ତୋହର ।
ବେଳ ତେତେକ ସୁଖ ଭୋଗ ଯେତେକ କଉତୁକ ଜାହୁଁ ମାତର ।
ବାଣବାନ୍ଧ ହେ ! ବୋଲ ଦୁଃଖୀ ସଦା କୋହଳେ ।

ବାହ୍ୱାରେ ତୋହ୍ୱର ଆହ୍ୱା କରିବାକୁ ସାହ୍ୱା ନାହିଁ ସନ୍ତୁ ଅଖିଲେ । ୬ ।
ବେଶ କରେଁ ମାନସିକେ କେଶ ବାନ୍ଧି ଅଳକା ଲେଖନ ପର୍ଯ୍ୟନ୍ତ ।
ବସ୍ତ୍ରର ମାନସ ମୁଁ ପ୍ରିୟାର ଦାସ ସେବା ବଘ୍ନ ନୋହେ ଯେମନ୍ତେ ।
ବାରବାହ୍ୱ ହେ, ବସ୍ମରବ ନାହିଁ ଏ ବାଣୀ ।
ବର୍ତ୍ତିନ ରଥରତନ ଲେଖିଦେବ ଭେଟେ ତରୁଣୀ ନୋହୁ ରଣୀ । ୪ ।
ବନଦ୍ରେ ରଜନୀ ନଏ ଯୋଗଧ୍ୟାନୀ ଜପେ ତୋ ନାମ ମନ୍ତ୍ର କରି ।
ବାସରେ କ୍ଷୁଧା ନାହିଁ ଆନ ରୁଚବ ଯେ ତୋ ଓଷ୍ଠ ପାନ-ଆହ୍ୱାସ୍ୱ ।
ବାରବାହ୍ୱ ହେ ! ବନମିଷ ନେତ୍ର କହ୍ୱବ ।
ବଚନ ଦର୍ପଣ ହେଲା ସେ ଅନ୍ତରେ ଧରିଛନ୍ତି କ ପ୍ରତବମ୍ବ । ୮ ।

❋ ❋ ❋ ❋

ବଲ୍ଲଭ ବୋଲ ମୋର ତାକୁ ଚହ୍ନିବ ଯେ ଶଯ୍ୟା କରିଥିବ ଧସ୍ୱ ।
ବଶୀଷ୍ଠ ଶାଣବସା ରହି ଗଣ୍ଡିରୁ ଫିଟି ପତନ ହେଲା ପସ୍ୱ ।
ବାରବାହ୍ୱ ହେ ! ବସିଥିବ ଅବା ଦେଖିବ ।
ବେଣୀ ପୃଷ୍ଠସ୍ୱରେ ମନ୍ଥଧୂଳିପାତ ସ୍ତନତ ନାଗ ପ୍ରାପ୍ୟେ ଥିବ । ୯ ।
ବାଣ୍ଡୀ ମୋର କହୁ ତା ବାଣ୍ଡୀ ଆଣିଲେ ଭେଟ ହେଲ ବନ୍ଧୁ ପ୍ରିୟାର ।
ବଡ଼ାଇ ତୋ ରଖି ଘନକେଶୀ ବୋଲି ନତ୍ୟେ ଡାକିବ ସତ୍ୟ ମୋର ।
ବୋଲୁଁ ବାରଦ ! ବାସ୍ତୁବଳେ ଚଳୁଁ ଦକ୍ଷିଣେ ।
ବସ୍ତ୍ରର ଗଲା ତ ତୃପତ, ବାଇଶି ପଦରେ ଉପେନ୍ଦ୍ର ଭଣେ । ୧୦ ।

(ବୈଦେହୀଶ ବଳାସ—୨୯ଶ ଛାନ୍ଦ)

## ବେକେ ବସିଥିଲ

(ରାଗ—ବରାଡ଼ୀ, ଆଷାଢ଼ ଶୁକ୍ଳବାଣୀ)

ବକେ ବସିଥିଲ ଧ୍ରୁବ ଉପରେ । ବଷ୍ଣୁପଦକୁ ଭଜିଲ ଭାବରେ ।
ବଳକ୍ଷପକ୍ଷକୁ ଅଙ୍ଗରେ ବହୁ । ବଦ୍ଧନ ସେ ତମନାଶନ ବହୁ ।
ବଳକା ଏ ଗିର । ବଶ୍ରାମ ବାଣ୍ଡୀ ଜନ୍ତୁବା ସୁନ୍ଦର । ୧ ।

ବଧୂଁ କାମ ଧର୍ମେ ଅଛୁ ଜୀବନେ । ବଧୂନାମବଶେ ଭ୍ରମ ଏ ବନେ ।
ବାଉଳୁଅଛ ଯେଉଁ ରମଣୀପ୍ରେ । ବିଶେଷ ଶୋଭା ତହୁଁ ରମଣୀ ଏ ।
ବିଂଶବାହୁ ରଥେ । ବିଲୋକଛୁ ଗଲା ଦକ୍ଷିଣାପଥେ । ୨ ।
ବିସପ୍ରସୂନ ଇନ୍ଦୁ ନତ ଦେଖେଁ । ବିଲକ୍ଷ୍ୟ ପ୍ରସନ୍ନ ନ ଥିଲା ମୁଖେ ।
ବାଷ୍ପ ହେଉଛୁ ନୟନୁ ଜନତା । ବୋଲନ୍ତ ମୀନ ଉଦ୍‌ଗାରେ ମୁକୁତା ।
ବଡ଼ ଉଣା ସେହୁ । ବାଣରେ ଲୁଚେ ଧଣ ଭଙ୍ଗେ ମୁହିଁ । ୩ ।
ବାସ ଚହଟି ଅଙ୍ଗୁ ଯାଉଥିଲା । ବେଢ଼ିଥିଲେ ରଥେ ଭ୍ରମରମାଳା ।
ବର୍ଣ୍ଣିଫ୍ଟକ ବକୁଳୀରେ ନାହିଁ । ବାରଦ ନକଟେ ଦେଖିଛୁ ମୁହିଁ ।
ବୀଣା କି ମଧୁର । ବାହାରୁଥିଲା ଯେଉଁ ଗ୍ରାମ ସ୍ୱର । ୪ ।
ବୋଲିବ, ତୁ ବୀଣା ଶୁଣିଲୁଁ କାହୁଁ । ବାଜଇ ସପତ ସ୍ୱରରେ ସେହୁ ।
ବର୍ଷାଭୂଯୌବନ ମୟୂର ଷଡ଼ଜ । ବନପ୍ରିୟସ୍ୱରେ ପଞ୍ଚମ ସହଜ ।
ବାଜୁଛୁ ମୋ କର୍ଣ୍ଣେ । ବିଧିରେ ଏହିପରି ଆହ୍ମମାନେ । ୫ ।
ବାର୍ତ୍ତା ଶୁଣି ବର ଯାଚୁଁ କୃପାଳୁ । ବସାରେ ବର୍ଷାରେ ଆହାର ମିଳୁ ।
ବଳାକା ଖପୁଁ ଆଜ୍ଞା ଦେଲେ ହେଉ । ବକା ଚତୁର ମାସ ଆସି ଦେଉ ।
ବଲ୍ଲୀ ଉଚ୍ଛିଷ୍ଟ । ବୋଲି , ବୋଇଲେ ପାନ କର ଓଷ୍ଠ । ୬ ।

* * *

ବୋଇଲା କୁକ୍‌କୁଟ ଶୁଣି ସେକ୍ଷଣି । ବଡଶଲକ୍ଷଣୀ ସୁବୁଦ୍ଧିକ୍ଷଣୀ ।
ବିହାୟସ ପଥେ ଗଲାଣି ରଥେ । ବସାଇ ନେଉଥିଲା ରକ୍ଷନାଥେ ।
ବିଲସେ କେ ଆଗ । ବିବେକ ହୋଇ ତା କଥା-ପ୍ରସଙ୍ଗ । ୭ ।
ବିସ୍ମର କରନା ବନପର୍ବତେ । ବୁଲି ସୁକୁମାରୀ ଶ୍ରମ ପ୍ରବର୍ତ୍ତେ ।
ବିମାନେ ତାସଙ୍ଗେ ସୁଖାର୍ଥେ ଯାଇ । ବୁଝିବାରେ ମୋ ଅନୁରାଗ ନାହିଁ ।
ବାଉଧର ଅକ୍ଷି । ବକ୍ଷଦେଶକୁ ପଙ୍କିଳ କରୁଛି । ୮ ।
ବିଧିରେ ପ୍ରଜାପତି-ନପ୍ତା ଅର୍ଥୀ । ବ୍ୟାକୁଳ ବଳବର୍ଦ୍ଧ ଯୋଚ ରଥି ।
ବଳେ ହରଣ ପ୍ରଜାଙ୍କୁ ଘଉଡ଼ି । ବୁଣିବାକୁ ପ୍ରେମଗ୍ରଣିକ ନେଉଡ଼ି
ବଳଥିଲେ ବୃନ୍ତେ । ବିଚ୍ଛେଦ ଯୀବକୁ ଦ୍ୱନ୍ଦ୍ୱ ଆରମ୍ଭେ । ୯ ।
ବୀରଭଦ୍ର ଭଣି ଚରଣାମ୍ବୁଧ । ବିହାୟସେ ତୁ ଷଷ୍ଠିପ୍ସ୍ୱ ପ୍ରସିଦ୍ଧ ।

ବିହ ମୂର୍ଦ୍ଧେ କହନ୍ତି ସନ୍ଦେଶ । ବୋଲନ୍ତି ହେମ ଚର୍ମେ ହେଲ ଲକ୍ଷ ।
ବୃକ୍ଷରେ କୋପନ । ବଚନରେ ଯୁକ୍ତ ନ କହ ବନେ । ୧୦ ।
ବାଣୀ ନ ଶୁଣ ପ୍ରସ୍ରବଣ ଥାଇଁ । ବୋଲନ୍ତି ଶାଖାଚନ୍ଦ୍ର ଶାଖା ନାହିଁ ।
ବିକାଶ କୁସୁମେ ହାସ ରଚନ । ବସନା ଉଚ୍ଚରେ ହୁଅ ପତନ ।
ବୋଲନ୍ତେ ଖପିଲେ । ବିବର୍ଣ୍ଣିତା ମସ୍ତାଭ୍ରୂତ ଦଶିଲେ । ୧୧ ।
ବୈଦର୍ଭୀପତି ଅଇଲେ ସଙ୍କୋଳ । ବିହରୁଁ ମାର୍କଣ୍ଡେୟ ଋଷି ମିଳ ।
ବାପାଞ୍ଚଳେ ଅଶ୍ରୁ ପୋଛୁ ଶ୍ରୀରାମ । ବେନି ମୁନିଙ୍କି ବନ୍ଦିଲେ ପ୍ରଣାମ ।
ବୋଧନ୍ତି କୁମ୍ଭଜ । ବିବେକଶେଖର ହୋଇ ଅଧୈର୍ଯ୍ୟ । ୧୨ ।

(ବୈଦେହୀଶବିଳାସ—୩୧ଶ ଛାନ୍ଦ)

## ଆହା ମୋ ଜୀବନ ଧନୀ

ରାଗ ଖମ୍ବାଜ ମିଶ୍ର —ଏକତାଳି

ଆହା ମୋ ଜୀବନ ଧନୀ ଜୀବନେ କି ଥିବରେ । ପଦ ।
ନିଶାକର ବିଧୁମୁଖୀ କାସ କରୁଥିବ ରେ
ଆଶା ପଲଙ୍କରେ ବସି ଭାଷା ଲେଖୁଥିବ ରେ । ୧ ।
ଗଲେଥିଲି ମୋତିମାଳ ଛୁଟି ଲୋଟୁଥିବରେ
ଫିଟି ଲୋଟୁଥିବ କେଶ ଝାଳ କଣ୍ଠୁ ଥିବ ରେ । ୨ ।
ଉତ୍ପଳନୟନୀ ତୋ କପାଳରେ ଏହା ଥିଲା ରେ
ପୁଲକିତ ଅଙ୍ଗ ତୋର ବିକଳିତ ହେଲା ରେ । ୩ ।
ଭଣେ ଉପଇନ୍ଦ୍ର ଭଞ୍ଜ କରି ପ୍ରୀତି ଆଶା ରେ
ଆଉ କି ଶୁଣିବ ପ୍ରାଣପ୍ରିୟା ପିକ ଭାଷାରେ । ୪ ।

(ଉପେନ୍ଦ୍ରଭଞ୍ଜ ସଙ୍ଗୀତ)

# ବିଶ୍ୱନାଥ ଖୁଣ୍ଟିଆ

(ଅଷ୍ଟାଦଶ ଶତାବ୍ଦୀ)

## ମାୟାମୃଗ

(୧)

ହେମ ହରିଣୀ । ଧୀରେ ଧାଅନ୍ତେ ସୁନ୍ଦର ଧରଣୀ,
ଧରୁ ଧରୁ କରୁ ମୃଗ ପଳାଉଛୁ ଗୋଡ଼ାଇଛନ୍ତି ରଘୁମଣି ।
କେତେବେଳେ ମୃଗ ଦୃଷ୍ଟିକି ନ ବଶେ କେତେବେଳେ ଦୃଷ୍ଟିଗୋଚର
କେତେବେଳେ ଦୂରେ କେତେବେଳେ ପାଶେ ରାମଙ୍କ ହେଲା ଅଗୋଚର । ୧
ରାମଙ୍କୁ ବହୁତ ଦୂର ଯେଣେପାଇଁ ଗଲା ଅଦୃଶ୍ୟ ହୋଇ କାହିଁ
ଫଟିଣ ରାମ ଚକ୍ଷୁତଳେ ବସନ୍ତେ ପୁଣି ରୂପଟରେ ହେଲା ଯାଇଁ । ୨
ମାରିବା ବୋଲି ମନରେ ବିଚାରିଣ କୋଦଣ୍ଡରେ ଜାଣ୍ଡି ସନ୍ଧିଲେ
ବଜ୍ରଘାତ ପ୍ରାୟ ଶବଦ ଶୁଭିଲା ଯେତେବେଳେ ଶର ବିନ୍ଧିଲେ । ୩
ଲକ୍ଷ୍ମଣ ହାହା ସୀତା ହାହା ବୋଲିଣ ରାମସ୍ୱରେ ଉଚେ ଡାକିଲା
ମୃଗଦେହ ଛାଡ଼ି ନିଜ ତନୁ ଧରି ପ୍ରାଣ ହାରି ତଳେ ପଡ଼ିଲା । ୪
ଦେଖି ରାମଚନ୍ଦ୍ର ଚକିତ ହୋଇଣ ବୋଲନ୍ତି ହେଲା ପରମାଦ
ମୃଗଦେହ ଛାଡ଼ି ଅସୁର ଦେହରେ କଞ୍ଚୁକ କୁଣ୍ଡଳ ଅଙ୍ଗଦ । ୫
ଏ ବାଣୀ ଶୁଣି ଆସୁର ପ୍ରାୟ ମଣି ଆସଇ ନ ଦୁଃଖ ଲକ୍ଷ୍ମଣ
ଛାଡ଼ି ଅଇଲେ ସୀତାଙ୍କୁ ନ ପାଇବ କି ବୋଇଲା ଦୁଷ୍ଟ ଦାରୁଣ । ୬
ଏହା ବିଚାରନ୍ତେ ବାମଭୁଜ ବାମ ନୟନ ତାଙ୍କର ସ୍ଫୁରିଲା
ବୋଲେ ବଣି ରାମ ପଛରେ ଗୋଡ଼ାଇ ଶୃଗାଳ ଘୋର ଧ୍ୱନି କଲା । ୭

(୨)

ଲକ୍ଷ୍ମଣ ହାହା ଜାନକୀ ହାହା ବାଣୀ ଶୁଣିଣ ତରୁଣୀ ;
ଚକିତ ହୋଇ ଠାକୁରାଣୀ ବୋଲନ୍ତି ଶୁଣ ଭ୍ରାତାଙ୍କର ବାଣୀ ହେ
ଲକ୍ଷ୍ମଣ । ବିପତ୍ତି ପଡ଼ିଲା ହେ ।
ଏହା ଶୁଣି ମୋର ସବ ଅବୟବୁଁ ଜୀବନ ଛାଡ଼ିଲା ହେ । ୧

ଶୀଘ୍ର ହୋଇ ଚଳ ଧନୁଶର ଧର ବିଳମ୍ବ ନ କର ।
ଭ୍ରାତାଙ୍କ ତୁମ୍ଭର ସାହା ହୋଇ ଏବେ କର ଯାଇଁ ପ୍ରତିକାର ହେ
ଲକ୍ଷ୍ମଣ । ଶୁଣିଲ ନାହିଁ କି ।
କେଉଁ କ୍ରୋଧ କରି ମନେ କି ବିସ୍ମରି ନ ଗଲ କାହିଁକି ହେ । ୨
ସାବତ ଜନନୀ ସୁତ ସିନା ତୁମ୍ଭେ ଆସିଛ କପଟେ ।
ଭ୍ରାତାଦ୍ୱାରେ ଯେତେ ସେନେହ ସବୁ ସେ ପଡ଼ିଗଲାଣି ତ ବାଟେ ହେ ।
ଲକ୍ଷ୍ମଣ । ସ୍ୱଚ୍ଛୁଥିଲ ଯାହା ।
ମାନସ ପୂରିଲା ଦଇବ ବଶରୁ ହୋଇଗଲା ତାହା । ୩
ସଉମିତ୍ରୀ ଭଣି, ଶୁଣ ଠାକୁରାଣୀ ନୁହସି ବିକଳ,
ରାମଙ୍କ ବିପତ୍ତି ଦେବାକୁ ନାହାନ୍ତି ବୀର କେହୁ ରବିତଳ ଗୋ ।
ସୁମୁଖି । ନ କର ସେ ଚିନ୍ତା ।
ମୃଗ ଘେନିଣ ଏହିକ୍ଷଣି ଆସିବେ ବୀର ବଳବନ୍ତ । ୪
ସତୀ ଶୁଣି ପୁଣି ବୋଲେ କଟୁବାଣୀ ଏମନ୍ତ ଜାଣୁଛି ।
ଅନ୍ତରେ ମୁହିଁ ତୋତେ ଭଜିବି ଏମନ୍ତ ମନେ ମଣୁଛ ରେ ।
ଲକ୍ଷ୍ମଣ । ନ ଯାଅ ମୋ ପାଶୁଁ ।
ରାମ ଅନ୍ତେ ମୋତେ ଭାରିଜା କରିବୁ ଏମନ୍ତ ବଳସୁ ରେ । ୫
କିବା ମୋତେ ନେଇ ଭରତଙ୍କୁ ଦେଇ ଭୁଞ୍ଜିବୁ ବିଭୂତି ।
ମୁଁ ପୁଣି ଜୀବନ ଧରି ଧରଣୀରେ କରିବି କି ଅନ୍ୟ ପତି ରେ ।
ଲକ୍ଷ୍ମଣ । ତୁହିଁ ଭୂମି ଶ୍ରୁତି ।
ଧନୁଶର ଧରି ବାହାର ହୋଇଲେ ହୋଇ କୋପମୂର୍ତ୍ତି । ୬
ରାମ ମୋର ପିତା ତୁମ୍ଭେ ମୋର ମାତା କହିଲ ଅନୀତି ।
ଦଇବ ପ୍ରତିକୂଳ ସମୟରେ ହୁଅଇ ତ ଏବେ ଏ ରୀତି
ପ୍ରଭୁଙ୍କ । ଆଜ୍ଞା ପାଳିଥିଲି ।
ଯାଉଅଛି ମୁହିଁ ମୋର ଦୋଷ ନାହିଁ ଥାଅ ମଇଥିଳି । ୭
ଏମନ୍ତ ବୋଲି ବନଦେବୀମାନଙ୍କୁ କରାଇଲେ ସାକ୍ଷୀ ।
ଆମ୍ଭ ବାହୁଡ଼ିବା ଯାଏଁ ଯତ୍ନେ ତୁମ୍ଭେମାନେ ସ୍ୱାଙ୍କୁ ଥିବ ରଖି ।

ସେ ଢଗେ । ଶ୍ରୀରାମଙ୍କ ସ୍ୱର ।
ବୋଲେ ଋଷି ସେହୁ ଢଗକୁ ଲକ୍ଷ୍ମଣ ହୋଇଲେ ବାହାର । ୮

(ଅରଣ୍ୟକ କାଣ୍ଡ, ବିଚିତ୍ର ରାମାୟଣ—୧୧ଶ ଓ ୧୨ଶ ଛାନ୍ଦ)

## ହନୁ ଓ ସୀତା

(୧)

ଶିଂଶୁପା ବୃକ୍ଷର ଡାଳେ, ହନୁ ମନେ ମନେ ଭାଳେ,
ନିଶ୍ଚୟ ଜାନକୀ ଜନକନନ୍ଦିନୀ ଦେଖିଲିଁ ବେନିଡୋଳେ ।
କି ଭାଗ୍ୟ ବଳେ । ୧
ଶୁଖିଛି ଚନ୍ଦ୍ରବଦନ, ଝରନ୍ତେ ନୀରଲୋଚନ,
ତେବେହେଁ ଶେଷକୁ ଉପମା ଦେବାକୁ ନାହିଁ ନା ଏସ୍ଥ ଭୁବନ ।
ନାରୀରତନ । ୨
ବନ୍ଧୁ କି ନ କରେ ପୂର୍ଣ୍ଣି, ଶ୍ରୀରାମଚନ୍ଦ୍ର ଘରଣୀ,
ଅସୁର ପୁରେ ଅସୁରେ ଜଗିଛନ୍ତି ଜଗତର ଠାକୁରାଣୀ ।
ରମଣୀମଣି । ୩
କହନ୍ତେ ବଂଶାନୁଗୁଣ, ଶୁଭନ୍ତେ ସତୀ ଶ୍ରବଣ,
ତରୁ କୁ ବାହିଁଲେ ମର୍କଟ ଗୋଟିଏ କହେ ରାମ କୀର୍ତ୍ତିଗୁଣ ।
ସେ ପୁଣ ପୁଣ । ୪
କପି ରୂ କାହୁଁ ଅଇଲୁ, ଶ୍ରୀରାମ ନାମ ଧଇଲୁ,
ହୃଦୟ ମୋହର ଦହନ କାଳରେ ଚନ୍ଦନ ଲେପନ କଲୁ ।
ଯାହା ବୋଇଲୁ । ୫
ହନୁ ବୋଲନ୍ତି ଗୋ ମାତ, ଶ୍ରୀରାମଚନ୍ଦ୍ରଙ୍କ ଦୂତ,
ଏମନ୍ତ କହୁଣ ଚରଣ ତଳରେ ପଡ଼ିଲା ଯାଇଁ ତୁରିତ ।
ସେ ରାମଦୂତ । ୬

ଶ୍ରୀରାମ ମୁଦ୍ରିକା ଦେଲେ । ସଙ୍କେତମାନ କହିଲେ,
ରାମଙ୍କ ପୃଥ୍ୱୀସୁତାଙ୍କ ଖୋଜୁଅଛୁଁ ଅଞ୍ଜନାସୁତ କହିଲେ ।
ପ୍ରଗାଢ଼ ଗଲେ । ୭
ରାମ କଲେ ବାଳୀ ହତ ସୁଗ୍ରୀ ସଙ୍ଗେ ହେଲେ ମିତ,
କୋଟି କୋଟି କପି ମୋହର ସମାନେ ହୋଇଛୁଁ ପ୍ରଭୁଙ୍କ ଭୃତ୍ୟ ।
କହିଲି ସତ୍ୟ । ୮
ସମୁଦ୍ର ଡେଇଁ ଅଇଲି, ଲଙ୍କାଗଡ଼ରେ ପଶିଲି,
ତୁମ୍ଭ ଶ୍ରୀଚରଣ ଦର୍ଶନ ନ ପାଇ ପ୍ରାଣ ମୁଁ ହାରିଥିଲି ।
ଭଲ ଦେଖିଲି । ୯
ରାମ ମାଲ୍ୟାବନ୍ତ ଗିରି, ଶିଖେଛନ୍ତି ବଜେ କରି,
ସୁଗ୍ରୀବ ସଙ୍ଗତେ ଅନେକ ମର୍କଟ ବନଗିରି ଛନ୍ତି ପୂରି ।
ସେ ବୃକ୍ଷ ହରି । ୧୦
ଆସ କନ୍ଧେ ମୋର ବସ, ଘେନଯିବି ରାମ ପାଶ,
ରାବଣ ସହିତେ ମାରନ୍ତି, ପ୍ରଭୁଙ୍କ ପ୍ରତିଜ୍ଞା ହୋଇବ ନାଶ ।
ଦେଖ ସାହସ । ୧୧
ଶୁଣିଣ ଦେବୀ ହରଷ, ହନୁକୁ ବସାଇ ପାଶ,
ବୋଲନ୍ତି ବସି ବିଶ୍ୱାସ କଥା ଶୁଣି ସଂଶୟ ହେଲା ବିନାଶ ।
ଏ ରାମ ରସ । ୧୨

(୨)

କହ ହନୁ ମୋର କାନ୍ତର କୁଶଳ ଲକ୍ଷ୍ମଣର ସର୍ବ କୁଶଳ ।
ମରକତ ହେମ ବେନି କଳେବର ହୋଇ ନାହାନ୍ତି ନା ଦୁର୍ବଳ ।
ହନୁ ହେ ! ବେନି ଭାଇଙ୍କର କୁଶଳ ।
କୁଶଳ କରି ଲକ୍ଷ୍ମଣ ସେବା କରୁଥାନ୍ତି କି କ ପାଦକମଳ । ୧
ମୋର ବିଚ୍ଛେଦ ହୋଇଲା ହନୁ ତନୁ ଦୁର୍ବଳ ହୋଇଥିବ ପଦ୍ମ ।
ଅଧୈର୍ଯ୍ୟ ହୋଇଲେ ଲକ୍ଷ୍ମଣ ତାହାଙ୍କୁ କରାଉଥାନ୍ତି କି ଧୀର ।
ହନୁ ହେ, ମୋତେ ଏଥୁଁ କଷ୍ଟେ ନେଦେ କ ।

ବାନର ବଳ ଘେନ ସିନ୍ଧୁ ପାରି କି ହୋଇ ଏଥକୁ ଆସିବେ କି ।
ବୋଲଇ ଯେ ହନୁ କନ୍ଧରେ ବସାଇ ଶ୍ରୀରାମ ପାଶେ ଘେନ ଯିବ ।
ସ୍ୱଇଛାରେ ମୁ କେମନ୍ତ ପ୍ରକାରେ ପୁରୁଷ ଅଙ୍ଗକୁ ଛୁଇଁବ ।
ହନୁ ହେ, ବୈଦେହୀ ବଚନ ଶୁଣିଲା ।
ତୁମ୍ଭେ ବୈଦେହୀ ଘେନ ଗଲେ ପ୍ରଭୁଙ୍କ ଯଶ ଆଉ କାହିଁ ରହିବ ।
କଶରୀ ନନ୍ଦନ ଅସିଣ ଏଠାକୁ କିଣ୍ଟେ ଯେ ବେନ ମାସ କଲା ।
ବେନ ମାସେ ମୋତେ ଶ୍ରୀରାମ ଲକ୍ଷ୍ମଣ ଦେଖାଇବୁ ବୋଲି ବୋଇଲା ।
ହନୁ ହେ, ଏକମାସ ଥବ ପ୍ରାଣ ହେ ।
ପ୍ରାଣ ଥାଉଁ ଥାଉଁ ଶ୍ରୀରାମଲକ୍ଷ୍ମଣ ଶୀଘ୍ର କରି ତୁମ୍ଭେ ଆଣ ହେ ।
କମ୍ପି ହନୁ ମୋର ପାଇଁ ରାମ ଦେଲେ କରପଲ୍ଲବରୁ ମୁଦ୍ରିକା ।
ଶୂନ୍ୟ ଯେ ଦିଶୁଥବ ମୋ ପ୍ରଭୁଙ୍କର କର କମଳ ଅନାମିକା ।
ହନୁ ହେ, ଏ ମୁଦ୍ରିକା ନୋହେ ଅନ୍ତର ।
ପ୍ରଭୁଙ୍କ କରେ ଥାଇଣ ମୋର ତନୁ ଭ୍ରମୁ ଯେ ଥାଇ ନିରନ୍ତର ।
ମୁଦ୍ରିକା ମସ୍ତକେ ଲଗାଇ ଆପଣା ପଣନ୍ତରେ ବାନ୍ଧ ରଖିଲେ ।
ମସ୍ତକୁଁ ମଣି ବାହାର କରି ପୁଣି ହନୁ କରରେ ସମର୍ପିଲେ ।
ହନୁ ହେ, ମୋ ଠାରେ କରୁଣା କରିବେ ।
ଦୀନ ଜନଠାରେ କରୁଣା କଲେଟି କରୁଣାସିନ୍ଧୁ ବୋଲାଇବେ ।
କହିବ ହନୁ ହେ ଏତେକ ମାତ୍ରକ ମୋହର ବିନୟ ଉଦନ୍ତ ।
କେବଳ ମୋହର କଲା ଅପରାଧ କ୍ଷମା କରିବେ ମୋର କାନ୍ତ ।
ହନୁହେ, ପ୍ରବୋଧ କରିଣ କହଇ ।
ବୋଲେ ଦିଶି ରାମ ଗ୍ରୀମୁରେ ଜଣାଇ ନିକଟେ ଆଣିବ ବୋଲଇ ।

(ସୁନ୍ଦର କାଣ୍ଡ—୭ମ ୯ମ ଓ ଛାନ୍ଦ)

# ଦାଶରଥି ଦାସ

(ଅଷ୍ଟାଦଶ ଶତାବ୍ଦୀ)

## ଏ ପ୍ରୀତି ନୋହିବ ଭିନ୍ନରେ

କଉଁ·ବିଦେଶୀ ତରୁଣୀ ଶିରୋମଣି ତରତ ତଥେ ତକୋଇରେ
କୁସୁମ ଜାଲ କଳାକର କରଣେ କହଇ ବ୍ୟାକୁଳ ହୋଇରେ
ଅଭିନ୍ନା !
କେଉଁ ବସୁଥିଲୁ ବନରେ
କଉଁ ଠାରେ ବସି କି କରୁଥିଲୁ
କେଉଁ ଥିବ ତୋର ମନରେ । ୧
ଖୋସା ଖୋସି ଦନେ ଦନକେ ସବୁରେ ମୋ ଆଗେ ଦେଖାଉ ଆସିରେ
ଖୋସି ଜାଣିମ କି ମୋହୋ ପର ବୋଲି ବୋଲି ଅଙ୍ଗେ ଯାଉ ମିଶିରେ
ଅଭିନ୍ନା !
ଖେଳାଉ ନୟନ ଖୋସୁରେ
ଖସାଇ ଦେଲେ ମୀନକ ଖୋଷିଦେଲ
ଏ ପୁଣି କି ? ବୋଲି ହସୁରେ । ୨
ନ ଦେଉ ଆଗ ଚୁମ୍ବନ ମୁଁ ନ ଦେଲେ ଥରେ ଥରେ ଆଗ ଦେଉରେ
ନ ଘେନୁ ମୋର ବଚନକୁ ଗୋଟିଏ ବଳଆଇ ଆଗେ ଦେଉରେ
ଅଭିନ୍ନା !
ନିମିଷେ ଅନ୍ତର ନୋହୁରେ
ନଡନୁ କେଳି ଲାଳସି ! ମଦାଳସି
କି ଅପୂର୍ବ ଭାଷା କହୁରେ । ୩
ଝୁମ୍ପା ବନ୍ଧା କଳା ସରୁ ଶାଢ଼ୀ ଧନ ! ନୋହିଲେ ନ ପିନ୍ଧୁ ପରେରେ
ଝଲି ଗହଣ ! ତୋ ଝଲ ଶ୍ରୀ ଅଙ୍ଗକୁ ନେଇ ଶାଢ଼ୀ ଯିବା ତୋରରେ
ଅଭିନ୍ନା !

ଝଲିବୁ ସେ କଥା ଛନ୍ଦରେ ।
ଝଲ ଗନ୍ଧର୍ବ ! ଦନେ କୋଳେ ବସାଇ
ଯାହା ବୋଲିଥିବୁ ମୋତେରେ । ୪
ିଆ ଯେ ହୋଇଥାନ୍ତ ଛନ୍ଦ ଚରଣ ଦ୍ୱାରବନ୍ଧ କର ଦେଇରେ
ଠାଠିକମୁଖୀ ଦେଖିଲେ ଦୂରୁ ମୋତେ ହସି ଯାନ୍ତ ଅନ୍ତ ହୋଇରେ
ଅଭିନ୍ନା !
ଠାର ଶିଖି ଥିବୁ କେତେରେ
ଠାକୁରାଣୀ ପଣ ମୂର୍ତ୍ତିମନ୍ତ ହୋଇ
ଭଲ ମାନ ଥାଇ ଚଳେ ରେ । ୫
ତେଣ ଥାଇ କର୍ଣ୍ଣ ଝମକ-ଝୁଣ୍ଟିଆ ନୂପୁର ନାଦକୁ ଚୋରରେ
ତାଳମ୍ବ ଦଶନା ଜାଣି ମୋ ପାଣକୁ ଅସୁଥାନ୍ତ କେତେଥରରେ
ଅଭିନ୍ନା !
ତବୁ ଥାଇଁ ଶନ୍ଦେ ମୁହିଁରେ
ତମ୍ବୁରୁ ସବୁ ସୁନ୍ଦର କଟି ତୋର
ବାଟେ ଖଞ୍ଜ ଯିବା ପାଇଁ ରେ । ୬
ତୋ ଲାଗି ସକଳ ଦଣ୍ଡ ପରତ୍ୟାଗୀ ହୋଇ ଅରଣ୍ୟେ ପଶିବରେ
ତପସ୍ୱୀ ହୋଇ କେବଳ ତୋ ନାମ ମହାମନ୍ତ୍ର ଜପୁଥିବାରେ
ଅଭିନ୍ନା !
କେବେ ନୋହିବ କ ଗଣରେ
ତ୍ରିପୁରସୁନ୍ଦରୀ ! ତୋହୋ ପଦ୍ମକର
ନେ ଦେବ ମୋତେ ଯୁବତୀ ରେ । ୭
ପିଠିକର ଦନେ ପ୍ରିୟେ ! ଶୋଇ ନାହୁଁ ଏବେ ହେଲୁ ଏତେ ଦୂରରେ
ପରଶୁପାଣି କହିବେ ସତେ ପଦ୍ମପାଦେ ଲଗାଇବ ଶିରରେ
ଅଭିନ୍ନା !
ପାଶେର ନଯାନ୍ତ ଛନ୍ଦର
ପୁଙ୍ଗ ପୁଣ୍ୟ ଧନ ସଙ୍ଗୀତପଠନ !

ପ୍ରାପତ ହୋଇଛୁ ମଂତରେ । ୮
ଲଜ ପତ୍ର ଥାଇ ଲୋଚଣୀ କୂଳରେ ସବୁ ଛୁଉଅନା ଗଜରେ
ଉନେ ପର ଫୁଲ ଗନ୍ଧ କରଥିଲେ ଦଶୁଥାଇ ମହାଶୋକରେ
ଅଭିନ୍ନା !
ଭଲ ତୋ ସୁନ୍ଦର ପଣେରେ
ଭାବଲେ ଭାବନ ! ଦବସ ରଜନୀ
ସରବନ କ ତୋ ଗୁଣେରେ । ୯
ଶିରୀଷଅଙ୍ଗୀ ଶ୍ରୀମୁଖ ମୋଡ଼ି ଦେଇ ଯାହା ବୋଲଥିଲୁ ହସିରେ
ସେହିଦନୁ ସେହି କଥା ଅହର୍ନିଶ ହୃଦେ ହେଉଥାଇ ଘୋଷିରେ ।
ଅଭିନ୍ନା !
ସବୁ ସୁଖ ମୋର ବୃଦ୍ଧରେ
ସତେ ମହାପ୍ରଭୁ ରଖିଥିବେ ଶଙ୍ଖେ
ପୁଷ୍ପେଇ ଚନ୍ଦ ଘୋଡାଇରେ । ୧୦
ସୁନ୍ଦର ତଳକୁସୁମ ନାସାପୁଟେ ଶୋହେ ମୋତନାକଚଣାରେ
ସହଜେ କେତେ ସୁନ୍ଦର ଦଶୁଥାଇ ଘଷା ବସା କମ ଗୁଣାରେ
ଅଭିନ୍ନା !
ସଭିଙ୍କି ସଭିଏଁ ଜଣାରେ
ସୁକୃତ ନଥିଲା ଲୋକ ତା ଲୋଚନ
କରବା କଥାକ ଭଣାରେ । ୧୧
କ୍ଷଣେ ନ ଦେଖିଲେ ଗବାକ୍ଷ ମାର୍ଗରେ ଚାହିଁ ଥାଉ ମୋତେ ଆସିରେ
କ୍ଷପାକରମୁଖି ! ରଜନୀ ଦବସେ ମୋ କଥାରେ ଥାଉ ରସିରେ ।
ଅଭିନ୍ନା !
କ୍ଷତ ମଧ୍ୟେ ରୂହ ସାରରେ
କ୍ଷେମେ କହେ ବିପ୍ର ଦାଶରଥି ଦାସ
ତୋତେ ଭୂହ ପଟାନ୍ତରରେ । ୧୨

(ଅଭିନ୍ନା ଚଉତିଶା)

## ହାଥୀ ଝୁଲଇରେ

ନାନା ରଙ୍ଗେ ଖେଳନ୍ତି ଗୁଳଗୁଞ୍ଚା । ଖଣ୍ଡି ଦୂର ଯାଇଣ ପଛ ଘୁଞ୍ଚା ।
ଗୁଣ୍ଡେ ଅଙ୍ଗୁଳି ଲଗେ ଜରଜର । ଖଣ୍ଡ କେଶ ଉଡ଼ଲେ ସରସର ।
ଭାଳୁ ଚୂଳ ଅଳକା ବେଢ଼ି ବେଣୀ । ପଦ୍ମ ଚମ୍ପେକ ଶିଶୁ ଅଳି-ଶ୍ରେଣୀ ।
କଣ୍ଠେ ହେମ-ଗୁଣ୍ଡା-ଗୁଞ୍ଜା ପ୍ରବାଳ । ଗଳେ ହେମପଦକ କଣ୍ଠି ମାଳ ।
ବାହେ ବାହୁଟି କରେଣ କଙ୍କଣ । କ୍ଷୁଦ୍ର ମୁଦ୍ର ଅଙ୍ଗୁଳି ବଜପନ ।
ନବ ମରଦ ସେ ନିର୍ମଳ ଗାତ୍ର । ମଣି ବଦ୍ରୁମ କଟି ହେମ ସୂତ୍ର ।
ପାଦେ ନୂପୁର ରୁଣୁଝୁଣୁ ବାଜେ । ଛୁଆ ସିଂହ ବଚମ ଠାଣି ସାଜେ ।
କରେ ଲବଣୀ ଅଣୁଅଣ ଗ୍ଳେ । ଅମା ଅମା ବୋଲିଣ ହେମା ଗାଳେ ।
ମାଏ ଧୂଳି ଝାଡ଼ି କୋଳେ ଧରନ୍ତି । ମୁଖେ ଚମ୍ବ ଦେଇ ଗେଲି କରନ୍ତି ।
କୋଳେ ବସାଇ ଜାନୁ ଆଉଜାଇ । ସ୍ନେହ ଜଳସେ ମନକୁ ମଜାଇ ।
ମୁଖ ନିରେଖି ଭୁଆ ଉଲ୍ଲସଇ । ସୁଖ ବାତ୍ସଲ୍ୟ-ରସେ ଝଳସଇ ।
ନାନା କଉତୁକ ହାସ ପ୍ରଳାପେ । ବେଢ଼ି ବରଜ-କାମିନୀ କଳାପେ ।
କାହା ସ୍ତନରୁ କ୍ଷୀର ନପିଆଇ । ମୁଖ ଦେଇ କେ କଥା ଭାଷିଆଇ ।
କେହୁ କର ପ୍ରସାରଣ ଘେନଇ । ଧାଇଖିଆଇକି ଏହୁ ଜଣ୍ଣାଇ ?
କେହୁ ଶରଧାରେ କର ବଢ଼ାଇ । ଏକ ଅନ୍ୟେକ ଘେନନ୍ତି ଛଡ଼ାଇ ।
ତରୁ ମଳସ୍ପ ଲଗନ୍ତେ ଯେସନ । ଗୋପୀ କୃଷ୍ଣ ଅଙ୍ଗଲଗି ତେସନ ।
ନିଜ ସହଜ ବିକାର ଲେଚୁଲେ । କୃଷ୍ଣ ଅନୁରାଗ ଭାବେ ଲେଚୁଲେ ।
କାଖ କଣ ଘେନ କୋଉଁ କାମିନୀ । ଭୁଆ ପରେ ନଚ୍ଚଇ କରେ ଘେନି ।
ଘନ କଠିନ କୁଚପରେ ନାଚ । ବ୍ୟଥା କମଳପାଦ ପାଇ ଘୁଞ୍ଚ ।
ହେମଗିରି ଶିଖର କି ଶିଖିନ । ନୃତ୍ୟ କରଇ ରମଣୀ ମୋହନ ।
କେହୁ ବସାଇଣ ଡାଳ ଧରଇ । ହାଥୀ ଝୁଲ ଝୁଲ ବୋଲି ବୋଲଇ ।
ଚଉପାଦେ ରହି ହତ୍ତ ବୁଲନ୍ତି । ଦେହ ଫୁଟିବ ବୋଲିଣ ବୋଲନ୍ତି ।
ହାଥୀ ଝୁଲଇରେ ହାଥୀ ଝୁଲଇ । ଦହିଦୁଧ ଖାଇ ହାଥୀ ଫୁଲଇ ।
ହାଥୀ କପାଳେ ସିନ୍ଦୁର ଶୋହୁଛି । ହାଥୀ ଭାଳୁ ପରେ ଚୂଳ ବୋହୁଛି ।
ହାଥୀ ପଲ୍ଲଣି ଗ୍ଳବା ସାଜଇ । ହାଥୀ ବଳୟ ନୂପୁର ବାଜଇ ।

କାହିଁ ଥିଲା ଏ ଗୋପକୁ ଅଇଲା । ସବୁ ସରଳବଣୀ ତ ଖାଇଲା ।
ହାଥୀ ଗୋପରେ ପ୍ରମାଦ କରିବ । କେହୁ ପାରିବ ଏ ହାଥୀ ଧରିବ ।
ହାଥୀ ବନ୍ଧିବ କନ୍ଧରେ ଯାହାଂକୁ । କେହୁ ବୋଲେ ଯୋଗ ଥିବ ଯାହାଙ୍କୁ ।
କେହୁ ବୋଲେ ଛୁଆ ସିଂହ କହ୍ନାଇ । ଆଗେ ଗୁଲିଣ ପଞ୍ଚକୁ ଅନାଇଁ ।
କେହୁ ବୋଲେ କଳ୍ପତ୍ରୁ ଜୀବ ଗୋଷ୍ଠି । ଅଙ୍ଗ ସଉରଭ ଗନ୍ଧ ପ୍ରକଟି ।
କେହୁ ବୋଲଇ ନନ୍ଦଘରି-ଧନ୍ନ୍ୟା । ଦୁଃଖ ସଙ୍ଗାଳୀ ରୁକ୍ମିଣୀ ସୁନ୍ନ୍ୟା ।
ଏଜ ଆଉରମ୍ଭେ ମୁଖ ବାହୁନାଇ । ଏଥୁ ସୁଖ ସଂସାରେ ଆଉ ନାହିଁ ।
ଯେତେ ଅଛନ୍ତି ବ୍ରଜପୁରବାସୀ । ସର୍ବଜନ ମନ ମୋହୁ ଆକର୍ଷି ।

(ବ୍ରଜବିହାର— ପ୍ରଥମ ବୋଲି)

# କୃପାସିନ୍ଧୁ ଦାସ

(ଅଷ୍ଟାଦଶ ଶତାବ୍ଦୀ)

## ଆଉ ଅଛୁକି ସେ ରାମା

ରାଗ :—କଲ୍ୟାଣ ଆହାରୀ

ଭିଡିବାରେ ଆଉ ଅଛୁକି ସେ ରାମା ରହିବାରେ ନାହିଁ ଜୀବନ ।
ସହିବାରେ ନାହିଁ ଚନ୍ଦନ ସୁମନ ବହିବାରେ ନାହିଁ ମଣ୍ଡନ
କୃଷ୍ଣ ହେ ! ଅହି ବାଟେ ସମ ମଣୁଛି !
ନୋହିବାରେ କୃଷ୍ଣ ଦର୍ଶନ ବଶରୁ ଦହିବାରେ କାମଲାଗିଛି । ୧
ଗ୍ଲୁଡିଲାନ ସୁଧା ଅଶନ ବସନ ଆଢ଼ିଲାନ ଦେହ ଦୁଃଖକୁ ।
ଏଡିଲାନ ବେଶ ସ୍ୱରୂପ ଚତୁରୀ ମୋଡ଼ିଲାନ ମୁଖ ସୁଖକୁ
ବାଳା ଯେ ! ଛୁଡ଼ିଲାନ କଥା ବେଳରେ ।
ଭିଡ଼ିଲାନ ତୃଣ ପରସ୍ପେ ମନ ତା ବୁଡ଼ିଲାନ ଖେଦ ଜଳରେ । ୨
ଲଖିଲାନ ପ୍ରେମ ପଙ୍କେ ଯେଉଁ ଦିନୁ ଲେଖିଲାନ ଧାତା ଏ ଛାପ ।
ରଖିଲାନ ଲାଜ ଦୂର କରି ସଙ୍ଗୁଁ ଦେଖିଲାନ ଶ୍ୟାମ ସ୍ୱରୂପ ।
ବାଳା ଯେ । ଚାଖିଲାନ ପ୍ରେମ ମଧୁର

ଶୁଖିଲାଣି କଣ୍ଠ ସେ ରସ ଆସ୍ୱାଦ ଶିଖିଲାଣି ଚନ୍ଦ୍ରା ବଧୂର । ୩
ମାଜିଲାଣି ଗୁଣ ଟଙ୍କାର ମଦନ ସାଜିଲାଣି ଫୁଲ ସାୟକ ।
ଭଜିଲାଣି ଭସ୍ମ ଦଶାକୁ ବେଶରେ ସଜିଲାଣି ଦୁଃଖ ଦାୟକ ।
ବାଳା ଯେ, ତେଜିଲାଣି ଅନୁରାଗକୁ ।
ପୂଜିଲାଣି କାମଦେବ ଚରଣରେ ବୁଜିଲାଣି ନେତ୍ର ଯୁଗକୁ । ୪
ରଟିଲାଣି ଗୁଣ କେତେକ ଏବେ ସେ ଖଟିଲାଣି ସବୁ କର୍ମକୁ ।
ହଟିଲାଣି ଏତେ ପ୍ରକାରେ ମଦନ ଭେଟିଲାଣି ଆସି ମର୍ମକୁ ।
ବାଳା ଯେ, ଛୁଟିଲାଣି ନ୍ୟାୟ ପଥରୁ
ବଟିଲାଣି ଯେଣୁ ଦେଖାଇ ଦଇବ ଘଟିଲାଣି କଥା ଏଠାରୁ । ୫
ଘଷିଲେଣି ଘନସାର ଯେତେ ସଖୀ ହସିଲେଣି ଶାନ୍ତ ନ ଦେଖି ।
ଖସିଲେଣି ପ୍ରତିଅଙ୍ଗରୁ ସୁଷମା ଦୂଷିଲେଣି ଚମ୍ପା କେତକୀ ।
କୃଷ୍ଣହେ ! ବସିଲେଣି କଞ୍ଜ-ଦଳରେ ।
କଷିଲେଣି ହେମ-କଷଟିରେ ଯନ୍ତ୍ର ଦଶିଲେଣି ତନୁ ତୁଳରେ । ୬
ଛଟକ ସ୍ୱନ୍ଦବା ଭଙ୍ଗୀ ଅଛୁ ନକ ହାଟକବରଣୀ ସଖୀର ।
ଝଟକ ଗତ ତାର କାନ୍ଧ ବସିଲେ ନାଟକ ଶିଖରୁ ବାହାର ।
କୃଷ୍ଣ ହେ ! କଟକ ଧୂନ କଣ ଯେହ୍ନୁ ।
ଅଟକ କରିପାରେ ମନନସ୍ୱନ ମଟକ ପକାଇବ କେହ୍ନୁ । ୭
ଡାକିଲା ବାଟେ ଲଜ୍ଜା ପ୍ରାପ୍ତେ ଏବେ ସେ ଜଳିଲା ବିରହ ହୁଦରେ
ବଳିଲା ଚନ୍ଦ୍ରମା କଳାକୁ କୃଶରେ ଖୁଲିଲା ତା କର ମୁଦରେ ।
ବାଳାଯେ, ଭୁଲିଲା ବିବେକ ନୀତିରେ ।
ଛଳିଲା ଆରତଭଞ୍ଜନ ନାମକୁ କଳିଲା ଶ୍ରୀମନ୍ତଙ୍କ ପ୍ରୀତିରେ । ୮
ଲଳିତ ଲୀଳା ବିଳାସରୁ ବଧିରେ ସ୍ଖଳିତ ହୋଇଅଛି ବାଳା
ଚଳିତ ଦୃଷ୍ଟି ରଖିଛୁକ ଆହ୍ସ ସେ ଦଳିତ ଉଜ୍ୱଳ କୁନ୍ତଳା
କୃଷ୍ଣ ହେ ! ଫଳିତ ପାକେ ହେଲ ଏହ୍ନ ।
ପଳିତ ଟୋପ୍ରମୀ ପଦ ପଳାଶେ କଳିତ କରୁଅଛି ଦେଖି । ୯

(ବକାବହାର-୭ମ ଛାନ୍ଦ)

## ରଘୁନାଥ ଭଞ୍ଜ

(ଅଷ୍ଟାଦଶ ଶତାବ୍ଦୀ)

### ବନକେଳି

ଏହି ସମୟରେ ସଜନୀ ମଧ୍ୟରେ ନୃପସୁତା ରସଲହରୀ
ଅତ୍ୟନ୍ତ ଶୋଭନ ନିଜ ଉପବନ ଦେଖିବାକୁ ମନେ ବରୀଶ, ସଜନୀ—
ମାନଙ୍କୁ ଏମନ୍ତ ବଚନ ।
କହିଲେ ବସନ୍ତ ହୋଇଛି ପ୍ରାପତ ଦେଖିବା ଚଲ ଉପବନ । ୧
ଶୁଣି ସେ ଚତୁରୀ କେତକୀ ଗନ୍ଧରୀ ନବଯୁବତୀ ସହଚରୀ,
ଅତି ଆନନ୍ଦରେ ବୋଲନ୍ତି ସତ୍ୱରେ ଚଳେ ହୋଇ ନବ କିଶୋରୀ, ତାହାଙ୍କୁ
ବେଢି ଯାଆନ୍ତି ସେ ପଥରେ
ଦିଶିଲେ ଯେସନେ ଇନ୍ଦୁ ପ୍ରତିବିମ୍ବ କଇରବବୃନ୍ଦ ମଧ୍ୟରେ । ୨
ମଧୁରେ ଜର୍ଜର ପରାଗେ ଧୂସର ଚଞ୍ଚଳ ଲତାକୁ କରନ୍ତେ ।
ପ୍ରଥମରେ ବାତ ହୋଇଲା ଉପଗତ ବସନ୍ତ କାଳକୁ ଜଣାନ୍ତେ, ଜାଣି ସେ
ଅଇଲା ଯାହା ମଳୟରୁ
ନିଜ ଅଙ୍ଗ ସ୍ୱେଦ ଆବେଶ ରଜବୃନ୍ଦ ଧରେ ଗତି ମନ୍ଦଶ୍ରମରୁ । ୩
କୌତୁକ ମାନ କରନ୍ତି ଗମନ କରି ଉପବନ ପାଶରେ,
ଦେଖିଲେ ସୁଷମ କେତକୀ କୁସୁମ ଅଳି ବୃନ୍ଦ ଧ୍ୱନି ଛଳରେ, କରନ୍ତି
ତାଙ୍କୁ ମଣିଲେ ସେ ମନରେ,
କିବା କରେ ଘୋର ତଡ଼ିତ ପ୍ରକାଶ ନବଘନ ଅସି ମଧ୍ୟରେ । ୪

* * *

ଦେଖରେ ରମଣୀ, ଏ ବାରତରୁଣୀ ପଲ୍ଲବାବତଂସ ରୁଚିର,
ମଞ୍ଜୁଳ କୁସୁମ ହାସରେ ସୁଷମ ବାତେ କମ୍ପିତ ଶାଖାକର, ଭ୍ରମର
ରବେ ସ୍ୱରୁ ଗୀତ ଗାୟନ
କରିବାରୁ ଜନମନକୁ ମୋହନ କରୁଅଛି ଯେଣୁ ବଦନ । ୫
ନବ କୁନ୍ଦୁମିତା ଏ ମାଧବୀଲତା କୁପିତା ନାରୀ ପ୍ରାୟେ ସଖି,

ପଦ୍ମିନୀର ସଙ୍ଗ ସକାଶୁଁ ଭୃଙ୍ଗ ମଧୁପ ପ୍ରିୟକୁ ନରେଖି, ଦେଖରେ
ସ୍ତବୁଣତପତ୍ର ପଦ୍ମାକ୍ଷି
ଦୂରୁଁ ସମୀରରେ ଚଳ ଶାଖା କରେ ନାହିଁ, ନାହିଁ, ନାହିଁ କରୁଛୁ । ୬
ଦେଖରେ ସୁମୁଖି, ଏହୁ ବଡ଼ ସୁଖୀ, ହୋଇଛୁ ରଙ୍ଗିଣୀ ଲତିକା,
ନିକଟେ ରସାଳ ବିଟପର ମେଳ ପାଇ ହୁଏ ସ୍ମର ଉତ୍ସୁକା, ବାଳାରେ,
ପଲ୍ଲବ ଅଧର କମ୍ପାଇ
କହି ନ ପାରଇ ବଚନକୁ ଯହୁଁ ସୁମନେ ଅନୁରାଗ କହି । ୭
ଏହିରୂପେ ତରୁମାନ୍ ଶନ୍ତ ଶ୍ରୀରୁ ଉତ୍ସୁକ ମନରେ କହନ୍ତି,
ଆସ ଗୋ ବହନ ତୋଳିବା ସୁମନ ଶବାଣେ ମନକୁ ମୋହନ୍ତି, ହରଷେ
ସୁନ୍ଦରୀ ସଜନୀ ନିକରେ
ଭଜି ନାନା ଲତାମାନଙ୍କୁ କରନ୍ତି ପରିହାସ କୁଞ୍ଜସ୍ଥଳରେ । ୮
କେହୁ ହସି କହେ ସୁମନା ସମ୍ମୁଖେ ଆଉଲୋଚନକୁ ନିଧାନ,
ନ କରିବ ଯେଣୁ ମୁକୁନ୍ଦରେ ଯୁକ୍ତ କରିଅଛୁ ସ୍ମରୁନସ୍ପନ, କେ ବୋଲେ
ଏଠାରୁ ଆଉ ନ ଯିବଇଁ
କେ ଅବା କୁସୁମ ନିମନ୍ତେ ବିଧୁଞ୍ଜବରେ ନମ୍ର ହୁଅଇ । ୯
କେହୁ ତେଜି ନାଗକେଶର ପୁନ୍ନାଗ ବୃକ୍ଷକୁ ଆଶ୍ରୟ କରନ୍ତେ,
ଏମନ୍ତ ବାକ୍ୟକୁ କହେ କେ ତାହାକୁ ତ୍ରପାନମ୍ରୀମାରେ ବୁଡ଼ାନ୍ତେ, ତୁ ବଡ଼
କାମୁକା ମୁଁ ମନେ ମଣୁଛୁ
ଗୁଣକୁ ପ୍ରକାଶ ନ କଲେହେଁ ଯାହା ପୁନ୍ନାଗକୁ ଯାଇ ଭଜୁଛୁ । ୧୦
ସୁଗନ୍ଧ ବିପତ କମନୀସ୍ବକୁନ୍ଦ ଗ୍ରାଡ଼ି କେହୁ ମୀନନସ୍ୱନା,
ଅତ୍ୟନ୍ତ ସୁରଙ୍ଗ ଜବାପୁଷ୍ପସଙ୍ଗ ଲଭନ୍ତେ ହୋଇଲା ସୁମନା, ତାହାକୁ
କେ ସଖୀ କୋଲଇ ଏମନ୍ତ
ଜାଣିଲି ତୁ ପଣ ନ କରୁ ଗହଣ ଯାଗମାତ୍ରେ ହେଉ ମୋହିତ । ୧୧
କୁଟବର ଶିଶପ କୋମଳାଙ୍ଗୀ ହର୍ଷହୋଇ ଅଶୋକର ପୁଷ୍ପକୁ
ତୋଳିବାକୁ ଯାଇ ଶାଖାକୁ ଏଡ଼ାଇବାରେ କେହୁ କହେ ତାହାକୁ, ବାଳାରେ
ଏ କର୍ଣ୍ଣେ ବିଟପ ତୁ ଜାଣ

ନୋହିଲେ କିପାଇଁ ପଲ୍ଲବକରରେ କରେ ତୋର ସ୍ତନ ମର୍ଦ୍ଦନ । ୧୨
ତୋଳିବ ନିଆଳୀ ବୋଲି କେହି ମିଳି ତାହାକୁ ପରଣ କରନ୍ତି
ତହିଁରୁ ଭ୍ରମରେ ଉଡ଼ିଣ ଅଧରେ ବସନ୍ତେ ଜେ କହିଲା ଦ୍ରୁତେ, ବାଳାରେ
ତାକୁ ନିଷେଧ କର ତାହିଁ ।
ମଧୁପ ନାମକୁ ଛାଡ଼ିବ ବୋଲି ତୋ ଅଧର ସୁଧାକୁ ବାଞ୍ଛିଇ । ୧୩
(ରସ ଲହରୀ— ୫ମ ଛାନ୍ଦ)

# ପୀତାମ୍ବର ଦାସ

(ଅଷ୍ଟାଦଶ ଶତାବ୍ଦୀ)

୨

ମଣ୍ଡୂକ ମାଡ଼ୁଛି ଝିଂମିକ କଟାହ ଶୃଗାଳ ହୋଇଛି ରାଜା,
କଲିକତରା ଯେ କରତା ହୋଇଛି, ହସ୍ତୀକି କଲେ ପରଜା ୧
ବଳଦ ବାପୁଡ଼ା ଘର ଗୁହିଁଅଛି, ଦୁବ ଭରି ରୁଅ ବତା,
ଦଣ୍ଡକେଶୀ ମାଛ ଗଣ୍ଡି ଭିଡ଼ୁଅଛି ବକ ଧରିଅଛି ଛତା । ୨
ଏଣ୍ଡୁଅ କାନରେ ସୁନା ମଲିକଡ଼ି ନେଉଳ ନାକରେ ଗୁଣା,
ମୂଷା ଶୋଇଅଛି ରତ୍ନ ପଲଙ୍କରେ ମଞ୍ଜାରି ଧରେ ବିଞ୍ଚଣା । ୩
ଉଧ ଖାଉଅଛି ପାଚିଲା କଦଳୀ ଧୁଷୁରି ଖାଉଛି ପାନ,
ବଣ ବିରାଡ଼ି ଯେ ବଇଷ୍ଣବ ହୋଇ ସଭାରେ କହୁଛି ଜ୍ଞାନ । ୪
ମାତା ଖାଙ୍କେରିକ ପୁଅ ଯେ ଉଣ୍ଡାରୀ କାଖେ ଯାକିଅଛି ଶଳି,
ପୁଅକୁ ହୋଇଛି ଅଠର ବରଷ ମାତା ଜନ୍ମିଅଛି କାଲି । ୫
ବିରାଡ଼ିକି ଜ୍ୱର କରିଛି ଅପାର ମୂଷା ଗଲେ ବୈଦ୍ୟ ପଣେ,
ସାଧବ ଘରେ ଯେ ବ୍ୟାଘ୍ର ଛୀରପାଣ ହେଲା ରଖି ଅଛି ବନେଣ । ୬
ପିମ୍ପୁଡ଼ି ବାପୁଡ଼ା ବିଷ୍ଣୁ ହୋଇଗଲା ଗଗନେ ଉଡ଼ଇ ଧୂଳି
ବିଲ କଙ୍କଡ଼ା ମୃଦଙ୍ଗ ବଜାଉଛି, ବେଙ୍ଗ ଦିଏ ହୁଳହୁଳି । ୭

ହଳ ବୁଲୁଥିଲା ହଳିଆ ନଥିଲା ଇଚ୍ଛାରେ ହେଉଛି ବୃଷ,
ପୁଅ ମଲେ ବନ୍ଧ୍ୟା ବିଧବା ନୁହଇ ଏ କଥା ବଡ ସନ୍ଦେଶ । ୮
ଢେଙ୍କିକି କରିଛି ପୀତ ଶ୍ଳେଷ୍ମ କୁଳକୁ କରିଛି ଜ୍ୱର,
ତୁଳସୀ ବାପୁଡ଼ା ବାପ ଘର ଗଲା ଗୁଞ୍ଜୁଣି ଜଗିଛି ଘର । ୯
ପଥରକୁ କଲା ସନ୍ନିପାତ ଜ୍ୱର ପାଣିକି କଲା ପିଆସ,
ଅଗ୍ନି ବାପୁଡ଼ାକୁ ଶୀତ କରୁଅଛି, ଶୁଣ ଆହେ ପାଣ୍ଡୁଶିଷ୍ୟ । ୧୦ ।

(ନୃସିଂହପୁରାଣ—୭ମ ରତ୍ନାକର)

## ଶୁକପ୍ରତି ମେନକା

ହେ ମୁନି, ସ୍ତ୍ରୀମାନଙ୍କୁ ନିନ୍ଦିଲ ବହୁତ
ହେଉଛି ସଂସାର ସ୍ତ୍ରୀ ଯେଣୁ ଅତଯାତ । ୧
ସ୍ତ୍ରୀ ନଥିଲେ ପୁଂସକୁ କାହିଁରେ ନ ଗଣି
ସ୍ତ୍ରୀ ଲାଗି ସଂସାରରେ ଜନମନ୍ତି ପ୍ରାଣୀ । ୨
ସ୍ତ୍ରୀ ଗୁଣ୍ଡଓ କେନ୍ଦ୍ର ଅଛଇ ସଂସାରେ
ସ୍ତ୍ରୀମାନେ ସୁଖଦାତା ଅନନ୍ତ ପୁଂସରେ । ୩
ସ୍ତ୍ରୀ ଗୃହଲକ୍ଷ୍ମୀ ପୁଣି କରେ କୁଳୋଦ୍ଧାର
ପିତୃଏ କରନ୍ତି ସ୍ତ୍ରୀ ଯେଣୁ ପିଣ୍ଡୋଦ୍ଧାର । ୪
ସ୍ତ୍ରୀ ସଙ୍ଗ ଧର୍ମ ହେତୁ ସ୍ୱୀୟ ପୁଣ୍ୟଦାତା
ସ୍ତ୍ରୀ ଯେଣୁ ନବସୃଷ୍ଟି ସଜିଲେ ବିଧାତା । ୫
ସ୍ତ୍ରୀ ଯେଣୁ ପୁରୁଷଟି ବୋଲାଏ ଗୃହସ୍ଥ
ସ୍ତ୍ରୀ ଯେଣୁ ପୁତ୍ର ପୌତ୍ର ହୋଇଛି ବିଖ୍ୟାତ । ୬
ଉଜ୍ଜ୍ୱଳ ହୁଅଇ ସ୍ତ୍ରୀ ଲାଗି କୁଳଯାକ
ପୁରୁଷ ଅଟଇ ସ୍ତ୍ରୀ ଯେଣୁ ବଡ଼ଲୋକ । ୭
ଆଗେ ସ୍ତ୍ରୀ ନାମ ପଛେ ପୁଂସ ନାମ କହ
ପ୍ରଥମେ ଲକ୍ଷ୍ମୀ ଦ୍ୱିତୀୟେ ନାରାୟଣ ହୋଇ । ୮

ଆଦ୍ୟେ ଉମା ଦେବୀ ନାମ ପଛେ ମହେଶ୍ୱର
ପାର୍ବତୀ ନାମ ଆଦ୍ୟରେ ପଛେ ଦେବବର । ୯
ପ୍ରଥମରେ ଶଚୀ ନାମ ପଛେ ଇନ୍ଦ୍ର ନାମ,
ପ୍ରଥମରେ ସୀତା ଦେବୀ ଦ୍ୱିତୀୟେ ଶ୍ରୀରାମ । ୧୦
ଆଦ୍ୟରେ ସ୍ତ୍ରୀ ଜନମ କଲ ପରମେଷ୍ଠି
ପଛେ ସିନା ରଚିଲ ଏ ଚରାଚର ସୃଷ୍ଟି । ୧୧
ଏଣୁକରି ସ୍ତ୍ରୀ ଯେଣୁ ପୂର୍ବେ ଉଚ୍ଚ ପୁର
ସ୍ତ୍ରୀ ସିନା ସଂସାରେ ରଖେ କୂଳାଗ୍ର । ୧୨
ସ୍ତ୍ରୀ ଅଟେ ଶୃଙ୍ଗାରକୁ ଶୀତ ପୂର୍ଣ୍ଣଇନ୍ଦୁ
ସ୍ତ୍ରୀ ଯେଣୁ କାମ ଚଳେ ପୁରୁଷଙ୍କ ସ୍କନ୍ଧେ । ୧୩
ଅମ୍ଭେ ସ୍ତ୍ରୀ ଜାତିମାନେ ସବୁକାଳେ ଥାଉଁ
କାମନା ଥିବା ଯୋଗୁଁ କାମିନୀ ବୋଲାଉଁ । ୧୪
ପୁରିଲେ ବାର ବରଷ ହୋଇ ବରାଙ୍ଗନା,
ବାମେ ବୃଦ୍ଧାନ୍ତେ ବୋଲାଉ ଯେ ବାମଲୋଚନା । ୧୫
ପର ପୁରୁଷଙ୍କୁ ସେବ ପ୍ରମଦାଟି ହୋଇ
ଭରତାକୁ ସେବାକର ଭାବିନୀ ବୋଲାଇ । ୧୬
ସ୍ୱାମୀଙ୍କୁ ଲଳିତେ ସେବ ଲଳନା ଯେ ଭଣି
ନିତମ୍ବ ଦମ୍ଭ ହେବାରୁ ହୋଇଁ ନିତମ୍ବିନୀ । ୧୭
ସୁନ୍ଦର ଦିଶିବାରୁ ଯେ ସୁନ୍ଦରୀ ବୋଲାଇ
ସ୍ତନ ଶମ୍ଭୁ ପ୍ରାପ୍ତେ ହ୍ୱନ୍ତେ ତରୁଣୀ ଯେ ହୋଇ । ୧୮
ଅଙ୍ଗେ ଭାବ ବୋଧ ଆମ୍ଭେ ବୋଲାଉ ଅଙ୍ଗନା
ବାମ ଆଲିଙ୍ଗନ ଯେଣୁ ନାମ ହେଲା ବାମା । ୧୯
ଯେଣୁକରି ସ୍ୱାମୀ ସଙ୍ଗେ ଲଗାଉ ପୀରତି,
ତେଣୁକରି ଆମ୍ଭ ନାମ ହେଲା ପ୍ରିୟବତୀ । ୨୦
ପିତାମାତା ଘରେ ଆମ୍ଭେ ଦୁହିତା ବୋଲାଉଁ
ଦୁର୍ବାକ୍ଷତଯୁକ୍ତା ହେଲେ ବନିତା ଯେ ହୋଉଁ । ୨୧

ଏକ ପତି ସେବି ସତୀ ବୋଲାଇ ସେ ପୁଣି,
ପୁତ୍ର ପ୍ରସବ କରଣ ବୋଲାଉ଼ି ଜନନୀ । ୨୨
ଯୁବା ବୟସ ହୋଇଲେ ବୋଲାଇ ଯୁବତୀ
ରଜନ ବୋଲାଇ ପୁଣି ସ୍ୱାମୀ ଦେଇ ରତି । ୨୩
ଗୃହସ୍ଥ ନାମ ଭଣାଉ଼ି ନାରୀ ନାମ ବନ୍ଧୁ
ଏତେ ରୂପେ ସ୍ତ୍ରୀ ନାମ କ କହିବ ଆଉ । ୨୪
ଏମନ୍ତ ସ୍ତ୍ରୀଙ୍କି ନନ୍ଦାକଲ ତୁମ୍ଭେ ଅଣି,
କେତେ ସ୍ତ୍ରୀ ହରିଛନ୍ତି ଶାସ୍ତ୍ରେ ଅଛୁ ଶୁଣି । ୨୫
ଗଉତମ ଋଷି ପତ୍ନୀ ଥିଲେ ପୁଣି ପୂର୍ବେ
କପଟେ ହରିଲା ଇନ୍ଦ୍ର ତାଙ୍କୁ ଋଷିସ୍ୱରେ । ୨୬
ବୃହସ୍ପତିଙ୍କ ଭାରଯା ତାର ତାମ ପୁଣ
ତାହାଙ୍କୁ ଯାଇଣ ଇନ୍ଦ୍ର କରିଛୁ ରମଣ । ୨୭
ଗଙ୍ଗା ପୁଣି ବରୁଣର ପାଟ ମହାଦେଇ,
ତାର ବଶ ହୋଇ ହର ଶିରେ ଛନ୍ତି ବହି । ୨୮
ବ୍ରହ୍ମାପୁଣି ଉର୍ବଶୀକୁ ଦେଖି ମୋହଗଲେ,
ବଶିଷ୍ଠ ନାମେଣ ଋଷି ତହୁଁ ଜନମିଲେ । ୨୯
ସପତ ଋଷିଙ୍କର ଯେ ସପ୍ତ ମନୋହାରୀ
ତାହାଙ୍କୁ ଅଗ୍ନି ଦେବତା ଛନ୍ତି ପୁଣି ହରି । ୩୦
ରମ୍ଭା ବୋଲି ଅପସରୀ ଯେବଣ ନାରୀକା
ଯାଇଥିଲା ଶୁକ୍ଳସ୍ନାନ କରିବାକୁ ଏକା । ୩୧
ପିନ୍ଧି ପିନ୍ଧି ଉଡ଼ିଲେ ତା ବସ୍ତ୍ର ପବନରେ
ବଶିଲା ତା ବେନ ଜାନୁ ଦେଖିଲେ ଶୁକ୍ରରେ । ୩୨
ଭେଦିବାରୁ ପଞ୍ଚଶର ରହି ନ ପାରିଲେ
ଆସି ରମ୍ଭାଙ୍କୁ ରମଣ କରି ତହୁଁ ଗଲେ ।
ବିଶ୍ୱାମିତ୍ର ଯେ ରମଣ କରିଛନ୍ତି ମୋତେ
ଏ ରୂପେ ସ୍ତ୍ରୀ ହରଣ କହିବଇଁ କେତେ । ୩୦

ସ୍ତ୍ରୀ ବଶ ନୋହୁ କେହୁ ଅଛୁ ଜନ ପୂରେ
ସ୍ତ୍ରୀମାନେ ସିନା ଦ୍ୟନ୍ତ ସୁଖ ପୁରୁଷରେ । ୩୫ ।
ସ୍ତ୍ରୀଙ୍କ ମୁଖରେ ସିନା ଅମୃତ ପ୍ରବଛୁ,
ସ୍ତ୍ରୀଙ୍କି ଦେଖି ପୁରୁଷ ନ ପାରଇ ମୁର୍ଚ୍ଛି । ୩୬
ପଞ୍ଚଶର ସ୍ତ୍ରୀଙ୍କର ନେତ୍ର ପରକାଶି ।
ସନ୍ଧାନେ କାମ ପୀଡଇ ପୁରୁଷଙ୍କୁ ଆସି । ୩୭
ସ୍ତ୍ରୀ ଏହୁ ସଂସାରରେ ଅଟଇ ଯେ ମୂଳ
ନେ ଅବା ସ୍ତ୍ରୀମାନଙ୍କୁ ନ କରୁଛ ହେଳ । ୩୮
ସ୍ତ୍ରୀ ନ ଥିଲେ ହୁଅନ୍ତ ତୁମ୍ଭେ କାହୁଁ ଜନ୍ମ
ନିନ୍ଦା ନ କର ସ୍ତ୍ରୀଙ୍କି ଏଣୁ ଶୁଣ ବ୍ରହ୍ମ । ୩୯
ଏବେ ଆଶିଷ ଦେ ମୁନି କର ମୋତେ କୋଳ
ଏ ପଞ୍ଚଶର ସ୍ରୋତରୁ ରଖ ବ୍ୟାସବାଳ । ୪୦

(ନୃସିଂହ ପୁରାଣ—ପ୍ରଥମ ରତ୍ନାକର)

## ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା

(ଅଷ୍ଟାଦଶ ଶତାବ୍ଦୀ)

### ନାହିଁ ମୋ ଡର

କହଇ ନାଗରବର
କଉଁ ସଜନୀ ଆଗର
କାଢ଼ିଲି ଓଢ଼ଣା ହୋଇଲି ବାହାର
ଶ୍ୟାମ ବନ୍ଧୁ ହୋଇ ମୋର । ୧
ଲୋକଙ୍କୁ ନାହିଁ ମୋ ଡର
ଖଟିବି ଚରଣେ ତାର
ଖସିଲା ଖସଣି ଶରଧ ବହଇ

ମୋ ମନ ହେଲାଣି ତାର । ୨
ଗ୍ୟାନଧ୍ୟାନ ସବୁ ମୋର,
ଗୋବିନ୍ଦ ନନ୍ଦ କିଶୋର
ଗୁପତେ ସିନା ମୁଁ          ତୋତେ କହୁଅଛୁ
ପାପକୁ ନାହିଁ ମୋ ଡର । ୩
ଯେଣୁଥା ମନରେ ଏତେ
ଘୋର ଢଳନ ବନସ୍ତେ,
ଘନଶ୍ୟାମ ଚନ୍ଦ୍ର—          ମୁଖ ଦେଖୁଥିଲେ
ବୈକୁଣ୍ଠ ସ୍ଥଳ ବା କେତେ । ୪
ନିଷ୍ଠା ଏହୁ କଥା ମୋର
ନ ପାଇ ନଟ ନାଗର
ନାରାୟଣ ପୁରେ          ବାସ ନ ଯୋଗାଇ
ନରକେ ପଡ଼ିବା ସାର । ୫
ଚୂର୍ଣ୍ଣ କୁନ୍ତଳ ଆବୃତ
ଚନ୍ଦ୍ରବଦନ ମୋ କାନ୍ତ
ଚଉଦ ବ୍ରହ୍ମାଣ୍ଡ          ଲୋକ ଛଡ଼ାଇଲେ
ଛାଡ଼ି ନ ପାରେ ମୋ ଚିତ୍ତ । ୬
ଛଇଲ ଛବି ଛଟକ
ଛଡ଼ାଇ ଦେଲା ବିବେକ
ଛନ୍ନ ଛନ୍ନ ହୋଏ          ମନ ଅବିଚ୍ଛିନ୍ନ
ହୃଦ ହୁଏ ଦକଦକ । ୭
ଜଗମୋହିନୀ ମନ୍ତ୍ର
ଜାଣନ୍ତି ମୁରଲୀଧର
ଯା ଗୀତରେ ଦ୍ରବ          ପାଷାଣ ହୋଇଛି
ପାଣି ହେବ କି ପଥର । ୮

ଝଟଣ ପଲ୍ଲବେ ତରୁ
ଝଟଣ ପଲ୍ଲବେ ଦାରୁ
ଝାମ ଯାଇ ଉଡ଼ି ଗଳ୍ପ ପକ୍ଷୀ ଉଡ଼େ
କ ଗ୍ରର ଅବଲା ଝୁରୁ । ୯
ନବର୍ତ୍ତାଉ ପଗ ମୋତେ
ମୁଁ ଏବେ କହୁଛୁ ତୋତେ
ନଜ ମନକୁ ରୁ ତୋହର ପତ୍କର
କ ହୁଅଇ ବଂଶୀ ଗୀତେ । ୧୦
ଟଳଇ ମେରୁ ମନ୍ଦର
ଟଳବ କ ବାଣୀ ମେ ର
ଚମକ ନଶାଣ ବାଜେ ତ୍ରିଭୁବନ
ସାଧା ହେଲେଣି କୃଷ୍ଣର । ୧୧
ଠୁଲ ପୁରୁଷ ଉତ୍ତମ
ଠିକେ ରସିକ ସ୍ୱପ୍ନେ ନାମ,
ଠିକେ ସଦାନନ୍ଦ ଭବସ୍ପର୍ଶ ବ୍ରହ୍ମା
ଲଭ ହେବ ପୂର୍ଣ୍ଣକାମ । ୧୨

(ପ୍ରେମ ଚନ୍ଦ୍ରାମଣି ଚଉତିଶା)

## ମୋର କଳା କାଇଞ୍ଚ

( କଖାରୁ କାଣ୍ଡି ବାଣୀରେ ଗାଇବ )

ମୋର କଳା କାଇଞ୍ଚ, ଦଶୁଅଛୁ କେଡ଼େ ସଞ୍ଚ ଲୋ,
ଲବଣୀ ମାଗଇ ଲଞ୍ଚ ଲୋ, ବଂନେ କଲା କେଉଁ ପାଞ୍ଚ ଲୋ । (ଘୋଷା)
ଯଶୋଦା ଘର ଦୁଆରେ
ଦେଖନ୍ତି କୁମାର ଗାଈ ପଛରେ
ସେ ଆସୁଅଛୁ ଧୀରେ ଧୀରେ । ୧ ।

ବଦଗ୍ଧି ଫଳ ଆକାର,
ଗୋରୁ ଧୂଳି ପଡ଼ି ତନୁ ଧୂସର
ଝଲେ କାଳିଆ ସୁନ୍ଦର ଲୋ । ୨ ।
ଯାଚଲେ ନ ଖାଇ ପର,
ଗୁଞ୍ଜୁଥିବ ବନଫଳ ନିକର
ବୋଲୁଥିବ କି ମଧୁର ଲୋ । ୩ ।
ଶୋଇଥିବ ମସ୍ତଶେଯେ,
ପିନ୍ଧା ବାଘଚମ୍ମ ଦେହ କଷ୍ଟେ
ଗୋଳ ହୋଇଗଲା ସେ ଯେ ଲୋ । ୪ ।
ସପୁଣ ମୁଣ୍ଡରେ ଫୁଲ,
ମୋ ଧନ ମସ୍ତକେ ଯେତେ ମଞ୍ଜୁଳ ସେ,
ରଙ୍ଗ ପଣ୍ଡି ଜାମୁ ଡାଳ ଲୋ । ୫ ।
ଶିରେ ମୟୂର ଚନ୍ଦ୍ରିକା,
ଦିଶଇ ସୁନ୍ଦର ମୋ ମନ ଦକ୍ଷା ସେ,
ଡାକିନୀ ଆତଙ୍କ ଶଙ୍କା ଲୋ । ୬ ।
ଗଳେ ବନ ଫୁଲ ମାଳ,
ବାହେ ବାନ୍ଧି ଛନ୍ଦ କୁସୁମ ଡାଳ
ଖେଳେ ରଙ୍ଗିଆ ଗୋପାଳ ଲୋ । ୭ ।
କପାଳେ ଚନ୍ଦନ ପାଟି
ତା ତଳେ ଦେଇଛୁ କେ ରେଖା କାଟି
ଗୋଳ ରଙ୍ଗେ ରଙ୍ଗ ମାଟି ଲୋ । ୮ ।
ଆସେ ରମେ ଛଳ ଛଳ
ଗୋପାଳ ବାଳରେ ହୋଇ ମଣ୍ଡଳୀ
ଧଶବନ୍ତ ଭରତାଳ ଲୋ । ୯ ।
ଅନା ଗୋ ରୋହିଣୀ ଅନା,
ରୂମ୍ବ ଗଣ୍ଡି ଧନ କାଳିଆ ସୁନା
ଆଜ କାହିଁର କେତେ ଅନା ଲୋ । ୧୦ ।

କାହ୍ନୁଁ ଲୋ ଶିଖିଲା ନାଟ,
ନେଟଣୀ ପାରୁଅ ପରି ଚହଟ
ନାଚ ଅସେ ଦାଣ୍ଡ ହାଟ ଲୋ । ୧୧ ।
କୋଇଲି ପରି ବୋବାଇ,
କହୁରୁକଅ ମୋ କଳା କହ୍ନାଇ
ସଂସାର କରୁଛୁ ବାଇ ଲୋ । ୧୨ ।
କୁହାଟ ଯେପନ୍ତେ ମୟୂର,
କେତେ ଦେଖିବ ତାହାର ହୃଦର
ହସାଇ ସେ ଯେ ଅପାର ଲୋ । ୧୩ ।
ଯାଉ ନାହିଁ ପାଖ ନାହିଁ
ବୁଝ କାଳେ ଦେଲ ସଙ୍ଖାଳ ବନ୍ଧୁ,
ତୋଳିଲେ ଗଳ ପଡ଼ଇ ଲୋ । ୧୪ ।
ଶୁଖିଛୁ ଚନ୍ଦ୍ରବଦନ
ଭୁଲିଛୁ ଯାଇ କି ଜୀବଜୀବନ
ଝଗରେ ଅଙ୍ଗ ମଳିନ ଲୋ । ୧୫ ।
ନଉଟେ ଚରଏ ବତ୍ସା,
ଯମୁନାକୁ ଗଲେ ଦେଖଇ ଅଛା ସେ
ଘରେ ଅଟେ ମନ ଇଚ୍ଛା ଲୋ । ୧୬ ।
ଆଜ୍ଞ ନ ଛୁଡ଼ିବା ଦନେ
ଆଜଠାରୁ ମୋର ଚନ୍ଦନ ମନେ
ଝୁରି ମରିବ କେସନେ ଲୋ । ୧୭ ।
ପ୍ରବେଶ ପାଶରେ ହରି
ଯଶୋଦା ଚରଣେ ପ୍ରଣାମ କରି
ମାତା ସ୍ନେହେ କୋଳେ ଧରି । ୧୮ ।
ସପ୍ତ ଅଳଙ୍ଗୀ ବନ୍ଦାଇ
ଘରକୁ ନେଲେ ଅନ୍ନ କହଗ୍ରାଇ
କବସୂର୍ଯ୍ୟ ବ୍ରହ୍ମା ଥାଇ ଲୋ । ୧୯ ।

(ଯୁଗଳ ରସାମୃତ ଲହରୀ—୫ମ ଛାନ୍ଦ)

# ଦନେଇ ଦାସ

(ଅଷ୍ଟାଦଶ ଶତାବ୍ଦୀ)
(ଷୋଡ଼ଶ-ସପ୍ତଦଶ ଶତାବ୍ଦୀ ?)

## କାହ୍ନୁର ରଙ୍ଗ

ସେକ ଗୋପୀସ୍ତ୍ରେ ବୋଇଲ ମିଳନ୍ତି
ବନେ ଗଲି ମୁଁ ଘାଟେ ନୀର ଆଣି ।
ମୋର ମନ୍ଦିରେ ପଶିଲେ ମାଧୋଇ
ଘରେ ଦେଖିଲେ ନାହିଁ ଦୁଧ ଦହି ।
ଶିକା ଉପରେ ନଉତ ଦେଖିଲେ
ହସ୍ତ ନ ପାଇଲାକୁ ବୁଦ୍ଧି କଲେ ।
ପୀଢ଼ା ଉପରେ ପୀଢ଼ାମାନ ଦେଇ
ତଥି ଉପରେ ଉଠିଲେ ମାଧୋଇ ।
ଯଷ୍ଟି ସେନ ଫୋଡ଼ିଲେ ଦଧି ଭାଣ୍ଡ
ଜଳା ସଳଖେ ପାଉଅଛ ତୁଣ୍ଡ । *
ମୁଁ ଗୋ ସେମନ୍ତ ସମସ୍ତେ ଅଇଲି
ନୀର ଭାଣ୍ଡ ତଳେ ଥୋଇ ଗୁହିଁଲି ।
ଦୁଧ ପିଉଛ ହାଣ୍ଡି କଣା କରି
ମୁଁ ଗୋ ବସିଲି ଧଆର ଆବୋର ।
ଆଜ ଜାଣିମା ସିବ କଉଁ କଥା
ମିଛ ପ୍ରାସ୍ତେ ମଣେ ନନ୍ଦ ଯୁବତୀ ।
ନିତ ପତ ମୋ ଘରୁ ସବ ଖାଉ
ଆଜ ଜାଣିମା କଉଁ କଥା ଯାଉ ।
ମୋତେ ଉରକ ବାଙ୍କେ ଅନାଇଲା
ଦୁଧ ଗଣ୍ଡୁଷ ଲୋଚନେ ମାରିଲା ।
ବେନି ହସ୍ତେ ବୁଜିଲା ବେନି ତୋଳା

ପେଲ୍ ପକାଇ ଦେଲ୍ ନନ୍ଦ ବଳା ।
ମୁଁ ଯେ ପଡ଼ିଲ୍ ଢଳେ ମୁହଁ ମାଡ଼
ଘରୁ ପଳାଇ ଗଲେ ନରହର ।
ସ୍ୱେକ ଗୋପୀସ୍ୱେ ବୋଇଲ୍ ମିଳଣି
ସେ ଗୋ ବଡ଼ ମାୟାବୀ ଚକ୍ରପାଣି ।
ଦିନେ ଗୋଗୋଷ୍ଠେ ରହିଲ୍ ଖୁଆଳ
ସ୍ୱେର ରୂପ ଧଇଲେ ନନ୍ଦବାଳ
ଜଣା କାଳେ ମୋ ପୁରକୁ ଅଇଲେ
ଦହି ଦୁଧସର ସବୁ ଖାଇଲେ ।
ଶାଶୁ ପଣନ୍ଦ ଧରି ଓଟାରଇ
ବୋଲୁ ସ୍ୱେର ବୋଲ୍ ରଡ଼ି ଗ୍ରୁଡ଼ଇ ।
ଘାପ ବନ୍ଧନ କରଣ ଧର ଗୋ
ଆମ୍ଭ ଘରେ ପଶିଅଛୁ ସ୍ୱେର ଗୋ ।
ଘାପ ଲଗାଇ କୃଷ୍ଣଙ୍କୁ ଧଇଲୁଁ
ବାନ୍ଧି ଯଶୋଦା ଆଗରେ କହିଲୁଁ ।
ବେଗେ ଘରୁ ନେ ଆସ ନନ୍ଦରାଣି
ଥାଉଁ ଦେଖ ତୋ ପୁଅର ବାଣ୍ଡେଣି ।
କଂସ ନୃପତ ମନ୍ଦ କ ଶୁଣିଲୁ
ଛନ୍ଦ ତୋହର ଆଡ଼କୁ ଆଣିଲୁ ।
ପୁଅ ଗୋପପୁରେ ଖଣ୍ଡ ହେ ଇଲ୍
ନାନା ଅନ୍ୟାୟମାନ ପାର ଲେ ।
ଶଏ ବେଳ କହିଲେ ନ ଡଆରୁ
ଆଜ ଜାଣିମା କେଡ଼ୁ ରକ୍ଷାକରୁ ।
ତୋର ପୁଅ ପଦଇ ସଣସିବ
ଆମ୍ଭ ଘର ପଛେ ଗୋପେ ନୋହିବ ।
କେତେ ଭକସ୍ତ ଗୋପ ପୁରେ ନାହିଁ

ଏଡ଼େ ଉଛୁଳା ଦୁଧ ଅଛୁ କାହିଁ ।
ମୋର ଫନ୍ଦଳୀ ଶୁଣି ନନ୍ଦରାଣୀ
ଘର ଭିତରୁ ବାହାର ତରୁଣୀ ।
କୃଷ୍ଣ ଧରି ଅଛନ୍ତି ବାମ କର
କାମପାଳହିଁ ଅଛନ୍ତି ସଙ୍ଗର
ବେନି ସଖି ବେନି ପାଶେ ଅଛନ୍ତି
ଘର ଭିତରୁ ବାହାର ଯୁବତୀ ।
କି ଲୋ କି ତେଜ କାହ୍ନୁକୁ ସୁଆଳୀ
ତୋତେ କି କଲା ମୋର ବନମାଳୀ ।
ମୋର ବାଳୁତ ପୁଅ ଲୋ କହ୍ନାଇ
ହସି ଖେଳି ଲୋ ଆଉ ଜାଣି ନାହିଁ ।
ଆଜ ଘରୁ ସେ ନୋହୁଛି ବାହାର
କଉଁ ବାଟେ ଲୋ ଗଲା ତୋର ପୁର ।
ମୋର ସହିବା ସତ ପ୍ରାଣେ ମଣୁଁ
ଦୋଷ ଦିଅ ଲୋ କେଉଁ କଡ଼ ପଣୁ ।
ଶୁଣି ରୁଣ୍ଡ୍ର ନ ଆସଇ ବଚନ
ମନେ ନନ୍ଦ ରାଣୀ ପଦ ଚେତନ ।
ତହୁଁ ଲଜେ ମୁଁ ବାହୁଡ଼ି ଅଇଲି
କୃଷ୍ଣ ବାନ୍ଧିବା ଠାବରେ ହୋଇଲି ।
ମୋର ତନସ୍ତ ବନ୍ଧା ହୋଇଅଛି
ତାହା ଦେଖି ମୋ ନ ସ୍ଫୁରଇ କଛି ।
ଫେଡ଼ି ଦେଇ କାହାକୁ ନ କହିଲି
ଲଜେ ମୋହ ମୁଖେ ରୁନ ରହିଲି ।
ସାନ ବେଳହୁଁ ମାୟା ଅଗୋଚର
ତେଣୁ ନାମ ଅଟଇ ମାୟାଧର ।

(ଗୋପୀ ସଖା)

# ଚନ୍ଦ୍ରାବଳୀଙ୍କ ଫୁଲବେଶ

ତାହାଶୁଣି ଚନ୍ଦ୍ରାବଳୀ ହରଷ
ଗୋପ ସୁନ୍ଦରୀ ହୋଇ ଫୁଲ ବେଶ ।
ସମସ୍ତେ ମିଶି ଫୁଲ ବେଶ କଲେ
ପଞ୍ଚ ବର୍ଣ୍ଣ ବେଶ ଉଦ୍ଧି ହୋଇଲେ ।
ଫୁଲର ପାଣ୍ଡୋଇ ଫୁଲ ନେପୁର
ଫୁଲ ଝୁଣ୍ଟିଆ ଲଗାଇ ଗୋଡ଼ର ।
ଫୁଲର ମୁଦି ଅଙ୍ଗୁଷ୍ଠିରେ ଶୋଭା
ଫୁଲ ହାଡ଼ୀ କୋଟି ପିନ୍ଧିଲେ ରାଧା ।
ଫୁଲ କାଞ୍ଚଳ ଶରୀରରେ ଭିଡ଼ି
ଫୁଲ ମାଳୀମାନ ଗଳାରେ ପଡ଼ି ।
ଫୁଲର ଚୂଡ଼ି ଫୁଲର ତାଡ଼ବନ୍ଧ
ଫୁଲର ବସଣି ନୋଥ ସମ୍ପାଦ ।
ଫୁଲର ଗୁଣା ନାସେ ଶୋଭେ ପୁଣି
ତାପ ମଲ୍ଲଜଡ଼ି ଫୁଲରେ ଜାଣି ।
ଚନ୍ଦ୍ର ଫାଶିଆ ଫୁଲରେ ଜବାଡ଼
ଫୁଲ ଝିମ୍ପ କାଠି ଗଣ୍ଡ ଉପର ।
ଫୁଲର ଅଳକା ଫୁଲର ଗଣ୍ଡ
ଫୁଲରେ ଭୂଷଣ ହୋଇଲେ ରାଧା ।
ଫୁଲରେ ଛତ୍ର ଗୋଟି ସଜ କରି
ଫୁଲରେ ଭୂଷଣ ଚନ୍ଦ୍ର ତାହାର ।
ଫୁଲର ଆଲଟ ଫୁଲ ବିଞ୍ଚଣି
ଏମନ୍ତ ବେଶ କରି ତାକୁ ପୁଣି ।
ଫୁଲବନରୁ ହୋଇଲେ ବାହାର
ବୃନ୍ଦାବନେ ଯାଇ ମିଳେ ସତ୍ୱର ।
ଫୁଲ ଭୂଷଣ ସିଂହାସନ କଲେ
ତହିଁପରେ ଚନ୍ଦ୍ରାବଳୀ ବସିଲେ ।

(ଗୋପୀ ଭାଷା—୧୯ଶ ଛାନ୍ଦ)

# କାହିଁକି ଜନମ ହୋଇଲ ଗୋସାଇଁ

କାହିଁକି ଜନମ ହୋଇଲି ଗୋସାଇଁ
କରୁନି କାର୍ଯ୍ୟ ତ ନୋହିଲା
କଷ୍ଟ ନରକରେ ଏକା ହୋଇଲା
କେତେ ଦିନ ଥିବ କୃଷ୍ଣ ନ ଭଜିଲି
କୁଟୁମ୍ବକାଳ ତ ମୋଡ଼ିଲା ।
ମନରେ !
ଖାଇବା ଖେଳିବା ହସିବା ଭୁଞ୍ଜିବା
ଏଣୁ କଥାରେ ତ ରସିଲି
ଘଡ଼ିଏ ସାଧୁଗୋଷ୍ଠିରେ ନ ବସିଲି
ଖୋଜୁଥାଇ କେତେ ଧନ ଅରଜିବ
କ୍ଷୁଦ୍ର ପାପରେ ନାଶ ଗଲି ।
ମନରେ !

× × ×

ପତଙ୍ଗ ଯେସନେ ଅଗ୍ୟାନ ସ୍ଥାନ ଜଳୁ
ପଡ଼ୁଛୁ ଜଳନ୍ତା ଅନଳେ
ପଡ଼ୁଅଛୁ ତେଣି ଦେଖୁଛୁ ତୋଳେ
ପିଅଇ ନାହିଁ ପାଖେ ଅଛୁ ପୀୟୂଷ
ପଙ୍କ ପାଣିକି ମନ ବଳେ
ମନରେ !
ଫୁଟିଛୁ ଶିମୁଳି ସୁରଙ୍ଗ ଦିଶୁଛୁ
ଫାଇ ଆସ କରି ରହିଲି
ଫଳ ଖାଇବ ହୃଦରେ ଧଇଲି
ଫୁଟି ଉଡ଼ିଗଲେ ସେ ଯେସନେ ନିଷ୍ଫଳ

ସେତ ମଠ ପ୍ରାପ୍ତେ ହୋଇଲ ।
ମନରେ !
ବୁଦ୍ଧି ଥାଉ ଥାଉ ନଷ୍ଟ କି ହୋଇଲ
ଭୁଞ୍ଜ ଅମୃତ କଲୁ ବିଷ
ବାଇ ପ୍ରାପ୍ତେ କଣ୍ଠେ ଘିସ ଡସ
ବକଟ୍ଟଳ ବୋଲି ନ ପାରିଲୁ ଶୋଧନ
ବୁଦ୍ଧି ବିବେକ ଗଲା ନାଶ !
ମନରେ !

× × ×

ସପି ଯାଉଅଛୁ ଅଗାଧ ଜଳରେ
ଭଲ୍ଲ ନ କଲୁ ମୁଁ ଶୋଚନା
ଭଲେ ନ ଭଜିଲୁ ପଦ୍ମଲୋଚନା
ଭଲ ଭଲ ଲୋକେ ଭଲ ନ ବୋଇଲେ
ଭ୍ରାନ୍ତିରେ ପଡ଼ି ମଲା ଦନା ।
ମନରେ !
ମରିବ ବୋଲି ମୋ ମନେ ଗ୍ୟାନେ ନାହିଁ
ମୂଷା ନ ଛଡ଼ିଲ ମଞ୍ଜାର
ମୁଁ ତ ରହିଲି ମୋହ ଆଶ୍ରେ ବଳ
ମହାପ୍ରଭୁ ନାମ ଅଣଶୁଦ୍ଧା କଲି
ମନ୍ଦ ଅଭାଗୀ ଦୁର୍ବୁଦ୍ଧି
ମନରେ !
ଜଳନ୍ତା ଅଗ୍ନିରେ ଡେଇଁ ପଡ଼ୁଅଛୁ
ଜାଣଇ ନାହିଁ ମୁଁ ମରିବି
ଯୋଗେ ଜାଣିଥିଲେ ଘର କରିବି

ଜାଣିଲି ଜଗନ୍ନାଥ ମୋତେ ଛାଡ଼ିଲେ
ଆଉ କାହିଁ ମୁହିଁ ତରିବ
ମନରେ !

ଯାତ୍ର ଉତ୍ସବରେ ରମଣୀ ରସରେ
ରସି ତ ବ୍ୟର୍ଥ ହୋଇଲି
ରାମକୃଷ୍ଣ ଭ ବୃନ୍ଦେ ନ ବୋଇଲି

ରାଜାପଣ ଛାଡ଼ି ପ୍ରଜା-ରଖୁଆଳ
ରଙ୍କପଣ ସୁଖ ମଣିଲି
ମନରେ !

ଲକ୍ଷ୍ମୀକେଳି ସର— ସଉଆ ସଜାଇ
ଲିଆ ଖାଇବାରେ ରସିଲି
ଲଘୁ ସଙ୍ଗେ ପଡ଼ି ସାଧୁ ଲେଛୁଲି

ଲାବଣ୍ୟ ନିଧି ଦୂର କରି ପକାଇ
ଲୁହା କଣିମାରେ ରସିଲି
ମନରେ !

ବାଲି ଚଷି ଚଷି ଧାନ ବୁଣୁଅଛୁ
ବହୁତ କରୁଅଛୁ ଆଶ
ବାଡ଼ ବେଢ଼ାଇଁ ଅଛୁ ଚଉପାଶ

ବାଟୁଆ ଲୋକ ସଙ୍ଗ ବଡ଼ ପୀରତି
ବୁଦ୍ଧି ବିବେକ ଗଲା ନାଶ
ମନରେ !

ଶମ୍ଭୁ ଛାଡ଼ି ଶିଳ— ପ୍ରଭାକୁ ପୂଜୁଛୁ
ଅଛକୁ ମଣୁଅଛୁ ସତ
ସତ ଦଣୁଅଛୁ ମିଛ ପ୍ରତକ୍ଷ

ସାଧୁ ସଙ୍ଗେ ସଙ୍ଗ ହୋଇ ନ ପାରିଲି
ଅଦକ୍ଷ ଲୋକ ସଙ୍ଗେ ଦକ୍ଷ
ମନରେ !

ସବୁ ପକାଇ ଶୋଲ୍ ଶାଗ ଖାଉଛୁ
ସୁଧା ତେଜ ସୁଗ୍ର ଆପ୍ୟାନ
ସାଧୁ ସଙ୍ଗେ ନ ରସିଲା ମୋ ମନ
ସୁବର୍ଣ୍ଣ ନିଧି ମୋ ସନ୍ନିଧିରେ ଅଛୁ
ଶାମୁକ ମଣେ ଦ୍ରବ୍ୟ ଧନ
ମନରେ !

ସପନ ନିଧି ସତ୍ୟପ୍ରାୟେ ମଣିଲୁ
ସିଂହ ଗୁଡ଼ ଶ୍ୱାନ ପୋଷିଲ
ଶୂକନଳୀ ପ୍ରାୟେ ଭୁଲି ହୋଇଲ
ଷଟ ମୁକୁଳ ପଦ୍ମକୁ ଦୂର କରି
ସାହାଡ଼ା ଫୁଲକୁ ରସିଲ
ମନରେ !

ହୃଦୟ ଭିତରେ ଥୋଇଲା ଧନ ମୁଁ
ହଜାଇ ହେଉଅଛୁ ବଣା
ହେରୁ ନ ପାଇ ଅଦକ୍ଷରେ ଗୁଣା
ହୋଇଲ୍ ହନ୍ତ— ଏନ୍ତକୁ ଯୋଗ୍ୟ ମୁହିଁ
ହରି ଭକ୍ତଙ୍କ ପନ୍ଥୁଁ ହୁଣା!
ମନରେ !

ଷଡ଼ିଣ ହିଗୁଣ ରଜ୍ଜୁ ବାନ୍ଧିଅଛୁ
ଛୁଟାଇଁ ନ କଲ ଉପାୟେ
କ୍ଷଧ ବାନ୍ଧିଲ ପାଦୁ ଶିର ଯାଏ
ଘୁର ସ୍ଥାନ ଦନା ଲେଖାରୁ ବାହାର
ପାଦ ପଦ୍ମରେ ଆଉ ଲୟେ
ମନରେ !

(ସାନ କନଡ଼ା ଚଉତିଶା)

# ତ୍ରିପୁରାରି ଦାସ

(ଅଷ୍ଟାଦଶ ଶତାବ୍ଦୀ)

## ଜନ୍ମୋତ୍ସବ

ରାଗ—କେଦାର

ସାଧୁ ସାବଧାନ ବଣେ          ଶୁଣ ଜନେ ସର୍ବ୍ବରଙ୍ଗେ
ଦୂରତ ପଟଳ ତୂରତ ସ୍ୱଜବ ସ୍ମର ତନୁ ଯିବ ରଙ୍ଗେ । ୧

ଦଶାନ୍ତରେ ପୂତ ଜାତ          ଶୁଭେ ଜାଣି ତାତ ମାତ
ମନେ କଲ୍ପବୃକ ଅନେକ ସମ୍ପାଦ ଜନେ କଲେ ଯଶ ଖ୍ୟାତ । ୨

ଯାହା ଅପୂର୍ବ ଯାହାକୁ          ତହିଁ ତୋଷିଲେ ତାହାକୁ,
ବସନ ଭୂଷଣ ପ୍ରସନ୍ନରେ ଦେଇ ବଣ ନ କଲେ ଦାହାକୁ । ୩

ଆନନ୍ଦେ ମଜ୍ଜନ ଜନ          ସନ୍ତାପ ଶମନ ମନ
ଗାଇଲେ ଗାୟଣୀ ଧାଇଁଲେ ବ୍ରାହ୍ମଣ ପାଇଲେ ଉଚିତ ଧନ । ୪

ମହୋତ୍ସବ ସ୍ଥାନ ସ୍ଥାନ          ଶୁଣି ତା ନ ଥିବ ଆନ
ବାଜିଲା ବାଜଣା ସାଜିଲେ ସୁଖକୁ ସ୍ୱଜିଲା ବଇର ମାନ । ୫

ଲଗିବାରେ ଘରବୁହା          କେହୁ ନ ରଖିଲେ ଉହା
ହାସରେ ଅବେଶ ଆଶାରେ ଶଙ୍କର ବାସରେ ସୁରଭି ଦୁହାଁ । ୬

ଯାହା ପ୍ରବର୍ତ୍ତିଲ ତହିଁ          ତାହା କେ ପାରିବ କହି
ଲୁଟିଲେ ବିପଣୀ ତୁଟିଲେ ପ୍ରମଦେ ଫୁଟିଲେ ପଦାର୍ଥ ବହି । ୭

ମଣ୍ଡିଲେ ମନ୍ଦିର ଧାଡ଼ି          ସ୍ୱର୍ଗକୁ ରଖିଲେ ବାଡ଼ି
ରତନ ତୂଣାରେ ଯତନ ପନ୍ଥାକୁ ପତ ନ ବଳଇ ଗ୍ରାଡ଼ି । ୮

ଗୁମ୍ଫା ସାର ଝୁମ୍ପା ଫୁଲ୍ଲି          ହୃଦରେ ଅସଇ ଭୂଲ
ଖୁରକ ଖୁରସେ ପ୍ରସ୍ତାବ ଅନାଇ ସୁସ୍ତାବ ନ ଯିବ ଭୁଲ । ୯

ବନ୍ଦଇ କେ ଚନ୍ଦ୍ରଚୂଡ଼େ          କହୁଁ କହୁଁ କଥା ହୁଡ଼େ
ନନ୍ଦନ ଉତ୍ସବ ଚନ୍ଦନ ଛଡ଼ାରେ ସ୍ୟନ୍ଦନ ଚକ ହିଁ ବୁଡ଼େ । ୧୦

ବିଚିତ୍ର ଲାଗିଲା ସୃଷ୍ଟି ନ ଥିବ ଆଉ ଏ ଦୃଷ୍ଟି
ସେବାକୁ ଆଦର ଦେବାକୁ ସବହେଁ ନେବାକୁ ମିଳିଲେ ନାହିଁ । ୧୧
ଜନସ୍ନେହ ବହୁତ କଷ୍ଟ ସେ ଯାହାକୁ ଦେଲ ତୁଷ୍ଟି
ଗୋଟିଏ ଧନ ସେ କୋଟିଏ ଜନ୍ତୁଙ୍କ ଓଟିଏ ଆଣିଲେ ବଷ୍ଟ । ୧୨
ଏହି ରୂପେ ଲୀଳା ଯେତେ ଲକ୍ଷି ନୋହେ ଏତେତେତେ
ବାଣୀମନୋବୃତ୍ତି ଜାଣିମ ନାହିଁ ତା ଅଣିମ ମନୁଷ୍ୟ କେତେ । ୧୩

(ରାମକୃଷ୍ଣ କେଳି କଲ୍ଲୋଳ—୪ର୍ଥ ଛାନ୍ଦ)

# ବ୍ରଜନାଥ ବଡ଼ଜେନା

(ଅଷ୍ଟାଦଶ ଶତାବ୍ଦୀ)

## ମରହଟ୍ଟା ଫଉଜ

ରାଗ—ପାହାଡ଼ିଆ କେଦାର

ସାରୁ ଫଉଜ ହେଲେ ତୟାର                ମୁସଦ୍ଦମୁସା ହେଲେ ବାହାର
ପାଗା ସୁଆର କି ଜମାଦାର କି ସରଦାର ଯେ ।
ଯେ ଯାହା ମୁରାତମା ସମ୍ଭାର                ଦୌଲତ ଯେଝ ହେଲେ ହାଜର
ମଜୁର କର ହୁକୁମ ପାଇ ଯାନ୍ତି ସତ୍ୱର ଯେ ।
କେହୁ ଚଢ଼ିଛୁ ତାଜି ବାଜୀ ଉପର ଯେ,
ରଙ୍ଗ ଅଙ୍ଗା ଅଙ୍ଗକୁ ଦଶେ ସୁନ୍ଦର ଯେ,
ଢାଲେକ ପୃଷ୍ଠ ବାମ ହାତରେ                ଷଲ କଷିଛୁ ଦକ୍ଷିଣ କରେ
ନାଲ ପଗଡ଼ି ଭଲ ମାନଛୁ ଶିରକୁ ତାର ଯେ । ୧
କେ ଅଛୁ କଚ୍ଛି ବାଜୀକ ଚଢ଼ି                ଧରନେଉଛୁ ଯୋଡ଼କ ଯୋଦ୍ଧା
ଇଶାରା କଲେ ମସ୍ତକ ଗ୍ରୀଢ଼ ଯିବ ଯେ ଉଡ଼ି ଯେ ।
କେହୁ ତୁରୁକ ପିଠିରେ ବସି                ଢାଲ ବହୁଛୁ ଧରୁଛୁ କଷି
କର୍ଣ୍ଣରେ ନଶ ଦେଇଛୁ ଖୋସି ଲମ୍ବିଛୁ ଦାଢ଼ି ଯେ ।
କେହୁ ସୁଆର ହୋଇ ଅଣଆସୁଛୁ ଯେ
ଯେତେ ସମ୍ଭାଳିଲେ ସେ ନୋହେ ସ୍ଥଗିତ ଯେ ।
ଫୁ ଫୁ ଶବଦ ମୁଖୁଁ ବାହାର                ବଜୂଳପରି ଚରଣ ତାର
ଦୁଅନ୍ତେ ଚତୁକାର ପିଠିରେ ଠୁକୁଛୁ କର ଯେ । ୨
ଝୁଲ ଚଳାଇ ଝୁଲନ୍ତି କେହୁ                କାହା ଝାଙ୍ଗଣ ଯାଉଛୁ ବନ୍ଧ
କେ ଘୋଡ଼ୀ ଅନ୍ତରଧ୍ୱନ୍ତେ ଲେଉଡ଼ ଯୋଡ଼ି ଲଗାଇ ଯେ ।

କେଉଁଠି ସ୍ଥଳେ ଦୁଇ ଗୋଡରେ ଯୁଆଉ ଖସି ପଡ଼ିବା ଡ଼ରେ
ଖଣ୍ଡିକୁ ଉଡ଼ି ଧରି ଦୁଢରେ ସମ୍ଭାଳି ରହୁ ସେ ।
କାହା ଘୋଡ଼ା ଘୋଡ଼ୀକି ଦେଖି ଆଗରେ ଯେ
ମତ୍ତେ ମିଶି ଆସନ୍ତେ ଅତି ବେଗରେ ସେ
ବାଗଦ୍ୱାଡକୁ ଅଳପ ମୋଡ଼ି ଆଟେକି ସଳଖେ ଲଗାନ୍ତେ ଲେଙ୍ଗ
ପବନ ପରି ଗଲା ସେ ଉଡ଼ି ସେହି ଲଗରେ ଯେ । ୩
କାହା 'ହୁ ଷାର ସ୍ୱନେ ସଞ୍ଚାର, କମ୍ପିଉଠନ୍ତି କେହୁ ଦ୍ୱସାର
ଫେରି ଛଟକେ କେ ବାଙ୍କି ଗାର ପଗ୍ର ଗଢରେ ସେ ।
ଜଳଭଉଁସି ପଗ୍ର କେ ଖର ଫେରି ପଡ଼ଇ ଅତି ପ୍ରଖର
ବାମ ଦକ୍ଷିଣେ କରଇ ଗତି ଦୁଷ୍ଟ ମତରେ ସେ ।
କେହୁ ନାକୁଆ ପରି ଦଣେ ଗତରେ ଯେ,
କାହା ଚରଣ ଅସ୍ଥ ନୋହେ ଛିଡରେ ଯେ ।
କେ ବଳେ ଅସେ ଗ୍ରୀବାକୁ ମୋଡ଼ି ଡେଇଁ ଯାଉଛି ଯୋଡ଼ିକ ଯୋଡ଼ି
କେ ଯୋଡ଼ି ନଦୀ ନାବ ପଗ୍ରସ୍ୱେ ସ୍ଥଳ ଘଟରେ ସେ । ୪
ଅତ୍ୟନ୍ତ ମତ୍ତ ମାତଙ୍ଗକୁଳ ଚଳନ୍ତି ଧୀରେ ହୋଇ ପ୍ରବଳ
କସେ ପ୍ରଚଳ ପର୍ବତ ମାଳ ମାଳ ସଂକୁଳ ସେ ।
କିବା ଧରଣୀ ତରୁଣୀ ନୀଳ ଦୁକୂଳ ପିନ୍ଧି ଦଣେ ମଞ୍ଜୁଳ
କି ସେ ଆକାଶୁ ଛୁଡ଼ି ପଡ଼ୁଛି ଜଳଦ ଜାଲ ସେ ।
ଏହୁ ସମସ୍ତେ ମଦଜଳ ବରଷେ ଯେ,
ଅବଲୋକନେ ଆଶ୍ଚର୍ଯ୍ୟ ମାନସେ ସେ ।
ପୂର୍ଣ୍ଣି କି ସିନ୍ଧୁ ମନ୍ଥିଲେ ଦେବେ ସିନ୍ଧୁର କୂଳ ଜନମି ଏବେ
ଅସଂଖ୍ୟ ହୋଇ ଆସୁଅଛନ୍ତି ଅତି ହରଷେ ଯେ । ୫
କେଉଁ ହସ୍ତୀକ ମୋତି ଝାଲର ମାନରୁ କାହାମୁଣ୍ଡେ ସିନ୍ଦୂର
ଘଣ୍ଟି ଘାଗୁଡ଼ି କାହାର ଯୋଉହସ୍ତ ବଚନ ଯେ ।
ପ୍ରବଳ ଭୃଙ୍ଗ କେଉଁ ମାତଙ୍ଗ ରଙ୍ଗ ସକଳେ ସାଜିଛି ଅଙ୍ଗ
ସ୍ଥଳ କି ତାର ଗଙ୍ଗା ତରଙ୍ଗ ଯୋଖିବା ମାତ୍ର ସେ ।

କେଉଁ ଗଜଗ୍ରଜର ବସନ୍ତ ସଜ ଯେ,
ପକ୍ଷ ଭୂଷଣେ ଅତି ତୋଷ କା ତେଜ ଯେ ।
ତାହାଙ୍କ ମତ୍ତ ଗଣ୍ଡରୁ ଜଳ ବସ୍ତୁର ହୋଏ ନଷ୍ଟେ ବଇଳ
କୁଳକମଳ ବନକୁ ଦଳ ଦେବେ ଏ ଅଜ ଯେ । ୬
ବରଷା କାଳ ନଦୀ ପରାଇ ବାଟେ ଅବାଟେ ଗଲେ ସେ ବଢ଼ି
ଦଶ କୋଣରେ ରହିଲ ନାହିଁ ତରୁତୃଣହିଁ ଯେ ।
ଚଳନ୍ତେ ତାଙ୍କ ଚରଣ ଘାତେ ମହୀ ସମାନ ହେଲେ ଧଦ୍ଦତେ
ପିଇ ପିବାରେ ଶୁଖିଲେ କେତେ ପୋଖରୀ ନଈ ଯେ ।
ପଥର ହିଁ ରହିଲ ନାହିଁ ପଥରେ ଯେ,
କାହା ଧୃତ ରହିବ ଅବା ଏଥିରେ ଯେ ।
ଧୂମାନ୍ତ କର ମୂଳକ ଯାକ ଧନ କାଞ୍ଚନ ଲୁଟି ଅନେକ
ଯାଉଁ ପଡ଼ିଲେ ଷାଠିଏବାଟି ଜଳ ଭିତରେ ଯେ । ୭
(ସମର ତରଙ୍ଗ—୨ୟ ଛାନ୍ଦ)

## ନ ଛାଡ଼ିବା କିଲ୍ଲା

ରାଗ—ଆଷାଢ଼ ଶୁକ୍ଳ

ଶୁଣି କହନ୍ତି ବୋବେ ନରସାଇଁ । ଏତେ କଥା କର୍ଷା କହ ଯୋଡ଼ାଇ ।
ସମସ୍ତେ କହୁଛ ପଳାଇ ଯିବା । କେହି ତ କହିଲ ନାହିଁ ରହିବା ।
ମୁଁ ନ ଯିବି ଛାଡ଼ି । ଭଲ କେମନ୍ତେ ମୋତେ ଦେବେ ତଡ଼ି । ୧
ହତିଆର ବାନ୍ଧିଥିବା ଲୋକର । ମରିବାକୁ ଯେବେ ହୋଇବ ଡର ।
ହତିଆର ଛାଡ଼ି ଷେତ କମାଉ । ତେବେ ତାହାକୁ କହିବା କେ ଆଉ ।
ନର୍ଲ୍ଲଜ ଖାଇବା । କ୍ଷତ୍ରିଙ୍କ ଶୋଭା ରଣେ ପ୍ରାଣଦେବା । ୨
ଭୀମ ଅର୍ଜ୍ଜୁନ ଦ୍ରୋଣ କର୍ଣ୍ଣବୀର । ତାହିଁ ଅଛନ୍ତି ଯେବେ ଶରୀର
ଯଶ ମାତ୍ରକ ଯାଇଅଛି ରହି । ନା-ମରଦକୁ କେ ଭୁଣ୍ଡେ ବସାଇ
ଏହା ନ ଯେନିଲ । ଗଡ଼ ଛାଡ଼ ଛାଡ଼ ସମସ୍ତ ବୋଲ । ୩
କାହାର ପୃଥ୍ୱୀ କେ ସଙ୍ଗରେ ନେବ । ଯଶ ଅପଯଶ ଦୁଇ ରହିବ ।
ଯେତେ ରାଜା ଗଲେ ପୃଥ୍ୱୀ ନ ଯାଇ । ଦୁଇ କଥାରେ ନାମ ରହୁ ଥାଇଁ ।

ଦାତା ଶୂରପଣ । ଏ ବନେ ଆଉ ନାମ ନୋହେ ଜାଣ । ୪
ଦେଖ ହୋଇଅଛୁ କେତେ ମଉଜ । ଲଡି ରଖିଥାଇ ଏତେ ଫଉଜ ।
ଜମର ବାନ୍ଧ ଥାଇଁ ବନଗ୍ରାମ । । ଏଥୁଁ କି ବଡ ବାସବ ସମ୍ପତ୍ତି ।
ଗ୍ରାଠ ଉଠେ ଫୁଲ । କେମନ୍ତେ ବୋଲି ଗଡ଼ ଗୁଡ଼ ବୋଲି । ୫
ଫଉଜ ଭିତରେ ଘୋଡ଼ା ପକାଇ । ମାରେ ବରଛା ନିର୍ଭୟ ହୋଇ ।
ସଙ୍ଗୀ ପଗ୍ୱସ୍ୱେ ପଣି ଝାସିଯିବ । ଫେରି ଅଇଲେ ତ ସକଳ ଲାଭ ।
ନୋହିଲେ ସେ ମଲେ । ବାସବ ସଙ୍ଗେ ସେ ବସିବ ଭଲେ । ୬
ହାତ ଉଠାଇ ଯେ ମରିବ ଯାଇ । ତାହାକୁ ମାତ୍ର ସ୍ନେହ ପଶ୍ଚାତ୍ତର ।
ରଣେ ଯା ଅଙ୍ଗ ହୋଏ ଚେନା ଚେନା । ତ ହାର ଜୀବନ ସୁଫଳ ସିନା ।
ଯେ ନିପତ ହୋଏ । ପୁରୁଷ ହେଲେ ଯେ ଯୁବତୀ ପ୍ରାୟେ । ୭
ବୋଳ ଅଙ୍ଗରେ କର୍ପୂର ଚନ୍ଦନ । ମଣ୍ଡି ହୋଇଥିବ ହେମ ରତନ ।
ଘରେ ଥିବ ଶାନ୍ତିପଠ ସମ୍ପତ୍ତି । ରକତ ଦେଖି ବୁଲୁଛି ଯା ଗ୍ରାଠ ।
ସେ ମନୁଷ୍ୟ ସ୍ୱାନ । ଭୋଗ ନୁହେଁ ସେ ତା ରୋଗ ସମାନ । ୮
କାହିଁକି କଲ୍ପା ବଳେ ଏଥ ଥିବା । ଗୃହ ଚାଲିଖଣ୍ଡା ହୋଇ ମିଶିବା ।
ହରି ବୋଲି ଝାସୁଁ ଯେ ହେବ ହେଉ । ଏତେ ବନ୍ଧୁରରେ କି ଫଳ ଆଉ ।
ଏହୁ କଥା ମୂଳ । କେ ସହବ ବରଗୀଙ୍କ ଜଞ୍ଜାଳ । ୯
ଲେଡ଼ର ଗୁଡ଼ ଚକ୍ରୁଣିକ ଗଲେ । କେମନ୍ତ ଘଟଣ ହୁଅଇ ଭଲେ ।
ଜଉ ସାଟେଣି ଗୁଣ ଗଲେ ଚୂଡ଼ । ହାତକୁ ଆସଇ କି ଯେବେ ଲେଡ଼ ।
ବରଗୀ କପଟ । ଜାଣି ନାହିଁ ତାଙ୍କ ହୃଦର ନଟ । ୧୦
ତାଙ୍କ ସ୍ୱଭାବରେ ଗଡ଼ ଗ୍ରାଡ଼ିଯିବା । ସ୍ୱୈରଙ୍କ ପରି ଅରଣ୍ୟେ ବୁଲିବା ।
ତହିଁ ଉତ୍ତାରୁ ଗଡ଼ କରି ପତେ । ବୋଲିବ ଟଙ୍କା ବୁଝିଦିଅ ମୋତେ ।
ତେତେବେଳେ ତହିଁ । କରୁଛି ଏହା ନ କହ କପାଇଁ । ୧୧
ପଣ ଅଳ୍ପ ତ ବାଲି ହୋଇଥିବ । ହାତ ଗୁଣ୍ଡାରେ ସେ ପୁଣି ପଶିବ ।
ତେତେବେଳେ ମନେ ପଡ଼ିବ ସିନା । ଯେ ହେବ ଏତେବେଳେ ହେଉକନା ।
ନ ଗ୍ରାଡ଼ିବା କଲ୍ପା । କଥା ତ ରହିଯିବ ଭଲଭଲ । ୧୨

(ସମର ତରଙ୍ଗ—୫ମ ଛାନ୍ଦ)

## ଯାଗ ମଣ୍ଡପେ ଦ୍ୱିଜ

ଅଇଲେ ଦୂରଦେଶୁ ଭୂସୁରମାନେ ଅର୍ଜବେ ଧନ
ଅଟେ କେ ସାମବେଦେ ଆଗମ ଶାସ୍ତ୍ରେ କେ ବଦ୍ୟମାନ । ୧
ଅପରେ ଯଜୁର୍ବେଦରେ ବଦୂଷ କେ ଋଗ୍‌ବେଦବେତ୍ତା ।
ଅଥର୍ବ ବେଦରେ କେ କୋବଦ କେ ସର୍ବଶାସ୍ତ୍ରେଜ୍ଞାତା । ୨
ଅଷ୍ଟବଢଣ ମନ୍ତ୍ରେ କା ଯଣ ବୈୟାକରଣ କେନ୍ଥ
ଅଟେ କେ ଯନ୍ତ୍ରମନ୍ତ୍ରାଦ ତନ୍ତ୍ର କାର୍ଯ୍ୟେ ପ୍ରଧାନ ତହିଁ । ୩
ଅର୍କ ପ୍ରକାରେ ତର୍କ ଶାସ୍ତ୍ରରେ ଅଟେ କେ ଦୀପ୍ତତର
ଅତ ପ୍ରବଳେ କେ ପାତଞ୍ଜଳେ କେହୁ ବେଦାନ୍ତେ ବର । ୪
ଅଶ୍ୱମେଧାଦ ଯାଗେ କା ସିଦ୍ଧି ମୀମାଂସା ଶାସ୍ତ୍ରେ ମାନ
ଅଛୁ କା ଖ୍ୟାତ ସାଂଖ୍ୟରେ ଅତ କେ ବୈଶେଷିକେ ଜ୍ଞାନୀ । ୫
ଅଳଙ୍କାରକ କାବ୍ୟ ନାଟକ ଧୀର କେ କବବର
ଅଷ୍ଟମଦଶ ପୁରାଣେ ବ୍ୟାସ ପର କେ ଧୂରନ୍ଧର । ୬
ଅଙ୍କ କେ ବପ୍ର ହେଲେହେଁ ଅପମିତ ପ୍ରସଙ୍ଗ ଜାଣେ
ଅଙ୍ଗେ କେ ମୋଟ ଅନ୍ତଲପେଟ ରୂପରେ ଲେଖା ଜଣେ । ୭
ଅଠର ପାଅ ଉଚ କା ବାହା ବୃଷାଳ ଟେକ ଗ୍ରୀବ
ଅଳକେ ଚତା ଦବ୍ୟ ପଇତା ଯେନ ସେ ପୂଜ୍ୟ ଅତ । ୮
ଅଂଶେ କୁଳୀନ ବେଶେ ମଳନ ହେଲେ ସେ ବଦ୍ୟମାନେ
ଅଗ୍ରେ ପୂଜ୍ୟ ହୋଇଲେ ଦ୍ୱିଜ ଅଇଲେ ସୁଖାସନେ । ୯
ଅଇଲ୍ଲ ରଙ୍ଗ ଅଧରେ ନାଗବଲ୍ଲୀ ବଡ଼ା କେ ଖାଇ
ଅଣ୍ଟାରେ ଝୁଲ ଭଙ୍ଗ କେ ଫୁଲ୍ଲ ଗୁଲଚ ଦୋହଲାଇ । ୧୦
ଅନଷରବୁ କେ ବପ୍ର ଦୂରୁ ହୁଅଇ ଟେର ଟେର
ଅଙ୍କମଣ୍ଡଳୀ ଖୋଜ ସେ ମିଲ ସ୍ନେହାନୁପରସ୍ପର । ୧୧
ଅନେକ ମତେ ବପ୍ରେ ଏମନ୍ତେ ପ୍ରବେଶ ହେଲେ ଆସି
ଅବକଳନା କରନ୍ତେ ଲକ୍ଷେ ହେଲେ ସେ ସର୍ବ ମିଶି । ୧୨

(ଅମ୍ବିକା ବିଳାସ—୩ୟ ଛାନ୍ଦ)

# ଅଭିମନ୍ୟୁ ସାମନ୍ତସିଂହାର

(ଅଷ୍ଟାଦଶ—ଊନବିଂଶ ଶତାବ୍ଦୀ)

## ଭଙ୍ଗୀ

ରାଗ—ରସ କୋଇଲି

କୃଷ୍ଣ ପଞ୍ଚଗଣ୍ଡ କାଳ ଅନ୍ତରେ । ନବ କିଶୋର ବୟସ ଆଗତରେ ।
ଶୋଭା ବିଚେଷ୍ଟା ବାହାର ଭିତରେ । ବ୍ୟାପ୍ତ ବନ୍ତ ହେଲେ ସ୍ଥାନ ଅନ୍ତରେ ସେ ।
ଯେସନ ଧୀବନ୍ତେ ଚିତ୍ତରେ ହେ ।
କ୍ରମେ କ୍ରମେ ତନୁ ତନୁ ଅନୁଆନ ସ୍ୱାଦ ଖ୍ୟାତ ଅଦ୍ଭୁତରେ ସେ । ୧
ବାଲକାଳ-ସ୍ୱାଦ କ୍ରମେ ହଟିଲା । ବାଲକ ସଙ୍ଗରୁ ମତ ତୁଟିଲା ।
ସମବୟ୍ସା ସଖା ପ୍ରୀତ ଘଟିଲା । ସ୍ୱରୂପ କଥାମାନ ପ୍ରକଟିଲା ସେ ।
କାମ ଚେଷ୍ଟା ଚହଟିଲା ସେ ।
ପତିବ୍ରତା-ମତି-ଧୃତି-ସମ୍ପତ୍ତିକି ସମୂଳ କରି ଲୁଟିଲା ସେ । ୨ ।
ସ୍ନେହ ବଳିଲା ତନୁ ଯତନରେ । ଭୂଷା ମଣ୍ଡନ ହେଲେ ରତନରେ ।
ଚୂଡ଼ା ସଜଡ଼ା ଦିବ୍ୟ ସୁମନରେ । ରସିଲେ ରଙ୍ଗ ପୀତବସନରେ ସେ ।
ମନ ପାନ—ଚନ୍ଦନରେ ସେ ।
ସଙ୍ଗୀ ସଙ୍ଗରେ ସଙ୍ଗୀତ ପ୍ରସଙ୍ଗରେ ଲୋଭ ଜାତ ସୁମନରେ ସେ । ୩
ନବ ଯୁବତୀ—ପ୍ରେମ ଲମ୍ପଟରେ । ଗ୍ରନ୍ଥ ଫଳାଇ ସ୍ୱଳନ୍ତି ବାଟରେ ।
କାହା ମନକୁ ହରନ୍ତି ନାଟରେ । କଣ୍ଠର ବୋଲନ୍ତି କାହା ଲାଟରେ ସେ ।
ଜଗନ୍ତି ଜଳ ଘାଟରେ ସେ ।
ସୁନ୍ଦର ପୁରନ୍ଦର ଦନ ହରନ୍ତି ଆକଟରୁ କପଟରେ ସେ । ୪
ଭଙ୍ଗୀ ବିଶେଷରେ କୃଷ୍ଣ ଗଣ୍ଡିଆ । କାହା କଟିସ୍ଥିତ ଦେଖି ମାଠିଆ
ବୋଲନ୍ତି ବନ୍ଧୁ ମୁଁ ତୋହୋ ବେଠିଆ । ପାଣି ଅଣିବାକୁ ମୋତେ ପଠିଆ ।
ଶୁଣି ଗୋପୀ ହୋଇ ଠିଆ ସେ ।
ହସିଲା, ଲସିଲା, ବଢ଼ିଲାକୁ କାହ୍ନୁ ଦେଲୁ ଏତେ ଅପାଠିଆରେ । ୫

(ଭଙ୍ଗୀଛନ୍ଦ)

କେ ତହିଁ ବୋଲେ କଣ ଆଜଟକୁ । ଜାଣି ନାହିଁ କି ଏ କଂସ ଘଟକୁ ।
କେ ବୋଲେ ବୁଝିବା ଭାଲ ନାଟକୁ । ଖୁଆଇବ ମାତା ହାତେ ଗ୍ରଟକୁ ସେ ।
କେ ବୋଲେ ନନ୍ଦ ସ୍ୱଟକୁ ସେ ।
ମୂର୍ଚ୍ଛିଲେ ଏ ଗୋପେ କେଉଁ ଗୋପୀ ପ୍ରାଣୀ ରଖି ପାରିବ ଘଟକୁ ସେ । ୬

(ଔଦାର୍ଯ୍ୟ ଭଙ୍ଗୀ)

କେ ବୋଲେ କି କହୁଛ ଏ ବଟକୁ । ମୁହଁ ନ ଲଗାଅ ଦେହ ଧ୍ୱଟକୁ ।
ଭଲ ବୁଝିଛ କି ଏହି ଝଣ୍ଟକୁ । ଜାଣି ନାହଁ ତ ତାହା କପଟକୁ ସେ ।
ନେଲା ପୂତନା ଘଟକୁ ସେ ।
ନାଗ ନାଶିବାକୁ ଆସିଛୁ ମସ୍ତାଳ ବାନ୍ଧ ସେଣ୍ଟା ମୁକୁଟକୁ ସେ । ୭
କରରେ ଦେଇ କର ପଇଠିକ । କହୁଛନ୍ତ କାହ୍ନୁ କଉଁ ପେଣ୍ଠୀକ
ରୁ ମୋର ସମାନ ହୁଦ କଣ୍ଟିକ । ମନେ ନ ରଖିବୁ କଥା ଗଣ୍ଠିକ ସେ ।
ମୋର ଜାନୁ ବଇଠିକ ସେ ।
ଦେଲ ବଜେ କର, ସନ୍ଧାଦେବ, ମୋର ନ ଢଅ ଲଜେ ପିଠିକ ସେ । ୮

(ସ୍ନେହଭଙ୍ଗୀ)

କଉଁ ଗୋପୀ କହେ ମୁଖ ହଲାଇ । କି କହୁଛୁ କାନ୍ଥୁ ଗ୍ରଢ଼ ଫୁଲାଇ
ବଡ଼ପଣ ଦେବୁ ସିନା ଭୁଲାଇ । ତନୁ ଦାନ ମାଗୁ ନେଇ ବୁଲାଇ ସେ ।
ମଲେ ତ ଆମ୍ଭେ ମଲୁଁ ହେ ।
ଜୀବ ଥିଲେ ଦେଖାସିବ ଗୋପୀ ପାଦ ମୂଢରେ ନେବେ ମୁଲାଇ ସେ । ୯

(ଗର୍ବଭଙ୍ଗୀ)

କେ କହଇ ହର ତୋର ନଡ଼ାଇ । ରାଜା ଆଗେ କହ ଦେବୁ ଛଡ଼ାଇ ।
ନନ୍ଦର ସମ୍ପତ୍ତି ଦେବୁ ଉଡ଼ାଇ । ଦେବୁ ଗର୍ବେଶ୍ୱର ପଣ ବୁଡ଼ାଇ ସେ ।
ମନ୍ଦର ଦେବୁ ଉଡ଼ାଇ ସେ ।
ଏଡ଼େ ଗରବ ଗୋପୀଙ୍କି ଘାଟ ମାଗୁ ନନ୍ଦର ଗୋରୁ ଅଡ଼ାଇ ସେ । ୧୦

(ଭର୍ତ୍ସନା ଭଙ୍ଗୀ)

ସେବେ ପରାଣ ଥିବ ଏ ପିଣ୍ଡରେ । ଆଉ ଦନେ ନ ସିବୁ ଏ ଦାଣ୍ଡରେ ।

କଉଁ ପ୍ରୟୋଜନ ଏତେ ଦଣ୍ଡରେ । ଷୂଲ ଗୋ ବାହୁଡ ଯିବା ଷଣ୍ଡରେ ସେ
ମାଉଛୁ ଫୁଲ କାଣ୍ଡରେ ଗୋ ।
ଚଣ୍ଡ ହୋଇ ଦେଖ ବଖଣ୍ଡ କହୁଛୁ ମଧୁର ନାହିଁ ତୁଣ୍ଡରେ ଗୋ । ୧୧
ବସନ୍ତ ଭଙ୍ଗୀ)
କୃଷ୍ଣ କହନ୍ତ ଯେ କର ତର୍ଜନା । ଏ ରୂପେ କେହୁ ଯେ ଅଛୁ ଗର୍ଜନା ।
କୂଟ କପଟ ବଚନ ସର୍ଜନା । ଆପଣା ଇଚ୍ଛାରେ ଦଣ୍ଡ ଅର୍ଜନା ସେ
ମାନ ମହୁତ ବର୍ଜନା ଗୋ ।
ଅନ୍ୟାୟ କାହାର, ମାର ନୃପବର ଗ୍ରାମୂରେ ହୁଅ ମାର୍ଜନା ଗୋ । ୧୨ ।
ପରଷ୍ପରେ ଏହୁ ରୂପେ କହୁଲେ । ହସି ଗୋପୀ ବକ୍ର ନେତ୍ରେ ଚାହିଁଲେ
ଜଗତମୋହନ ମନ ମୋହୁଲେ । ଗୋପୀଙ୍କ ହୃଦରେ କୃଷ୍ଣ ରହୁଲେ ସେ ।
ପ୍ରୀତ ଆରମ୍ଭ ପହୁଲେ ସେ ।
ଭାବ ସନ୍ଧାନ ବଧାନ ବରଧନ ମାନସେ ଜାଗି ରହୁଲେ ସେ । ୧୩ ।
କେବେ କୃଷ୍ଣ କାହା ପୂରେ ପଶନ୍ତ । କେବେ ଗୋପୀ କଇଁଠାକୁ ଆସନ୍ତ ।
କେ କାହାଠାକୁ ଯେ ଦୂତ ପେଷନ୍ତ । କେ କାହାର ଗୁଣଗଣ ଘୋଷନ୍ତ ସେ ।
କେ କଣ୍ଠ ଜଗି ବସନ୍ତ ସେ ।
ଆସନ୍ତ, ରସନ୍ତ, ମିଶନ୍ତ, ଭାଷନ୍ତ, ହସନ୍ତ, ରଙ୍ଗେ ଭାସନ୍ତ, ସେ । ୧୪ ।

(ବିଦଗ୍ଧ ଚିନ୍ତାମଣି—୩୨ ଛାନ୍ଦ)

# କିଶୋରୀ ଶୋଭା

## ବାଣୀ—ରସବୋଇଲ

ବରଜବନ୍ଧୁ ହେ ପସ୍ତର ଯାହା । ବଶ୍ୱ ମଧ୍ୟରେ କେ କହିବ ତାହା ।
ବର୍ଣ୍ଣିବା ପାଇଁ କି ଯା ଶୋଭା ଗୁଣ । ବଶ୍ୱସୃଜ ସୃଶମୁଖ ଘଟଣ ଯେ ।
ବାମଦେବ ପଞ୍ଚାନନ ଯେ ।
ବାହୁଲେୟ ଭ୍ରୂ ଆନନେ ସାସ୍ୱନ କରୁଛନ୍ତି ପ୍ରତଦନ ଯେ । ୧ ।
ବଶେଷ ବଦନ ଶେଷ ହୋଇଲେ । ବଶ୍ୱମୋହ୍ନା ଗୁଣ ବର୍ଣ୍ଣିମା ଛଳେ
ବଦନେ ଉର୍ଦ୍ଧ୍ୱ ହେଲ ଜଳାସ୍ପୃତି । ବର୍ଦ୍ଧନେ ଲେଭେ ଦ୍ୱିଜହ୍ୱ ହେଲେ ତ ସେ ।
ବଣ ଶୋଭା ଗୁଣେ ହୋଇ ଯେ ।
ବସୃଣ ଚକ୍ଷୁଶ୍ରବ ହୋଇଗଲେ ସେ ସୁଖ ଆସ୍ୱାଦନ ପାଇଁ ଯେ । ୨ ।
ବନାସ୍ୱକ ବଜ ଭୃଣ୍ଡ ହୋଇଲେ । ବଷ୍ଠ ଲବ ବର୍ଣ୍ଣ ନ ପାରିଲେ ।
ବସୃଣ ନବ ଏକ ଦୃଷ୍ଟି ହେଲେ । ବାଚସ୍ପତି ଗଣା ଗଣକେ ଗଲେ ସେ ।
ବଶ୍ରମ୍ଭେ ସାରଦା ମନେ ଯେ ।
ବାଣୀ ସ୍ୱରୂପ ହେଲେ ନନ୍ଦାବଚନ ପାଇ ଅଖିଳ ବଦନେ ଯେ । ୩ ।
ବହୁଭ ରୂପ ଧଇଲେ ଗନ୍ଧର୍ବ । ବଳ ନ ପାଇ ସୁଷମାରେ ହାଵ ।
ବଧୂଶେଖର-ଶରୀରେ ଲୁଚଲେ । ବଳ ଧବଳ ଅଙ୍ଗୀ ହ୍ୱବ ଗଲେ ସେ ।
ବ୍ରୀଡ଼ା ପାଇ ଅଷ୍ଟନଧି ଯେ,
ବନଜ ଦର ଆଦିରୂପ ଧରି ତ ରହିଲେ ପଦ ଆଶ୍ରୟ ଯେ । ୪ ।
ବଷ୍ଣୁ ପ୍ରାଣପ୍ରିୟାଣୀ ସପତ୍ନୀ ଡରେ । ବାସ କଲେ ଗୁଣୀମଣି ଅଙ୍ଗରେ ।
ବଡ଼ କେ ଆଉ ବ୍ରହ୍ମାଣ୍ଡ ମଣ୍ଡଳେ । ବଲକ୍ଷ ହେବ ସେ ଶୋଭାକୁ ଛଳେ ସେ ।
ବାସବ ଦେଖି ଜ୍ୱଳଲେ ଯେ ।
ବଜ୍ଞ ଜନଙ୍କର କୋଧନ୍ଧି ସେ ବର ଗନ୍ଧତମ ଭଳ କଲେ ଯେ । ୫ ।
ବଳକ୍ଷ ହେବାକୁ ନାହିଁ ତ ସ୍ଥାନ । ବୋଲିବା କି ପ୍ରତବମ୍ବ ସମାନ
ବଚେଷ୍ଟା ପରଭନ୍ଦେ ତ ବୋଲିବା । ବାତୁଳ ହେଲେ ବା ଭୂଳ କରିବା ସେ
ବର୍ଣ୍ଣ ବସିଲେ ତା ଗୁଣ ଯେ,
ବାଇ—ବଦନେ ବ୍ୟାକରଣ ପଢ଼ିଲେ ହୁଅଇ କସ ଲକ୍ଷଣ ଯେ । ୬ ।

(ବଦଗ୍ଧ ଚନ୍ତାମଣି—୨୭ଶ ଛାନ୍ଦ)

# ଶରତ ସନ୍ଧ୍ୟା

(ରାଗ—ଶ୍ଳେଷି)

ଏ ହସ୍ତରୁ ସୁବିଦୂଷ ସାବଧାନେ ଯେନ ରସ
ନଶିମୁଖ ଅଗମନ ଦବସ ଶେଷ ;
ବାରୁଣୀ ବଳାସୀ ରବ ପୂର୍ବେ ଉଦେ ଶଶିଛବ
ରଙ୍ଗିମା ଶୁକ୍ଳିମା ମନୋହର ପ୍ରକାଶ ।
ସହଜରେ ଶରଦ କାଳ ।  ଓଷ୍ଠରୁ ମୁଖ ଜାତ ତଥି ପିଣ୍ଡି ମଞ୍ଜୁଳ । ୧ ।
ବମ୍ବର କ ପଦ୍ମଯୋନ ସୁଧା ଅନୁରାଗ ଯେନ
ବର୍ଣ୍ଣ ତୁଳନାରେ ତୁଳ କଳନା କରେ ;
ହସ୍ତାପ ସ୍ୱପ ଝଟିଲ ଗରୁଆ ତଳକୁ ଗଲ
ଉଚ୍ଚ ନୀଚ ନୀଚ ଉଚ୍ଚ ଜଣା ଅଧରେ ।
ସୁଧା ଅନୁରାଗ ସଙ୍ଗତେ ।  ସବୁ ତର ବୋଲି ପାରିବ କେ କେମନ୍ତେ । ୨ ।
ତାତ ସିନ୍ଧି କି ବଳବ ବିମ୍ବର କି କାମଦେବ
ମାଣିକ୍ୟ ସ୍ତରି ଥୋଇ ପେଷି ଦେଇଛୁ ;
ବିଯୋଗୀ ସୁଖ-ଦୁଃଖଦ ସଂଯୋଗୀ ସୁଖ-ଦୁଃଖଦ
ପରସ୍ପରେ ବିରୋଧାଭାସକୁ କରୁଛୁ ।
ତମ ନାଶନେ ତ ପ୍ରୟୋଗ ।  ତମେ ପଶେ, ତମୁଁ ଆସେ, ଏକ ସଂଯୋଗ । ୩ ।
ଦନ୍ତଦନ୍ତ-ସମୁଦ୍‌ଗନ ପ୍ରବାଳ ଛାକ୍ରଣୀ ଟେକ
ଦଶ ବଣିକ କି ଫେଣ୍ଡି ଭିନ୍ନେ ଥୋଇଛୁ ;
ପର ପର ପର ମୋତି ଗୋଟି ଗୋଟିକେ ଗଣନ୍ତ
କରୁଛୁ ପଦ୍ମ ଅମ୍ବରେ ପ୍ରତେ ହେଉଛୁ ।
ସ୍ଥାନଚ୍ଛିତ ନୀଳେନ୍ଦ୍ର ମଣି ।  ଗୋଟିକେ କି ଭ୍ରମ ସ୍ୱଳେ କି ହେବ ଗଣି । ୪ ।
ଦିନକୁ କଲେ ବିନାଶ ବାରୁଣୀରେ ହେଲେ ବଶ
ଦ୍ୱିମଣି ଦ୍ୱିଦୋଷ ହତେ ସିନ୍ଧୁ ମଜ୍ଜନ ;
ଦିନ ତାପ ବିନାଶନ ତମସ କୂଳ ଖଣ୍ଡନ
ପୂର୍ଣ୍ଣ୍ୟରୁ ମାନ ପାଇଲେ ବଧୂ ବଦନ ।

କରକାନ୍ତି ଘୋଟିଲା ମଞ୍ଚ । ରଜତ ସୃଷ୍ଟି ସର୍ଜକ ହେଲା କି ଚନ୍ଦ୍ର । ୫ ।
ଶିବାଙ୍କୁ ହୋଇଲେ ଶ୍ରମ ଅଛନ୍ତି ନାହାନ୍ତି ଭ୍ରମ
ଶ୍ରମ ଗଙ୍ଗାଙ୍କୁ ଲୋଡ଼ିଲେ ଜଟା ଫିଟାଇ ;
କୁସୁମବନ୍ତୀ ବ୍ରତତୀ ଅଦୃଷ୍ଟ ରଜାର ସାଥ
ମୋଠ ହାରବନ୍ତୀ ମଠ ଚନ୍ଦ୍ରାବୁ ପାଇ ।
ଭ୍ରମରେ ଭ୍ରମରେ ଭ୍ରମନ୍ତି । ମଧୁପ ପରସ୍ପେ କୁମୁଦନୀ ଲୋଡ଼ନ୍ତି । ୬ ।
(ବଦରଧ ଚନ୍ଦ୍ରାମଣି—୩୦ଣ ଗ୍ରନ୍ଥ)

## ରାଧା ଧର ସଖୀକର

ରାଗ—ପୁର୍ବୀ (ଫୁଲଠାର ବାଣୀ)

ରାଧା ଧର ସଖୀକର । ବୋଲନ୍ତି ଆକଟ ଆଉ ନ କର । ଗୋ ।
ଲଜ୍ଜାଭୟ ଛାଡ଼ିଲି ନକର । ସଜନ ଗୋ । ୧ ।
ଘନଶ୍ୟାମ ସୁନ୍ଦମାନ । ରଖିଅଛୁ କି ମୋ ଧୈର୍ଯ୍ୟ ଗୁମାନ । ଗୋ ।
ମନ ଦହୁଛୁ ତା ସନମାନ । ସଜନ ଗୋ । ୨ ।
ରୂଛ ମୋହବା ମୁନଙ୍କି । ତାଙ୍କୁ ପ୍ରୀତପଣେ ଯୋଗ୍ୟ ମୁଁ ନକି । ଗୋ ।
ଅଲଙ୍କାର ସେ ତ ଅବନୀର । ସଜନ ଗୋ । ୩ ।
ଶୁଣି ତାଙ୍କ କଥା ପଦେ । ରମା ଉମା ପ୍ରାଣ ବଳାଇବେ ପଦେ । ଗୋ ।
ଶଚୀ ନ ରହିବେ ଇନ୍ଦ୍ରପଦେ । ସଜନ ଗୋ । ୪ ।

* * *

ଗଢ଼ କରନ୍ତେ ପଥରେ । ଦ୍ରବ ହୋଇ ବହିଯିବେ ପଥରେ । ଗୋ ।
ନ ଭୁଲିବ ଜେ ମନମଥରେ । ସଜନ ଗୋ । ୫ ।
କେବଳ ନେତ୍ର ପଥରେ । ପଡ଼ିଗଲା ବାଙ୍କଚୂଳିଆ ଥରେ । ଗୋ ।
ଆଜଯାଏ ମୋ ହୃଦୟ ଥରେ । ସଜନ ଗୋ । ୬ ।

ଦନ୍ତ ବଳଲେ ପବକ । ଆଣି ରଖିବ କେ ଗୁନ୍ଥି ଛବକ । ଗୋ ।
ମୁଁ ତ ପାରଲିନ ମାନ ବନ୍ଧ । ସଜନ ଗୋ । ୭ ।
ନାହିଁ ପୂର୍ବେ ପୁଣ୍ୟ କର । ପୁମନେ ମନାଇଁ ନାହିଁ ଶଙ୍କସ ଗୋ ।
ହେବ ନ କର ତାଙ୍କ କଙ୍କସ । ସଜନ ଗୋ । ୮ ।
ଗୁନ୍ଥି ମୁଖ ଦରପଣେ । ବସ୍ତୁରଇ ହେଲେ ମୋ ପର ପଣେ ଗୋ ।
ଶୋଭା ନ ବଣିବେ ଦାସୀ ପଣେ । ସଜନ ଗୋ । ୯ ।
ମୁରଲୀ ମୁଖ ସୁନ୍ଦର । ତୋଳା ଖେଳାଇବା ଭଙ୍ଗୀ ସୁନ୍ଦର । ଗୋ ।
ଜାତ ସ୍ଥଳ ସେ ତ ଆନନ୍ଦର । ସଜନ ଗୋ । ୧୦ ।
ସ୍ମିତ ରଙ୍ଗିମା ଅଧରେ । ତ୍ରିଭଙ୍ଗି ଛନ୍ଦରେ ମୁରଲୀ ଧରେ । ଗୋ ।
ନାହିଁ ସେ ଶୋଭା ଅଧଉର୍ଦ୍ଧ୍ୱରେ । ସଜନ ଗୋ ୧୧ ।
ଅଳକାବୃତ ଲପନ । ବେଳେ ବେଳେ କରଇ କମ୍ପନ । ଗୋ ।
ଦେଖି ନ ଦେଖିବ କେ ସ୍ୱପନ । ସଜନ ଗୋ । ୧୨ ।
ମକର କୁଣ୍ଡଳ ଗଣ୍ଡ । ଶ୍ରୁତିରେ ଅଗମ୍ୟ ଶ୍ରୁତି ସଙ୍ଗଣ୍ଡ । ଗୋ ।
ଦେଖି ନେତ୍ର ପାଇ ଯାଏ ଗଣ୍ଡ । ସଜନ ଗୋ । ୧୩ ।
ଗୁଞ୍ଜା ଗୁଞ୍ଜର ଖଞ୍ଜିତ । ଗୋଟା ମଲ୍ଲୀ ବେଢ଼ା ଚୂଡ଼ା ରଞ୍ଜିତ ଗୋ ।
କେକୀ ପିଚ୍ଛ ଚନ୍ଦ୍ରି ବସ୍ତ୍ରଜତ । ସଜନ ଗୋ । ୧୪ ।
ଜାମୁଡ଼ାଳ ଖୋଷିବାର । କଅଁ ପଣୀ ବେଢ଼ ଚନ୍ଦ୍ରି ଦେବାର ଗୋ ।
ଦନ୍ତ ନାଶନ ସେ ତ ସୁନ୍ଦାର । ସଜନ ଗୋ । ୧୫ ।

(ବାଦଗ୍ରଧ ଚନ୍ଦ୍ରାମଣି—୪୮ଶ ଛାନ୍ଦ)

# କି ଜାତି ପଦାର୍ଥ କାହୁଁ ଏ ଅଇଲା

(ରାଗ ବସନ୍ତ—ଆଷାଢ଼ ଶୁକ୍ଳ ବାଣୀରେ)

ଧୀର-ଚନ୍ଦ-ବୃନ୍ଦ-ପଦ୍ମ-ମିହିର । ରସିକ-ରସ-ରଞ୍ଜନ-ଭଣ୍ଡାର ।
ସାଧକ-ପ୍ରେମ-ବଣିକ-ପସରା । କାମି-କାମଦା ଚିନ୍ତାମଣି ପରା ।
ଏ ଛାନ୍ଦ ଗାରିମା ଗୋ । ପ୍ରୀତି ଆନନ୍ଦ-ସିନ୍ଧୁରୁ ଚନ୍ଦ୍ରମା । ୧ ।
ନ ଲଭିବାରୁ ଗୋବିନ୍ଦ ପୀରତି । ଅଧୀରେ ଧୀରା ରଞ୍ଜନ ଆରତି ।
କହନ୍ତି ଧରି ବିଶାଖାଙ୍କ ହାଥ । କହ ପୀରତି କି ଜାତି ପଦାର୍ଥ ।
କାହୁଁ ଏ ଅଇଲା ଗୋ । କହିଁ ଉଦ୍ଭବ ଏହା ଭୁଅଇଲା । ୨ ।
କହେ ସଖୀ ଶୁଣ କିଶୋରୀ ମଣି । ବିଧି ରଚନା କି ପୀରତି ପୁଣି ।
ଅବ୍ୟୟ ଅକ୍ଷୟ ନିତ୍ୟ ପଦାର୍ଥ । କେ ଜାଣିବ ପ୍ରୀତି ଶବଦ ଅର୍ଥ ।
ଅଜିତ ଇନ୍ଦ୍ରିୟ ଗୋ । ବଳେ କରନ୍ତି ପୀରତି ଆଶ୍ରୟ । ୩ ।
ସମାନ ବୃଦ୍ଧିବୟସ ଶୋଭା ଗୁଣ । ସ୍ୱଚ୍ଛ ଆରଦ୍ର ସ୍ୱଭାବ ଲକ୍ଷଣ ।
ରସ-ରତି ଚିନ୍ତା-ଗ୍ରାହିକା ଶକ୍ତି । ଏତେ ଲକ୍ଷଣେ ଯୁକ୍ତ ଯେଉଁ ବ୍ୟକ୍ତି ।
ସଂଯୋଗ ସମ୍ବନ୍ଧୁଁ ଗୋ । ହୃଦେ ଉଦେ ହୋୟେ ପ୍ରଣୟ ବିଧୁ । ୪ ।
ନିକୃଷ୍ଟଠାରେ ଛାୟା ବିମ୍ବବତ । ମଧ୍ୟ ଭଜନରେ ପ୍ରତିବିମ୍ବ ଖ୍ୟାତ ।
ଅକ୍ଷୟ ଅଚ୍ଛିନ୍ନ ଅଙ୍କ ରହିତ । ଉତ୍ତମ ଜନ ମନରେ ଉଦିତ ।
ଅମୃତ ଆହ୍ଲାଦ ଗୋ । ଲଭିବାରୁ ହୃଦେ ପୂର୍ଣ୍ଣ ଆନନ୍ଦ । ୫ ।
ଆହୁର ଶୁଣିଛୁ ପ୍ରଣୟ ବୀଜ । ହୃଦ:ଳ ବାଳେ ପୋତେ କାମରାଜ ।
ନବଯୁବା କାଳେ ଅଙ୍କୁର ହୋୟେ । ସୁରସ ବୃଷ୍ଟି ସଂଯୋଗକୁ ପାୟେ ।
ଛନ୍ଦ ବିଧି ଲେଖା ଗୋ । ଦ୍ୱାଦଶଭାବ ପରିହାସ ବିଶାଖା । ୬ ।
ନାନା କ୍ରୀଡ଼ା କ୍ଷୁଦ୍ର ଡାଳ ପ୍ରସର । ଭଙ୍ଗ ଘୂର୍ଣ୍ଣି ପଲ୍ଲବ ବିସ୍ତାର ।
ସୁଖ ସୁମନ ରାଗାମୃତ ଫଳ । ଆନନ୍ଦ ଆସ୍ୱାଦନେ ମତ୍ତ ଭୋଳ ।
ଦୁର୍ଜ୍ଜୟ ମଦନ ଗୋ । ଛାଡ଼ଇ ନାହିଁ ଜୀବଥିବା ଯାକ । ୭ ।
ସଂସାରେ ଏଦେହ ମନ ଅସ୍ଥିର । ସୋମନ ପୁଣି ଗୋ ଇନ୍ଦ୍ରିୟରତ ।
ଇନ୍ଦ୍ରିୟ ପୁଣି ଗୋ ପ୍ରକୃତି ବଶ । ପ୍ରକୃତି ସ୍ୱଭାବ ବଳେ ପ୍ରକାଶ ।
ମଦନ ଅଧୀନ ଗୋ । ଏମାନେ ସବୁ ହୁଅନ୍ତି ଯେନ । ୮ ।

ଯେ ଯେତେ ପରତେ ହୋଏ ପ୍ରୀତକ । ସଂଯୋଗ ସୁଖ ସେ ଲଭେ ତେତେକ ।
ବିଯୋଗେ କୋଟିଗୁଣ ଦୁଃଖ ହୋଏ । ଏ ଦୁଇ ସ୍ୱଭାବ ତାର ହୃଦୟେ ।
ଅନୁଭବୀ ଜନେ ଗୋ । ଦୁଃଖ ସୁଖ ଦ୍ୱନ୍ଦ୍ୱ ନୋହେ ବଚନେ । ୯ ।
ସେ ପୀରତି ଆପେ ହୁଅଇ ସିଦ୍ଧି । ଅସିଦ୍ଧି ସିଦ୍ଧିମାନ କରେ ସିଦ୍ଧି ।
ପର ଆପଣା ଚିହ୍ନାଇ ନ ହୋଏ । ମନକୁ ଜ୍ଞାନ ଅଗୋଚର ହୋଏ ।
ଥାଉ ସୁଖବାର ଗୋ । ଦେହ ପରାଣକୁ ମଣଇ ପର । ୧୦ ।
ଜଗତେ ଅପକୀର୍ତ୍ତି ହାଟ ବସେ । କଳଙ୍କ ପସରା ତହିଁ ବିଶେଷେ ।
ଜାତ କୁଳ ଜ୍ଞାନ ମାନ ହଜଇ । ଚିନ୍ତା ଉଚ୍ଛନ୍ନ ରତନ କଣଇ ।
ନିନ୍ଦା ଢୋଲ ବାଜେ ଗୋ । ନରପଞ୍ଚ ପ ଫଳ କଣି ଭୁଞ୍ଜେ । ୧୧ ।
କ୍ଷଣେ କ୍ଷଣକେ କେତେ ପର ହୋଇ । ଭାବ ଜଳଧି କଲ୍ଲୋଳ ଉଠଇ ।
କ୍ଷଣେ ବୁଡ଼ାଏ କ୍ଷଣକେ ଉଠାଏ । ଏକ ଯାଉଁ ଯାଉଁ ଆନକ ପାଏ ।
ଭାବ ଶାବଲ୍ୟତା ଗୋ । କେତେ ମତେ ଚଢ଼େ ହୁଅଇ ଚିନ୍ତା । ୧୨ ।
ଅନଳ ନୁହଁଇ ଦେହ ଦହଇ । ଅସ୍ତ୍ର ନୁହଇ ମରମେ ଭେଦଇ ।
ନୁହଇ ତ ଜଳ ବୁଡ଼ାଏ କୂଳ । ନୁହଇ ମାଦକ କରେ ବିହ୍ୱଳ ।
ନୁହଇ ବଡ଼ଶୀ ଗୋ । ବଳେ ମନ ମୀନ ନିଏ ଆକର୍ଷି । ୧୩ ।
ବଡ଼ କଠିଣ ସେ ପ୍ରୀତ ପାଳିବା । ତୀକ୍ଷ୍ଣ ଅସିଧାରେ ପଥ ଚାଲିବା ।
ଶୂନ୍ୟ ଆରୋହଣ ଠାରୁ କଠିଣ । ପବନ ଫାନ୍ଦେ ଧରିବା ଲକ୍ଷଣ ।
ପ୍ରୀତ ରକ୍ଷା ଠାରେ ଗୋ । ଯଥା ପାରଦ ରଖିବା ମୁଠାରେ । ୧୪ ।
ଲକ୍ଷ ଘୋଡ଼ା ନବନୀତ ସୁଅର । ପ୍ରଚଣ୍ଡାନଳେ ପଥ ଚାଲିବାର ।
ତହୁଁ କି କର ରହିବ ଶରୀର । ତହୁଁ ଅଧିକ ପ୍ରୀତ ପାଳିବାର
କହୁଛୁ ଏକକ ଗୋ । ଦୂରୁଁ ଜୁହାର ପୀରତ ଘାତକ । ୧୫ ।

(ବିଦଗ୍ଧ ଚିନ୍ତାମଣି—୩୯ଶ ଛାନ୍ଦ)

# ପ୍ରାଣବନ୍ଧୁ ଗୀତ

(ରାଗ—ଶୋକ କାମୋଦ)

ଶ୍ରୀରାଧା ବାରୁଣୀ ପ୍ରେମ ରହୁରୁଳ ଯେନ ଚଷ୍ୱାବ ଗାନ୍ଧକମାନେ ।
କୃଷ୍ଣ ଅତି ପାନେ ଦୂତିକାକୁ ଦିନେ ପଚାରନ୍ତି ନର ଧଣ ଛନ୍ଦେ ।
ପ୍ରାଣ ବନ୍ଧୁ ସ୍ୱାଠ । କହ ମୋ ଶ୍ରୁତକ ନର ଗଠ ।
ହସି ଦୂତୀ କହେ ପ୍ରେମଜଳେ ଭାସେ ବନ୍ଧୁଲତ ମତ ଦବାରାଠ । ୧ ।
କାଳୀସ୍ୱା-କମଳ ଦେଖିଲେ କମଳ ନୟନରେ ହୋଏ ଜର ଜର ।
ଦେଖି ନବଘନ ତାର ଅପଘନ ପୁଲକ ହୁଅଇ ଥର ଥର ।
ଘନ ସୁନ୍ଦର ହେ । ଯମୁନା ଯିବାକୁ ଡର ଡର ।
ଏ ଅତି ବଚନ କହୁଲରେ ଚନ୍ଦ୍ର ଲେଖି ଚୁମ୍ବ ଦଏ ବାର ବାର । ୨ ।
ଦେଖି ତମାଳକୁ ବସ୍ତ୍ର କୋଳକୁ ସଜ ହେଉ ଥାଇ ବାହୁ ଯୁଗ ।
ଶ୍ୟାମ ସୁବାସରେ ଆସ ମାନସରେ କଳାବତୀ ସଙ୍ଗେ ଅନୁରାଗ ।
ରସ ଶେଖର ହେ । ଭୂଷଣ ନୀଳେନ୍ଦ୍ର ମଣିବର ।
ବସି ରମାବର କିଁଠାଇ କବର ଦେଖୁଥାଇ ଥୋଇ ହୃଦେ ତାର । ୩ ।
ହେମ ମରକତ ଯୋଖି ଅଣକତ ପର ନେଇ ମୁଦ ରହେ କ୍ଷଣେ ।
ଦଇବ ଘଟନ ମୟୂର ନଟନ ଦେଖି ସୁଖୀ ହୋଏ କଭି ଗୁଣେ ।
ଭାବ ବିନୋଦ ହେ । କୃଷ୍ଣବର୍ଣ୍ଣ ଶେଯେ ମାଡ଼େ ନଦ ।
ଶ୍ରୀଅଙ୍ଗ ଚଳକୁ ରୁହିବା ବେଳକୁ ଚଉରେ ଜାତ ହୁଅଇ ମୁଦ । ୪ ।
କେ ଜାଣେ ଭାବନା ବୃକ୍ଷେ ସମ୍ଭାବନା କେତେ କରେ ବୃନ୍ଦାବନ ଗଲେ ।
ବୋଲଇ ଆଳୀକି ଏବନ ଧୂଳିକି ବୋଳାଦଅ ମୋର ହୃଦ ସ୍ଥଳେ ।
ନବ ନାଗର ହେ । ଭଙ୍ଗ କମଳରେ ସ୍ନେହ ତାର ।
ଲଗାଇ ହୃଦରେ, ଅତି ଆନନ୍ଦରେ ଲଦୁଥାଇ ଶିରେ ବାର ବାର । ୫ ।
ରସି ମଦାଳସୀ ସୁମନା ତୁଳସୀ ଗନ୍ଧ କର ଘେନୁଥାଇ ନିତ ।
କସ୍ତୁରୀ ପଟକ କରିବା ଚଟକ ବୋଲି ସଖି ରହେ ମୁଖ ପୋତ ।
କାମ ମୋହନ ହେ ।. କରୁଛ ନଠ ସାଷ୍ଟ ପଠନ ।
ଦେଖିଲେ କେତକୀ ବୋଲେ ଏ ପାତକୀ ହେଲା କଁପା ଭୃଙ୍ଗ ବିମୋଦନ । ୬ ।

ସୁବଳ ପାଣିକି ଧରି ସେ ପୁଣିକି ମମତାରେ ପୁଚ୍ଛେ ଥିଲୁ କାହିଁ ।
ଗୋବିନ୍ଦ ପାଶରେ ଥିଲି ଏ କପଟେ ଲୁଚିଥି ଉଠଇ ସ୍କନ୍ଦମୁହିଁ ।
ଆହେ ଗିରିଧାରି ! ନନ୍ଦ ଗ୍ରାମ ଯାଏ ଯେଉଁ ନାସ୍ତି ।
ତାଙ୍କ ପଦ ଧରି ବୋଲେ ବନ୍ଧୁଧରି ତୁମେ ମୋର ଗୁରୁଜନ ପରି । ୭ ।
ଦେଖି ଗୁଞ୍ଜା ଫଳ ବୋଲଇ ସଫଳ ତୋହ ଅନୁରାଗ ଏକାହେଲା ।
ଗୁଞ୍ଜାର ପାଚିକ ତାହାର ପାଚିକ ଆପଇ ସେ ଯେତେ ବର୍ତ୍ତିଦେଲା ।
ଆହେ ଗୋପୀନାଥ ! କହୁର ଏ କେଉଁ ମନୋରଥ ।
ହସଇ ଖେଳଇ ପୁରୁଣ ନାଚଇ ହା ଚୁମ୍ବ ସ୍ୱରେ ପୋତଇ ମାଥ । ୮ ।

(ବିଦଗ୍ଧ ଚିନ୍ତାମଣି—୫୨ତମ ଛାନ୍ଦ)

## କଳା ମାଣିକ

(ରାଗ-ଜୟନ୍ତ, ଜଳା କାଇଁଚ ବାଣୀ)

ଧୀରେ ଘେନ କାନନରେ କୃଷ୍ଣ ବଳମୂର୍ତ୍ତି ।
ବାତ୍ସଲ୍ୟ ମମତା ଘେନ ସ୍ତୁଛନ୍ତ୍ର ମାତ । କଳା ମାଣିକରେ । ୧ ।
ନିଧନ ସମ୍ପାଳ ମୋର ଦରିଦ୍ର ପସରା
ଅନ୍ଧର ଲଉଡ଼ି ବାରୁ ହୃଦ ରତ୍ନ ହାର । କଳା ମାଣିକରେ । ୨ ।
ମୋ ଜୀବ ଜୀବନ ତୃଷ୍ଣ ନୟନ ପ୍ରତିମା
ତୋତେ କି ପାଶୋରି ହେବ ମୋର ସୁଖସୀମା । କଳା ମାଣିକରେ । ୩ ।
ଡରୁଥାଉ ଅନ୍ଧାରକୁ ରଖିଯାଉ ଗୋରୁ
ଜନକ ଜନନୀ ସୁଖ କାହିଁ ପାଇଁ ସାରୁ । କଳା ମାଣିକରେ । ୪ ।
ବୁଢ଼ାକାଳେ ତୁ ମୋହର ଏକଇ ନନ୍ଦନ
ହୃଦ-ତାପ-ବିନାଶନେ ତୁ ହରି ଚନ୍ଦନ । କଳା ମାଣିକରେ । ୫ ।
ଗୋଷ୍ଠିକା ଅଧାମସର ନ ବୁଝଇ ତୋତେ

ନାଚ ନାଗ୍ଧ ମାଗୁଥାଉ ଲବଣୀ କେମନ୍ତେ । କଳା ମାଣିକରେ । ୬ ।
ଢୋଳ ମୁଁ ଧଇଲେ ଗୋଳ ହୋଇଯାଉ ବୁଦ୍ଧ
ତୋ ଦୁର୍ବଳ ଦେଖି କାହିଁ ପଶିବଇଁ ମୁହିଁ । କଳା ମାଣିକରେ । ୭ ।
ଡ଼ାକଣୀ ଲେଖନ୍ତୁ ବୋଲି ଡରୁଥାଇ ମନେ
ବାର ବାର ବାରୁଥାଇ ଯିବା ପାଇଁ ବନେ । କଳା ମାଣିକରେ । ୮ ।
ନଶାଚର ମାଇବାର ଶୁଣୁଛୁ ଶ୍ରୁତକ
ମୁଁ ଡ଼କ୍ରଣୀ ଗୁଣ୍ଡ଼ଦେଲି ବନକୁ କାହିଁକ । କଳା ମାଣିକରେ । ୯ ।
ଝାଳ ବୋହୁଅବ ଅଙ୍ଗ ଲାଗି ଝାଞ୍ଜି ଖର
ଶ୍ରମ ପାଇ ଉବୁତଳେ ବସୁଥିବୁ ପର । କଳା ମାଣିକରେ । ୧୦ ।
ନେଲୁ ନାହିଁ କାହିଁପାଇଁ ତୋ କଠାଉ ଛତା
ବନେ କଣ୍ଟା ଲାଗିହୋଏ ମୃଦୁପାଦ ଚନ୍ତା । କଳା ମାଣିକରେ । ୧୧ ।
କାନ ଡେ଼ର ଥାଇ ଏକା ତୋ ବେଣୁ ସ୍ୱନକୁ
ଆଜ କର୍ପା ଶୁଭୁନାହିଁ ଝୁରୁଛୁ ମନକୁ । କଳା ମାଣିକରେ । ୧୨ ।
ତୋଠାରୁ ଅଧିକ ବାଇ ତୋର ବଡ଼ଭାଇ
ବୋଧ କର ଗଲା ନାହିଁ କାହିଁକ ରଖାଇ । କଳା ମାଣିକରେ । ୧୩ ।
ତୋ ମାଧୁରୀ ସ୍ୱପ୍ନରୂପ ଦେଖି ସୁଖୀ ଆଖି
ଅକ୍ରୂର ଚଲୁ ବଳା କ ମମତା ରଖି । କଳା ମାଣିକରେ । ୧୪ ।
କୋଳ ପାଇଁ ଅଳକର ଗଡ଼ୁଛ ଧୂଳରେ
ବେଶ ହୋଇ ଥାଅ ରସି କୁସୁମ ମାଳରେ । କଳା ମାଣିକରେ । ୧୫ ।
ନଟବର ପରପାଟୀ ବେଶ ମନୋହର
ରଙ୍ଗିମା ଅଧରେ ହାସ କ ଜାତ ସୁନ୍ଦର । କଳା ମାଣିକରେ । ୧୬ ।
ନୟନ ଦୃନ୍ଦରମାନେ ଭୁଲନ୍ତା ନାଟକୁ
ଅଳକା ଆବୃତ ଶୋଭା ଲଲାଟ ପଟକୁ । କଳା ମାଣିକରେ । ୧୭ ।
ନାକେ ଭାଦ୍ୟତାପ୍ ମୋଦ ବସୁଣୀକ ଶୋଭା
ମୋ ଆଖି ଦେଖିବା ପାଇଁ କର୍ବ୍ଧ ଲୋଭା । କଳା ମାଣିକରେ ।

(ବ୍ରଦଗ୍ଧ ଚନ୍ତାମଣି—୬୭ତମ ଗ୍ରନ୍ଦ)

# ବଂଶୀ ଚାତୁରୀ

(ରାଗ—ଭୂପାଳ)

ଦିନେ ଦିନେ ଚତୁରୀ                    ପ୍ରେମେ ହୋଇ ଆତୁରୀ
ମିଳେ ଏକାନ୍ତେ କହନ୍ତ ବଂଶୀ ସ୍ୱତୁରୀ । ୧ ।

ଶବ୍ଦ ସରୁଁ ସେ ଜାତ                    ସରଳତା ସଞ୍ଜାତ
ପତିବ୍ରତାଙ୍କ କରୁଅଛୁ ଲଜ୍ଜା ତ । ୨ ।

ମହତରେ କଳିତ                    ବାଜୁଅଛୁ ଲଳିତ
କି କେ କୁଳବତୀ ମାନ ହଏ ଦଳିତ । ୩ ।

ମନ ହଏ ରସାଇ                    ଧୈର୍ଯ୍ୟ ହଏ ଭସାଇ
ତା ଜାତରେ ନେବ ପତ୍ର ଏବେ ମିଶାଇ । ୪ ।

ତନୁ ପୋଡ଼ାଇଲୁ ତ                    ମନ ବୁଡ଼ାଇଲୁ ତ
ଶ୍ରବଣତା ମଧୁରତା ଲୋଡ଼ାଇଲୁ ତ । ।

ବାସ ପୋଡ଼ାଇଲୁ ତ                    ଚିନ୍ତି ଗଢ଼ାଇଲୁ ତ
ବିବେକ ଚଢ଼ାଇବେକ ମୋଡ଼ାଇଲୁ ତ ।

ଲୂହ ଗଡ଼ାଇଲୁ ତ                    ଗୁହ ଉଡ଼ାଇଲୁ ତ
ଧର୍ମତରୁ ସମୂଳରେ ଉଡ଼ାଇଲୁ ତ । ୭ ।

ଲୋଭ ବଢ଼ାଇଲୁ ତ                    ବଳେ କଢ଼ାଇଲୁ ତ
କଳଙ୍କ ପଙ୍କେ ପକାଇ ସଢ଼ାଇଲୁ ତ । ୮ ।

କାମେ ଚଦାଇଲୁ ତ                    ଆଣି ଛେଦାଇଲୁ ତ
ପ୍ରଣୟ ଅଚଳ ହୃଦେ ଲଦାଇଲୁ ତ । ୯ ।

ବାଦ ବସାଇଲୁ ତ                    ମାୟା ଖସାଇଲୁ ତ
ଜରଙ୍ଖ ଲଗଳେ ମସ୍ତ ଚପାଇଲୁ ତ । ୧୦ ।

ତାପେ ତପାଇଲୁ ତ                    ନାମ ଜପାଇଲୁ ତ
ନିରବଧି ହୃଦସ୍ଥଳୁ କମ୍ପାଇଲୁ ତ । ୧୧ ।

ନିଡ଼ ତରାଇଲୁ ତ                    ଜ୍ଞାନ ହରାଇଲୁ ତ
ଅପଖ୍ୟାତ ଆଣି ଲୋକେ ଭରାଇଲୁ ତ । ୧୨ ।

ମଧୁ ପିଆଇଲ ତ ଭ୍ରମ ଦଆଇଲ ତ
ନୂଆ ହସ ହସା ହାସ ଭିଆଇଲ ତ । ୧୩ ।
ଆଶା ଜଗାଇଲ ତ ଆଣ୍ଠ ଭଙ୍ଗାଇଲ ତ
କେଜାଣିକି ଭୂତବାଇ ଲଗାଇଲ ତ । ୧୪ ।
ଧୀର ଶିଖାଇଲ ତ ସୁଧା ଚଖାଇଲ ତ
ମନ ମୋହନ ମୂରତି ଦେଖାଇଲ ତ । ୧୫ ।
କଣ୍ଠ ଶୁଖାଇଲ ତ ସୁଖ ରଖାଇଲ ତ
ବନ ଦେବୀ ପଦ ତଳେ ଲେଖାଇଲ ତ । ୧୬ ।
ନାଟ ବଖାଇଲ ତ ପାଖ ପଞ୍ଚାଇଲ ତ
କେତେ ନାଟ ହସ ନାଟ ରଞ୍ଜାଇଲ ତ । ୧୭ ।
ଧୈର୍ଯ୍ୟ ଲୁଟାଇଲ ତ ବଳ ତୁଟାଇଲ ତ
ଗନ୍ତି ତ ରନ୍ତି ତ ଏବେ ଘଟାଇଲ ତ । ୧୮ ।
ପଥ ହୁଡ଼ାଇଲ ତ ରେଖା ବୁଡ଼ାଇଲ ତ
ଆଜ ଅଭିଳାଷ-ରଜ୍ଜୁ ଛିଡ଼ାଇଲ ତ । ୧୯ ।
ସେ ଗୋ ଏତେ ମହତ ଜାଣିଥିଲା ଜଗତ
ମୋ ଜୀବନ ନଷ୍ଟେ ଏବେ ଜଗତ ହସ । ୨୦ ।
(ବଦନ୍ଧ ଚନ୍ଦ୍ରାମଣି—୭୧ ତମ ଗ୍ରନ୍ଥ)

# ରାଣୀନିଶଙ୍କରାୟ

(ଅଷ୍ଟାଦଶ-ଊନବିଂଶ ଶତାବ୍ଦୀ)

## କୁସୁମ ସମୟ

କୁସୁମ ସମୟ ହୋଇଛି ଉଦୟ ପଲ୍ଲବିତ ତରୁଲତା
ବୃକ୍ଷଡାଳେ ଡାଳ ଲଗିଣ ଚଞ୍ଚଳ ବିଶ୍ୱ କି ବର ବନିତା ।
ସର୍ବ ତରୁଗଣେ ବରଜାତି ପଣେ କରନ୍ତି ବିଶ୍ୱ ସମ୍ଭାର
ବର କନ୍ୟାଙ୍କୁ କି ଯଉତୁକ ଦେବେ ବଢ଼ାଇ ଅଛନ୍ତି କର ।
ଫଳପୁଷ୍ପ ଭରି ତରୁଲତାମାନେ ଦିଶନ୍ତି ଏ ଅଧ୍ୟାହାର
ବନ୍ଧୁଗଣ ଲଭି ଫୁଲବେଶ ହୋଇ ବେଦୀରେ ଯେମନ୍ତ ବର ।
ପଲାଶ ଲତା ପଲାଶ ଦୂର କରି ପୁଷ୍ପେ ହୋଇଛି ସୁବେଶ
ହେମ ଅନଳ ଜଳିବା ପରି ଦିଶେ ବରକନ୍ୟାଙ୍କର ପାଶ ।
ବର ବିକାଶ କୁସୁମ କିବା ମନ୍ଦହାସେ ମନ ମୋହୁଅଛି
ମୁଗ୍ଧ ମକରନ୍ଦ ଛନ୍ଦେ ରଖି ଦ୍ୱନ୍ଦ୍ୱ ଭ୍ରମା କି ଅଶ୍ରୁ ତେଜୁଛି ।
ଉଚ୍ଚ ଡାଳରୁ ଝଡ଼ି ପୁଷ୍ପ ପାଖୁଡ଼ା କୁସୁମ ବରଷା ପ୍ରାୟେ
ପବନ ବଳେ ବଲ୍ଲରୀ ଗଣ ଚଳି ଆଲିଙ୍ଗି ଢାଳନ୍ତି କି ଏ ।
ବିବିଧ ପକ୍ଷୀ କୋଲାହଳ ନାଦରେ ହୁଳହୁଳି କି ଏ ମଣି
ନାନା ମୃଗଗଣ ଆତଯାତ ପୁଣ ଚରନ୍ତି ଲୋକ ଏ ଜାଣି ।

(ପଦ୍ମାବତୀ ଅଭିଳାଷ)

# ପଦ୍ମନାଭ ଶ୍ରୀଚନ୍ଦନ

(ଅଷ୍ଟାଦଶ ଶତାବ୍ଦୀ)

## ବରଷା

ରାଗ--ବରାଡ଼ି, ଆଷାଢ଼ ଶୁକ୍ଳ ବାଣୀ

ବରଷା ପ୍ରବେଶ ହୋଇଲା ଆସି, କାଳିକା ଦଶେ ଦିଶେ ପରକାଶି,
ନଭେ ରଚିଲା ସୁନାସୀର ଚାପ, ଚଞ୍ଚଳା ଚହଟ ହେଲା ଅମାପ ।
ଘନ ଘଡ଼ଘଡ଼ି, ଘଡ଼ିକି ଘଡ଼ି ପଡ଼ୁଅଛୁ ମାଡ଼ି । ୧
କରକା ପ୍ରକର ମହୀରେ ପଡ଼ି, କୁଳିଶ ଘାତେ ଗିରି ଶୃଙ୍ଗ ଝଡ଼ି,
ବିୟୋଗୀ ଅଣା ଆସାର ପାତରେ, ବିଳାପ କଲା କେବଳ ସନ୍ତୁଟରେ,
ବକାଲ ବହାର, ହେତେ କି ଜସ୍ବ ଚରିଲ ନାମରେ । ୨
ଝଞ୍ଜା ପବନ ପ୍ରଖରେ ବହିଲା ଶିଖର ଶିଖେ ଶିଖୀ ନୃତ୍ୟ କଲା,
ଭେକ ତାହିକ ସାରୁଲ ଶାମୁକ, ରବରେ ପୂର୍ଣ୍ଣ କଲେ ମହୀଯାକ
ଫୁଟି ହଲପ୍ରିୟ, ମଣ୍ଡିଲେ ତରୁ ମଉଳାକଚୟ । ୩
କନ୍ଦଳୀ କନ୍ଦରୁ ବାହାର ହେଲା, କେତକୀ ତନ୍ତି କେତକ ଫୁଟିଲା,
ମାଲତୀ କୁସୁମ ସୁଷମ ହୋଇ, ଫୁଟି ବାସରେ ପ୍ରସରିଲା ମହୀ,
ଦେବହ ଗନ୍ଧ, ଯେନ ବହିଲା ହୋଇଣ ଆନନ୍ଦ । ୪
କୁଟଜ ମଲ୍ଲୀ ରଙ୍ଗଣୀ କାଟେଲୀ, ଗଙ୍ଗଶିଉଳୀ ଯୂଥିକାଦି ମଲ୍ଲୀ,
ଦାଢ଼ ତରଟ ଅର୍ଜ୍ଜୁନ କୁସୁମ, ଫୁଟିବାରେ ହେଲେ କି ମନୋରମ,
ବନଘୋର ବଣେ, ବନ ପୂରିଲା ସକଳ ପ୍ରଦେଶେ । ୫
ଘନ ବହନ ମହୀରେ ଘୋଟିଲା, ପ୍ରଥମେ ଗିରିଶିର ଗିମ୍ଭେଦେଲା,
ଏ କି ରଖିବ ବରହ୍ମଣୀ କୂଳ, କୂଳ ଲଙ୍ଘି ନଦୀମାନେ ପ୍ରବଳ
ବେଳୁଁ ବେଳ ହେଲେ, ତଟ ପ୍ରକଟ ତରୁ ବନାଶିଲେ । ୬
ବେତସ ଫୁଟି ସ୍ୱସି ନଦୀକଳେ, ନକ୍ରେଲ ଫୁଟି ନ ରହେ ନତଳେ,
ଶୁଭ୍ର ଅମ୍ବରକୁ ଅଭ୍ର ଢାଙ୍କିଲା, ନଷ୍ଟି ଦିବସ ବାରି ତ ନୋହିଲା,

ବାରି ତ ନିରତ, ପଡ଼ିବାରୁ ବେଶ ଜମ୍ବାଳବନ୍ତ । ୭
ଛାଡ଼ି ଅବନୀକି ହଂସ ମରାଳ, ଗଲେ ମାନସକୁ ହୋଇ ଚପଳ,
ପିକ ବୃନ୍ଦ ଏବେ ମୂକ ହୋଇଲେ, କୋକ ଶୋକଜଳେ ବୁଡ଼ି ରହିଲେ,
ଘୋର ଅନ୍ଧକାର, ହେବାରୁ ପଥ ନୋହିଲା ଗୋଚର । ୮
ସରଣୀ ପୂର୍ଣ୍ଣ ହେବାରୁ ଉପରେ, ତରଣୀ ରଖିଲେ ନଦୀ ବାଟରେ,
ନାବିକ କଲେ ସ୍ୱାବିକ ଆତର, ପଥି ପଥିକଙ୍କୁ କରାଣ ପାର,
ପରବାସ ତେଜି, ବେପାରି ଗୃହରେ ରହିଲେ ମଜ୍ଜି । ୯
ହରଷ ହୋଇଣ କୃଷକ ଅତି, କରଷଣ କଲେ ନିରତ କ୍ଷିତି,
ବରଷଣକୁ ଅନାଇ ଘନର, ଛନ୍ଦରେ ଜନେ କଲେକ ଆଦର
ହରଷ ସ୍ୱଜନ, ବରସ ଏକା ବରଷାମାତୃକ । ୧୦
(ଶଶିରେଖା—୩୨ଶ ଛାନ୍ଦ)

# ଭକ୍ତ ଚରଣ ଦାସ

(ଅଷ୍ଟାଦଶ—ଊନବିଂଶ ଶତାବ୍ଦୀ)

## କଳାକଳେବର କହ୍ନାଇ

ରାଗ—ରାମକେରୀ

କଳା କଳେବର କହ୍ନାଇ ସଙ୍ଗେ ରୋହଣୀ ସୁତ
କରନ୍ତି ମଥୁରା ବିଜେ ଦାଣ୍ଡେ ଦେଖ ସଙ୍ଗାତ । ୧
ଖସି ପଡ଼ୁଛି କି ଆକାଶୁଁ କି ଏ ଗଙ୍ଗାଯମୁନା
କ୍ଷୀର ସଙ୍ଗେ ପ୍ରାଣ ଶୋଷିଲେ ନାଶ ଗଲା ପୂତନା । ୨

× × ×

ଉଇଁ ଆସୁଛି କି ପୂର୍ଣ୍ଣିମା ଶଶୀ ମଧ୍ୟ ସାଗରୁ
ଉଠ ମଧୁପୁର ଯୁବତୀ ଓଗାଳିବା ଆଗରୁ । ୩
ଚନ୍ଦନ ବେଶ ମୁଁ କରନ୍ତି ମୋର ହେଉଛି ମନ
ଛଉ କେ ଧରିବ ଯୁବତୀ ବୃନ୍ଦ ଚନ୍ଦ୍ରବଦନ । ୪

× × ×

ଝଡ଼ି ପଡ଼ୁଛି କି ଝୁଣ୍ଟିଆ ଝସମେଘନ ଘାତେ
ଝାଳ ବିନ୍ଦୁ ବିନ୍ଦୁ ଶ୍ରୀମୁଖେଁ ବହୁଅଛି ନିରତେ । ୫
ନୟନ ଉପରେ ଭୂଲତା କି ଏ ଧାମ କମାଣ ।
ନୁହନ୍ତି ଏ ପୋଏ ନାହାରା ସବୁ ଗୋପୀଙ୍କ ପ୍ରାଣ । ୬
ଛୋପି ଛୋପି ଗୋପୀ ଚନ୍ଦନ ମଣ୍ଡିଛନ୍ତି କି ଧ୍ୱଜ
ଛେକ ବାରେ ଶୁଦ୍ଧା ମଥୁରା ଦାଣ୍ଡେ ଗୋବିନ୍ଦ ବଜେ । ୭

× × ×

ଛଳ ଛଳ କୃଷ୍ଣ ନାଚନ୍ତି ଭଙ୍ଗୀ ଦେଖ ମିତଣୀ
ଛାଳନ୍ତି କି ରୂପେ ଢୋଲାକୁ ଜଉ ଛଟକେ ଆଣି । ୮

ଅଳକାରେ ସରୁ କାଉଁଚ ମଣ୍ଡିଛନ୍ତି କି କରେ
ଅଣହେଳା ପାଉଥିବେ ଗୋ ନନ୍ଦ ଗଉଡ଼ ଘରେ । ୯
ତିଳକ ଉପରେ କସ୍ତୁରୀ ଗୋରୋଚନା ରଞ୍ଜିଛି
ତେରଛାଇ ଦୃଷ୍ଟି ଦେବାରୁ ତରଳାଇ ଦେଉଛି । ୧୦

× × ×

ଦୁଃଖି ଲୋକଙ୍କର ସଙ୍ଗାଳୀ ସେତ ଦରିଦ୍ର ଧନ
ଦଧି ଦୁଧସର ଖିଆ ଗୋ ତେଣୁ ବଡ଼ ଲାବଣ୍ୟ । ୧୧
ଧରଣୀ ମଣ୍ଡିଳା ପର୍ଯ୍ୟନ୍ତେ ହୋଇଛନ୍ତି କି ଉଷ୍ମ
ଧଳାକଳା ବେନି ଭାଇ ଗୋ ଦୁହେଁ ଦୁହିଁଙ୍କି ଶୋଷ୍ମ । ୧୨

× × ×

ଫୁଲରେ ଏହାଙ୍କ ଶରଧା ଫୁଲେ ଦଶନ୍ତି ତୋରା
ସ୍ଫୁରୁଛି କି ବାମ ନୟନ ମୋତେ ଦିଶିବେ ପରା । ୧୩

(କଳାକଳେବର ଚଉତିଶା)

## କାହା ମୁଖ ଅନାଇ ବଞ୍ଚିବ

(ରାଗ—ବରାଡ଼ି)

ଆରେ ବାରୁ ଶ୍ୟାମଘନ, ତୁ ଗଲେ ମଧୁଭୁବନ, କାହା ମୁଖ ଅନାଇ ବଞ୍ଚିବ,
ହେବ ଦଶ ଦିଗ ଶୂନ୍ୟ, ଅସ୍ଥିର ହେବ ଜୀବନ, ନିଶି ଅବସରେ ଝୁରୁଥିବ ରେ
ଜୀବଧନ
ଜୀବନ ବନ୍ଧନେ ଯେସନ୍ତେ ହଂସ, ରାଜା ବିନେ ଯେସନ୍ତେ ଗ୍ରାମ ଦେଶରେ । ୧ ।
କାହା ଅଙ୍ଗେ ଚତୁଃସମ, ଲେପିବ କରି ସୁଷମ, ନିଦ୍ରାରେ କେ ହେଉଥିବ ଘାରି
କାହାକୁ ଅଞ୍ଜନ ଦେବ, ବସ୍ତ୍ରପାଡ଼ି ଶୁଆଇବ, ପିତାଙ୍କୁ ମାଗିବ କେଉଁ ସ୍ୱର ରେ
ଜୀବଧନ

ଏ କଥା ଶୁମର ଯିବ ମର, ନଷ୍ଟେ ଯେବେ ଯିବୁ ମଧୁପୁରୀ । ୨ ।
ବାନ୍ଧିବ କାହାର କେଶ, କୁସୁମେ କରି ସୁବେଶ, କାହା ଲଲାଟରେ ଦେବ ଚିତା,
କାହାର କର୍ଣ୍ଣେ କୁଣ୍ଡଳ, ଖଞ୍ଜିବରେ ମୋର ବାଳ, କାହାପାଇଁ କରୁଥିବ ଚିନ୍ତା ରେ
ଜୀବଧନ
କାହା ଅଙ୍ଗୁ ଧୂଳି ଦେବ ପୋଛି, କାହାକୁ ବା ପିନ୍ଧାଇବ କାଛି ରେ । ୩ ।
ଯେତେବେଳେ ବନେ ଯାଉ, ସଙ୍ଗରେ ମୋ ପ୍ରାଣ ନେଉ, ନିମିଷେ ବିଚ୍ଛେଦ ନ ସହଇ,
ଏବେ ଯିବୁ ମଥୁରାକୁ, ମୋତେ ସମର୍ପି କାହାକୁ, ଚନ୍ଦ୍ରମୁଖ ନ ଦେଖିଲେ ମୁହିଁ ରେ
ଜୀବଧନ
ଜୀବନ ହାରିବ ଗଣ୍ଡଜଳେ, ରୁ ମୋତେ ଅନ୍ତର ହେଲେ ଢଳେ ରେ । ୪ ।
ସର ଲବଣୀ ଅଧାମ, ପକ୍ୱରମ୍ଭା ସୁଧାସମ, ମୁଖେ ଦେଲେ ଥୁ ଥୁ କରି ଫିଙ୍ଗୁ
ଯେତେବୁପେ ନାଳଆଇ, ପରଷଇ ବଳାଆଇ, କୋପେ ଉଠି ପାକଖଣ୍ଡ ଭଙ୍ଗୁରେ
ଜୀବଧନ
ଏବେ ଦୂର ହୋଇବ ସେ କଥା, କି ନ କହିବ ଦାରୁଣ ବଧାତା ରେ । ୫ ।
ଗ୍ରାହକ ଅନାଇ ଡରୁ, ଧାଇଁ ମୋତେ କୋଳକରୁ, ବସନେ ଘୋଡ଼ାଉ ମୁଖଗୋଟି
ହୋଇ ଥାଉ ଥରହର, ଦେଖିଲେ ଅନ୍ଧାର ଘର, ଉଚ ପାବଚ୍ଛ ନ ପାରୁ ଉଠ ରେ
ଜୀବଧନ
ମଧୁପୁରରେ ହସ୍ତୀ ଘୋଡ଼ାମାନ, ଗର୍ଜିଲେ ନ ପୁଣ ଡରୁ ଶ୍ୟାମ ରେ । ୬ ।
କାହ୍ନେ ଦେଖି ଚଷ ପନ୍ତ, ନାନା ଭୟଙ୍କର ମୂର୍ତ୍ତି, ଭୟେ ଯାଉ ସେ ଘରୁ ପଳାଇ
ଏବେ କଂସ ପୁର ଯିବୁ, ରାକ୍ଷସ ମାନ ଦେଖିବୁ, ଡରି କାହାକୁ ଧରିବୁ ଯାଇ ରେ
ଜୀବଧନ
ମାଏ ବୋଲି ଡାକିବୁ କାହାକୁ, ଯାହା ବା କେ ଅଛା ବୋଲିବାକୁ ରେ । ୭ ।
ନିଶାକାଳେ ମୋର କୋଳେ ଶୋଇଥାଉ ଶ୍ରମ ବଳେ, ସ୍ୱପନରେ ଦେଖି କସ କସ,
ମା ବୋଲି ଚମକି ପଡ଼ୁ, କଣ୍ଠେ ଦୁଇ ଭୁଜ ଛଡ଼, ପୁଣି ଶୋଉ ଘୋଡ଼ହୋଇ ବାସ ରେ
ଜୀବଧନ
ସେ କଥା ଶୁମର ଯିବ ମର, ଉଠ ବୋଲି କାହାକୁ ଡାକିବ ରେ । ୮ ।

(ମଧୁରାମଙ୍ଗଳ—୬ଷ୍ଠ ଛାନ୍ଦ)

# ଭକ୍ତି ଓ ଜ୍ଞାନ

(ରାଗିଣୀ :—ବସନ୍ତସିଂହା ଚଉତିଶା ବାଣୀ)

ଉଦ୍ଧବ ବଚନ ଶୁଣି ବୋଲନ୍ତି ଗୋପରମଣୀ ଏ ଯେଉଁ ଜ୍ଞାନକୁ ବୁଝାଇଲ ।
କ୍ଷୀର ଖଣ୍ଡେ ଦଧିଦେଲେ ନାଶଯାଇ ସେହ୍ନେ ଭଲେ ଜ୍ଞାନ କଥା କପଟାଇ କହୁଲ ।

ହେ ହରଦୂତ

ଆମ୍ଭର ଭଗତ ରତ୍ନାକର । ଜ୍ଞାନ ନଦୀ ତହିଁ ସମ କର ହେ । ୧
ଅଭାଗ୍ୟ ହୋଇଲା ଯେଣୁ ଏ କଥା ଶୁଣିଲୁଁ ତେଣୁ ଆମ୍ଭ ଆଗେ ସେମାନ ନ କହ
ବ୍ରହ୍ମଙ୍କୁ ଭାବନ୍ତି ଯେହ୍ନେ ଏ ଭାବ ଜାଣନ୍ତି ସେହ୍ନେ ଆମ୍ଭେ ତ ନଜାଣୁ ଗୁମ୍ଫ ଭାବ ।

ହେ ହରଦୂତ

ଯେସନେ କପିତ୍ଥ ଗଜ ଖାଇ । ପୁଣି ତାହା ବାହାର କରଇ ହେ । ୨
ଦେଖିଲେ ଦିଶେ ସୁନ୍ଦର ନ ଥାଇ କିଛି ଉଦର ସେହିରୂପେ ରସହୀନ ଜ୍ଞାନ ।
ସେ କଥାକୁ କେତେ ଭଣ ଏ ବିନୁ ଆନ ନ ଜାଣ ସ୍ୱାମୀ ସଙ୍ଗେ କରନ୍ତାକୁ ଗଣ ।

ହେ ହରଦୂତ

ସେ ପୁଣି କ୍ଷଣକ ମାତ୍ରେ ସତ୍ତେ । ରୂପ ରେଖ ଯାଏ କେଉଁ ଆଡ଼େ ହେ । ୩
ତେମନ୍ତ ମୁକତ ଖର ପ୍ରେମ ବନେ ଦନ ହରି ଭଗତ ପଛରେ ଭ୍ରମୁଥାଇ ।
ତାହାରୁ ଅଟନ୍ତି ହୀନ ସେ ଗୁଡ଼ାକ କେତେ ଦେନ ଅମ୍ଭଙ୍କୁ ସେମାନ ନ ରୁଚଇ ।

ହେ ହରଦୂତ

ଯେଉଁ ଜନ ସୁଧା ଖାଇଥାଇ । ସେ ନକ ମହୁଲ ପାଶେ ଯାଉଁ ହେ ? ୪
ଚନ୍ଦ୍ରାମଣି କଣ୍ଠେ ଯାର ସଦା କରଥାଇ ହାର ସେ ନକ ଲୋଡ଼ଇ ଆନ ରତ୍ନ ।
ଜାତ ପୁଷ୍ପ ଯେ ଦେନଇ ସେ ନକ ବାସଙ୍ଗ ବୁଦ୍ଧି ସେହ୍ନେ ରୂପ ଗୁମ୍ଫ ବ୍ରହ୍ମଜ୍ଞାନ ।

ହେ ହରଦୂତ

ସେମାନ ନ କହ ଆମ୍ଭ ଆଗେ । ମଥୁରା ବାହୁଡ଼ ଯାଅ ବେଗେ ହେ । ୫
ଆମ୍ଭ ବୋଲ କର ଏବେ ଦନ ବଞ୍ଚ ଭକ୍ତଭାବେ ନାମ ରୂପ ବସ୍ତ୍ରସ ଭୂଷଣ ।
ନାନାରଙ୍ଗେ ସେବାକର ଗାଢ଼ ଲୋଭ ହୃଦେ ଧର ଦମ୍ଭ, ଲଜ୍ଜା, ଜାତ,ଦାସ୍ୟ,ଧନ

ହେ ହରଦୂତ

ଏମାନ ଭେଜଲେ ପାଇ ପ୍ରେମ । ବ୍ରହ୍ମଜ୍ଞାନେ କଅର୍ଥେ ନ ଭ୍ରମ ହେ । ୬
ତଥାପି ମଧୁର ରସେ ଜ୍ଞାନ ଯେବେ ଅଳ୍ପ ମିଶେ ତାକୁ ସେ କରଇ ବେଗ ନାଶ ।
ପତିବ୍ରତା ନାରୀ ଯେସନେ ପର ପୁରୁଷର ସଙ୍ଗେ ସଂଯୋଗ ହୋଇଲେ ହୋଏ ଭ୍ରଂଶ

ହେ ହଂସଦୂତ

ସେହୁମତେ ଭକ୍ତ ରସେ ଜ୍ଞାନ । ଆମ୍ଭମାନେ ନ ଜାଣୁ ସେମାନ ହେ । ୭
ଜାଣୁ ତାହା ଶୁଣ ତାହା ତୁମ୍ଭେ ଯେ ପବିତ୍ର ଦେହା ତେଣୁ ଜର କହିବା ସେ କଥା ।
ଅନ୍ୟଜନ ହେଲେ ତାକୁ ନ କହନ୍ତୁ ଭଜଁ ଯାକୁ ସେ ତ ଆତ୍ମାସଂପୁଟର କଥା

ହେ ହଂସଦୂତ

ବ୍ରହ୍ମଜ୍ଞାନୀ ନ ଜାଣନ୍ତି ତାହା । ଶୁଷ୍କ ଦାରୁ ପ୍ରାୟେ ତାଙ୍କ ହିସ୍ସା ହେ । ୮
ସେହି ରୂପେ ତୁମ୍ଭ ମନ ଜାଣିଲୁଁ ଶୁଣି ବଚନ ବ୍ରହ୍ମ ବୋଲି କହିଲ ହେଳରୁ ।
ସଚ୍ଚିଦାନନ୍ଦ ଅଙ୍ଗରୁ ସର୍ବବ୍ରହ୍ମ ସେହିଠାରୁ ତାଙ୍କ ବିନେ କିଛି ନ ସମ୍ଭବୁ ।

ହେ ହଂସଦୂତ

ସେହୁ ବ୍ରହ୍ମଙ୍କୁ ନ ଜାଣୁ ଆମ୍ଭେ । ତାଙ୍କ ସ୍ତବ କଥା ଜାଣ ତୁମ୍ଭେ ହେ । ୯
କାଳନ୍ଦୀ ହ୍ରଦରେ ପଶି ଯେହୁ କାଳୀଦର୍ପ ଧ୍ୱଂସି ଯେ ସ୍ତମ୍ଭିଲେ ଶକଟା ଅର୍ଜ୍ଜୁନ ।
ପୁତନା ପରାଣ ଶୋଷି ଷଣ୍ଡା ବକା ଅଘା ନାଶି ଯେ ନାଗର ଆମ୍ଭ ମୂଳ ବ୍ରହ୍ମ ।

ହେ ହଂସଦୂତ

ଆନ ବ୍ରହ୍ମେ ନ ରୁଚଇ ମନ । ମନ । ତୁମ୍ଭେ କପଟ କହୁଛ ଏସନ ହେ । ୧୦
ଯେ ଗିଳିଲା ଦାବାନଳ ରଖିଲା ବ୍ରଜକୁଳ ଇନ୍ଦ୍ରଛଳେ ଟେକ ଗୋବର୍ଦ୍ଧନ ।
ଆମ୍ଭ ବ୍ରହ୍ମ ସେହୁ ଜାଣୁଁ ଆନ ବ୍ରହ୍ମକୁ ନ ଗଣୁଁ ନିତ୍ୟେ ଭଜୁଁ ତାହାଙ୍କ ଚରଣ ।

ହେ ହଂସଦୂତ

ସ୍ୱରୂପ କହିଲୁଁ ତୁମ୍ଭ ଆଗେ । କେବେହେଁ ନ ଯିବୁଁ ବ୍ରହ୍ମଯୋଗେ ହେ । ୧୧
ତୁମ୍ଭେ ଯେ ବୋଇଲ ସର୍ବ ହୃଦରେ ବ୍ରହ୍ମର ଠାବ କେବେ ଆହ୍ମ ଭଜୁଛ କାହାକୁ ।
ତୁମ୍ଭର ଶରୀରେ ଅଛି ଖେଳଇ ପରମ ପକ୍ଷୀ କେହୁ ପ୍ରାଣ ପେଷିଛି ତୁମ୍ଭଙ୍କୁ ।

ହେ ହଂସଦୂତ

କାହା ବୋଲେ ଗୋପକୁ ଅଇଲ । କାହା ଆଜ୍ଞା ଅମ୍ଭଙ୍କୁ କହିଲ ହେ । ୧୨

ଉଦ୍ଧବ ବୋଲନ୍ତି ଶୁଣି ପେଷିଛନ୍ତି ବେଣୁପାଣି ତୁମ୍ଭଙ୍କୁ ପ୍ରବୋଧି ଦିବା ପାଇଁ
ଶୁଣି ହସିଲେ ଗୋପିକା ଏବେ ସେ ପାଶୁଲେଁ ଜାଣି ଅମ୍ଭ ବ୍ରହ୍ମ ସବୁର ଗୋସାଇଁ
ହେ ହରଦୂତ
ତୁମ୍ଭ ବ୍ରହ୍ମ କୃଷ୍ଣ ହୋଇଲେ ଛନ୍ତି, ଆଜ୍ଞାପାଇ ସମସ୍ତ କରନ୍ତି ହେ । ୧୩
(ମଥୁରାମଙ୍ଗଳ—୨୭ଶ ଛାନ୍ଦ)

## ଚିଠାଉ

(ରାଗ-କଲ୍ୟାଣ ଆହାରୀ)

ଲେଖ ଗୋ ଗୋବିନ୍ଦ ତୁମ୍ଭକୁ ଚିଠାଉ ଏ ଆମ୍ଭର ଯେତେ ବିପତ୍ତି ।
ଶୁଣି ଗୁଣବତୀ ଆନନ୍ଦ ହୋଇଲେ ବୋଲେ ଲେଖନ ପତ୍ର ଦିଅ ।
ଶୁଣି ସେ, ସୁରଙ୍ଗିଣୀ ବେଗେ ଉଠିଲା ।
ତକ୍ଷଣେ କରେ ସମର୍ପଣ କରାଇ ଲିହ ବୋଲି ପାଦେ ଲୋଟିଲା । ୧
ଶୁଣି ଚନ୍ଦ୍ରାନନୀ ଧଇଲେ ଲେଖନୀ ବାମକରେ ପତ୍ର ଶୋହିଇ ।
ପ୍ରଥମେ ଗୋପୀନାଥ ପାଦେ ଶରଣ ବୋଲି ଖଞ୍ଜନାକ୍ଷୀ ଲିହିଇ ।
ଗୋକୁଳ-ସୁନ୍ଦର ବରଜ-ନନ୍ଦନ !
ନବ ଜଳଧର ବରନ ଯଶୋଦା ନନ୍ଦନ ଜଗତ ଜୀବନ । ୨
ତୁମ୍ଭେ ଗଲାଦିନୁ ଯାହା ହୋଇଲୁଣି ତାହା ଜାଣନ୍ତା ନାହିଁ କେହି ।
ତୁମ୍ଭ ବିନୁ ତିନି ଲୋକରେ କେ ଅଛି ଜାଣିମାକୁ ନନ୍ଦ କହ୍ନାଇ ।
ସଚେତନ, ଅରେ ବଜେ ହେବ ଏଥିକି ।
ତୁମ୍ଭରେ ତୁମ୍ଭର ବସି ଶୁଣାଇବୁଁ ଦୁଃଖ ରତ୍ନାକର ପୋଥିକି । ୩
ଅଶନ ବିଷ ବସନ ଅଦ୍ଭ୍ୟମ କଣ୍ଟକ ଗଲାନି ଅଙ୍ଗକୁ ।
ତାଙ୍କ ହାରଭାର ବହି ନପାରୁ ତୁମ୍ଭ ଅଙ୍ଗ ସଙ୍ଗ ଭଙ୍ଗକୁ ।
କୃଷ୍ଣ ହେ, ନ ଯାଉଁ ଯମୁନା ଜଳକୁ ।
ଯେବେ ଯାଉଁ ତେବେ ନେତ୍ର ବୁଜିଥାଉଁ ନ ଦେଖୁଁ କଦମ୍ବ ମୂଳକୁ । ୪
ଦଶା କାଟିଲ ନିଶାକରକୁ ନ ଗୃହୁଁ, ନ ଘେନୁ କର୍ପୂର ଚନ୍ଦନ ।

ଝର ସରି ହୋଇ ଝରନ୍ତେ ନୟନୁ ଲୋତକ ଝରଇ ମୋହନ ।
ନାଥ ହେ, ଏଣୁ ନ ଘେନୁଛୁ ଅଞ୍ଜନ, ।
ମସ୍ତକେ ସିନ୍ଦୂର ବନ୍ଦୁକୁ ନ ଘେନୁ ନ କରୁ ମକରୀ ଲେଖନ । ୬
କବରୀ ନ ବାନ୍ଧୁଁ ଅଙ୍ଗକୁ ନ ମାଜୁଁ କୃଶ ହେଲୁଣି ଗୋପୀକୁଳ ।
ଅଧର ରଙ୍ଗିମା ବଦନ ଭଙ୍ଗିମା ତୁମ୍ଭ ବିନୁ ସବୁ ନିଷ୍ଫଳ ।
ନାଥହେ, ଦବାନଳଣି ଏକେ ସମାନ ।
ସଦନ ବନ ପରାଏ ନ ରୁଚଇ ଶୀତଜଳ ଅଗ୍ନି ଯେସନ । ୭

✻ ✻ ✻

ପୂର୍ବେ କେତେ ତପ କରିଥିଲୁଁ ଯନା କେତେ ତୁମ ସଙ୍ଗେ ବସିଲୁଁ ।
ସେ ସୁକୃତ କ୍ଷୟ ହୋଇଲାରୁ ଏବେ ପାଇଲୁ ନିଧି ହରାଇଲୁଁ ।
ନାଥହେ, ଆମ୍ଭ ସମ ଦୁଃଖୀ ନ ଥିବେ ।
ଏଡ଼େ ନିର୍ଲଜ୍ଜ କଉଁଜନେ ହୋଇବେ ଏଡ଼େ କଷ୍ଟେ ଦେହ ରଖିବେ । ୭

✻ ✻ ✻

ତୁମ୍ଭ କୃପାସିନ୍ଧୁ ପ୍ରାୟେ ଯୋଡ଼ିଥିଲୁ ବୃନ୍ଦାବନ୍ଦେ ଗୋପୀ-ସଙ୍ଗରୀ ।
ସଫଳାନନ୍ଦନ ଅସ୍ତେ ହୋଇଲା, ଶୋଷିଲା ଅନ୍ଧକାର ଭରୀ ।
ନାଥହେ, କେମନ୍ତେ ବଞ୍ଚିବୁ ବସ୍ତୁର
ଯାହା କହୁଥିଲ ତାହା ପାଶୋରିଲ ଚଉଡ଼େ କପା ନ ବସ୍ତୁର । ୮
ଆମ୍ଭ ଭାଗ୍ୟକୁ ରସଦାନି ଅମୃତ ପ୍ରବଳ ହୋଇ ହୃଦେହେଲା ।
କଂସ ଡ଼ଗର ଚଢ଼ିକ ମହାବାତ ମଥୁରା ଦଗେ ଉଡ଼ାଇଲା
ନାଥହେ, ନରଣ ହୋଇଲୁଁ ଗୁଆଳୀ ।
ସନେ ନିକ ଅଉ ଲେଉଟି ଆସିବ କୃପାଜଳକୁ ଦେବ ଢାଳି । ୯
ତୁମ୍ଭ ନନ୍ଦନ ଯେଉଁରୂପେ ପର୍ବତମାନଙ୍କୁ ସତ୍ୟ କରାଇଲେ ।
ଦକ୍ଷିଣେ ଯାଇ ନର୍ମିନ୍ତେ ହୋଇରହ କେବେହେଁ ବାହୁଡ଼ି ନଇଲେ ।
ନାଥହେ, ନେହ ରୂପେ ହେଲ ପରାୟେ ।
ତୁମ୍ଭେ ଅସ୍ତେ ଅମ୍ଭେମାନେ ଶିଖରୀ ସତ୍ୟକୁ ବହୁଅଛୁଁ କାୟେ । ୧୦

ତଥାପି ବଡ଼ ଲୋକଙ୍କର ବିସ୍ମର ଏମନ୍ତ ପରାସ୍ତ ଦିଶଇ ।
ଦିଗବାସ ବଧୂ ଶଚୀ ସୁରପତି ଏହାଙ୍କ ଠାରେ ପ୍ରକାଶଇ
ତାହାଙ୍କୁ, କେ ଅବା ନିନ୍ଦିବ ମର୍ତ୍ତ୍ୟରେ ।
ସେମାନଙ୍କ ସଙ୍ଗେ ତୁମ୍ଭେ ଏବେ ହେଲ କି ହେବ ଆଉ ତା କହିଲେ । ୧୧
ତୁମ୍ଭେ ସେହି ରୂପେ କଲେହେଁ କେ ଅବା ନିନ୍ଦା କରିବ ବଡ଼ପଣ ।
ଏଣୁ କରି ମନେ ବିସ୍ମର କରୁଛୁଁ ନ ପୁଣ ନ ଆସ ମୋହନ ।
ନାଥ ହେ, ଦୀନ ଜନେ ଦୟା କରିବ ।
ତେବେ ସିନା ଦୀନବାନ୍ଧବ ନାମକୁ ଭାଲେ ଭାଲେ ନିଶ୍ଚେ ବହିବ ।

(ମଥୁରାମଙ୍ଗଳ—୨୯ଶ ଛାନ୍ଦ)

## କହଇ ମନ ଆରେ

କହଇ ମନ ଆରେ ମୋ ବୋଲ କର ।
କଳା ଶ୍ରୀମୁଖ ବାରେ ଦେଖିବା ଚାଲ ରେ ॥
କେତେ ଧନକୁ ମନ ବାନ୍ଧିଛୁ ଆଣ୍ଠ ।
ନ ଯେନ ଯିବୁ ଚୋର ଲୁଟିଲେ ଘଟ ରେ ॥ ୧

ଖଣ୍ଡି ଯେ ଖଣ୍ଡି ତୋର ପଞ୍ଜରା କାଠି ।
ଖାଉଣଥିବେ ଶ୍ୱାନ ଶୃଗାଳ ବାଣ୍ଟି ରେ ॥
ଖଟ ପଲଙ୍କେ ମନ ଶେଯାଇ ଶୋଉ ।
ଖାଲ ଦୁର୍ଗନ୍ଧ ହେବ ଏ ତୋର ଦେହୁ ରେ ॥ ୨

ଗଲେଣି ତୋ ସଙ୍ଗରୁ ଯେତେକ ଜନ ।
ଗଣ୍ଠିରେ ବାନ୍ଧିନେଲେ କେ କେତେ ଧନ ରେ ॥
ଗୁରୁ ଗୋବିନ୍ଦ ନାମ ତୁଣ୍ଡେ ନ ବୋଲୁ ।
ଗାଢ଼େ ମଳିଣ ନିତ୍ୟେ ଧନ ଅର୍ଜିଲୁ ରେ ॥ ୩

ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ ।
ଘଟ ଛୁଟିଲେ ତୋତେ ବୋଲିବେ ଭୂତ ରେ ॥
ଘର ଘରଣୀ ଦେହ କଳାଇ ଥିବେ ।
ଘେନ ବନ୍ଧୁ କୁଟୁମ୍ବ ଶୁଦ୍ଧ ହୋଇବେ ରେ ॥ ୪

ଉଦ୍ଧାର ହେବୁ ଯେବେ ଭବ ସାଗରୁ ।
ଉପାୟ କର ଭଜ ଏବେ ଶ୍ରୀ ଗୁରୁ ରେ ॥
ଊଣା ହେଉଛି ଦିନୁଁ ଦିନ ଆୟୁଷ ।
ଆଉ ଏଣିକି ଅଛୁ କେତେ ବୟସ ରେ ॥ ୫

ଏଡ଼େ ପ୍ରତିମା ପ୍ରାୟେ ଦିଶୁ ସୁନ୍ଦର ।
ଚିରି ଭିତରେ ଦେଖ କି ନାରକାର ରେ ॥
ଚର୍ମ ବେଢ଼ିଛି ସିନା ଚରବିଶିରା ।
ଚିତ୍ତ ତୁ ଦିଅ ନୀଳଗିରିବାସୀଙ୍କି ରେ ॥ ୬

ଛାର ଦେହକୁ ମନ କରିଛୁ ସଜ ।
ଛଳ କପଟ ତେଜି ଗୋବିନ୍ଦ ଭଜ ରେ ॥
ଛୁଇଁବେ ନାହିଁ ତୋତେ ବୋଲିବେ ମଡ଼ା ।
ଛ ଖଣ୍ଡି କାଠ ହେବ ତୋପାଇଁ ଲୋଡ଼ା ରେ ॥ ୭

ଯମ ଯେ ନ ଜାଣଇ ବାଳୁତ ଯୁବା ।
ଜୀଇଁବି ବୋଲି ମନେ କରିଛୁ ଅବା ରେ ॥
ଜଣେ ହେଁ ଏଥେ କେହି ନାହିଁ ଅମର ।
ଜଗନ୍ନାଥଙ୍କୁ ଭଜ ହେବୁ ଉଦ୍ଧାର ରେ ॥ ୮

(ମନବୋଧ ଚଉତିଶା)

# ବନମାଳୀ ଦାସ

(ଅଷ୍ଟାଦଶ – ଊନବଂଶ ଶତାବ୍ଦୀ)

## ପ୍ରୀତି ଛୁରି

ରାଗ-କୁସୁମ କେଦାର—ତାଳଝୁଲା

ପ୍ରୀତି ଛୁରି ଶାଣ ଦିଆରେ, ବାଜିବ ସ୍ଥଳକ କର ଲୁହାରେ । (ଘୋଷା)
ସ୍ନେହଲୁହା ଯତ୍ନେ ତତାଇ ଅଶ୍ରୁ ଜଳ ତହିଁରେ ଦେଇ
ମାର-କାରିଗର ଯତନେ ଗଢ଼ିଛି, ତହିଁରେ କଳଙ୍କ ବିଷପିଆରେ । ୧ ।
ଅତି ବଡ଼ ତୀକ୍ଷ୍ଣ ସେ ଧାର, ନେଜ ନ ଥାକଇ ତହିଁର
ନବୀନ ଦର୍ପଣ ପରି ଝଟକଇ ସବୁଦିନେ ଦେଖ ଦିଶେ ନୂଆ ରେ । ୨ ।
ସେ ଛୁରିକି ଯେତୁ ଛୁଇଁବ, ଜାତି କୁଳ ସବୁ ତେଜିବ ।
ନ ପାଇଲେ ଧରି ନଷ୍ଟେ ନାଶଯିବ, ବିରହୀମାନଙ୍କ ପ୍ରାଣଖିଆରେ । ୩ ।
ବୋଲେ ବନମାଳୀ ସେ ଛୁରି, ସାନବଡ଼ ନୁହେଁ କାହାରି
ଯାହା ସଙ୍ଗେ ଯେତେ ପୀରତି କରଇ, ତେତିକି କରଇ କୁଆଡ଼ୁଆରେ । ୪ ।

## କୃଷ୍ଣନିଆଁ ଗିଳିଛି ନିଆଁ

ରାଗ-ଢପା, ତାଳ ଖେମଟା, ଝୁଲା

କୃଷ୍ଣନିଆଁ ଗିଳିଛି ନିଆଁ ।
ପୋଡ଼ିଦେବଟି ଲୋ ପ୍ରୀତି-ସୁନିଆଁ ।
ହେ ଦରହାସି ! ତୁ ନଦର ଫେରାଇ
କଦର କରି ତାଠାରୁ ଘେନିଆଁ । ଘୋଷା ।
କାଣୁ କନା ପୂତନା ଦାସୀ କ୍ଷୀରପାନେ ଦେଇଛି ନାଶି,
ଶିଶୁଟି ଦିନରୁ ସେ ବଡ଼ ସାହସୀ ଛନ୍ଦାଚରଣିଆ ବୃନ୍ଦାବନିଆଁ । ୧ ।

ବଂଶୀ ସ୍ୱନେ ନାମ ଉଚ୍ଚର, ଦଂଶୀ ଓଷ୍ଠ କସ ବଚ୍ଚର
ବଂଶୀ ନୀପମୂଳେ କ ମନ୍ତ୍ର ପଢ଼ଇ ରସିକ-ରଞ୍ଜନ ବ୍ରଜଧନଅଁ । ୨ ।
ନାଟ କର ଓଗାଳେ ବାଟ ଘାଟଜଗା ସେ ନନ୍ଦସୁଠ,
ଛାଟଧର କଲେ ଯେତେବେଳେ ଆକଟ ତାହାଙ୍କୁ ନ ମାନେ ସେ ଅମାନଅଁ । ୩ ।
ଜାଣଇ ସେ ମୋହନୀ ଲଗା ବେଳ ଦେଖି ବସଇ ଦଗା
ତା ପାଲଟରେ ଜୁଟି ଚୋପଣ ଜେତେକୋଟି ଗୋଟି ଗୋଟି ହୋଇଲେଣି ସ୍ତନଅଁ । ୪ ।
ଦାସ ବନମାଳୀ ବଦତି ଯଶୋଦାଙ୍କି ବୋଲନ୍ତି ଦୂତୀ,
ହାସ-ଲାସ-ଭଙ୍ଗୀ ସୁହାଣି ଛଟାରେ ଭୁଲାଇ ସେ ଜାଣେ ଗୋପଜନଅଁ । ୫ ।

## ଏ ବେଶ ହୋଇବ ନାହିଁ

(ରାଗ-ଲଳିତ କାମୋଦୀ, ତାଳ-ଆଠତାଳି)

ଶ୍ୟାମ ନାଗର ହେ, ଏ ବେଶ ହୋଇବ ନାହିଁ
ଏ ବେଶ ହୋଇଲେ ପାଷାଣ ତରଳେ ଯୁବତୀ ବଞ୍ଚିବେ କାହିଁ । ଘୋଷା ।
ଉଚ୍ଚ ହୋଇଥିବ କଦମ୍ବର ମୂଳେ ନଟବର ବେଶ ହୋଇ
ଘେନିଥିବ ଯେବେ ମୋହନ ମୁରଲୀ ଅଧରେ ଚୁମ୍ବିବ ନାହିଁ । ୧ ।
ପିନ୍ଧିଥିବ ଯେବେ ପିତାମ୍ବର ବୃନ୍ତେ ଭୂମିରେ ଲୋଟିବ ନାହିଁ,
ହସୁଥିବ ଯେବେ ମୃଦୁ ମୃଦୁ ହୋଇ ତେରଛେ ନ ଦେବ ଚାହିଁ । ୨ ।
ଘେନିଥିବ ଯେବେ ଚନ୍ଦନର ବିନ୍ଦୁ ଗୋରୋଚନା ଥିବ ନାହିଁ,
ବାନ୍ଧିଥିବ ଯେବେ ତ୍ରିଭଙ୍ଗ ମା ଚୂଳ ଚନ୍ଦ୍ରିକା ଖୋଷିବ ନାହିଁ । ୩ ।
ଯେତେ ବେଶ ତୋତେ ମନାକଲୁ ଶ୍ୟାମ ତେତେ ବେଶ ହେଲୁ ତୁହି,
ବୋଲେ ବନମାଳୀ ଶୁଣ ଗୋ ସଖିଜେ ! ଏ ବେଶ ତୁମ୍ଭର ପାଇଁ । ୪ ।

## ତୋର ଏଡ଼େ ବଡ଼ାଇ

ଏବେ ନ ଡାକରୁ ରାଧିକା ବୋଲି, ହେ ମୁରଲି, ତୋରେ ଶରଣ ଗଲି । (ଘୋଷା)
ସେ ନନ୍ଦସୁତ ମୁଁ ରାଜକୁମାରୀ । ବଂଶୀ ଦେଲୁ ସିନା ପରଚେ କରି ।
ଲୁଚି ଲୁଚିଯାଏଁ ସଖି ସଙ୍ଗତେ । କି ଘେନ ଚିହ୍ନିଲୁ ମୁରଲି ମୋତେ ।
କାଠ ତୋର କଣ୍ଠା ବାଉଁଶ ଖଣ୍ଡ । ଧ୍ୱନ ସଙ୍ଗେ ଥାଇ କୁସୁମ କାଣ୍ଡ ।
କୃଷ୍ଣ ହସ୍ତୁଁ ତୋତେ କେ ଦ୍ୟନ୍ତା ମୋତେ । ଭସାଇ ଦିଅନ୍ତି ଯମୁନା ସ୍ରୋତେ ।
ମୁରଲୀରେ ତୋର ଏଡ଼େ ବଡ଼ାଇ । ପତିବ୍ରତାପଣ ଦେଉଛ ଛଡ଼ାଇ ।
ବନମାଳୀ ବୋଲେ ଯୋଡ଼ୁଛୁ କର । ଆଉ ଏବେ ମୋର ନାମ ନ ଧର ।

## ଧନ ମାଗୁ ନାହିଁ, ଜନ ମାଗୁ ନାହିଁ

ଜଗନ୍ନାଥ ହେ କିଛୁ ମାଗୁ ନାହିଁ ମୁଁ ତୋତେ
ଧନ ମାଗୁ ନାହିଁ, ଜନ ମାଗୁ ନାହିଁ;
ମାଗୁଛି ଶରଧା-ବାଲିରୁ ହାତେ । ଘୋଷା ।
ଆନ ଦରଶନ ନ ଲୋଡ଼େ ନୟନ ଏକା ତୁମ୍ଭ ଦେଖା ବିନା
ଶୁଣିବାକୁ କାନ ନ ଇଚ୍ଛଇ ଆନ ତୁମ୍ଭ ଚରିତ୍ର କାମନା । ୧
ଜିହ୍ୱା ନ ବାଞ୍ଛଇ ଗ୍ରାମ୍ୟଗୀତ ଗାଇବାକୁ ରଜନୀ ଦିବସ
ତୁମ୍ଭ ନାମାବଳୀ କେବଳ ସମ୍ବଳ ହୋଇଥାଉ ପୀତବାସ । ୨
ନାସା ମୋର ତୃପ୍ତି ନ ଲଭଇ ଆନ ସୁବାସ ଦ୍ରବ୍ୟ ଆଘ୍ରାଣେ
ତୁମ୍ଭ ଛଡ଼ାମାଳ ତୁଳସୀ କୁସୁମ ଚନ୍ଦନ କର୍ପୂର ଘ୍ରାଣେ । ୩
ମୋ ହସ୍ତ ଅଞ୍ଜଳି ଦିଅ ବନମାଳୀ, ହରେ କୃଷ୍ଣ ଜପୁଥାଉ
ବୋଲେ ବନମାଳୀ ମୋ ବେନିଚରଣ ତୋ ତୀର୍ଥଭ୍ରମଣେ ଧାଉଁ । ୪

## ନୂଆ ନୂଆ ଦିଶେ

ରାଗ ସୌରାଷ୍ଟ୍ର ଝୋଲ

ଦିନୁ ଦିନୁ ନନ୍ଦ-ତନୟ ଗୋ ନବ ପରି ମିତ ।
ଯେତେ ଦେଖୁଥିଲେ ପ୍ରୀତି ବଢୁଥାଇ ତୃପତ ନୁହଇ ଚିତ୍ତ । ପଦ ।
ହାସରେ ସଖୀ ଭାଷାରେ ତାର ପିୟୂଷ ଯେ ଥାଇ ପୂରି ।
ଗ୍ରୀବରେ ପଡ଼ି ଧୃତି ନାଶଇ ବୃତ୍ତି ତେଜଇ ନାରୀ । ୧
ଖଞ୍ଜନ-ମୀନ-ଗଞ୍ଜନ ମୃଗ-କଞ୍ଜ-ନୟନ ତାର
ଚିତ୍ତରେ ପଡ଼ି କାଟ ମାରଇ ଜାତ ମଦନ ଶର । ୨
ଭୁଞ୍ଜ ସବୁ ସଜାଡ଼ିଲା ଭଳି ଦେଖେ ଭାଳି ବସି ବନ୍ଧୁ ।
କାମ ହୋଇଲେ ଝାମ ହୋଇବ ଶ୍ୟାମ ମୂରତି ସିନ୍ଧୁ । ୩
ବନମାଳୀ ବୋଲେ ମନ ମିଳିଗଲେ ସନ୍ତୋଷ ନୁହଇ ଆଖି ।
ଯେତେ ଚତୁରେ ସବୁଥିରେ ପୁଣି ତେତେ ନୂଆ ନୂଆ ଦିଶେ ସଖି । ୪

## କାହାରେ କହିବି ସହି

ରାଗ—ମୁଖାରି ଆଠତାଳୀ

କାହାରେ କହିବି ସହି ମୋ ଅନ୍ତର ଦାହା ରେ ।
ଯାହାରେ କହିଲେ ସହି କେହି ନ ବୋଲିବେ ଆହା ରେ । ପଦ ।
ନାହାରେ କି ଦୋଷ କଲି ତେଜିଲେ ସେ ଯାହା ରେ
ସାହାରେ ଦିଶିବ କଷ୍ଟେଁ ନ ପାଇଲେ ତାହାରେ । ୧
ଆହାରେ ନାହିଁ ପୀରତି କ୍ଷୀଣ ହେଲି ଗୃହା ରେ
ସାହାରେ ରୁ ହେଲେ ଯିବି ଶରଣ ମୁଁ ଭାହାରେ । ୨
ବାହାରେ ପ୍ରୁରିବ ସତେ ମୋ ଶ୍ରବଣ ଗୁହା ରେ
ତାହାରେ ହୃଦୟ—ଶେଜ ସତେ ହେବ କହାରେ । ୩
ହାହାରେ ତେଜିଲି ମୁହିଁ ସବୁ ଆଶା ରାହାରେ
ଗୁହାରେ ଯେ ଜାଣେ ପ୍ରୀତି ବନମାଳୀ କହାରେ । ୪

(ବନମାଳୀ ପଦାବଳୀ)

## କେଶବ ପଟ୍ଟନାୟକ

(ଅଷ୍ଟାଦଶ-ଊନବିଂଶ ଶତାବ୍ଦୀ)

### ତୁମ ସଙ୍ଗେ ମୁହିଁ ଯିବି

(ରାଗ—ଘଣ୍ଟାରବ)

ସୀତା—ତୁମ୍ଭ ସଙ୍ଗେ ମୁହିଁ ଯିବି, ହେ
ନାହିଁ କଲେ ନ ମାନିବି,
ଛାଇ ପରି ପାଶେ ସେବା କରିବି ହେ, ରଘୁନନ୍ଦନ !
ତୁମ ଶୋଭା ଦେଖୁଥିବି ।
ରାମ—ସଖି ! ତୁ ଏହା ନ କହ ଗୋ,
ଶାଶୂ ପାଦେ ଚିତ୍ତ ଦିଅ,
ଜନନୀମାନଙ୍କ ମନ ତୁ ନିଅ ଗୋ, ରାମାରଞ୍ଜନ !
ଶ୍ୱଶୁରଙ୍କୁ ସେବି ଥାଅ ।
ସୀତା—ଯେତେ ଋଷି ପୂର୍ବେ ଥିଲେ ହେ,
ଯେତେ ରାମାୟଣ କଲେ,
ଜାଣ କି ଜାନକୀ ସଙ୍ଗେ ନ ନେଲେ ହେ, ରଘୁନନ୍ଦନ !
ରାମ ବନବାସ କଲେ ।
ରାମ—ହଂସତୂଳୀ ତୂଳୀରେ ଶୋଇ ରେ
ନିଦ୍ରା ଯେ ଆସଇ ନାହିଁ ।
ଫଳମୂଳ ଖାଇ ତୃଣ ଶେଯେ ଶୋଇ ରେ ରାମାରଞ୍ଜନ !
କି କାଳ କାଟିବୁ ତୁହି ରେ ।
ସୀତା—ତୁମ୍ଭଙ୍କୁ ବିନା ମୋ ଅଣ ହେ,
ତୁମ୍ଭେ ମୋ ଜୀବନ ମୁହାଁସ
ତୁମ୍ଭର ଯେମନ୍ତେ ଅରଣ୍ୟେ ବାସ ହେ, ରଘୁନନ୍ଦନ !
ଘରେ ମୁଁ କରିବି କିସ ?

ରାମ—ଅତି ସୁକୁମାରୀ ତୁହି ଗୋ,
ନବନୀ ପିତୁଳା ଦେହୀ ।
ଖରବେଳେ ବାଟ ଚାଲିବୁ କେମନ୍ତ ରେ, ରାମାରଞ୍ଜନ ।
ତାତଲ ପଥର ଭୂଇଁ ।

ସୀତା—ଅନ୍ତର ଜଳେ ଏ ଯାତ୍ରା ହେ,
ଝୁରି ମରୁଥିବ ନାଥ,
ଅସର ହୋଇବ ବାସର ଘାତ, ହେ ରଘୁନନ୍ଦନ ।
ଫାଟିଯାଉଥିବ ଗାତ୍ର ।

ରାମ—ନ ପାର ତୁ ଅଣନ୍ତ ଗୋ,
ଜଗତେ ବସିବୁ ପଥେ,
ଜଳଜାତ ଜଳେ ଜଳଜ ନେତ୍ରେ, ଗୋ ରାମାରଞ୍ଜନ ।
କ ଦୁଃଖ ନ ଦେବୁ ମୋତେ ।

ସୀତା—କହୁଛ କେତେ ଯୁକତ ହେ,
ତୁମ୍ଭେ କ ଏକା ଚତୁର,
ତୁମ୍ଭଠାରୁ ପରା ମୁଁ ସୁକୁମାର ହେ ? ରଘୁନନ୍ଦନ ।
ରଖ ରଖ ଏ ଚତୁର ।

ରାମ—ଲଙ୍ଘିଲ ବୟସ ତୋର ଗୋ,
ଲତା ତରୁ ବନ ଘୋର,
ଲଙ୍ଘି ପାରିବୁ କି ଗିରି ଶିଖର, ରେ ରାମାରଞ୍ଜନ ।
ତୁହେଁ ଏ ଅଯୋଧ୍ୟା ପୁର ।

ସୀତା—କେଉଁ ସଧକୁ ରହିବ ହେ,
କାହାକୁ ଦୁଃଖ କହିବ,
କୈକେୟୀ ଗୁମାନ ମୁଁ କି ସହିବ, ହେ ରଘୁନନ୍ଦନ ।
ପ୍ରାଣ ବିନା ହରାଇବ ।

ରାମ—ଆପଣା ଶ୍ରୀଅଙ୍ଗ ଚାହୁଁ ଗୋ,
ଚମକ ଉପୁରେ ଥରୁ ।

କେଉଁ ଜନ୍ମପଣେ ଘରୁ ବାହାରୁ, ରେ ରାମାରଞ୍ଜନ ।
କମା ମୋ ହସାର ସାରୁ ।
ସୀତା—ନଶ୍ୱେ ଯେବେ ଗ୍ରୁଡ଼ିଯିବ ହେ,
ଏହୁ ଘଣ ଅରଣ୍ୟ ।
ନଗର ମୋର ଏ ଆଖର ହେବ, ହେ ରଘୁନନ୍ଦନ ।
ଆସି ଆଉ ନ ଦେଖିବ ।

(ନୃତ୍ୟ ରାମାୟଣ—୩୩ଶ ଛାନ୍ଦ

## ଚଣ୍ଡାଳ ଓ ସୁନ୍ଦରୀ

ରାଗ—ନଳିନୀ ଗୌଡ଼ା

ରାବଣ ବୋଲଇ, ଦାତା କେ ଅଛୁ ଏ ପୁରେ,
ସନ୍ନ୍ୟାସୀ କ୍ଷୁଧାରେ ଆସି ପ୍ରକାଶୁଛୁ ଦ୍ୱାରେ,
ଦଅ ଗ୍ରାସ ଗୋ,
ଝନ ଦନୁଁ ମୁହିଁ ଉପବାସ ଗୋ । ୧ ।
ଅକୁଳରେ ଡାକୁଛୁ ସେ ଦୁଆର ଆଢୋଳ,
ନ ଶୁଣନ୍ତ ମହାସତୀ ପର ରୁଣ୍ଡ ବାଳ,
ପୁଣି ଡାକେ ଯେ,
"ନ ଦେଲେ ପଡ଼ିବ କୁମ୍ଭୀପାକେ ଯେ" । ୨ ।
ବଇଦେହୀ ବୋଲେ ବୁଦ୍ଧି "ଶୁଣ ତପୀଜନ,
କାନ୍ତ ଆସି ମନ ତୋଷି ଦେବେ ସେ ଭୋଜନ,
ଦଣ୍ଡେ ଧୈର୍ଯ୍ୟ ହେ,
ଗ୍ରୁଡ଼ଗଲେ ପଡ଼ିବ ନିଃଶ୍ୱାସ ହେ" । ୩ ।
"ଆହେ ନାହିଁ ବନଗୃହ ଘର ବଶୁନାହିଁ,
କେଉଁ ଦେଶ ଛାଡ଼ି ଅସ ବନେ କପାଁ ରହ,
ଚନ୍ଦ୍ରମୁଖି ଗୋ,
ପାଷାଣ ତରଳେ ରୂପ ଦେଖି ଗୋ" । ୪ ।

"ଅଯୋଧ୍ୟାର ନୃପବର ଦଶରଥଙ୍କର,
ଜ୍ୟେଷ୍ଠ ସୁତ ମୋର କାନ୍ତ ବଲ୍ଲଭ ତାଙ୍କର,
ମୁହିଁ ସୀତା ହେ,
ଜନକ ରାଜନ ମୋର ପିତା ହେ" । ୫ ।

"କୋଟି ଦୁଃଖ ତୁଟେ ଦେଖ ଦେଖିଲେ ତୋ ମୁଖ,
ବନେ ପକାଇଛୁ ଏବା କଉଣ ନରେଖ,
ନାହିଁ ପାଖ ଗୋ,
ପଢ ତୋର ଅଛିଁ କି ମୂରୁଖ ଗୋ" । ୬ ।

"କନକ ରତନ ମୃଗ ଅତୀବ ଯତନ,
ଦୁର୍ଲଭ ମଣିଣ ଗଲେ ବଲ୍ଲଭ କାନନ,
ଆଇ ବେନ ହେ,
ମୃଗ ମାର ଆସିବେ ସେ ଘେନ ହେ" । ୭ ।

ଉନପୁର ଅଳଙ୍କାର ବୃନ୍ଦ ଗୋ ନବୀନା,
ତାଳପରେ ଆଜିବାର କାଳ ଗଲ ସିନା,
ନାହିଁ ଆଗ୍ୟ ଗୋ,
ସ୍ୱର୍ଗ ପୁରକୁ ତୁ ଅଟୁ ଯୋଗ୍ୟ ଗୋ" । ୮ ।

"କାନ୍ତ କୋଳେ ଥିଲେ ଖେଳେ କସ ସ୍ୱର୍ଗ ପୁର,
ପର୍ଣ୍ଣଶାଳା ଘର ମୋତେ ଚନ୍ଦ୍ରଶାଳାପୁର,
ତୁ କି ଜାଣୁ ଯେ,
ଯତ୍ନ ହୋଇ କେତେ ତୁ ବଖାଣୁ ଯେ" । ୯ ।

"ହଂସ ଜଳ ଲେଉଟିଲେ ଗୋ ହଂସ ଟେଳ ନାହିଁ,
ଲବଣୀ ପିତୁଳା ପଦ୍ମ ଖଦ୍ମ ସମ୍ଭାଳଇ
ଲୁଚିଯାଏ ଯେ,
କୋମଳ ପିଣ୍ଡ କି ଦଣ୍ଡ ସହେ ଯେ" । ୧୦ ।

"ବନ୍ଦିତ ଜଗତେ ଯେହୁ ନନ୍ଦିତ କହନ୍ତି,

ଯହିଁ ଦେଲେ ଚକ୍ଷୁ ଭୁଲେ ହୋଇଯିବେ ମୋକ୍ଷ,
ନୁହେଁ ବ୍ୟାଜ ହେ
ମୋ ପଥ ବୋଧିଦେବ ରାଜ ହେ" । ୧୧ ।

"ବଣିକ ଚହ୍ନଇ ଯିନା ମାଣିକ୍ୟ ମଣିକ,
ନାଗର ଚହ୍ନଇ ଯିନା ନାଗସ୍ତ୍ରୀମଣୀକ,
ଭିନ୍ନ ନୋହେଁ ଯେ,
କ୍ଷୀର ନୀର ମିଶେ କପେ ଦେହେ ଯେ" । ୧୨ ।

"ଆଣ କର ଯେବେ ଆତ୍ମ ପାଶକୁ ହେ ଆସୁ,
ବୋଧ ପନ୍ତ ରହ କେତେ ସଖ୍ୟ ଲେଙ୍କ ବସୁ,
ରୂନ ହୁଅ ହେ,
ମୋ କାନ୍ତକୁ ଭେଟି ତାଙ୍କୁ କହ ହେ" । ୧୩ ।

"ଭରସା କେହୁ ତ ନାହିଁ ସୁରସ୍ୱାମଣ୍ଡନା,
ପ୍ରଚଣ୍ଡ-କୁସୁମ-କାଣ୍ଡ-ପ୍ରମାଦ-ଖଣ୍ଡନା,
କାହିଁ ପାଇଁ ଗୋ,
ଏଥେ ଅଛୁ ଏତେ ଦୁଃଖ ସହୁ ଗୋ" । ୧୪ ।

"ଗ୍ରାମ ଚୋର କେତେ ଦୂର ନାମ କ ବୋଲଉ,
ଭିକ୍ଷା ମାଗି ଆସି କେତେ ଦୁଃଖ ଯେନୁଥାଉ,
ଏ କି ପାପ ରେ
ମୋର ପାଇଁ ଚୋର କ ସନ୍ତାପ ରେ" । ୧୫ ।

"ତାତ ମୋ ବିଶ୍ରବା ଋଷି ଭାତ ମୋ କୁବେର,
ସୁବର୍ଣ୍ଣର ଲଙ୍କାପୁର ରାଜା ମୁଁ ଉଦ୍ଧିର,
କହ ଆଣ ଗୋ,
ତେଜ ବନ ମୋ ଭୁବନ ଆସ ଗୋ" । ୧୬ ।

"ପାମର ରେ ରାମଣରେ ଯମତୁଲ୍ୟ ଯିବୁ:
ପଳା ପଳା କଲେ ହେଲା ପରାଣି ତେଜିବୁ,

ଘୃଡ଼ ଝାଣରେ,
ପୋଡ଼ୁ ତୋର ଲଙ୍କେଶ୍ୱର ପଣେରେ" । ୧୭ ।
"ବୃନ୍ଦ ବୃନ୍ଦ ସୁନ୍ଦରୀ ମୋ ରାଣୀ ମନ୍ଦୋଦରୀ,
ହବା ନଥି ପଣେ ଦାସୀ ସଙ୍ଗେ ଥିବେ ଘେରୁ,
ମୋତେ ବର ଗୋ,
ସର୍ବସ୍ୱର ଜର୍ବଣ ନ କର ଗୋ" ।। ୧୮ ।
"ରୁଣ୍ଡ ତୋର ଛୁଡ଼ି ପଡ଼ୁ ମୁଣ୍ଡେ ବଜ୍ର ପଡ଼ୁ,
ଖଣ୍ଡାଧାରେ ଚଣ୍ଡାଳ ରେ ସ୍କନ୍ଧେ ସ୍କଲ ଲେଡ଼ୁ,
ଅକାଳରେ ଯେ,
ବେଳ ବୁଡ଼ିବ ଜ ସନ୍ଧାଳରେ ଯେ" । ୧୯ ।
"ନୃପତନନ୍ଦନା ଆରେ କୋପରେ ରସ ନା,
ରୁଣ୍ଟୁଥିଲ ଦନ୍ତ ସିନା ସୁଷ୍ଠୀନବସନା,
ରୁ ସାଧ୍ୱୀ ଗୋ,
ଫେଣଣ କ ଭିକ୍ଷା ଦେଉ ଯିବ ଗୋ" । ୨୦ ।
ଜଟାଳ କଟାଳ ପାଇ ଅନଳେ ଲୁଚିଲେ,
ଛାୟା ମାୟା ରୂପେ ଅପେ କାୟା ବରଚିଲେ,
ବରନାରୀ ଯେ,
ବାହାର ଅହାର ଧୀରେ ଧର ଯେ । ୨୧ ।
ସୁଙ୍ଗରୁ ସେ ଦୂର ହୋଇ ଥାଳ ଧରି ମାଗି,
ଦେଖି ଦ୍ୱାର ଛନ ଗାର ଠାରେ ରହୁ "ଯୋଗୀ,
ଧର ଧର ହେ,
ନ ଲଙ୍ଘଇ ବନ୍ଧ୍ୱା ବିସ୍ତୃ ସ୍ୱର ହେ" । ୨୨ ।
"ସୁନ୍ଦରୀରେ ପଦ୍ମାଡରେ ଦାନ ଫଳ ନାହିଁ,
ଡେଇଁ ପାଦେ ରୁ ସ୍ୱଚ୍ଛନ୍ଦେ ଦଅ ଗା ବଢ଼ାଇ,"
ପାଦ ଗୁଞ୍ଜି ଯେ,
ଦେଲେ ଥାଳ ପରେ ଫଳ ଡାଳି ଯେ । ୨୩ ।

ଅସୁ ଦୃଷ୍ଟି ହସ୍ତ ଅସ୍ତ୍ର ପାଣ୍ଠି ସେ ଧଇଲା,
ଧାଡକାରେ ରଥପରେ ନେଇ ବସାଇଲା,"
ବେଗେ ବାହେ ଯେ,
ଗଗନରେ ଯାନ ଖରେ ଯାଏ ଯେ । ୨୪ ।
ଉଚ୍ଚସ୍ୱରେ ଗଗନରେ କରନ୍ତି ରୋଦନ,
"ରଖରଖ ହେ ଶ୍ରୀରାମ, ରଖ ହେ ଲକ୍ଷ୍ମଣ,
ନଷ୍ଟେ ମଲି ହେ,
ଆହେ ନାଥ ମୁଁ ଅନାଥ ହେଲି ହେ" । ୨୫ ।
ଉଡ଼ିଲା ସାହସ ମାଡ଼ି ପଡ଼ିଲା ବିପତ୍ତି,
ଡରିଗଲା ପ୍ରାଣ ତାଙ୍କ ସରିଲା ସଂପତ୍ତି,
ଘେନି ଗଲା ଯେ,
ବୋଲଇ କେଶବ ଭାଲେ ଥିଲା ଯେ । ୨୬ ।

(ନୃତ୍ୟ ରାମାୟଣ—୬୪ ତମ ଛାନ୍ଦ)

# ଗୋପାଳକୃଷ୍ଣ ପଟ୍ଟନାୟକ

(୧୭୮୫—୧୮୬୨)

## ପଦାବଳୀ

(ରାଗ—ଲଳିତ, ତାଳ ଝୁଲା)

୧

ରାଧା ପଚ୍ଚରନ୍ତି ସଙ୍ଗାତରେ କେ ସେ ବ୍ରଜରାଜ ସୁତ ?

ଲଳିତା କହନ୍ତି ମିତଣିରେ

ମୋହ ହୋଇଗଲୁ ସେ ବନ ଶୁଣି ରୁ ଯାହାର ମୁରଲୀ ଗୀତ ରେ ପ୍ରାଣମିତ । ୧ ।

ରାଧା—କି ନାମ ବୋଇଲୁ ରୁହ ଗୋ ଲଳିତେ ?

ଲଳିତା—ପୁଣି ଶୁଣିବାକୁ ଚାହ୍ନ ବଳାଇ କି କୃଷ୍ଣ ବୋଲି ଥିଲି କହୁଛ ପ୍ରାଣମିତ । ୨ ।

ରାଧା—ବୟସ କେତେ ତାଙ୍କର ?

ଲଳିତା—ନବ ତରୁଣିମ ଅବସ୍ଥା ବୟସ ହୋଇଥିବ ବାର ତେର ରେ ପ୍ରାଣମିତ । ୩ ।

ରାଧା—କେଡ଼େ ଭଲ ଉଚ ହେବେ ?

ଲଳିତା—ରୂ ତାଙ୍କ ଶ୍ରୁଦ୍ଧ ତଟକୁ ସରହେବୁ ଅନୁମାନୁଛୁ ମୁଁ ଏଡେବ ରେ ପ୍ରାଣମିତ । ୪

ରାଧା—ବିବାହ ହୋଇଲେଣି କି ?

ଲଳିତା—ବଧୂ ସଧେ ହାତ ଭଙ୍ଗ ହେଉଛନ୍ତି ଯଶୋଦା ତୋତେ ବଳେକ

ରେ ପ୍ରାଣମିତ । ୫ ।

ରାଧା—ମୋ ଆଡ଼କୁ କେଣେ ଚାହିଁ ?

ଲଳିତା—ଯଥା ଯୋଗ୍ୟ ବୋଲି ମନ ଲେଖିଛନ୍ତି କଥାକୁ କାହିଁକି ଚକୁ

ରେ ପ୍ରାଣମିତ । ୬ ।

ରାଧା—ଏଡ଼ ଗୋପରେ କି ବାସ ?

ଲଳିତା—ଆମ୍ଭ ଅଟ୍ଟାଳିକା ଆଗ୍ରେହୁଣିଲି ଦକ୍ଷିଣ ତାଙ୍କ ସଉଧ କଳସ

ରେ ପ୍ରାଣମିତ । ୭

ରାଧା—ଶୁଭୁଛୁ ଏକ ନୟନ ?

ଲଳିତା—ବେନୁ ମୁରଲୀ ବଜାଇ ଅସୁଛନ୍ତି ସେହି ବ୍ରଜେନ୍ଦ୍ର ନନ୍ଦନ ରେ ପ୍ରାଣମିତ । ୮ ।

ରାଧା—ଦେଖିବା ରହି କୋଠାରେ ?

ଲଳିତା— ହର୍ମ୍ୟ ଆରୋହ କର ଦେଖ ଗୋପାଳ କୃଷ୍ଣ କର ପଇଠାରେ ପ୍ରାଣମିତ ।୯ ।

୨

ରାଧାଗୋବିନ୍ଦ ଚଉତିଶା ବୃନ୍ଦେ—ଝୁଲ ତାଳ

କେଶର କୁଞ୍ଜ ଶେଯରେ ।   ବ୍ରଜେନ୍ଦ୍ର ବୃନ୍ଦାଙ୍କୁ ପୁଚ୍ଛନ୍ତି ଧୀରେ

ସହଚରୀ ରେ ।   ରାଧା ବୋଲି କେ ବ୍ରଜରେ । ୧

ଶୁଣିଲି ବେଣୁ ସେ ନାମ ।   ସୁଧା ପାନ ପରି ଲାଗୁଛି ଶର୍ମ

ସହଚରୀ ରେ ।   ଫିଟାଇ କହ ମରମ । ୨ ।

ଚହଟ ଦଗକୁ ଅନାଇ ।   ବୃନ୍ଦା ମନ୍ଦ ମନ୍ଦ ହସିଲି ହୋଇ

କହ ଆସୁ ଯେ ।   ଅଙ୍ଗେ ପୁଲକ ପୂରାଇ । ୩

ସେ ଶ୍ରୀ ବୃଷଭାନୁ ଜେମା ।   କଟଶୋଭା-ଗୋଷ-ନକ୍ଷତ୍ର-ଚନ୍ଦ୍ରମା

ରସରାଜ ହେ ।   ରମା ବନ୍ଦ୍ୟ ଯା ସୁଷମା । ୪

ଜୀବ ଥିବା ଯାକ ବହୁ ।   ବଷସ୍ତ ବରଜ ବସିଲେ କହି

ରସରାଜ ହେ ।   ଶୋଭା ଶେଷ ହେବ ନାହିଁ । ୫

ଶ୍ୟାମ ସୁନ୍ଦରକୁ ମୋର ।   ଏକା ରାଧିକା ଥିଲି ପଟାନ୍ତର

ବୋଲୁ ଜନମା ।   ନାମ ଶୁଣିଲି ତାହାର । ୬

କୃଷ୍ଣ କହନ୍ତି ବୟସ ।   କ୍ଷଷ କେତେ ହୋଇଥିବ ବରଷ

ସହଚରୀ ରେ ।   ବୋଲୁ ବୃନ୍ଦା ହସ ହସ । ୭

ହେ ନୂତନ ରଙ୍ଗେଣ ।   ଯୌବନ ଲକ୍ଷ୍ମୀ ତା ପାଦେ ଶରଣ

ରସରାଜ ହେ ।   ହୋଇ ସାଉଳନ ଜାଣ । ୮

ଦେହଳରେ ଗଲେ ଚଳି ।   ପାଦାବ୍ଜ ଚେତ୍ତୁ ଚମ୍ପୁଛୁ ଅଳି

ରସରାଜ ହେ ।   ଅଙ୍ଗାମୋଦ ଲୁହେଁ କଳି । ୯

ଶ୍ରୀ ନଟିଳାଳକାବଳୀ ।   କଳା ମେଘ ତଳେ ରହିଲି ଭଳି

ରସରାଜ ହେ ।   ହସେ ଅଚଳ ବିଜୁଳି । ୧୦

୩

ରାଗ—କାମୋଦୀ ନାଟ—ଏକ ତାଳ

ଶ୍ୟାମ ସୁନ୍ଦର ମୁରଲୀ । ଜନାଦ ଜାଣ ନେବ ମଣିଲ୍ । ପଦ

ଗୁରୁଜନ ସଙ୍ଗେ କଥା ପର ସଙ୍ଗେ

ବସିଥିଲି କି ଚମକ ପଡ଼ିଲି । ୧ ।

ପୁଣଲ୍ ପୁଲକ ଦେହ ଶୋଷା ଘାଳ

ବନା ଶୀତରେ ମୁଁ କେତେ ଥରିଲି । ୨ ।

କାହିଁ ଗଲା ମନ ବୃନ୍ଦାବନ ସ୍ଥାନ

ବେଣୁ ନୟନ ମୁଁ ବୁଜ ରହିଲି । ୩ ।

ନାହିଁ କି ଉବ ବନ କି ଅବାସ

ଜାଗର କି ସ୍ୱପନ ନ ହେଜିଲି । ୪ ।

ଗୋପାଳ କୃଷ୍ଣ ସେ ଶ୍ରୀ ରାଧାଙ୍କ ସ୍ୱପେ

ଗାବ ଦ୍ରବ ଶ୍ରବୁଥିଲା ଗୁହିଲି । ୫ ।

୪

ରାଗ—ଧନାଶ୍ରୀ-ଏକତାଳ

କରୁଥିଲି ମୁଁ ନାହିଁ ନାହିଁ ରେ

ମୋତେ ଆଣି ପକାଇ ଦେଲୁ କାହିଁ ରେ । ପଦ

ସିବା ବୋଲି ଗାଧୋଇ ଫାନ୍ଦେ ମୋତେ ପକାଇ

ବ୍ରଜ ବଧୂଙ୍କୁ କଲୁ ମୁହାଁ ମୁହିଁ ରେ । ୧ ।

କଷିଛୁ ରଣ ରଣ ଘୋର ସୁନ୍ଦର ପଣ

ପଡ଼ବ୍ରତାଙ୍କୁ ପକାଉଛୁ ମୋହ ରେ । ୨ ।

ପଡ଼ିଲା କି ବିପତ୍ତି ଖସିଗଲା ମୋ ଧୃତି

ଅନା ଗୁହିବାର ସେ ଗହ୍ୱ ଗହ୍ୱ ରେ । ୩ ।

କେ ଦେଖି ଦେଲେ ଓମାର ସଦାଶିବ ସଂସାର

ହେଲେ ନଜଟ କର ପରତ୍ରାହ ରେ । ୪ ।

ଏଣେ ତେଣେ ଅନାଇ ଶ୍ୟାମ ହୃଦେ ଲଗାଇ
ଘେନନେଲେ ଗୋପାଳ କୃଷ୍ଣ କହ୍ନ ରେ । ୫ ।

୫

ରାଗ ଧନାଶ୍ରୀ—ଆଠତାଳି

ଗୋଷ୍ଠ ଚନ୍ଦ୍ରମାଙ୍କୁ ଆସ ବୋଲ୍ ରେ ସହ୍ନ
କହ୍ନ ଦେଲୁ ନ କ ରେ । ପଦ
ଏଡକ ବେଳୁ ମୋ ଚନ୍ଦ୍ରୁ ଅଣ୍ଡଳନ
ଦେଖି ନାହିଁ ମୁଖ ଆନୁଭ ଆଖିରେ । ୧
ଗୃହ କୃତ୍ୟ ସ୍ଫୂର୍ତ୍ତି ହେଲା ନାହିଁ ରନ ପହରରୁ ମଉରେ,
କେତେବେଳେ ସେ ଦେଖି ଦେବଟି ବୋଲି
ଦମଦମ ହୃଦ ହେଉଛୁ ଖାଉରେ । ୨
କ ବୁଦ୍ଧି କରବ କୁଟିଳା ମର୍କଟୀମୁଖୀ ଅଛୁ ପୁରରେ
ଅଗଣାକୁ ଗଲେ ଦେଇ ଅପବାଦ
ମାର ତାଳି ଆସି ନାଚବ ଦୁଆରେ । ୩
କ କରୁଥିଲେ ରୁଢ଼ ଗଲା ବେଳକୁ ଥିଲ କେଉଁ ଠାବରେ
କ ବୋଇଲୁ କସ ପଗୁଣଲେ ତୋତେ
କହୁ ସିନା ଗୃଲ ସିବା ରହସ୍ୟ ରେ । ୪
ନ ଆସ ବୋଲ୍ କଣାଅ ଯାଇ ହେଲେ ସଖି ଜନ୍ମାଉଛୁ ମା
ଚନ୍ଦ୍ରାବଲୀ ହେଲାପର ହେବ ସିନା
ଜଳ ଜଳ ମୋତେ ଦଶୁଛୁ ଆଖିରେ । ୫

୬

ରାଗ—ଧନାଶ୍ରୀ, ଆଠତାଳି

ମୋହନ ଖେଳ ଚନ୍ଦ୍ରା ପଡ଼ଲା ମା । ପଦ
ଅପାର ରଜନୀ ହେଲାରେ ସଜନୀ
ପ୍ରାଚୀ ବଧୂକୁ ବଧୂ ଚମ୍ବିଲା ମା । ୧

କ ଯୋଗରେ ଆଜ ସାଜଥିଲି ବେଶ
କାନନ ମଣ୍ଡଳୀ ଦଶା ଘଟିଲା ମା । ୨
ତୋଳି ଗୋ ଭଲେ ପୁଲିଲା ଫଳେ
ନବକୁଞ୍ଜ ଶଯ୍ୟା ସେବେ ଅଣ୍ଡିଲା ମା । ୩
ପର ପିରତି କ ପୁରୁଷ ଜାତିକ
ପରତେ କଲା ଫଳ ମିଳଇ ମା । ୪
ଗୋପାଳ କୃଷ୍ଣ ସେ ସମସ୍ତରେ ଦ୍ୱେଷେ
ଲୁଚଛନ୍ତି ସବୁ ଶୁଭିଲ ମା । ୫

୨

ରାଗ :—ମାଲ୍ଲା ମାଳବ ଗୌଡ଼ା-ଆଠତାଳୀ

ଶ୍ୟାମ ଯା ଯା ଜାଣିଲି ତୋ ପୀରତିକ । ପଦ
ତୋର କଥାକୁ ଭୁଲିଲା ପରତେ କରିଥିବ ଯା
ହୃଦୟରେ ମାରି ନ ଦେନ କାତି କ । ୧
ବରଜର ଗାରଢ଼ିସ୍ୱା ଦେଖାଇ ଏ ଭ୍ରୁକୁଟିସ୍ୱା
ମନମଥ-ଭୂତ ଲଗାଇ ସଖିକ । ୨
ମୁଁ ବୁଦ୍ଧି ହୁଡ଼ିଲିନ ତ ହୋଇଲା କାଳେ ବାତୁଳ
ମାରି ପକାଇଥିଲ କେ ଯୁବତୀକ । ୩
ଗୋବର୍ଦ୍ଧନ ମଞ୍ଚ ଘରୁ ଲୁଚ ଅଇଲା ବେଳରୁ
ସ୍ୱରୂପ ନ ଥିଲି ମୁଁ କ ସେ ପନ୍ଥକ । ୪
ଗୋପାଳ କୃଷ୍ଣ କହଇ ବୋଲୁଛ ସେ ମୁଁ ବୁଝଇ
ଛୁଅଁ ବୋଇଲେ ଛୁଇଁବ ଧରଣୀକ । ୫

୮

ରାଗ—ଆନନ୍ଦଭୈରବୀ-ଏକତାଳୀ

ଦେଲି ସବୁ କୁଳକୁ ଟେକ ଜଳାଞ୍ଜଳି
ଭଲି ଶ୍ୟାମ ପ୍ରୀତିକ ଜୀବନ ସଂଶାଳି । ପଦ

କରିଥିଲି ମୁଁ ଯେତେକ ବାର ବ୍ରତାବଳୀ,
ହେଲାନ ତା ଯାକ ପଦତଳେ ନଇଚ୍ଛାଳ । ୧
କୋଟି ଜନ୍ମାନ୍ତର ପୁଣ୍ୟ ଫଳ ଗଲା ମିଳି
ମୁଁ ଯୋଗିନୀ ଜାଣ ଆଳି ସେ ମୋହର ଆଳି । ୨
ମୋ ହୃଦର ନବ ମୃଗମଦ ପତ୍ରାବଳୀ
ମତ୍ତ ମଧୁକର ସେ ମୁଁ କାନନ ନଳିନୀ । ୩
ସୁଗୁଣ ସୁନ୍ଦରପଣ ଯାକ ଭଲି ଭଲି
ନାମ ଜପୁଥିବି ଏକା ଧରି ଜପମାଳି । ୪
ଅଖିଳ-ସୌନ୍ଦର୍ଯ୍ୟବନ୍ତ-ମଣ୍ଡଳର ମାଳି
ତୁନ ହୁଅ ବୋଲନ୍ତି ଶ୍ରୀଲଳିତା ଏ ପାଳି । ୫

୯

ରାଗ—ଝିଂଝୋଟ-ଆଠତାଳି

ଶ୍ୟାମର ତୋର କଥା ନାହିଁ କି ରେ
ତୁ ନ କହିଲେ ମୁଁ ଜାଣୁ ନାହିଁ କି ରେ । ପଦ
ତାଙ୍କ ସ୍ତନଛତ୍ର ପୃଜିବା ଦନ
ସବୁ କରିଛୁ ମୁହିଁ ଅନୁମାନ ରେ । ୧
ନ ଜାଣିଲି ପରି ସେ ତୋ ଆଡ଼କୁ
ଆପୁ ଘୃଣ୍ଟିଗିବାର ତୁ ପଛକୁ ରେ । ୨
ଅର୍ଘ୍ୟ ଥାଳିରୁ ଖଟକିଲ ମାଳା ।
ତୁ ଦେଖିବେଳେ ଛଳା ଛଳି ତୋଳା ରେ । ୩
ସେ ପ୍ରକୋଷ୍ଠରେ ତୁ ରସବନ୍ତୀ ରେ
ହସାହସି ହୋଇ ଅନାଅନିରେ । ୪
ଚନ୍ଦ୍ରମୁଖୀ ସଖୀ କହୁଁ ହସିଲା
ହୋଇଲେ ଗୋପାଳ କୃଷ୍ଣ ଲଜ୍ଜିଲା ରେ । ୫

## ୧୦

ରାଗ—ମାଧ୍ୱ ମାଳବ ଗୌଡ଼ା-ରୂପକ ତାଳ

ଉଠିଲୁ ଏଡ଼େ ବେଗି          କାହିଁକ ରେ, ଦୁଃଖିଧନ
    ଦଧି ମନ୍ଥାଇ ଦେବୁ ନାହିଁ କ ରେ । ପଦ
ଦେହ ପାଶୋର ଦଣ୍ଡେ          ନିଦ ନ ଗଲୁ ଖଣ୍ଡେ
    ବଟୋଳ ହେଲୁ ମୋର ପାଇଁକ ରେ । ୧
ଖେଳରୁ ରାମ ଭୁଲେ          ପଛେ ରାଗ ପାଇଲେ
    ଶୁଆଇ ଦେବି ଗୀତ ଗାଇକ ରେ । ୨
ମନ୍ଥିବି ମୁଁ କେମନ୍ତ          ଖୁଆ ଦଣ୍ଡରୁ ହାତ
    ଛାଡ଼, ଦେଉଛୁ ସର ଖୋଇକ ରେ । ୩
ଅହା ଏକ ପ୍ରମାଦ,          ଛନ୍ଦ ନା ବାରୁ ପାଦ,
    ଡାକ ଯା ବଳରାମ ଭାଇକି ରେ । ୪
ମଥନ ଘଟେ ହାତ          ପୂରାଇ ନବନୀତ
    କାଢ଼ ବୋଲନ୍ତ ହେଲୁ ବାଇ କି ରେ । ୫
ଭୁଞ୍ଜ ହାତଟା ଖାଇ          ନାଚୁଛୁ କାହିଁ ପାଇଁ
    ଶୁଖିଯିବୁ ନ ବୁହାଁ ଗୁଇକି ରେ । ୬
ଗୃହ କୃତ୍ୟ ପକାଇ          ବସିଥିବି ଏକାଇ
    ନଶୀଦନ ତୋତେ କାଖୋଇକି ରେ । ୭
ପଣତରେ ବଦନ          ପୋଛୁ ଦେଲେ ଚୁମ୍ବନ,
    ଗୋପାଳ କୃଷ୍ଣ ଚନ୍ଦ୍ର ଧୂହିଁକି ରେ । ୮

(ଗୋପାଳକୃଷ୍ଣ ପଦ୍ୟାବଳୀ)

## କବିସୂର୍ଯ୍ୟ ବଳଦେବ ରଥ
(୧୭୮୯—୧୮୪୫)

### କାଳସର୍ପ ଆପଣ

ରାଗ—କାମୋଦୀ

ବାଧିଲ ଜାଣି କ୍ଷମା କର ନୋହିଲେ ରମାରମଣ ଦଣ୍ଡେ ଦିଅ ଟାଳି
ତୁମ୍ଭଙ୍କୁ ଜଗନ୍ନାଥ ଅଜ ମୋ ମନୋରଥ ଭରଣ କରି ଦେବ ଗାଳି ହେ
କୃପାନିଧି !
କରୁଣା ସିନ୍ଧୁ ବୋଲି କରି, କହନ୍ତି ବୁଧେ ଉତ୍ତମର
କାଳସର୍ପ ଆପଣ, କବଳ କର ପ୍ରାଣ-ପବନମାନଙ୍କୁ ସବୁରି ହେ,
କୃପାନିଧି । ୧ ।
ଜଳଧି ଅନ୍ତେ ନିଜ ଘର ଦେବାଧିରାଜ, ବୁଡ଼ାଇ ଦେଇଛ ଆପଣ
ତୁମ୍ଭର ପିତା ଯେଣ, ଆଶ୍ଚର୍ଯ୍ୟ ନୁହେଁ ଆନ, ଜନର ଘରବୁଡ଼ା ପଣ ହେ,
କୃପାନିଧି !
ଭୁଜଙ୍ଗ ସାମ୍ୟ ଆମ୍ଭରୁଲେ, ବତାଅ ବୋଲି ଆଜ୍ଞା ହେଲେ,
ମୁଁ ନୁହେଁ ଘରବୁଡ଼ା, ବତାଇବାକୁ ଛଡ଼ା, ହୋଇଛୁ ବତାଇବ ଭଲେ ହେ,
କୃପାନିଧି । ୨ ।
ତାହାକୁ ବୋଲି ଚକ୍ରୀ, ଚକ୍ରଥିବାରୁ ଚକ୍ରୀ, ତୁମ୍ଭେ ତ ବୋଲାଅ ମଣ୍ଡଳେ,
ବୋଲାଇ କୁଣ୍ଡଳୀ ସେ, ଆପଣତ ବିଶେଷେ ଭୂଷିତ ମକର କୁଣ୍ଡଳେ ହେ,
କୃପାନିଧି ।
ଅଦୃଶ୍ୟ ହେବାରୁ ତା ପାଦ, ତାହାକୁ ବୋଲି ଗୂଢ଼ପଦ
ଆପଣା ଚରଣ ତ ଭକ୍ତଙ୍କୁ ଗୁପତ କାହିଁ ତା ଠାରୁ ତୁମ୍ଭ ଭେଦ ହେ,
କୃପାନିଧି । ୩ ।
ହେବ ବା ଅବଧାନେ, ତାହାକୁ ତ୍ରିଭୁବନେ, ବୋଲନ୍ତି କାକୋଦର ନରେ,
ଏ ତ୍ରିପିଷ୍ଟପରାଜ ମଧ୍ୟେ ଗୋଟିଏ କାଜ, ନାହିଁ କି ତୁମ୍ଭର ଉଦରେ ହେ
କୃପାନିଧି !

ବଡ଼ରେ ଯେ ଅ ଠ ଲମ୍ପଟ, ବବର ବହୁଙ୍ଗମଗ୍ରଟ
ବାଧିରେ ଯେ ଲମ୍ପଟ, ଆପଣ ଯେ ତ ପଟପଟଳେ ହୋଇଅଛ ଷ୍ଟୁଟହେ
ମହାପ୍ରଭୁ । ୪

କାନ ନ ଥାଇ ଆଖି ଭୁଜଙ୍ଗଠାରେ ଦେଖି ନୟନଶ୍ରବା ବୋଲି ଭାବୁ
ନହ କମଳାନନ କାହିଁକି ତୁମ କାନ, ସର୍ପ ବୋଇଲେ ଚଳିବାକୁ ହେ,
କୃପାନିଧି !

ଫଣୀ କାହାକୁ ବୋଲି ଭୋଗ, ଥିବାରୁ ସେ ଦୁଇ ସଂଯୋଗ
ତାହାକୁ ବୋଲି ଭୋଗୀ, ତୁମ୍ଭେକି ନୁହଁ ଭୋଗୀ କରୁ ଯାଅଛ ମହାଭୋଗହେ
କୃପାନିଧି । ୫

ଯେବେ ଭୁଜଙ୍ଗ ନୁହଁ, କାଳୀୟ ଠାରେ ଦ୍ରୋହ, କଲ କାହିଁକି ଏଡ଼େ କଣ,
କେତେ ନ ଥିଲେ ଗୋପେ, ତୁମ୍ଭେ କାହିଁକି କୋପେ, ତାହାକୁ ଦେଲ
ପ୍ରାଣେ ମାରି ହେ
କୃପାନିଧି । ୬ ।

ତାହାର ନାମେ ତୁମ୍ଭ ନାମ. ଅଦ୍ୟାପି ହୋଇଛି ଜନମ
ଯେବେ ସ୍ୱଗୋତ୍ର ଦ୍ରୋହ ନ ଥାନ୍ତା ନାଥ କହ କିପାଇଁ ହୁଅନ୍ତା ଏ କମ ହେ
ମହାପ୍ରଭୁ । ୭ ।

(କବିତା କଲ୍ଲୋଳିନୀ— ସର୍ପ ଜଣାଣ)

## ଜନେ ହସିବେ

ରାଗ — ଆଷାଢ଼ଶୁକ୍ଳ

ଜଗତେ କେବଳ, ଜନେ ହସିବେ ଏହୁ ତହୁଁ ଫଳ । ଘୋଷା ।
ଜଟିଳ କର ସ୍କନ୍ଧ ରୋମରାଜି । ଶିଖଣ୍ଡି ଦଣ୍ଡରେ ମରୁ ଗରଜି ।
କୁଟିଳ କର ଭ୍ରୁକୁଟୀକୁ ସ୍ୱହ୍ନେ ।, ସରମା କଣ୍ଠୀରବ ହେବ କାହିଁ ? ୧
ଅଳକତ ଦବ ନୟନେ ବୋଳି । ରସାଳ ଗହଳ ଶାଖାରେ ଖେଳି ।

ଜବଳ ନରୁ ତା ଜଳ ଜଳାପ । କାକ କି କରିବ ପଞ୍ଚମାଳାପ ? ୨
ବରଗୀବରବେ ଦେଇ ମାନସ । ବରଜବରଷେ ଅମେଧ୍ୟ ଗ୍ରାସ ।
ଦେହେ ମନ୍ଦାକିନୀ ରଜ ଲଗାଇ । ଗ୍ରାମ ଶୂକର କି ହୋଇବ ଗାଈ ? ୩
ଚଞ୍ଚୁ ଚରଣେ ଲଗାଇ ଝଙ୍କୁଳ । ନିଜ ତୁଣ୍ଡେ ମଣ୍ଡି ଖଣ୍ଡ ମୃଣାଳ ।
ସ୍ଥୂଳି ପୁଚ୍ଛ ଅଙ୍ଗ ବୁଲାଇ ବକ । କେବେ ଯେ ମରାଳୀ ହୋଇବଟିକ ? ୪

* * *

ଯାହାକୁ ଯାହା କରିଛି ଦଇବ । ତହିଁ ନିକ ସେ ଅନ୍ୟଥା ହୋଇବ !
ଯେଜନେ ହେଲେ ଯତ୍ନେ କୋଟିପୂଟ । ପିଣ୍ଡିକୁଟି କେଉଁ ହେବ ପୁରଟ ? ୫
ଦେବ ଉପବନେ ହୋଇ ଜନତା । ସୁବାସ ମଦରୁ କଦସଲତା ।
ତୁଳସୀ ତୁଲେ ହେଲେ ମିଶାମିଶି । ତାହାକୁ ଯେବେ ବୋଲିବା ତୁଳସୀ ? ୬
ସମଜଇ ନାହିଁ ସ୍ୱଜାତ ସ୍ପୃହା । କହିଲେ ଯେ ହୁଅଇ କେକହସା ।
ଜଡ଼ ମୁଁ ବୋଲି ନ ଜାଣି ନବେଦ । ଷଡ଼ଦର୍ଶୀ ତୁଳେ କଲେ ବିବାଦ । ୭ ।
ଦେହରେ ବାଜିଲେ ପର ନିଶ୍ୱାସ । ସମ୍ଭାଳିବାକୁ ନଥାଇ ବିଶ୍ୱାସ ।
ନର୍ତ୍ତକ ଅଭିମାନେ ଭେକ ଗୃହ । ହାତୀ ଲଢ଼ାଇକି ବାନ୍ଧିଲେ କାଠ । ୮ ।
ବୋଳା ହୋଇ ଭୃତି ଧରି ପରଶୁ । ବଳି ବଢିବର ଚରମେ ବସୁ ।
ଗଉରୀ-ପ୍ରାଣନାଥ ଅନୁଭବ । ଠକର ପାରିବ ନାହିଁଣ ଲବ । ୯ ।
ଗଙ୍ଗାର ପ୍ରବାହେ ଅହପେ ବୁଡ଼ି । ଅଙ୍ଗାର କି ନିଜ ବର୍ଣ୍ଣ ଗ୍ରାଣ୍ଡି ।
କଳାହତ ରତ୍ନ ଦଶିବ । ବାଳା ପଟସ୍ୱାଧର ହାରେ ମିଶିବ ? ୧୦ ।

(କବିତା କଲ୍ଲୋଳିନୀ)

## ଲଳିତା

[ଦିନେ ରାଧା ଯମୁନାକୁ ଯାଉଁ ଯାଉଁ କଦମ୍ବ ମୂଳରେ ମୂର୍ତ୍ତିମନ୍ତ ଶ୍ୟାମଳତାର ଏକ ତେଜ ଦେଖି କାମଶରବିଦ୍ଧ ହୋଇ ଆକୁଳ ହେଲେ । ନିଜ ହୃଦବେଦନା ପ୍ରିୟ ସଖୀ ଲଳିତା ଆଗରେ ପ୍ରକାଶ କରିବାକୁ ଯାଇ ମର୍ମନ୍ତୁଦ ଭାଷାରେ କହିଲେ "କି ହେଲରେ କହିତ ନୁହଇ ସରଗିରେ" ।- ଲଳିତା ସଖୀର ଅନୁରକ୍ତ କଳନା କରିବା ନିମନ୍ତେ ଛଳନା ଓ ବ୍ୟଙ୍ଗପୂର୍ଣ୍ଣ ଭାଷାରେ କହିଲେ]

ଖ

ରାଗ—କେଦାର କାମୋଦୀ

ଖରାପ ରୂ ହେଲୁ ରେ,
ଖେଳ-ମେଳ-ଖଞ୍ଜନାକ୍ଷି କି ସାହସ କଲୁରେ ।ପଦ।
ଖଞ୍ଜ ହୋଇ ସୁରତରୁ କୁସୁମ ବାଞ୍ଛିଲୁରେ,
ଖେଦ ବୀଜ ନିଜ ହୃଦ କେଦାରେ ବଞ୍ଛିଲୁରେ ।୧।
ଖିଆଲପରି କି ଧନ, ମନରେ ଭାଳିଲୁରେ,
ଖଳକାର ନୋହୁ କଳା-ନାଗକୁ ଖେଳାଲୁରେ ।୨।
ଖର ସ୍ମର ଝାଉଁଳବା ଶ୍ରୀଅଙ୍ଗ ପାଇଲୁରେ,
ଖମଣିମଣ୍ଡଳକୁ ରୁ କର ବଢ଼ାଇଲୁ ରେ ।୩।
ଖାଇ ଦେଇ କି ଅମଳ ଅଚେତ ହୋଇଲୁରେ,
ଖାର ଖଣ୍ଡାଧାର ଖଟ ବସ୍ତ୍ର ଶୋଇଲୁ ରେ ।୪।
ଖଟେ ଅଷ୍ଟଦୁର୍ଗନାଥ ତୋ ପଦେ ପଡ଼ିଲୁ ରେ,
ଖଣ୍ଡ ଭରେ ଧନ ଦେଇ ପଦେ ନ କହିଲୁରେ ।୫।

[ସଖି ଉପରେ ସବୁ ଆଶା ଭରସା ରଖି ରାଧା ମନର ବେଦନା ପ୍ରକାଶ କରୁଥିଲେ ସିନା କିନ୍ତୁ ସଖିର ଏତାଦୃଶ ମଧୁର ଭର୍ତ୍ସନାରେ ମର୍ମାହତ ହୋଇ ସେ କହିଲେ],

ଗ

ରାଗ—ଶଙ୍କରାଭରଣ

ଗଞ୍ଜଣି ତ ଗଳ୍ପ କଥା ରେ ସଙ୍ଗାତ
ଗୁପତେ ସିନା ମୁଁ ତୋତେ ପଚାରିଲି ବଳି ପଡ଼ିବାକୁ ବ୍ୟଥା ।ପଦ।
ଗଙ୍ଗାରୁ ବିଶଦ ଗମ୍ଭୀର ତୋ ହୃଦ, ଗଣି ଧନ ତୋର ସ୍ନେହ,
ଗୋଡ଼ ଗଦି ଖେଦ ହେବାର ଦରଦ ଦିବାର ଉପାୟ କହ ।

[ରାଧାଙ୍କର ଏହି କାରୁଣ୍ୟ-ପୂର୍ଣ୍ଣ ଉକ୍ତିରେ ଲଳିତା ଟିକିଏ ତରଳି ଯାଇ ସହାନୁଭୂତି-ସୂଚକ କଣ୍ଠରେ କହିଲେ,]

ଘ

## ରାଗ—ଗୌଡ଼

ଘେନାଇ ଅମ୍ଭେ ଯେତେ କହୁଲୁ ରେ, ଘେନିଲୁ ନାହିଁ ବାଳା ପଦ୍ମଲୁରେ,
ଘୃତ ଘଟକୁ ଶିଖି-ଶିଖା ପାଖରେ ରଖି ଶିକ୍ଷାଦେବା ବୃଥା ସହିଲୁରେ । ପଦ ।
ଘସ୍ତନାଟନନ୍ଦନା ଜନାହୁଣ୍ଡିକ ମନା କରୁ ଯେ ଥାଇଁ ଦୃଷ୍ଟି ବନ୍ଧିଲୁରେ,
ଘଟୀ-ଯନ୍ତ୍ରକ କରେ ନାହିଁ କି ବିବେକରେ ମହାର୍ଣ୍ଣବରେ ଅବଗାହିଲୁରେ । ୧ ।
ଘୋଟି କତବ ମୂଳ ଘୋର ଘୋର ଜାଙ୍ଗଲ ଗହଳ ବୃନ୍ଦେ ଛାହା ପିଇଲୁରେ,
ଘ୍ରାଣ ବାର ସମ୍ଭାବିଲ ନାହିଁ କି ଅମ୍ଭ ସୁଯୋଗୁଁ ସିନା ବଞ୍ଚ ଅଛିଲୁରେ । ୨ ।

× × ×

ଘନେ ଚଁପଳା ଲୀଳା ବୃଦ୍ଧି ଘନକୁନ୍ତଳା ରୁ କି ଏ ଅଭିଳାଷ ନ ହେଲୁଟରେ,
ଘାଣ ଦେଲୁ କି ବପେ ଅଷ୍ଟଦୁର୍ଗେଶ ଭାଙ୍ଗେ ଅବଶ୍ୟ ମୋହନକୁ ମୋହିଲୁଟେର । ୩ ।

[ତାପରେ ଲଳିତା ଶ୍ରୀକୃଷ୍ଣଙ୍କ ନିକଟକୁ ଯାଇ ନାଗରସୁଲଭ ସ୍ୱରରେ ଛଳ ସ୍ୱଭାବରେ ତାଙ୍କ ଶାରୀରିକ କୁଶଳ ମଙ୍ଗଳ ଜିଜ୍ଞାସା କରି କହିଲେ]

ଙ

## ରାଗ-ସିନ୍ଧୁ କାମୋଦୀ ବା କୁମ୍ଭ କାମୋଦୀ

ଙୁଆ-ନଟ-ପଟଳୀ ମୁକୁଟ ହେ ନାହିଁ କି ଶ୍ରୀଅଙ୍ଗ ସୁଖ,
ଙପଟ ଙତ୍ରେକ ବଣୁଛ ତ ଆଜ ଙରଳସ ଚନ୍ଦ୍ରମୁଖ । ପଦ ।
ଙୀଳୋତ୍ପଳ ବାସି ହେଲ ପଶ ଦଣୀ ଯାଉଛ ତୁବୁ ଶ୍ରୀଅଙ୍ଗ
ଙାସା ଙାଳ ଚଳଙ୍କିଲରୁ ଅଙଳ ପ୍ରସରୁଛ ବେଗ ବେଗ । ୧ ।
ଙୀପ ଉପବନ ଙକଟ ପବନ ସ୍ମରଣରୁ ଯେବେ ଡ଼ର,
ଙଦୀ କୂଳସ୍ଥଳ ଏ ବଡ଼ ଶୀତଳ ଲୁହନ୍ତାଟି କି ବିହାର । ୨ ।
ଙଦ ନାହିଁ କି ନୟନେ ଙଣିଦନ ଆହା ମରଇ ମୋ ଧନ,
ଙବନୀତ ତହୁଁ ମୃଦୁ ଦେହେ କାହୁଁ ସମ୍ଭବିଲ ଏ କଦନ । ୩ ।
ଙବ ହେମଦ୍ୟୁତି ଅମଳ୍ପେ ଙନ୍ତ ଙଅନ୍ତ ଫଳ ଏ ବନ୍ତ,
ଙେତ୍ର ପଥ ପନ୍ତ ଗଲେ କି ସେ ଗ୍ରହ ଯାଉ ନାହିଁ ନୂର ମନ୍ତୁ । ୪ ।

ନ ବହର ଗୋପ ସଙ୍ଖାଳି ଏ ପାପ ଗହନରେ କାହ୍ନୁଜନ,
ନରେଶ ମଣ୍ଡନ ଶ୍ରୀ ହରି ଚନ୍ଦନ ଜଗଦେବ ପ୍ରଭୁ ସେନ । ୫ ।

[ଶଠଶେଖର ଶ୍ରୀକୃଷ୍ଣ ସୌଜନ୍ୟ ଓ କପଟ ମିଶା ସ୍ୱରରେ ଲଳିତାଙ୍କୁ କହିଲେ,]

"ସ୍ୱୀକି ସ୍ୱୀକି ତୋ ସରଣୀ କକୁଭକୁ ରେ ତରୁଣୀ ଚନ୍ଦ୍ରାପତ ପରି ଥିଲି ବସି ।
ଚଞ୍ଚ ମଣିଲି ମୁଁ ତତେ ସ୍ୱୀକି ଯା ଅନ୍ତରଙ୍ଗେ ସ୍ମରଚକ୍ଷୁ ମିଶାଇଲି ଆସିବେ,
ଚଳାପାଙ୍ଗି, ଚନ୍ଦ୍ରରୁ ଚପୁଞ୍ଜ ସୁଧା ଝରି, ଚିର ତୃଷିତର ମୁଖେ ଭରି,
ସ୍ୱରୂପ୍ୟ କୃପାକୁ ଗୁଣ-କକ୍ଷ ରଖିଲୁ କି ପ୍ରାଣ ଯେଜନଲି ମୁଁ ଏବେ ସରି କରି ରେ ।"

[ଲଳିତା ଶ୍ରୀକୃଷ୍ଣଙ୍କ କଥାକୁ ଆଦୌ କାହିଁକି ବିଶ୍ୱାସ କରନ୍ତେ ? ସେ ସିଧା ସଳଖ କହିଲେ]

ଛ

ରାଗ—ବେଗୁପ୍ତ

ଛଳ ବାହୁମାଣ ହେ, ଛାଡ଼ ଏ ସାହାସ ହେ । ପଦ ।
ଛବ ତ ଅବଳ ଜଣେ, ଛପିବାରେ ଅଛୁ କି ସେ । ୧ ।
ଛଟା କାହା କଟାକ୍ଷର, ଛୁଆଁ ହେଲା କି ବକ୍ଷର । ୨ ।
ଛେଲରୁ ତ ଚନ୍ଦ୍ରା ବଳୀ, ଛାତରେ ଗଲାକି ଗଳି । ୩ ।
ଛୁଟିଯାଇ ବଚେତନା, ଛଟପଟ ହେବ ସିନା । ୪ ।
ଛଣ ସୁଧାପରି ଜଣେ, ଛୁଇଁ ଦେଲେ ବଞ୍ଚି ସେ । ୫ ।
ଛଳ ମନ ରୂମ୍ଭ ଗୁଣେ, ଛ ଦୃଢ଼ ଦୁର୍ଗେଶ ଭଣେ । ୬ ।

[ରାଧିକାଙ୍କ ପରି ଶ୍ରୀକୃଷ୍ଣ ମଧ୍ୟ ଲଳିତା ପାଖରେ ଆତ୍ମ ସମର୍ପଣ କରି କହିଲେ 'ଯାହା ଇଚ୍ଛା ତୋର ତାହା କର'। ଲଳିତା କଣ ଏତେ ସହଜରେ ଧରାଦେବେ ! ସେ ଶ୍ରୀକୃଷ୍ଣଙ୍କୁ ନୀତି ଶାସ୍ତ୍ର ପଢ଼ାଇବାକୁ ଆରମ୍ଭ କଲେ,]

ଜ

ରାଗ—ନଟନାରାୟଣ ଗୌଡ଼ା

ଜଣାଇ ମାତ୍ର ହେଲ ହେ ଶ୍ୟାମ, ଜିମୂତ ହେବାକୁ ସହସ୍ର ଯାମ । ପଦ ।
ଜାଉଳାବା ନବ ତମାଳ ରମା ଜିଙ୍କି ଆଣି ଅଙ୍ଗେ କଲଣି ଜମା । ୧ ।
ଜନ୍ତ୍ରବ ବଳ କୋମଳ ଗୁଣରୁ, ଜଣାଧିକ ନୀଡ଼ା ଜନ୍ତ୍ରି ଜାତରୁ । ୨ ।

ଝୁମି ଝୁମି ଲୁଠି ପୃଷ୍ଠେ ଉପାଉ, ଝୁରିବାଉ ଏକା ହୋଇବ ସାର । ୩ ।

ଝଳ ପାଞ୍ଚାଳୀ ଝଟକେ ନାହିଁକ ? ଝୋଳ ମାଉଳ ତୁମ୍ଭଙ୍କ କାହିଁକ । ୪ ।

ଝଲକ ଗଲ୍ କୃଷ୍ଣ ଅକାରଣେ, ଝାଡଖଣ୍ଡ ରଷା ବାଦଶା ଭଣେ । ୫ ।

[ଶ୍ରୀକୃଷ୍ଣ ତହୁଁ ବିକଳ ହୋଇ କହିଲେ]

୦

ରାଗ—ଗୌଡ଼

ଠିକ ଠ ବର୍ତ୍ତୁଳ ଚନ୍ଦ୍ରାନନା ତୋ ଚରଣରେ । ପଦ ।

ଠକ ଗାଣ୍ଡ ନ ଅଚଳ ମୋ କଦନକୁ ବସୁ ଗ
ଅକପଟ ପ୍ରାଣବନ୍ଧୁ ଭଜନ୍ତ ରେ । ୧ ।

ଠଣା ଠକ୍କି ତାପହାସ— ମୂର୍ଚ୍ଛେ ମନମଥ ପାଣ
ବନ୍ଧନ କର ତୁ ପଦ୍ମ ମୋ ଚଳରେ । ୨ ।

ଠହରାଇ ଅବସର କଲେ ତୁ ପ୍ରସଙ୍ଗ ମୋର,
ଯିବ ପ୍ରାଣ ବନେଇବାକୁ ଲୁଚନ୍ତ ରେ । ୩ ।

ଠୋକର ଛୁଣ୍ଡାଇ ଦେ ନା ପ୍ରିୟ ସଖି ! ମୋ ବେଦନା,
ନ ଲାଗଇ ମନ ତୋତେ କଷ୍ଟରେ । ୪ ।

ଠାଣ ଦେଲେ ନେତ୍ରାଞ୍ଚଳେ, ବଜନ ଛୁଲେ ସେ ବଲେ,
ଚରାଜବ ଷଣରୁଚ ଭଜନ୍ତରେ । ୫ ।

ଠାକୁର ଠାକୁରାଣୀଙ୍କ ପଦାମ୍ବୁଜ ଧ୍ୟାନରଙ୍କ
ନୃପ ଜଗଦେବ କରେ ରଚନ୍ତ ରେ । ୬ ।

[ଲଳିତା ଶ୍ରୀକୃଷ୍ଣଙ୍କ କାକୂକ୍ତିରେ ବିଚଳିତ ନ ହୋଇ, ବାସ୍ତବତା ପ୍ରତି ଦୃଷ୍ଟି ଆକର୍ଷଣ କରି ମଧୁର ଭର୍ତ୍ସନା ଆରମ୍ଭ କରିଦେଲେ]

ଡ

ରାଗ—ମାଳବ

ଡର ନାହିଁ କି ହେ, ପର ତରୁଣୀ ହରଣ ;

ଡୋର ଲାଗି ଯେର ପଡ଼ିବା ହେବଟି ଶ୍ୱେର ପଣ ଆଚରଣ । ପଦ ।

ଡୋଲା ପ୍ରତିମାକୁ ପର ସ୍ୱେ ତୁମ୍ଭଙ୍କୁ ଯଶୋଦା ଅଛନ୍ତି ପାଳି

ଡ଼ିବାବଟି ଧନ କୋଳକ ମୋହନ ଲୋଡ଼ୁଛ ଯେ କୁଳପାଳି । ୧ ।

ତଜା ଦେବା ଦନେ ଅରିଷ୍ଟ ହରିବାନେ ଦେଖିଛୁଁ ଶକଟ ଦଶା,
ତାଳମଧ୍ୟମାରୁ ତାଳ ଆଣିବାକୁ ଏଠାରୁ କାହା ଭରସା । ୨
ତବ ତବ ବାଣ ନିଃସରିବ ଗୃହ ପଥରେ ନୟନ ଯୁଗୁ ।
ତୃଷ୍ଣ ତୃଷ୍ଣ ହେବ ମୃଦୁ ଅବୟବ, ଶ୍ୟାମ ଶ୍ରୀଅଙ୍ଗୁଟି ସେଗୁ । ୩ ।
ତାଙ୍କ ତ ଜାଣ ମୋହନ ବଂଶୀରବେ ବିହର ସୁଖେ ଏ ବନେ.
ତୁଭେଁ ହେଉ ଥିନା ଆମ୍ଭେ ଫଳ ବନା ନ ଦେଉ ତା ଆମ୍ଭ ନାମେ । ୪ ।
ତାଳମୂଳମଞ୍ଜୁ ମଞ୍ଜୁଳ ଦଶନା ସେ ଖେଳୁ ଥାଉ ତୁମ୍ଭ ଭୁଲେ,
ତେଉଁ ଥାଅ ବନରାଜ ତୁମ୍ଭମନ ଶ୍ରୀହରିଚନ୍ଦନ ବୋଲେ । ୫ ।

[ଶ୍ରୀକୃଷ୍ଣ ଏଥିରେ ବିବ୍ରତ ହୋଇ କହିଲେ, "ସମସ୍ତେ କହନ୍ତି ଲଳିତା ଦୟାବତୀ ; ସେ ଦୟା କିଏ କିଣ ଛଡ଼ାଇ ନେଲା ? କାରଣ, 'ଢ଼ାଳେତ ଢ଼ାଳିଲୁ ୨ ଟି କୃପାସୁଧା ଝରିକରେ' ।" ଲଳିତା ଶ୍ରୀକୃଷ୍ଣଙ୍କ ଆସକ୍ତିର ଯଥାର୍ଥ ପରିଚୟ ପାଇ କହିଲେ "ତୁମର ଅଳି ବଡ଼ ନିବିଡ଼." "ଅତସୀ-କୁସୁମ-ଶ୍ୟାମ ହେ, ମୁଁ ଗଲିଟି ।", ରାଧାଙ୍କ ପାଖରେ ପହଞ୍ଚି ଲଳିତା କହିଲେ । ]

୬

ରାଗ—ଗୌଡ଼

(ସଖିରେ) ତୋ ଘେନ ତମାଳ ଶ୍ୟାମ-ମୋ ମରକତ କଷିଲା ରେ,
ତଥାପି ତ ଛଳେ ହେଲେ ତୋ ସ୍ନେହେ ନ ରସିଲାରେ । ପଦ ।
ତଳେ ବସନ ପ୍ରସାରି, ତୃଣ ଦଶନାଗ୍ରେ ଧରି,
କହିଲେ ହେଁ ଅନୁସରି, ରାଜ ତ ନ ହସିଲା ରେ । ୧ ।
ତାହାଁଙ୍କ ବିଷମ ଭାବ, ତକିଲା ମୋ ବୃନ୍ଦରବ—
ତଟକୁ ଘଟନ୍ତେ ଅବଧାନ ବିନା ହସିଲାରେ । ୨ ।
ତପନଜା ତଟକୁ ରୁ, ତରୁଣୀଟା କେଉଁ କୁତୂ
ହଳରୁ ଆସିଲୁ ହେଉ କହ ବୋଲି ଘୋଷିଲା ରେ । ୩ ।
ତାର ତୋର ସୁଲୋଚନା, ତାରତମ୍ୟ ବିବେଚନା
ଲବ ହୋଇ ନାହିଁ ତହିଁ, ତୋ ତଥ୍ୟେ ପେଷିଲାରେ । ୪ ।

ତରସ୍କାର ପୁର୍ବସ୍ପୃହା ତରଳାଇ ସୁଖ ଆଶା,
ତୋଟିକ ଚର୍ମ୍ମ ଲ ତୃଷା ତମିର ବଳସିଲ ରେ । ୫ ।
ରୁଚ୍ଛ ସ୍ନେହ ମନ ଜନ ତୋ ସଙ୍ଗକୁ କ ସ୍ଵଜନ,
ପ୍ରପନ୍ନ ହରଚନ୍ଦନ ଜଗଦେବ ସ୍ଵପିଲ ରେ । ୬ ।

[ଏ ମର୍ମଭେଦ ସମ୍ବାଦରେ ରାଧା ଅଧୈର୍ଯ୍ୟ ହୋଇ କହିଲେ "ଆପିରେ କହ ତଥାପିରେ ପ୍ରାଣସହ ଥିବ କ ଛାଡ଼ିବ ପ୍ରାଣ ; ଥିଲାପର ସ୍ନେହ ଲାଗିଲ କ କହ, ଅଛନ୍ତି ତୋତେ ମୋ ରାଣ'',ଏ ମର୍ମସ୍ପର୍ଶୀ ବାଣୀରେ ଲଳିତା ଅମୃତ ବାଣୀ ବର୍ଷଣ କଲେ, "ମୁଁ ତୋର ସ୍ନେହ ପରୀକ୍ଷା କରୁଥିଲି ସିନା। ଶ୍ରୀକୃଷ୍ଣ ତୋ ଚନ୍ତାରେ କ୍ଷୀଣ ହେଲେଣି" । ଏତକ କହନ୍ତେ ରାଧା ଅନାନ୍ଦାତଶଯ୍ୟରେ କହିଲେ, "ରୁ ମୋତେ ଅଜ କ ଧନ ନ ଦେଲୁ" । କନ୍ତୁ ରାଧାଙ୍କ ଆନନ୍ଦ ସ୍ରୋତ ରୋକବା ପାଇଁ ଲଳିତା କହିଲେ, "ଶ୍ରୀକୃଷ୍ଣଙ୍କ ପ୍ରୀତ ଯଥାର୍ଥ ପ୍ରୀତ ନୁହେଁ," ରାଧା ଏଥର କହିଲେ,

"ପ୍ରିୟ ସହ ପରମାଦ ବଡ଼ ରୁହ ଗୋ,
ପାରୁ କେତେ ଛନ୍ଦେ ମୋହ ଗୋ
ପରମ ପଦରେ ଦେଇ ଜାଣୁ ରୁ ବସାଇ
ପୁଣି ଜହୁଁ ଜାଣ ତଳାତଳକୁ ଖସାଇ,''

ଏତେବଡ଼ ଅଭିଯୋଗ ଓ ଅପବାଦର ଉତ୍ତର ଲଳିତା ନ ଦେବେ କପର ? ସେ କହିଲେ,]

ଫ

ରାଗ—ନଟନୋରସ୍ୱଣ ଗୌଡ଼ା

ଫାଟି ପଡ଼ବାର ନକୁଞ୍ଜ ସଞ୍ଚାର ଶ୍ରମୁଁ ମୋ ଚରଣ ତଳ,
ଫରୁରଖୋର ଆଖରକୁ ହେବାର ଏହ ଏକା ଏଥୁ ଫଳ,
ରେ କଣୋର, ଫିଟିଗଲ ଯେ ସନ୍ଦେହ,
ଫୁଲିଗଲୁ ଫଳ-ଲକ୍ଷମ-ରସିକା ଜାଣି ପର ଶ୍ୟାମ ସ୍ନେହରେ । ୧ ।
ଫନ୍ଦାଇ ନାନା ବଚନସ୍ୱେ କହ ଦନ୍ତେ ତୃଣ ଧରବାର ଗଲ ।
ଫଟା କପାଳରେ କୁଟିଳ-ହୃଦୟା ବୋଲାଇବା ଲେଖା ଥିଲ ।
ରେ କଣୋର, ଫନ୍ଦା ଧନ ରୁ ତ ମୋର,

ଫଣିଅଦ କାହିଁ ତୋ ନାମେ କରିବ ନିନ୍ଦା କଲେ ଘଟେ କରି ରେ । ୨ ।

ଫଗୁଆରେ ଘର ଉଦ୍ରେକରେ ଭବ ରଖ ସେ ମାଳ ମଣିକ ।
ଫଳକ ବୃଳେ କୁଞ୍ଜ ଦ୍ୱାରେ ରଖାଅ ବେତ୍ରବଲ୍ଲୀଧାରଣୀକ ।
ରେ କଂଶାରି, ଫରମାସ ମନେ ମନେ,
ଫେଇଦଅ ତୁ ମୋ ଆଦୃର ମୁଁ ଯେବେ ଯିବ ସେ ବଗଲୁ ବଂନ ରେ । ୩ ।

[ଅଧୀର ହୋଇ ରାଧା କହିଲେ "ବିଚକ୍ଷଣାରେ, ବନା ତୋ ପ୍ରୀତ କେ ଗତ ଅଛୁ ଜଗତରେ' ଗୁଲ, କାଳ ବଳମ୍ବ ନ କର ଲତା ନିକଟକୁ ଯିବା ଓ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିବା ।" ଲତା ଅନ୍ତରାଳରେ ଥାଇ ଲଳିତା ଶ୍ରୀକୃଷ୍ଣଙ୍କ ଶୋଭା ରାଧିକାକୁ ଦେଖାଇ କହୁଛନ୍ତି,]

ଭ

ରାଗ—କେଦାର ଗୌଡ଼ା

ଭଙ୍ଗୀ ରାହିଁ, ଭ୍ରୂମାଳ-ଭୁଜଙ୍ଗୀ-ଭ୍ରମର, ଜୀବସଙ୍ଗି । ପଦ ।
ଭାଗ୍ୟ ଏ ଜନ ଅଖି, ଜନନରଞ୍ଜି ସଖି, ଜାଣ ରେ,
ଭରମି ନ ଯା ତୁ ମନ୍ମଥ ବାଣରେ,
ଭୂଜ ପାଶିକୁ ଛନ୍ଦ ମୋ ଗଳେ, ଭଡ଼େ ପଦକଞ୍ଜ ଖଞ୍ଜ ଧରଣୀ ତଳେ
ଭୂମଣ୍ଡନା ରେ,
ଭଲ ମାନୁଛୁ ଦେଖ ମୁଖ ସୁଧା ମୟୂଖ,
ଅଳକା ତଳ ଅଖଣ୍ଡିତ ରୋଚନାରେଖ,
ଝଳକେ ଦୃଷ୍ଟି ରଙ୍ଗ, ସଖିରେ, କ ଦଶେ ଚଳାଚଳ, ସ୍ୱରୁ ଚନ୍ଦ୍ରକ ଚୂଳ । ୧ ।
ଭସ୍ରିତ ନବରବି, କୁଣ୍ଡଳ ଯୁଗ ଛବି, ଗଣ୍ଡରେ
ଭଦ୍ରର ଏବୁଟି ବଦେବ ମୁଣ୍ଡରେ,
ଭବ୍ୟଦାମ୍ବକ ମାଣିକ୍ୟବର, ଭ୍ରମ ଜାତ କରୁଅଛୁ ମଧୁବ୍ରଧର,
ଭୂମଣ୍ଡନା ରେ, ।
ଭୂଷୁଣ୍ଡବଟି ସଯ, ବୃତ ନସୁମ ଧୃତ,
ଶ୍ରୀଅଙ୍ଗସଙ୍ଗମତ, ବନା ଅନାଅ ଦ୍ୟୁତ,

ମନ୍ଦ ମନ୍ଦ ଗତି, ସଖିରେ, ଶୋଭାନିଧି ତୋ ଗାତ୍ର, ନ ଚୁମ୍ବ ଶ୍ୟାମ ନେତ୍ର । ୨ ।

ଭଙ୍ଗୀ ତ୍ରସ୍ତରେ ହସ୍ତ, ହେବାର କେତେ ଶୋଭା, ପ୍ରଭାତେ
ଭଗନ କି ହାର ସେ ବକ୍ଷ ଆକାଶେ,
ଭର୍ଗ ସମାଧି ଭଙ୍ଗ କରିବ, ଭଲେ ଏହା କର କମଳ ବଂଶୀରବ,
ଭୂମଣ୍ଡଳ ରେ,
ଭୂତ ଭୂପ-ବିପକ୍ଷ-ପ୍ରକ୍ଷେପନରୁ ଦକ୍ଷ
ଏ କିଶୋର କଟାକ୍ଷ, କନକାଚଳ ବକ୍ଷ,

କେବଳ ଏହା ଲକ୍ଷ୍ୟ, ସଖିରେ, କନ୍ଦ ବିଷ୍ୱର ସତେ, ଯୁବତୀ ଧୃତ କେତେ । ୩ ।

[ଏହା ପରେ ଚତୁର୍ଥ ଲଳିତା ଅନ୍ତର୍ହିତା ହେଲେ, ପୁରୁଷ ପ୍ରକୃତିର ମିଳନ ହେଲା । 'ମଧୁରେ, ମନ୍ଦ ମନ୍ଦ ହୋଇ, ଗନ୍ଧବହ ପ୍ରସରିଲ କଦମ୍ବ ନିକୁଞ୍ଜ ସୀମାରେ' ଓ ବନସ୍ଥ ପୃଥ୍ୱୀ ଶ୍ୱାସରେ କବି ପ୍ରାର୍ଥନା କଲେ.]

ଷ

ରାଗ—କେଦାର କାମୋଦୀ

କ୍ଷମାନୁକମ୍ପାଧର ହେ,
କ୍ଷୀରସାଗର-ସମ୍ଭବାମ୍ବୁଜକୁମ୍ଭଯୁଗଳ-ପରିରମ୍ଭ-ଚତୁର ହେ । ପଦ ।
କ୍ଷିତି ଚକ୍ରବାଳ ମହାଭୀତି ନିବାରଣ ହେ,
ଶ୍ରୁତିଶିର-ଅବତଂସୀକୃତ ଶ୍ରୀଚରଣ ହେ,
ମଙ୍ଗଳ ବିହରଣ—କରଗର୍ଜିତ ଚରଣ, ଧରା ଭାର ହରଣ, ଚରାଚର ଶରଣ
ତରବର କରଣ,—ବରବର ଚରଣ,—ନଖାଂଶୁ ସୁରଗଣ ଶିଖାଭରଣ ହେ । ୧ ।
କ୍ଷଣେ ହେଲେ ନାମକୁ ନ ଭଣେ ମୁଁ ଭ୍ରମର ହେ,
ଜଣେତ ହେବାରୁ ପାପିଗଣେ ବିଶ୍ୱମ୍ଭର ହେ,
ମନା ନ କର ହତ, ଅନାଦର ରହିତ, ଅନାଥଶ୍ରି ନିରତ, ଚିନ୍ତା କରୁ ଦୁରିତ,
ଅନାରତ ମୋ ଚିତ୍ତ, କୋମୁଛୁ ଅହିତ, ଜନାର୍ଦ୍ଦନ ପତିତ ଜନାବହିତ ହେ । ୨ ।

(କିଶୋରଚନ୍ଦ୍ରାନନ୍ଦ ଚମ୍ପୂ)

# ଯଦୁମଣି ମହାପାତ୍ର

(୧୮୧୦?—୧୮୬୫)

## ଦ୍ୱାରବତୀ

ରାଗ—ରସକୁଲ୍ୟା

ସୁମଣ୍ଡ ଦେଇ କଷ୍ଟୁରି ସୁମଣ୍ଡ । ଅମ୍ବୁଧି ମଧ୍ୟବର୍ତ୍ତୀ ଦ୍ୱାରବତୀ ।
ପୁରର ଆଶ୍ଚର୍ଯ୍ୟ କଳ୍ପନା ଶିଳ୍ପ । ସକଳଙ୍କ କର୍ତ୍ତାର ପ୍ରଶଂସା କଲେ ଯେ,
ବସି କରି କଳ୍ପ କଳ୍ପ ଯେ ।
ରମା-କାମକଳ୍ପ-ପାଦପଙ୍କଜଙ୍କ ପ୍ରଜଙ୍କନେ ହେବ ଅଳ୍ପ ଯେ । ୧
ଶତକୋଟୀ କ ଶତକୋଟୀ ଗୁଣେ । ବଳ ବଳୟ ହୋଇଦା ପାଷାଣେ ।
ଘଟଣା ହୋଇଛୁ ଦୁର୍ଗ ପ୍ରାକାର । ରୁଚତର ସୂଚକମ ଝକର ସେ,
ତା କପାଟ ପାଉ ଧ୍ୱନ ଯେ ।
ବାଳସୁଁ କୈଳାସେ ମସ୍ତର ବଳାସେ ଉପୁ ଉଜନ୍ତ ସେନାମା ଯେ । ୨
ଏମନ୍ତ କ୍ରୋଟର ଗୋମଟ ଦ୍ୱାର । ଯାର ଅହୋରାତ୍ର ପହରୀ ତାର ।
ଦ୍ରୁଣ ପ୍ରୁଣ୍ଡଗଳ କ୍ରୁମୁଦ ପର । କୃଷ ପୂଣ୍ଡଗଳ କୁମୁଦ କଣ ସେ,
ହେବେ ତା ଗୃପଡ଼ ମାଢ଼େ ଯେ ।
ଦେବତାଙ୍କ ଆୟୁଧର ଧୂଳ କରି ଦେବ ତା ଆୟୁଧ ଏଢ଼େ ଯେ । ୩
ଶକଟ ପ୍ରାଚ ବନା ସେ କଟକେ । ନ ପ୍ରକଟନ୍ତୁ ଅଶଦର ଡାକେ ।
ମନ୍ଦ ଫସର୍ଗତା ଚନ୍ଦନ ବାତେ । କଳ କଳ୍ପାନ୍ତ ପୁଷ୍ପଲତା ବ୍ରାତେ ସେ ।
ଉଦେଗ ମାତ୍ରକ ପ୍ରୁବେ ଯେ ।
ଉପବାସେ ସଦା ରହିଛନ୍ତୁ ଏକା କେବଳ ବର୍ଜାରି ବର୍ଗେ ଯେ । ୪
ପଦ୍ମ ପଦ୍ମ ଘଡ଼ି ଅଛନ୍ତୁ ଗିର । ପଦ୍ମ ସଦ୍ମ ଭଙ୍ଗିଦେଲେ ପଦ୍ମାର ।
ଏଣୁ ପରମାନନ୍ଦେ ସାତବାରେ ନୃତ୍ୟନ୍ତୁ ପ୍ରତିପୁରେ ସାତବାରେ ଯେ
ବନାଶରେ ନାହିଁ ଦର ଯେ ।
ଜ୍ଞାନାଣ ପ୍ରଭୁ ଗୁରୁପୁଜ ଆଣିବା ବ୍ୟନ୍ତ ବଇଚବା ପୁର ସେ । ୫

(ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର—୧ମ ଛାନ୍ଦ)

# ରହସ୍ୟାବଳୀ

୧

ହୟଗ୍ରୀବ ମହାପ୍ରଭୁଙ୍କ ପ୍ରତାପେ,
ଘୋଡ଼ା ନୁହେଁ ଲେଡ଼ା କରନ୍ତ ନୃପେ,
ଭଲେ ଭଲ, ଟଣ୍ଡେ ଷଣ୍ଢ ଯେ,
•ନବଦୂର୍ବାଦଳ- ଶ୍ୟାମଳ କୃପାରେ
ମୋ ନାମ ଉତ୍କଳ ଘଣ୍ଟ ଯେ ।•

୨

କୃଷ୍ଣ ବନେ ଜଗନ୍ନାଥ ନ ହେବ ଗୋସାଇଁ
ରଥ ବୋଲି ଭଣ୍ଡି ନେବେ ଶଗଡ଼େ ବସାଇ ।
ଭୋଗବୋଲି ଖଣ୍ଡି ଦେବେ କଣ୍ଟକିଆ ମୂଆଁ
ଧୂପ ବୋଲି ମାଡ଼ଦେବେ ନଥିଁ ଖୁଣ୍ଟା ଧୂଆଁ ।

୩

ବଷ ଅସଜଗ୍ର ବାତ ନାଶନକୁ,
ଗରୁଡ଼ ଗୋବରଧନଆଁ
ଆଜ୍ଞା ଅବଜ୍ଞାକୁ ପ୍ରତିଜ୍ଞା କରନ୍ତୁ
ଗରୁଡ଼ ଗୋବରଧନଆଁ ।

୪

ଅନ୍ଧ ଦେଶଙ୍କୁ ଗଲ ଦର୍ପଣ ବକା,
କନ୍ଧ ହାତରେ ଦେଲ ଗୋଦାନ ଟେକା
ଜଡ଼ା ମଧ୍ୟରେ କଲ ଖଡ଼ା ରନ୍ଧନ,
କାମୁଡ଼ା ଘୋଡ଼ା ମୁଖେ ଦେଲ ଚୁମ୍ବନ
ହେ ସ୍ୱଜା କ କଲ,
ବନ୍ଧୁ, ପ୍ରତିମାକୁ ତଳେ ଥୋଇଲ ।

୫

କାନ୍ତ କାନ୍ତ ଦେଖି ମନେ ହେଲ ଭ୍ରାନ୍ତ
କେମନ୍ତେ କରିବ ଆହାର
ଖଣ୍ଡପଡ଼ା ନାମ ଉଚ୍ଚାର କରନ୍ତେ
ତକ୍ଷଣେ ହୋଇଲ ମଧୁର ।

୬

ଚରସ୍ତ ବେହେସ୍ତ ଖରସ୍ତ ନ ଦେଇ
ଫରସ୍ତ ହୋଇଣ ଗଲ ।
ଉପବାସୀ ଉପ- ବାସେ ରହୁ ରହୁ
ତେବେ ନଷି ନ ପାରିଲ ।

୭

ଛବରେ କେ ଜଣେ ନବ ରବିକ ?
କେ ପେଃ ପୋଷେ ଧନୁଶର ବକ ?
ଜଳଠାରେ ଖ୍ରୀଷ୍ଟ କାହାର ନଷ୍ଟ ?
ଉସ୍ତ ନାହିଁ କାର ହରଗ ପ୍ରତ ?
ବସ୍ତୁର କହିବ,
ସ୍ବର ପଦାର୍ଥ ଏକ ହୋଇଥିବ ।

୮

ଧନୁ ମାସ ହେଲ ହନୁ ନ ଚଳିଲ କହିବାକୁ ବଡ଼ ଲାଜ,
ମୁଁ ଅଁ କରଅଛୁ ମୁଅଁ ଖାଇବାକୁ ଦେବା ହେଉ ମହାରାଜ ।

୯

କେଉଁଠାରେ ଗଡ଼ୁ ଖଡ଼ୁ କେଉଁଠାରେ ମୂଢ,
କେଉଁଠାରେ ବୋଲଉଚ କରୁଣାଂବାରିଧି ।

୧୦

ଯେଉଁଦିନ ଆମ୍ଭେ ଏଠାକୁ ଅଇଲୁଁ ସେହିଦିନୁଁ ହେଲ ଖଡ଼ା,
ଲେମ୍ବୁ ନାରଙ୍ଗରେ ହାତ ନ ପଡ଼ିଲା ଖାତ ଖିଆ ହେଲ ଛଡ଼ା,
ଆଜ୍ଞ କଦଳୀରୁ କି ସୁଖ ମିଳିବ ସେତ ଲୋଡ଼ୁଥାଏ ସାଥି
କହେ ଯଦୁମଣି କରମେଲା ହେଲେ କାହୁଁ ବା ରୁଚନ୍ତା ପଥି ।

---

# ଭୀମ ଭୋଇ

(୧୮୫୫—୧୮୯୫)

## ବୁଲୁଥାଇ ବନେ

ବୁଲୁଥାଇ ଦନେ ଜଡ ପ୍ରଶ୍ନଦନେ ବସ୍ତ୍ରାଙ୍କୁ ସଙ୍ଗତେ ଘେନ ।
କ୍ଷୁଧା ତୃଷା ଜଳେ ଜୀବନ ବଳନେ ପିଉଥାଇ ଝର ପାଣି । ୧ ।
ଆକାଶକୁ ଚାହିଁ ମନରେ ଭାଳଇ କରୁଥାଇ ପାଞ୍ଚ ହେଜ
ବେଳ ହୋଇ ନାହିଁ, ଯିବ ମୁଁ କି ହୋଇ ନ ମିଳବ ପାଣି ପେଜ । ୨ ।
ଧନ୍ୟ ଏ ପିଣ୍ଡ ନୋହୁ ଖଣ୍ଡ ଖଣ୍ଡ ପଡୁଅଛୁ ଯେତେ ମାଡ଼
ଗାଳି ଦ୍ୱନ୍ଦ୍ୱ ପଛ ଅଙ୍ଗକୁ ପକାଇ ତୁଣ୍ଡ ଜଣଥାଇ ଦୃଢ଼ । ୩ ।
ଲୁହ ନାହିଁ ରକ୍ତ ବୋହୁଥାଇ ମୋର ଶ୍ରୀହସ୍ତେ ଦଅଇ ପୋଛୁ
କେହୁ ନ ଜାଣନ୍ତି ଶ୍ରୀଗୁରୁ ଜାଣନ୍ତି ଯେତେ କଷ୍ଟ ପାଇଅଛୁ । ୪ ।
ସେ ସମସ୍ତ କଥା ମନେ କଲେ ଚିନ୍ତା କରନ୍ତ କାଟୁଛି ପିଣ୍ଡ
ଉଠୁ ଅଛି କ୍ରୋଧ ହୋଇ ଗଦ ଗଦ ବୁକୁରେ ପଡୁଛି କାଣ୍ଡ । ୫ ।
ବାର ଠାରୁ ତେର ଚଉଦ ବରଷ ବହିଗଲା ଏହି ରୂପେ
ମନ ଜାଣୁ ଅଛି ଅନ୍ତର ବେଦନା ଦହସ୍ୟ ହୋଇ ସନ୍ତାପେ । ୬ ।
ହାଇ ଘନ ଘନ ଆଖି ଥନ ଥନ ପଡୁଛି ଚିନ୍ତା ସମସ୍ତ
ଜୀବନ ମୋର ଛୁଟୁ ପୋଡ଼ି ଯାଉ ଅଛି ଅଗ୍ନି ଉଠୁ ଅଛି ଦେହ । ୭ ।
ଚହୁ ଦିଗ ଚାହିଁ ମନରେ ଭାଳଇ ଲଲାଟରେ କର ମାରି,
ଆହାରେ ଦାରୁଣ ଦଇବ ବିଧାତା କରିଗଲୁ ଏତେ ପରି । ୮ ।
କରେ ପଡ଼ି କରେ ଉଠି ଯାଉଅଛି ତର ତର ହୋଇ ଚଉ,
ପାଦ ଦୁଃଖ ଜ୍ୱର ନ ଖଣ୍ଡିଲେ ମୋର ଅଣାକାର ଅବ୍ୟକ୍ତ । ୯ ।
ସ୍ଥିତ ବସ୍ତି ନାହିଁ ପ୍ରଚାରିବ କାହିଁ ସାଙ୍ଗ ସାଥି ସଖା ନାହିଁ
ଚାଲକୁ ଶିର ଉପରକୁ ପଦର ମଧ୍ୟେ ମାରୁଛି ଭୁଲାଇ । ୧୦ ।
ଶୂନ୍ୟକୁ ଚନାଇ ରହି ଅଛି ମୁହିଁ କି ରୂପେ ଧରିବ ଦେଖି
କେଉଁ ଡାଳ ଧରି ପାରି ହୋଇ ଯିବ ହାତ ଗୋଡ଼ ପାଉ ନାହିଁ । ୧୧ ।

(ସ୍ତୁତି ଚିନ୍ତାମଣି—ଦ୍ୱାବିଂଶ ବୋଲି)

# ନୁହନ୍ତି

ବେଦଜନ କଥା ଧର୍ମ ଉଲଙ୍ଗତା କେ କହିବ ତାହା କାଟି
ମୁଖରେ କହିଲେ ହୃଦ ଫାଟିଯିବ ଛୁଞ୍ଚିଯିବ ଜିହ୍ୱା ପାଟି । ୧ ।
ନୁହନ୍ତି ସେ ଗୁରୁ ନୁହନ୍ତି ସେ ଶିଷ୍ୟ ନାହିଁ ସାଧନ୍ତି ସେବକ
ନୁହନ୍ତି ବ୍ରାହ୍ମଣ ନୁହନ୍ତି ଚଣ୍ଡାଳ ନୁହନ୍ତି ସେ ବଡ଼ ଲୋକ । ୨ ।
ନୁହନ୍ତି ସେ ସ୍ତ୍ରୀଏ ନୁହନ୍ତି ପୁରୁଷ ନୁହନ୍ତି ଅସ୍ତିର ମାଇ
ନୁହନ୍ତି ସେ ପିତା ନୁହନ୍ତି ସେ ପୁତ୍ର ନୁହନ୍ତି ଭଉଣୀ ଭାଇ । ୩ ।
ନୁହନ୍ତି ସେ କ୍ଷୀର ନୁହନ୍ତି ସେ ନୀର ନୁହନ୍ତି ଦୁଗ୍ଧ ମଧୁର
ନୁହନ୍ତି ସେ କଥା ନୁହନ୍ତି ସେ ପିତା ନ ଥାଇ ଶୋଭା ସୁନ୍ଦର । ୪ ।
ନାହିଁ ତାଙ୍କ ଜାତ ନାହିଁ ତାଙ୍କ ଗୋତ୍ର ନ ଥାଇ ବାଛ ବେଭାର
ବେଦ ଜନ ଏକ ଅମ୍ନାମନ ହୋଇ କରୁ ଅଛନ୍ତି ସଂସାର । ୫ ।
ନୁହନ୍ତି ସେ ଜଳ ନୁହନ୍ତି ପବନ ନୁହନ୍ତି ରୂପ ଅରୂପ
ନୁହନ୍ତି ସେ ଜ୍ଞାନ ନୁହନ୍ତି ଅଜ୍ଞାନ ନ ମଣେ ବେଦ କଳପ । ୬ ।
ନୁହନ୍ତି ସେ ପାପ ନୁହନ୍ତି ସେ ପୁଣ୍ୟ ନୁହନ୍ତି ସେ ସେବା ଭକ୍ତ
ନୁହନ୍ତି ସେ କାମ ନୁହନ୍ତି ସେ କ୍ରୋଧ ନୁହନ୍ତି ଯତି ସେ ସତୀ । ୭ ।
ନୁହନ୍ତି ସେ କାଳ ନୁହନ୍ତି ସେ ମୃତ୍ୟୁ ନୁହନ୍ତି ଶୁଭ ଅଶୁଭ
ନାହିଁ ପତି ପତ୍ନୀ ସଜନ ଜାଣନ୍ତି ଏକ ଅଙ୍ଗେ ସବୁ ଭୋଗ । ୮ ।
ନୁହନ୍ତି ସେ ଦାସ ନୁହନ୍ତି ସେ ଦାସୀ ନୁହନ୍ତି ମାୟା ପ୍ରକୃତି
ନୁହନ୍ତି ସେ ସତ୍ୟ ନୁହନ୍ତି ସେ ମିଥ୍ୟା ବେଦଅଙ୍ଗ ଏକ ମୂର୍ତ୍ତି । ୯ ।
ନୁହନ୍ତି ସେ କଳା ନୁହନ୍ତି ସେ ଧଳା ନାହିଁ ଲକ୍ଷଣ ଗୁରୁତ୍ୱ
ନୁହନ୍ତି ସେ ଦାନ ନୁହନ୍ତି ସେ ଲାଭ ଦୁଖ ସୁଖ ସମମତ । ୧୦ ।
ଭଗତ ଅଛନ୍ତି ପ୍ରଭୁ ଅଙ୍ଗ ଜାଣି ଜୀବରୂପେ କର ବନେ
ଗୁରୁ ଚରଣରେ ଶିଷ୍ୟ ଭଜୁଅଛି ଶ୍ରୀ ଗୁରୁ ଶିଷ୍ୟକୁ ଭଜେ । ୧୧ ।

(ସ୍ତୁତି ଚିନ୍ତାମଣି—ଷଟ୍‌ତ୍ରିଂଶ ବୋଲି)

## କେତେ ସହୁଥିବ ମୁହିଁ

ବନ୍ଧ ମୋ ଯେତେ ଗୁରୁ ପାଦଗତେ ଗୁହାରି ଶୁଣୁଛ ନାହିଁ,
ବନ୍ଧୁ ନନ୍ଦାଙ୍କର ଗ୍ରନ୍ଥକ ପଥର କେତେ ସହୁଥିବ ମୁହିଁ । ୧ ।
ବନ୍ଧମା ପଣରେ ଅଶ୍ରୁ ଭା ବାଦରେ ନରୁ ଅଛନ୍ତି ଭଜନା,
ନନ୍ଦା ପଦ୍ମବକୁ ମଥାରେ ମୋହର କେତେ ଭରଥିବ ବୋଝା । ୨ ।
ଅପ୍ରମ ଏ ନନ୍ଦା ପେଣ୍ଡି ପେଣ୍ଡି ବନ୍ଧା ଦନୁ ଦନୁ ମନ୍ଦାଗର,
ନନ୍ଦାଙ୍କୁ କାନ୍ଧରେ ବହୁଥିବ କେତେ ଯାଉଁଳ ସୂତ୍ରି ଜଗ । ୩ ।
ଧର୍ମ ଛଦେ ଦନୁ ଏ ମାନବ ତନୁ ବହୁଗଲା ଏତେ ଦନ,
ନନ୍ଦାଙ୍କୁ ବସ୍ତ୍ର ପ୍ରାପ୍ତେ କେତେ ପିନ୍ଧିବ କଟିରେ ଜଗ ଭୂଷଣ । ୪ ।
ଦ୍ୱାସୀ ଭର୍ତ୍ସନା ଗାଳି ଗଞ୍ଜଣାକୁ ଗଳାରେ ପିନ୍ଧିଛୁ ମାଳ,
ଟାକ ଟାକ ମୁହିଁ ଅଗତକୁ ଦୃଷ୍ଟି ବହୁଯାଉଅଛୁ କାଳ । ୫ ।
ଶ୍ରାବଣ ବରଷା ପ୍ରାପ୍ତେ ନନ୍ଦାପଦ ଅଜାଣ୍ଡ ହୋଉଛୁ ଶିରେ
ଜଳ ପାପ୍ତେ ହୋଇ ପବାଇ ଶସ୍ତ୍ରରେ ବହୁଅଛୁ ବେଦନରେ । ୬ ।
ଘଣ୍ଟା ଘାଗୁଡ଼ି ପରି ଏ ନନ୍ଦା ମାଳ ଲମ୍ବି ଅଛୁ ଚନ୍ଦ୍ରକନ୍ଥ,
ଘନ ଘନ ନନ୍ଦନ୍ତର ବାଜିଅଛୁ ତାଳ ଫେରୁଅଛୁ ପୃଥ୍ୱୀ । ୭ ।
ଯଦି ଚାଲ୍ଲା ଚନ୍ଧି ପରିହାସ କରି ଖ୍ୟାମ ଲୋଇ କନ୍ଥବୋଲ୍,
ପାଦଧୂଆ ଜଳ ପିଆଇଲ ବୋଲି ସର୍ବେ ଦେଉଛନ୍ତି ଗାଳି । ୮ ।
କାହାର ଧନ ନଖାଇ ନ ଚୋରାଇ ନ ଲାଗି ତାହାର ଋଣ ।
ତଥା ନଷ୍ଟିରେ ଇଙ୍ଗିତ କରୁଛନ୍ତି ଦେଖ ମେଳଙ୍କ ଗୁଣ । ୯ ।
ତାହାଙ୍କୁ ହିଂସା କପଟ ନ କରଇ ଅହଙ୍କାର ଛେଦ ଭେଦ,
ରାଜା ପରଜା ସମସ୍ତେ ମୋହଠାରେ ଲାଗି ବସିଛନ୍ତି ବାଦ । ୧୦ ।

* * *

(ଯୁଦ୍ଧ ଚନ୍ଦ୍ରାମଣି—ହାଷଠି ବୋଲ)

## ମୋ ଜୀବନ ପନ୍ଥେ ନର୍କେ ପଡ଼ିଥାଉ

ଦର୍ଶ୍ୟୁଣି ମହିମା ଧର୍ମକୁ ସ୍ଥାପିବା ଶ୍ରୀମୁଖରେ ଆଜ୍ଞା ଦେଲେ
ଦାସ ପଣେ ଜଣି ଅଧବାଟେ ଅଣି କଥା ଏତେ ସବୁ କଲେ । ୧ ।

ନାହିଁ ମୋ ଭରସା ହେଉଛୁ ସାହସା କ ବୁଦ୍ଧି କରିବ କହ,
ଜଗତ ସମ୍ଭାଳ ଜଗତକୁ ପାଳ ତୁମ୍ଭ ସେବା ତୁମ୍ଭେ ବହ । ୨ ।
ଭକତଙ୍କ ଦୁଃଖ ନିରନ୍ତର ଦେଖି ଲାଗିଲଣି ପାଦାରବିନ୍ଦେ,
ବାଞ୍ଛିଆ ଯୋଗାଇ ଆଉ ପଛ କରି ବଢ଼ ଆଅ ଧନ ଧାନ୍ଦେ । ୩ ।
ସମ୍ପତ୍ତି, ବିପତ୍ତି, ମୁକତ ଦୁର୍ଗତ ଭିଆଣି କରିଛ ଯୋଡ଼ି,
ପାପ ଦୁଃଖ ସର କେ ତୁମ୍ଭ ବୋହିବ ପାଦ ତଳେ ଥାଉ ପଡ଼ି । ୪ ।
ଝଟେ ଜଣେଅଛି କର୍ମ ନ ତୁଟିବ ପଳାଇ ପଶିବ କାହିଁ,
ଅଜି ପାପ ସବୁ ଜଳିବ ପବିତ୍ର ପାଦଜଳେ ଦେବ ଧୋଇ । ୫ ।
ଶରଣ ବାଞ୍ଛିତ ନାଥ ନାଥ ଭକ୍ତ ଗତି ଗଲେଣି ସକଳ,
ଦୋଷ ଅପରାଧ କ୍ଷମା କରି ଶୁଭ ନାସ୍ତିକରେ ପ୍ରତିପାଳ । ୬ ।
ପ୍ରାଣିଙ୍କ ଆରତ ଦୁଃଖ ଅପ୍ରମିତ ଦେଖି ଦେଖି କେବା ସହୁ ।
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ । ୭ ।
ଜଣାଉଛି ମୁଁ ଯେ ଭକ୍ତ ସବୁ ରକ୍ଷେ ଅଛେ ଅଣିମା ଅନନ୍ତ,
ଚଉଦ ବ୍ରହ୍ମାଣ୍ଡରେ ଯେତେ ଜୀବ ଜନ୍ତୁ ସମସ୍ତେ ତୁମ୍ଭ ଭଗତ । ୮ ।

* * *

ଏକ ଖଣ୍ଡ ହାଡ଼ ତୁହାଏ ରୁଧିର ଫୁଟେ ମାଂସ ଲାଗି
ଚେଣ୍ଡ କରି ଯିନା ପ୍ରାଣିଙ୍କ ବଳଳ ସହ ନ ପାରିବ ମୁହିଁ । ୯ ।
ଏତା ଖଡ଼ଗରେ ଦଶ ପାଞ୍ଚ ମୁଣ୍ଡ ଛେଦିଲ ଭାରତ ଯୁଦ୍ଧେ,
ଅନେକ ଅଙ୍ଗକୁ ପାଦେ ପ୍ରହାରେ ଏ ଅଙ୍ଗକୁ ମୋର ବାଧେ । ୧୦ ।
ଆସ୍ତା ଭରତରେ ଦୋଷା ଦୋଷ ହେଲେ ବଜ୍ର ପଡ଼ୁ ମୋ ମୁଣ୍ଡକୁ
କହେ ଭୀମ ଭୋଇ ବ୍ରହ୍ମ ଶାପ ଦେଇ ଜାଲୁଥାଅ ମୋ ପିଣ୍ଡକୁ । ୧୧

(ସ୍ତୁତି ଚିନ୍ତାମଣି — ସପ୍ତବିଂଶ ବୋଲି)

## ଅଣହିଂସା ଧର୍ମ

ଅହିଂସା ଧର୍ମ ଏହି, ହିଂସା ନାହିଁ
ତାକୁ କହୁଛି ବୁଝିଲ । ଘୋଷା ।

ପୃଥୀ ପବନ ସହିଲେ    ଧୀର ବଚନ କହିଲେ

ଶାନ୍ତ, ଶୀଳ, ଦୟା, କ୍ଷମା ବହୁଳେ ଯାଇ,
ସମୁଦ୍ର ପ୍ରାୟେକ ବୃଦ୍ଧି ସଦ ବ୍ରହ୍ମ ହେଲେ ସିଦ୍ଧି
ସାଧୁ ସନ୍ଥ ବୋଲ୍ କହି । ୧ ।
ଆକାଶ ପ୍ରାୟ ବିବେକ ପରକାଶ ବ୍ରହ୍ମ ବାକ୍ୟ
ମୁଖେ ବଚନ ଶ୍ରବିଲେ ବେଦ ଜନ୍ମଇ,
ପିଣ୍ଡ ବ୍ରହ୍ମାଣ୍ଡ ଏକତ୍ୱ ମଣିଥାଇ ଏକମତ
ତେଣୁ ଯୋଗୀନ୍ଦ୍ର ଅଟଇ । ୨ ।
ସୂର୍ଯ୍ୟ ଆଉ ଚନ୍ଦ୍ରପଣେ କରୁଣା ଜଳ ନୟନେ
ଦୃଷ୍ଟସନ୍ଥ, କାହାକୁ ଅନ୍ତର ନଥାଇ ;
ମନେ ନ କରି ବିକାର ସର୍ବ ଭୂତେ ନିର୍ବିକାର,
ତେବେ ଅବଧୂ ବୋଲଇ । ୩ ।
ଧୀର ପଣେ କହେ ସତ ବୀରପଣେ ସାମରଥ
ବାଗୁ ବିଚଳିତ କଦାଚିତ ନୁହଁଇ
ସକଳ ଭୂତରେ ଏକ ଏକ ଆତ୍ମା ପ୍ରାୟେ ଦେଖି
ଗୁରୁ ପଣକୁ ଯୋଗାଇ । ୪ ।
ପାଳୁଥାଇ ଇନ୍ଦ୍ର ପଣେ ଅନ୍ତର ନଥାଇ ମନେ
ଛପନା କୋଟିକି ପଢ଼ା ବାଣ୍ଟି ଦିଅଇ ;
ବ୍ରହ୍ମ ଗ୍ୟାନ ତତ୍ତ୍ୱ କହେ ବଚନରେ ଡାରି ନଏ
ସାଧୁର ଲକ୍ଷଣ ଏହି । ୫ ।
ସମସ୍ତଙ୍କୁ ବୋଲେ ମୋର ମୁହିଁ ଅଟଇ ତୁମ୍ଭର
ଆପଣା ଆତ୍ମାକୁ ଶିଷ୍ୟ କରିବେ ରଖଇ ;
ଭଣେ ଭୀମ ଅରକ୍ଷିତ ସେହିଟି ଏକା ଅବଧୂ
ତା ପାଦ ଧରିବି ଯାଇଁ । ୬ ।

(ଭଜନମାଳା—୧୬୯ମ ଭଜନ)

# ରାଧାନାଥ ରାୟ

(୧୮୪୮—୧୯୦୮)

## ଚନ୍ଦ୍ରଭାଗାର କନ୍ଦୁକ କ୍ରୀଡ଼ା

ମଧୁର ପ୍ରଦୋଷ ସମୟ,
ସ୍ୱର୍ଣ୍ଣ କିରଣ ବୋଳା,
କାଦମ୍ବିନୀ ଖେଳେ ଗଗନେ
ଧୀର-ସମୀର-ଦୋଳା ।
ଗୋଧୂଳି—ଗଗନ ସୁଚିତ୍ର
କ୍ଷଣେ ଶତ ବରଣେ,
ଶତ ମନୋରଥ ଝଲକେ
ଯେମନ୍ତେ ଆଶା-ଭାଜନେ ।
କର୍ଣ୍ଣିପାରଲତା —ଶ୍ୟାମଳ
ବାଲ୍ ପ୍ରଭୁ ପର ଗ୍ରସ୍ତା,
ଦିବା ଅବସାନ ଦେଖିଣ
କ୍ରମେ ବସ୍ତାରେ କାୟା ।
ବାରୁଣୀ-ଦର୍ପଣ ପରସ୍ପେ
ଝଳେ ସର—ସଲିଳ,
ସୁବର୍ଣ୍ଣ-ଲହରୀ ସୃଜଇ
ଛନ୍ଦି ମନ୍ଦ ଅନିଳ ।
ନୀଳ ପାରାବାର ଅଦୂରେ
ଗାଏ ଅମର ଗୀତ,
ଅମର ତରଙ୍ଗ ନର୍ତ୍ତନେ
ବେଳା ହୁଏ ଧ୍ୱନିତ ।
ଶୁଭ୍ର—ତାରକତ—ସୈକତେ
ଫେନନୃତ୍ୟ— ଲହରୀ

ଚୁମ୍ବେ ଚନ୍ଦ୍ରଚୂଡ—ଚରଣ
ସ୍ୱରେ ସ୍ୱରେ ସଖଣ ।
ନାନା ଜାତି ପୁଷ୍ପ--ପରାଗ
ଧୀରେ ହରେ ସମୀର,
ଗୁଞ୍ଜକଙ୍କ ଯେନ କନ୍ଦୁକ—
କ୍ରୀଡା କରେ ସମୀର ।
ଯୂଥ ଯୂଥ ହୋଇ ଭ୍ରମନ୍ତ
ନାନାରଙ୍ଗେ ହରଣୀ,
ତରଙ୍ଗ ସ୍ନିହାଣି ସ୍ନିହାନ୍ତ
ସ୍ନିରୁ ଗ୍ରୀବା ଚୋଳଣ ।
କନ୍ଦୁକ-କ୍ରୀଡ଼ାରେ ସୁନ୍ଦରୀ
ଆଜ ରତ ଏ ସ୍ଥଳେ ;
ଉଠୁଛୁ ପଡୁଛୁ କନ୍ଦୁକ
ସ୍ନିରୁ-କର-କମଳେ ।
କନ୍ଦୁକର ଗତି ଲଲନ୍ତେ
କ୍ରୀଡ଼ା-ଲୋଳ-ଲୋଚନ,
ଚଳ-ଭ୍ରୂରୁ-ସ୍ନିରୁ-ନର୍ତ୍ତନ
ଦଶେ କବା ଶୋଭନ ।
ଲମ୍ବିତ ସୁଗୋଲ ନିତମ୍ବ—
ବମ୍ବେ ହେମ-ମେଖଳା,
ସ୍ତନାଙ୍କରେ ବ୍ୟସ୍ତେ ଦୋଳଇ
ମୋତି ମାଳା ତରଳା ।
ଶ୍ରବଣେ ଦୋଳଇ କୁଣ୍ଡଳ,
ଦୋଲେ ନୀଳ ଅଳକ,
ଲାବଣ୍ୟ ଦର୍ପଣ ପଦ୍ମସ୍ତେ
ଝଲେ ଗଣ୍ଡ—ଫଳକ ।

ଅର୍ଦ୍ଧେନ୍ଦୁ-ଲଲାଟେ ସିନ୍ଦୂର—
ବନ୍ଧୁ ରମଇ ଅକ୍ଷି,
ଜୁହଇ ସିନ୍ଦୂର, ରହନ୍ତୁ
ସ୍ମର—ହୃଦସ୍ଥ ଲକ୍ଷି ।
ଦଶନ-ଅଂଶୁକ ମିଶଇ
ନାସାମଣି—ଅଂଶୁକେ,
ମୃଗ ମଦ ବିନ୍ଦୁ ସୁନ୍ଦର
ଶୋଭେ ଚିବୁକ ଚିବୁକେ ।
କାମ-କାଳକୂଟ-କାଳିମା,
ଭ୍ରୂଲ ଯୁଗଳ ଧରେ,
ପ୍ରବାଳ-ଲତା କି ଅଧର,
ଆହା, ରୂପ ସାଗରେ !
ଖଞ୍ଜନ-ବିଲୋଳ-ଲୋଚନ—
ତାର କନ୍ଦୁକ ସଙ୍ଗେ
ଉଦ୍‌ବେଗେ ଭ୍ରମଇ ଚୌଦଗେ
କିବା ମଧୁର ରଙ୍ଗେ ।
ଲୁଟେ ଯୁବା-ଧୈର୍ଯ୍ୟ-କବଚ
ପ୍ରତି କଟାକ୍ଷ-ଶରେ,
ଉଠେ ନବ ଶୋଭା-ତରଙ୍ଗ
ପ୍ରତି ଅଙ୍ଗ ଭଙ୍ଗୀରେ ।
ଅସମ୍ଭାଳେ ଫିଟି କୁନ୍ତଳ
ଭୂମି ଯାଏ ପରଶି,
ଯେସନେ ଅନାଦୃତ ଲଳନା
ଫୁଲ ଯାଏ ବରଷି ।
ଦୁକୂଳ କବରୀ ସମ୍ଭାଳୁ-
ଅଛି ଦକ୍ଷିଣେତରେ,

ଫିଙ୍ଗୁଛୁ ଧରୁଛୁ କନ୍ଦୁକ
ବାମା ଦକ୍ଷିଣ କରେ ।
ଶୋଭା-ସଦନାକୁ ମଦନ
ଦେଖି ହେଲେ ହରଷ,
ପ୍ରତଫଳ ଦେବେ ରଙ୍କି
ମନେ ହେଲା ସାହସ ।
ଅର୍କ କୋଣାର୍କରୁ ଏ କାଳେ
ଆସୁଥିଲେ ଆକାଶେ,
ନୟନ ତାଙ୍କର ଦଉଡେ
ଗଲା ସୁନ୍ଦରୀ ପାଶେ ।
ବନ୍ଧୁକ-ଅଧରୀ କନ୍ଦୁକ
ପିଙ୍ଗି କର ସତାଇ
ସ୍ୱରୁ ଭୁରୁ ରଙ୍ଗେ ନମ୍ବଇ
ଦେଲା ଊର୍ଦ୍ଧ୍ୱକୁ ସ୍ୱର୍ଦ୍ଧି ।
ଏହିକାଳେ ଦୃଷ୍ଟି ରଙ୍କ
ବାଳା-ବର ବଦନେ,
ପଡ଼ିଲା, ଉଡ଼ିଲା ହୃଦୟ
ଧୈର୍ଯ୍ୟ ବୁଡ଼ିଲା କ୍ଷଣେ ।
(ଚନ୍ଦ୍ରଭାଗା)

## ଉଷାର ମୃଗୟା

କ୍ରମେ ଯଥାକାଳେ ଛୁଇଁଲା ଛଇଳା ଯୌବନ ସୀମା,
ଉପମା-ସୃଷ୍ଟିକୁ ବୁଡ଼ାଇ ଦେଲା ତା ରୂପ-ଗରିମା ।
ମରଲୋକେ ତାର ଯୋଗ୍ୟ ପଟାନ୍ତର କାହିଁ ମହଳା ?
ଦିବ୍ୟ ଲୋକେ ଏକା ସମ୍ଭବେ ସିନା ସେ ଲାବଣ୍ୟ-ଲୀଳା ।

ତରଳ-ତାରକା-ହାରମୟୀ ନାକ-ନାଗରୀ-ଟୀକା
ସମକକ୍ଷ ତାର ହେଲେ ହେବେ ଶଚୀ ସ୍ୱର୍ଗ ଚନ୍ଦ୍ରିକା
ତରଙ୍ଗ-ଦୋଳାରେ ଦୋଳାୟିତ କିବା ସିନ୍ଧୁ ଦୁଲଣା,
ଲୀଳା-ଅରବିନ୍ଦ-ଧାରିଣୀ ଅମଳ-କମଳାନନା ।
ସ୍ୱଳ୍ପ କାଳେ ଶିଳ୍ପ-କଳାଦିରେ ବାମା ହେଲା କୁଶଳା,
ମାତ୍ର ଶସ୍ତ୍ର-ଶିକ୍ଷା ପ୍ରତି ମନ ତାର ସ୍ୱଭାବେ ଗଲା ।
ଅନୁକ୍ଷଣ ଶସ୍ତ୍ରଶିକ୍ଷା, ମୃଗୟାରେ ହେଲା ସେ ରତ,
ସଖୀ ସଙ୍ଗେ ଶସ୍ତ୍ର-ହସ୍ତେ ଭ୍ରମୁଥାଇ ବନ ପର୍ବତ ।
କେବେ ବିହରଇ ଶାଳ-ତରୁ-ପୂର୍ଣ୍ଣ ଶୈଳ-କାନନେ,
କେବେ ଅବା ସିନ୍ଧୁ-ବାୟୁ-ବିଧୂନିତ-ହିନ୍ତାଳବନେ ।
ରଙ୍ଗକୋବିଦାର ପାଟଳ-ବସନେ ଶୋଭଇ ଧନୀ
ରଙ୍ଗ ଘନେ ଯେସନ୍ତେ ଶୋଭେ ତାର ପ୍ରଭାମୟୀ ମିତଣୀ ।
କେବେ ଅଶ୍ୱ ପୃଷ୍ଠେ ଭ୍ରମୁଥାଇ ବାଳା ବନ ଶାଦ୍ୱଳ
ପ୍ଲୁତଗତି ହେତୁ ଗଣ୍ଡେ ଦୋଳୁଥାଇ ସ୍ୱର୍ଣ୍ଣ-କୁଣ୍ଡଳ ।
କେବେ ଧନୁଃଶର ଶୋଭୁଥାଇ କରେ ପୃଷ୍ଠେ ନିଷଙ୍ଗ
କେବେ ସବ୍ୟ କରେ ଫଳା ସବ୍ୟେତରେ ଅସି ଉଲଙ୍ଗ ;
କେବେ ଶୂଳହସ୍ତେ ସଖୀଦଳେ ଭ୍ରମୁଥାଇ ଛଇଳା
ପଞ୍ଚମୀ-ବାହିନୀ ସଙ୍ଗେ ମହାବନେ ଯେତେ ପ୍ରମିଳା ;
କନକ ବଲ୍ଲରୀ ମଧ୍ୟେ କି ବିହରେ ସ୍ଥିର-ହ୍ଲାଦିନୀ,
ତାମ୍ର-ହରୀତକେ କି ଅବା ରୋହିଣୀ ଇନ୍ଦୁମାଦିନୀ ।
ଆନିତମ୍ବ-ଲମ୍ବୀ-କେଶ ଗୁଚ୍ଛେ ଶୋଭୁଥାଇ ଚରମ,
ଦର୍ଶକ-ହୃଦୟେ ଉପୁଜାଇ ନୀଳ-ଭୁଜଙ୍ଗୀ-ଭ୍ରମ ।
ସ୍ୱର୍ଣ୍ଣ-ସାରସନେ କୃଶୋଦରୀ କୃଶ-କଟି କଷିତ,
କବଚେ ଆବୃତ ସଞ୍ଚ ଘଞ୍ଚ ସ୍ତନ-କଳି ଲକ୍ଷିତ ।
ଆକର୍ଣ୍ଣ ବିସ୍ତାରି ନେତ୍ରେ ଉଠୁଥାଇ ଭାବ ତରଙ୍ଗ
ତଳରେ ଚକିତ ପ୍ରାୟେ ଘୂରୁ ଭୂରୁ କାମ-ଶାରଙ୍ଗ ।

ହେଲେ ନେଉଥାଇ ଦେଖଣାହା'ରୀଙ୍କ ହୃଦୟ ହରି,
ଜଗତ ଯୋଷାଙ୍କ ଶୋଭାଭୂଷା ସେହି ଉଷା ସୁନ୍ଦରୀ ।
ଥରେ ପଡ଼ିଲେ ସେ ନୟନେ ଜଗତ-ନୟନ-କାରା,
ହେଉଥାଇ ରୂପବତୀ ସୃଷ୍ଟି-ନଭେ ପ୍ରଭାତୀ ତାରା ।
ପ୍ରଦୋଷେ ସଙ୍ଗିନୀ-ବ୍ରାତେ ବିଜେ କରି ସୁଚିତ୍ର ପୋତେ,
କରୁଥାଇ ନୌ-ବିହାର ବଳାଙ୍ଗୀ ହରିତ ସ୍ରୋତେ ।
ରଙ୍ଗେ ଆଲୋଡ଼ଣ ବଳାଙ୍ଗୀ ତରଙ୍ଗ କ୍ଷେପଣୀ ଚାଳି,
ବେନି ତୀରେ ଶ୍ୟାମ ପାଦପ ବଲ୍ଲରୀ ଧାଇଁ ଚଞ୍ଚଳେ
କୁସୁମିତ ସ୍ୱର୍ଣ୍ଣ-କାନ୍ତି ଶଣ-କ୍ଷେତ୍ର ପଳାନ୍ତି ଖରେ,
ବାମା ବର୍ଣ୍ଣ ବରି ବେଶ କରି ଅବା ପଳାନ୍ତି ଡରେ ।
ଠାବେ ଠାବେ ଉଠେ ଶ୍ୱେତ ଶିଳା ସ୍ତମ୍ଭ ପ୍ରାୟେ କୁମ୍ଭୀର,
ନ ବୁଡ଼ୁଣୁ ଉଷା ଖର ହସ୍ତେ ବିନ୍ଧେ ତା ଦେହେ ତୀର ।
ବୃଥା ହାଣୁଥିଲ ମୃଗୀ ଅଙ୍ଗେ ବାଣ ସିନା ସୁନ୍ଦରୀ,
ସୁହାଣି ଭଙ୍ଗୀରୁ ଥିଲେ ସେହୁ ଯେଣୁ ଆଗହୁଁ ମରି ।
ଖଞ୍ଜିବା ଆଗରୁ ଶରାସନେ ଶର ଲକ୍ଷେ କରଭ
ପଳାଉଣ ଥିଲ ପରିହରି ନିଜ ଉରୁ ଗରବ ।
ମୁଗ୍ଧ ହୋଇ ମୁଗ୍ଧା-ଚରଣ-ନୂପୁର-ଶିଞ୍ଜିତ-ସ୍ୱନେ
କୂଜି ରାଜହଂସ ଧାଉଁଥିଲେ ପଛେ ପଛେ ଗହନେ ।
ବନପଶୁମାନେ ଭ୍ରମ ଜନମିବା ଆଶେ ଲଳନା
ହରିତ ପଲ୍ଲବେ ତନୁଚ୍ଛଦ କେବେ କରେ ରଚନା ।
ବିଚିତ୍ର ବରଣ ବନମାଳେ ମଣ୍ଡିଥାଏ ମସ୍ତକ,
କଣ୍ଠେ ପୁଷ୍ପ ଗୁଚ୍ଛ, କଟିର କୃତ୍ତିକା-ତାରା-ସ୍ତବକ
ମାତ୍ର ନ ଆବରେ 'ଅଧରୋଷ୍ଠ କର ବନ ପଶୁରୁ,
ବାରିତ ନୋହିବ ତାହା ବଶୀ ଜାମୁ—ପଲ୍ଲବାଙ୍କୁରୁ ।
ଶୂଳ ହସ୍ତେ ବନ ପଶୁଙ୍କୁ ଗୋଡାଇ ଦ୍ରୁତ ଚରଣେ
ଦକ୍ଷ'ହେଲ ବଡ଼ ମୃଗାକ୍ଷୀ ମୃଗୟା—ଅନୁସରଣେ ।

ଯଥାର୍ଥେ ତା ସଙ୍ଗେ ଗଢ଼ ବେଶେ ଭେଦ ନ ଥିଲେ ସର,
କି ଆକୃତି କିବା ଗଢ଼ରେ ଥିଲା ସେ ବଳ୍ଲୀ ପର ।
ଯୁବତୀ—ସୁଲଭ ସୌନ୍ଦର୍ଯ୍ୟ ମିଶିଲା ଶୌର୍ଯ୍ୟ ପ୍ରଖର,
ବେନ ଗୁଣ ମିଳି କଲେ ରମଣୀଙ୍କ ରୂପ-ସୁନ୍ଦର ।
ଯଙ୍କ ଶୋଣାଧାର ବିମ୍ବାଧରୀ ଠାରୁ ମାଧୁର୍ଯ୍ୟ ଯେନ
ବିମ୍ବୋଧ ପାଶୋର ମଧୁର ମିଳନେ ମିଳିଲେ ବେନ ।

(ଉଷା)

## ଭାରତ ଭ୍ରମଣ

ବହୁଦିନ ଭ୍ରମି ଭ୍ରମି ଅବିରତେ
ଦେଖିଲିଁ ନାନା ସ୍ଥାନ ଭୂଭାରତେ ।
କି ଉତ୍ତରଖଣ୍ଡ କି ଦକ୍ଷିଣାପଥ
ଭ୍ରମିଲି ମୁଁ ଆର୍ଯ୍ୟାବର୍ତ୍ତେ ଚକ୍ରବତ ।
ଭାରତର ଉତ୍ତ-ସୀମନ୍ତ-ଅଚଳ
ଦେଖିଲି ହିମାଦ୍ରି, ହିମ-ଉଜ୍ଜ୍ୱଳ ।
ପାଦେ କୋଟି କୋଟି ଶିଖରସମାଜ,
ସର୍ବୋଚ୍ଚେ ଶୋଭନ୍ତି ଶୁଭ୍ର ଶୈଳ-ରାଜ,
ଶୃଙ୍ଗୋପରି ଶୃଙ୍ଗ, ଶୃଙ୍ଗ ତଦୁପରି
ନୀଳ ବ୍ୟୋମପଟେ ଚନ୍ଦ୍ର ହେଳାପରି,
ନୀହାର ମୁକୁଟେ ମସ୍ତକ ମଣ୍ଡିତ,
ସ୍କନ୍ଧେ ଶୋଭେ ଶୁଭ୍ର ଗଙ୍ଗା-ଉପବୀତ,
ନିସ୍ତବ୍ଧ, ନୀରବ ସେ ମହା ବିଜନେ,
ସନାତନ ଶ୍ୱେତ ତୁଷାର-ଆସନେ,
ବ୍ୟୋମକେଶ ମୂର୍ତ୍ତି ଦେଖିଲି ଚମକି,
ପଡ଼ିଲା ସେ ରୂପେ ଚକ୍ଷୁ ବୃତ୍ତି ଅଟକି,

ମନେ ମନେ କରୁ ନମିଲ୍ ମାରବେ
"ନମୋ ଦେବାମ୍ବନେ ଶ୍ରୀ ଗୌଷ୍ଠଗୁରବେ ।"
ଗଜସ୍ଥାନେ ଭ୍ରମି ଶ୍ରମ ମରୁସ୍ଥଳୀ,
ଦେଖିଲ୍ ଶ୍ରଷଣ ରୂକ୍ଷ ଶୈଳାବଳୀ,
ନୀର-ତରୁ-ହୀନ, ବନ୍ଧୁର, କର୍କଶ,
କଙ୍କାଳ ଯେସନ କାଳ ସର୍ବଂକଷ ।
ଚଣ୍ଡାଂଶୁ-କରଣେ ଖର ଅତଣସ୍ତ,
ଦାବାଶାଗ୍ନି-ସେଗି-ଶ୍ୱାସେ ବିଷମସ୍ତ,
ତପ୍ତ ବାୟୁ ଯହିଁ ପ୍ରଚଣ୍ଡେ ସଞ୍ଚର,
ପାନ୍ଥ ଆୟୁ ନବ ପ୍ରତି ପଦେ ହର,
ଗୁମ୍ଫାଦାନେ ବକ୍ଷ ଯହିଁ ନାଗ ଫେଣୀ,
ନୀରଦାନେ ପୁଣି ମରୀଚିକା-ବେଣୀ ।
ତୃଷାତୁର ବେଗୀ ଗୃହେ ଯଥା ବସି
ସ୍ମରେ କମଳିନୀ-ହରିତ ସରସୀ,
ସେହି ରୂକ୍ଷ ଦୃଶ୍ୟେ ସ୍ନିଗ୍ଧ-ଛବି ତୋର
ନେତ୍ରାଗ୍ରେ ସ୍ଫୁରିତ କରୁଥିଲା ମୋର ।
ଭ୍ରମିଲ୍ ଶ୍ରଷଣ ବନ୍ଧ୍ୟାଦ୍ରି, କାନ୍ତାର,
ଧୂଆଁ ଧାରେ ଯହିଁ ହୋଇ ଶତଧାର,
ଭୈରବ ଆରବେ ରେବା ଦେଇ ଲମ୍ଫ,
ଜନମାଏ ଜନ-ମାନସେ ପ୍ରକମ୍ପ,
ଶୁଭ୍ର ସ୍ୱଚ୍ଛ ପୟଃ-ପ୍ରପାତ-ସୁଭଗା
ହର-ଜଟା-ଭ୍ରଷ୍ଟା ଯଥା ତ୍ରିପଥଗା,
ଶୀକର-ଜଳଦେ ବଜ୍ରବପୁ କର
ସ୍ରଜେ ଯହିଁ ଶକ୍ର-ଚାପ ମନୋହର ।
ଶୁଣିଲ୍ ଶ୍ରବଣେ ସେ ଭୈରବ ରବ
ଊର୍ଦ୍ଧ୍ୱେ ଦେଖିଲ୍ ସେ ଜଳର ତାଣ୍ଡବ ।

ଭ୍ରମିଲ୍ ଦକ୍ଷିଣା ପଥେ ଉପତ୍ୟକା,
ଝିଲ୍ଲି-ଝଙ୍କାରତ ଅଟବୀ ଦଣ୍ଡକା,
ତୀର୍ଥାଶ୍ରମ, ଗିରି, ତଟିନୀ, କନ୍ଦର,
ମହାରଣ୍ୟମାନେ ଚନ୍ଦ୍ର-କଳେବର,
ଦୂଷଣ-ତ୍ରିଶିର ଖର-ଅଧ୍ୟାସିତ,
ଜନସ୍ଥାନ ଯାର ଥିଲା ସନ୍ନିହିତ ।
ଧାରାସ୍ରାବୀ, ଶ୍ରମହାରୀ, ତଡ଼ିଦ୍‌ବନ୍ତ,
ପର୍ଜନ୍ୟ ଗର୍ଜନେ କମ୍ପିଲେ ଦିଗନ୍ତ
ଯହିଁ ମେଘାଲୋକେ ପ୍ରଫୁଲ୍ଲ ଅନ୍ତର,
ମୈଥିଳୀ-ପାଳିତ କେକି ବଂଶଧର,
ନାଚେ ନୃତ୍ୟକାରୀ ନୀଳକଣ୍ଠ-ଲେକା,
ଅଦ୍ୟାପି ସୂଚଇ ରାମାଶ୍ରମରେଖା,
ଭୀଷଣ କନ୍ଦରେ ମଧ୍ୟେ ବହି ତହିଁ,
ଗଦ୍‌ଗଦ ଶବଦେ ଗୋଦାବରୀ ଯହିଁ,
କୁହରେ ପଡ଼ନ୍ତୁ ଭ୍ରମୁ ଦେହେ ଝାସ,
ତହିଁ କାଳେ କୋତେ ନ ଥିଲା ସୁମର ?
ବାତ୍ୟା-ଆନ୍ଦୋଳିତ ମହାଭୟଙ୍କର
ଭ୍ରମିଲ୍ ଭୀଷଣ ରାଜ୍ୟେ ବରୁଣର,
ଯହିଁ ଚକ୍ରବାଳେ ଅସ୍ପଷ୍ଟପ୍ରଭ
ନୀଳାର୍ଣ୍ଣବ-ଦେହେ ଲଗ୍ନନୀଳନଭଃ,
ଉର୍ମି ପରେ ଉର୍ମି ଉର୍ମି ତହୁପରେ
ପୋତ ଗ୍ରାସିବାକୁ ଅସୁଥାଇ ଝଡ଼େ ।
ସ୍ୱଚ୍ଛନ୍ଦେ ଏହି ମହାଦୃଶ୍ୟମାନ
ଦେଖିଲ୍ ଭାରତେ ଭ୍ରମି ନାନାସ୍ଥାନ ।
ଭୀଷଣ, ବିରାଟ, ବିକଟ, ଉଦାର
ଦୃଶ୍ୟ ଦେଖି ହେଲା ବିସ୍ମୟ ଅପାର,

ଚନ୍ଦ୍ର ବୁଡ଼ି ଗଲା ନକ୍ଷତ୍ର ହୁଡ଼ି,
ସନ୍ଧ୍ୟା ଗଲା ସେହି ମହାଙ୍କବେ ବୁଡ଼ି,
ଖର ସୌରକରେ ତାରକା ଯେସନ
ଅସ୍ପୃଷ୍ଟ ବସ୍ତୁସ୍ଥେ ହେଲା ନମଗନ ।
ଗୁରୁପ୍ରାସ୍ତେ ତାଙ୍କୁ ଦୂରୁଁ କଣ ଖାଣ୍ଡ
ସଖିପ୍ରାସ୍ତେ ତୋତେ ସ୍ପୃଶୁଥିଲ ନଡ ।
ଇତର ଜନର ଅବସାଦକର
ଯୋଗୀ ଋଷିଙ୍କି ସେ ସ୍ଥାନ ମନୋହର ।
ରବକରେ ମୁଦ ନମଲ ଲଭଇ,
ଝାଉଁଳ ପଡ଼ନ୍ତ ଅନ୍ୟ ପୁଷ୍ପ ଛାଡ଼ି,
ସେହି ପୁଷ୍ପ ପୁଣି ସ୍ନିଗ୍ଧ ଶଶୀକରେ
ପିଅନ୍ତ ପୀୟୁଷ ପ୍ରଫୁଲ୍ଲ ଅନ୍ତରେ ।
ତୋ ଛବ ଦର୍ଶନେ ସେହି ରୂପେ ମନ
ଲଭେ ସୁମଧୁର ଶାନ୍ତ ଆସ୍ୱାଦନ ।
ବାସ୍ତ ନୋହି ରୂ ଯେଣୁ ସୁବୃହତ
ସ୍ତବ୍ଧ ନୋହି ମନ ହୁଅଇ ଉନ୍ନତ ।
ଅବସାଦେ ଅବା ଆତ୍ମ-ବସ୍ତୁତରେ
ବୁଡ଼େ ନାହିଁ ମନ ତୋର ରମ୍ୟ ତଟେ ।
ସ୍ନିଗ୍ଧ ରୂପ ତୋର ଚନ୍ଦ୍ର-ଉଲ୍ଲାସକ
ସୁମଧୁର ଦ୍ୱୈତ-ଭାବର ଦ୍ୟୋତକ ।

(ଚିଲିକା)

## କରିଥିଲି ଆଶା

ମାଗୁଛୁ, ଚିଲିକା, ମେଲଣି ତୋଠାରେ,
ବାହୁଡ଼ିବ ଏବେ ଦାରୁଣ ସଂସାରେ ।
କରିଥିଲି ଆଶା କରିବ ଯାପନ
ତୋ ପଶ୍ଚିମ ତଟେ ପଶ୍ଚିମ ଜୀବନ ।

ବନା ପ୍ରସ୍ବାସରେ ସୌନ୍ଦର୍ଯ୍ୟ-ପିପାସା
ମେଣ୍ଟିବାର ଥିଲା ତୋହଠାରେ ଆଶା ।
ଭାଗ୍ୟ ହୋଇଥିଲେ ବୃତ-ଅନୁକୂଳ
ଆଶ୍ରିଥାନ୍ତି ମୁହିଁ ତୋର ରମ୍ୟ କୂଳ ।
କୁଟୀର ବରତ ଜଟିଆ-ଚରଣେ
କାଟୁଥାନ୍ତି ଆୟୁଶେଷ ନକାଶନେ ।
ମାତ୍ର ପଣ୍ଡାମେ ସ୍ୱପ୍ନାବାଳବତ
ଆଶାରେ ସେ ଆଶା ହେଲା ପରିଣତ ।

ସଂସାରେ ଥାଇ ମୁଁ ସଦା ଉଦାସୀନ
ଉଦାସୀନ ପ୍ରାୟେ କଟାଇଲି ଦିନ ।
ସଂସାରୀ ସଙ୍ଗତେ ସଙ୍ଗୀ ହେବା ପାଇଁ
କେବେହେଁ ମୋହର ମନ ବଳେ ନାହିଁ ।
ହସି ଖେଳି ସେଥୁ ଗମନ୍ତି ସମସ୍ତ
ଜୀବନ ମନ୍ତ୍ର ମହୋତ୍ସବମସ୍ତ ।
ସ୍ଥିର ଭାଗ୍ୟ ମୋର ପିଣ୍ଡିତ ପାଷାଣେ
ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ ।
ଚିର ହାହାମୟ ଏ ସ୍ଥିର ଜୀବନ
ଜୀବନ ନୁହଇ, ଜୀବନ୍ତ ମରଣ ।
ଚିର ଦିନ ଦୁଃଖ-ପ୍ରହାରେ ଜର୍ଜର
ପଟ୍ଟଶିଷ୍ୟ ମୁହିଁ ଦୁଃଖ-ଗୁରୁଙ୍କର ।
ଦୁଃଖଦତ୍ତ ଜ୍ଞାନ-ଚକ୍ଷୁରେ ଜଗତ
ଦେଖିବାରେ ମୁହିଁ ଅଭ୍ୟସ୍ତ ସତତ ।
ସୁଖ ବୋଲି ଯାକୁ ବୋଲଇ ସଂସାର
କରୁଥାଇ ତାକୁ ହରୁ ମୁଁ ଜୁହାର ।
ସୁଖ ରୂପେ ଯାହା ଜନନେତ୍ରେ ଦିଶେ
ହାତେ ଆହେ, ହାତୁଁ ପଡ଼ିବା ପାଇଁ ଯେ ।

ବସ୍ତୁ ନୁହଇ ସେ ଅଟଇଟି ଧୂମ
ଅନ୍ୟ ନାମ ତାର ଆକାଶ କୁସୁମ ।
ତୋହର ପୂଜନେ ମୃଗତୃଷ୍ଣା ପ୍ରାୟେ
ମନୋମୃଗକୁ ସେ ଜଗତେ ଭ୍ରମାଏ ।
ସେ ସୁଖେ ନ ଥିଲା କେବେ ମୋର ସ୍ପୃହା
ଲକ୍ଷ୍ୟ ଥିଲା ମାତ୍ର ତୋର ଗାରଗୁହା ।

ଶାନ୍ତ ରଂସାସ୍ପଦ ସେହୁ ଦଶ୍ଯ କୋଳେ,
ବାଗ୍‌ଦେବୀ-ଚରଣ ପୂଜକ ନଗ୍ରେଲେ ।
ପୂଜିଲେ ଯେସନ ମଞ୍ଜି ନରଜନେ,
ତୋ ମଧୁର୍-ରୂପ ମଧୁ ଆସ୍ୱାଦନେ,
ଭାଗ୍ୟବାନ ବେନ ବାଣୀଙ୍କ କୁମର,
କବି ବଳଦେବ, ଭଞ୍ଜ ବୀରବର ।
କାହିଁ ସେହୁ, କାହିଁ ମୁହିଁ ଅକାଞ୍ଚନ ?
ଦେଖିଥିଲି ପିନା ଜାଗ୍ରତ ସ୍ୱପନ !
ଆଶାମଦେ ମତ୍ତ ହୋଇ କେତେ ଥର
ପୂରାଇଲି ମନ-ମୋଦକେ ଉଦର ।
ନ ଦେଖି ମୋହର ଜୀବନ-ପଞ୍ଜିକା
ଗଢ଼ିଥିଲି ବସି ମନ-ଅଟ୍ଟାଳିକା ।
ତୋଳୁଥିଲି ପିନା ବ୍ୟୋମପ୍ରସୂନମାନ
କରୁଥିଲି ମୃଗତୃଷ୍ଣା-ଜଳେ ସ୍ନାନ ।
ଅନ୍ତେ ପଡ଼ ଭ୍ରମ-ଭବିତବ୍ୟ ଛାୟା ।
ପଲକେ ଉଭିଲା ସେ ମୋହନ-ମାୟା ।
ସେ ଛାୟା ଅନ୍ଧାରେ ଦେଖିଲି ଭୀଷଣ
ନୈରାଶ୍ୟ ପ୍ରେତର ବିକଟ ନର୍ତ୍ତନ ।
ସ୍ବପ୍ନ ଛବି ତୋର ସେହୁ ବଞ୍ଚିକା
ତଡ଼ି ଦେଲା ମନୁ ନିମିଷେ, ଚଳିକା !

(ଚିଲିକା)

# ଏହି କି ସେ ଆର୍ଯ୍ୟଭୂମି ?

ଏହି କି ସେ ଆର୍ଯ୍ୟଭୂମି ? ଏ ଭୂମିର ସୁତ
ତୁମ୍ଭେ କି ଆର୍ଯ୍ୟନାମଦାୟାଦ ଜଗତେ ?
ବିନା ଯୁଦ୍ଧେ ନ ଦେବାର ସୂଚ୍ୟଗ୍ର ମେଦିନୀ
ପଣ ଯେଉଁ ଆର୍ଯ୍ୟଙ୍କର, ତାଙ୍କର ଶୋଣିତ
ବହୁଛି କି, ଅହେ ଯୋଧେ, ତୁମ୍ଭ ଧମନୀରେ ?
ଧିକ୍! ଧିକ୍! ଶତଧିକ୍! ଧିକ୍ ଏ ମନ୍ତ୍ରଣା
ଏ ହୀନ ମନ୍ତ୍ରଣା, ଭୀରୁ-ପାମର-ଉଚିତ,
ଉଚ୍ଚାରି ଯା କଲ ଶୂରେ ଅପବିତ୍ର ଅତି
ନିଜ ମୁଖ, ଶ୍ରୋତା-କର୍ଣ୍ଣ, ଆର୍ଯ୍ୟବଂଶଧରେ !
ଅବା ଅନ୍ୟଜନ ତୁମ୍ଭେ ଏ ନାମ ଧାରଣେ ?
ଭୀରୁତା ଯେ, ସେହି ସିନା ବୀରର ମରଣ,
ଭୀରୁ ଜୀବ ବନ୍ଧୁ ତୁମ୍ଭେ ମୃତ ଏ ଜଗତେ,
ଲୋଡ଼ଇ କି କେହୁ କେବେ ମୃତର ମନ୍ତ୍ରଣା ?
ପଳାଇ ଏ ରଣସ୍ଥଳୁ ରହିବ କି ଜୀଇ
ଚିରଦିନ ଭବେ ? ଯେବେ ନାହିଁ ସେ ଦୂଷଣ
ନିଜ ମୁଖ, ପିତୃନାମ, ବୃଥା କଳଙ୍କିତ
କରିବ ଏ ରୂପେ କମ୍ପା ପ୍ରାଣରଙ୍କ ମୂର୍ତ୍ତି ?
ହା ଧିକ୍! ଏ ରଙ୍କପ୍ରାଣ ଆତଙ୍କେ ବଞ୍ଚାଇ
ଅଶୁ ମୃତ୍ୟୁ-ପ୍ରଦ ରଣୁଁ, ଅରପି ଯବନେ
ନିଜର ଏ ସ୍ୱର୍ଣ୍ଣ-ପ୍ରସୂ-ଭୂମି ସନାତନୀ,
ଯାପିବ କି ଦିନ ଚିର ଅନଶନ-ବ୍ରତେ ?
କଳ୍ପଲତା-ମୂଳେ ବସି ଚିର ଉପବାସୀ !
ତୃଷାର୍ତ୍ତ ନିରତେ ବନ୍ଧୁ ସୁରଧୁନୀ ତୀରେ !
ଦିଗ୍ବିଜୟୀ-ଆର୍ଯ୍ୟସିଂହ ଔରସେ ଜନମି
ହେଲ କି ଅକ୍ଷମ, ଅହା, ନିଜସ୍ୱ ରକ୍ଷଣେ ?

ତୁମ ଉର୍ଦ୍ଧ୍ୱ ସ୍ଥଳ ଖ୍ରୀମ-ତୁମାତ୍ର-ପ୍ରାଚୀରେ
ଦୁର୍ଗମ ଭରତପୁର୍ଗ କାପୁରୁଷ ହାତେ
କେ କହିବ ମୋତେ, କମ୍ପା ଅର୍ପିଲେ ବିଧାତା ?
ହା ଦୈବ ! ଜମ୍ବୁକ ପଶି ହର୍ଯ୍ୟକ୍ଷ ଗୁହାରେ,
ଗୋଇଠା ପ୍ରହାର ଦେବ ତା ମୁଖେଁ ଓଟାର
ଶ୍ରାପ ତାର, ହର୍ଯ୍ୟକ୍ଷ ତା ସହିବ ମଉନେ !
ଏ ଲାଞ୍ଛନା ଥିଲା କି ଆର୍ଯ୍ୟର ଲଲାଟେ ?
ଆତଙ୍କେ ଯେ ହର୍ଯ୍ୟକ୍ଷର ଭୈରବ ଗର୍ଜ୍ଜନେ
ପଶିଥିଲା ଏ ଜମ୍ବୁକ ବନ ବନେ ଯାଇ
ସେହି ଦିଲ୍ଲୀପତି ପୃଥ୍ୱୀ ରାଜ୍ୟର ଅଗ୍ରଣୀ
ଏ ସଗାମେ, ସେହି ଶତ୍ରୁ ଶୋଣିତ ପିପାସୁ-
କୃପାଣ ତାଙ୍କର ପୁଣି ନିଷ୍କୋଷିତ ଆଜ,
ସେହି ଧ୍ୱଜପଟ ପୁଣି ଉଡଇ ସମୀରେ,
ତଥାପି କ ଯୁଝିବାକୁ ଯବନ ସଙ୍ଗତେ
ଯବନ-କାନନ-ମହାଦାବାନଳ ରୂପୀ
ଅବ୍ୟର୍ଥପ୍ରମାଥୀ ପୃଥ୍ୱୀ-ବାହୁଯୁଗ୍ମ ତଳେ ?
ଏତେ ମାୟା ପ୍ରାଣେ ଯେବେ, ତେଜି ରଣଭୂମି,
ସଖାଲସ୍ୱରୂପ ରାଜ୍ୟ ରଙ୍କ ପ୍ରାଣ ନେଇ,
ବାନ୍ଧ ରଖ ଗୃହେ ଯାଇ ନାରୀ ଦସ୍ତାଞ୍ଚଳେ,
ହେ ନାରୀଏ, ଘୃଣାକ୍ଷରେ ନରଦେହଧାରୀ !
ବାହୁଡ଼ ସ୍ୱଗୃହେ ବେଗେ କଳଙ୍କିତ ମୁଖେ,
ଲାଙ୍ଗୁଳ ସଙ୍କୋଚ ଶ୍ୱାନ ପଳାଏ ଯେସନେ,
ଅଇଁଠା-ଗୋଇଠା-ଭୋଗୀ ସେହି ଶ୍ୱାନପରି
ପ୍ରସାଦାର୍ଥୀ ହୁଅ ଯାଇ ଯବନ ଦୁଆରେ !
ବାହୁଡ଼ ସ୍ୱଗୃହେ ବେଗେ ଖଡ୍‌ଗ, ଶୂଳ ଆଦି
ଭୂଷଣ ନ ହୋଇ ଯାହା ମହା ଭାର ଏବେ
ରାଜ୍ୟ ଶିରୁ ହାତେ, କର ଫାଳେ ପରିଣତ,

ଯବନର ଦ୍ୱେଗ ଲାଗି ଚଣ୍ଡ ନିରୁଦ୍‌ବେଗେ
ଯବନର ଛତ୍ରତଳେ ପୈତୃକ ଅବନୀ ।
ଫିଙ୍ଗିଦିଅ ଏହି ଢାଲ, କି ଲୋଡ଼ା ଏ ଢାଲେ ?
ତୁମ୍ଭ ଯୋଗ୍ୟ ଢାଲ ବିନା ତଲ୍ୱାର, ଲୋଚକ !
ସେହି ଢାଲେ ଆତ୍ମରକ୍ଷା ଆଚରିବ ଏବେ ?
ବିଳାସର କ୍ଷେତ୍ର ନୁହେଁ ସଗ୍ରାମ-ଅଗଣା
ତପସ୍ୟାର କ୍ଷେତ୍ର ଏହୁ, ତପସ୍ୱୀ-କାଂକ୍ଷିତ,
ବିପଦର ସଙ୍କଟେବଣୀ ଜୀବନ ଆହୂତ
ଦଅନ୍ତି ଆହ୍ଲାଦେ ଯହିଁ ଯଶୋଲିପ୍‌ସୁ ବୀରେ ;
ତୁମ୍ଭପରି ଶ୍ୟାମିକାର ରେଖା ଏ ନିକଟେ
ପଡ଼ିବାର ଲେଖି ନାହିଁ ବିଧି କେଉଁ କାଳେ ;
କି ସାହସେ କଲ ତୁମ୍ଭେ ଅପବିତ୍ର ଆସି
ଏ ତୀର୍ଥ, ଆର୍ଯ୍ୟର ଏହି ଧର୍ମଯୁଦ୍ଧସ୍ଥଳୀ ?

(ମହାଯାତ୍ରା—୭ମ ସର୍ଗ)

## ଅହମିକା

ମଞ୍ଚପାଖେ କପାଁ ଏତେ ଲୋକ ଠିଆ ?
ଲାଗିଅଛି ପଗ୍ର ଆସନ କଳିଆ !
ନିଜ ଅହମିକା-ସଦୃଶ ଆସନ
ନ ଦେଖି ଥୋକାଏ ମହା କ୍ଷୁବ୍ଧମନ ।
ଔପାଧିକ ରାଜା ଉଚ୍ଚାସନେ ରୁଷି
କ୍ଷୁଣ୍ଣ ହେଉଛନ୍ତି ରାଜା ମହରୁଷି ।
ଆସନ ସକାଶେ ବୃଦ୍ଧେ ଏତେ ବାଦ
ବାଳକେ ଯେସନେ କ୍ରୀଡ଼ନକ ପାଇଁ !
ଲଡ଼ୁ ଲାଗି ଯଥା ଯୁଝ୍‌ଥାନ୍ତି ପିଲା
କେତେ ବୃଦ୍ଧ କରୁଛନ୍ତି ବାଳଲୀଳା !

କେହୁ ବୋଲେ, "ମୁହିଁ ଉଚ୍ଚପଦଧାରୀ,
ଉଚ୍ଚ ଆସନର ମୁହିଁ ଅଧିକାରୀ ।"
ଆନ ବୋଲେ, "ମୁହିଁ ଉଚ୍ଚ ବଂଶଧର,
ତୁ ସିନା ଅଛେଇ ଧନର ଗୃହକର !
ବଡ଼ ସିନା ତୁମ୍ଭ ରାଜ ଦଣ୍ଡମାନେ
ମାତ୍ର ତୋର କାହିଁ ନାହିଁ ଭୂମି ମାଣେ !
ମୋତେ କେ ନ ଜାଣେ ଏ ମହୀ ମଣ୍ଡଳେ ?
ମୋର ଏ ଆସନ କମ୍ପା ହେଲା ତଳେ ?"
ଆନ ବୋଲେ, "ମୁହିଁ ପାଇକର ନାହା,
ଶପଥେ ରାଜାର ଆଜ୍ଞା ମୋର ବାହା,
ଏହି ହସ୍ତେ କେତେ ମସ୍ତକ ଗଡ଼ାଇ,
କେତେ କେତେ ଗ୍ରାମ ଦେଇଛି ପୋଡ଼ାଇ,
ସଂଗ୍ରାମେ ପଦକ ଦେଲେ ମୋତେ ରାଣୀ,
ମୋହଠାରୁ ପୁଣି କିଏ ବଡ଼ ମାନୀ ?"
ଆନ ବୋଲେ, "ମୁହିଁ ଅଟଇ ପୁଲିସ,
ବିନା ମେଘେ ସୃଜ ପାରଇ କୁଳିଶ,
କି ଦୋଷୀ, କି ଅବା ଦୋଷହୀନ ନର,
ମୋ ପ୍ରତାପେ ରାଜ୍ୟେ ସର୍ବେ ଥରହର,
କିବା ଦୁଃଖୀରଙ୍କି, କି କୋଟିପତିଏ
ଲାଲ୍-ପଗଡ଼ିକୁ ନ ଡରନ୍ତି କିଏ ?
ମୋତେ ଦେଖି କିଏ ନ ଭଜେ କମ୍ପକୁ ?
କିଏ ନ ଡରଇ ହତ୍‌କଣ୍ଡ ଡମ୍ଫକୁ ?
ରାଜାଙ୍କ ଅଟଳ ବିଶ୍ୱାସ ମୋଠାରେ,
ମୋହଠାରୁ କିଏ ବଡ଼ ଦରବାରେ ?"
ଆନ କହେ, "ମୁହିଁ ନଗର-ରକ୍ଷିଣୀ,
ସଭାର ସଦସ୍ୟ-ଦଳର ଅଗ୍ରଣୀ

ମାଟଙ୍କର ହେଲେ ଶୁଭ ଆଗମନ,
ସର୍ବାଗ୍ରେ କରନ୍ତୁ ମୋ ପୂଜା ଗ୍ରହଣ ;
ମୋର ହସ୍ତେ ନ୍ୟସ୍ତ ନଗରର ସ୍ୱତ୍ୱ
ସମ୍ମାନେ ମୋହର ସର୍ବୋପରେ ଦାବ ।”
କେହୁ ବୋଲେ, “ମୁହିଁ ଅଟଇ ଦପୋଟୀ
କଳା ଲୋକଙ୍କର ଉନ୍ନତର କୋଟୀ
ଲଭିଅଛୁ ମୁହିଁ ବଳେ କହୁଣଲେ
ମୋତେ ପୁଣି କଏ ବସାଇବ ତଳେ ?”
ଲେଖି ଖେଳେ ଯଥା ସ୍ୱମର୍ଯ୍ୟାଦା ଜଗି
ପ୍ରଢବାସୀ-ପତ୍ରେ କହେ ଦେବା ଲାଗି ;
କେହୁ ଅବା ନିଜ ଦୁଃଖକୁ ଘୋଡ଼ାଇ,
ପ୍ରଢବାସୀ-ଦୁଃଖ ଗାଇ ହେଉଥାଇ ;
କହେ, “ନ୍ୟାୟ ନାହିଁ ଏହୁ ଦରବାରେ
ତା ଆସନ ରୁନ୍ଧ ଅଟଗ କ ବସ୍ଥରେ ?”
ସଙ୍ଗପଢଙ୍କର ଖଟଣି ଜଙ୍କର
ବୋଲି କେହୁ ହେଉଛନ୍ତି ଫରଫର,
ଗରୁଡ଼ ଉପରେ ଦେଖାନ୍ତି ପ୍ରତାପ,
ସେ ଯେଣୁ ଅଟନ୍ତି ଶିବଙ୍କର ସାପ ।
ସବୁଦେଶେ ସବୁକାଳେ ଊର୍ଦ୍ଧ୍ୱମୁହଁ ।
ହୋଇଥାନ୍ତି ସିନା ଶ୍ରୀ ଗ୍ରାମୁ-ଗ୍ରାମୁଆଁ ।
ଲାଗିଛୁ ଏ ରୂପେ ଅହମିକା ଖେଳ
ଅହମିକା-ସିନ୍ଧୁ ହୋଇଛୁ ଉଦ୍‌ବେଳ ।
ଅହମିକା-ବାମ୍ଭୁ-ଗ୍ରସ୍ତ ହୋଇ ବ୍ୟସ୍ତେ
“ମୁଁ” “ମୁଁ” କରି, ଆହା, ମରନ୍ତି ସମସ୍ତେ ।

(ଦରବାର)

# ମଧୁସୂଦନ ରାଓ

(୧୮୫୩—୧୯୧୩)

## ଋଷିପ୍ରାଣେ ଦେବାବତରଣ

### ସରସ୍ୱତୀ ନଦୀତଟ—ଉଷାକାଳ

ପ୍ରଶାନ୍ତ ନିଶାନ୍ତ କାଳ ନବୀନେ ଉଜ୍ଜ୍ୱଳେ
ଉଷାର ତୁଷାର-ଶୁଭ୍ର ଲଲାଟ ମଣ୍ଡଳେ
ସ୍ୱର୍ଗର କୌସ୍ତୁଭମଣି ଶୁକ୍ର ସୁଶୋଭନ
ପଶ୍ଚିମ-ଦିଗନ୍ତ ପଟେ ଛବି ଅଭୁଳନ,
ଉଦୀଚୀ ଆକାଶେ ଦୂରେ ମହାଜ୍ୟୋତିର୍ମୟ,
ତୁଷାର-କିରୀଟେ ରାଜେ ଗିରୀନ୍ଦ୍ର ଆଳୟ ।
ଅନନ୍ତ ହିମାନୀ-କ୍ଷେତ୍ର ଶୁଭ୍ର ହିମାଚଳ
ତ୍ରିଦିବର ପୁଣ୍ୟ ପୃଷ୍ଠ- ପ୍ରାୟେ ସମୁଜ୍ଜ୍ୱଳ ।
ବଣୁପ୍ରାଣ-ସ୍ୱର୍ଣୀ ଆହା ଉଷାର ଉତ୍ସବେ
ମାତିଲେ ସୁହାସମୟୀ ଦିଗବଧୂ ସବେ ।
ଶିଶିର ଜଳରେ ଧୋଇ ଉଷା ଶ୍ରୀଚରଣ
ଲଭିଲେ ଆଶିଷ-ରୂପେ ଦିବ୍ୟ ଆଭରଣ
ଜ୍ୟୋତିର ସିନ୍ଦୂର ବିନ୍ଦୁ, ଜ୍ୟୋତିର ବଳୟ
ଜ୍ୟୋତିର୍ମୟ ଅବତଂସ, ମାଳା ଜ୍ୟୋତିର୍ମୟ ।
ଜ୍ୟୋତିର୍ମୟ ପାରିଜାତ ଦିଗବଧୂ-ବୃନ୍ଦଲେ
ଫୁଟାଇଲେ ଅଚମ୍ବିତେ ଉଷା କୁତୂହଳେ ।
ଏବେ ପୌର୍ଣ୍ଣମାସୀ ଜ୍ୟୋତ୍ସ୍ନା- ଧବଳ ଭୁବନ
ତରଳ ରଜତସ୍ରୋତେ ପ୍ଲାବିତ ଶୋଭନ,
ଦ୍ୟୁଲୋକ-ଦୁହିତା ଉଷା ତହିଁରେ ଆବର
ଦୋହନ କରନ୍ତ କାମ- ଧେନୁ ତ୍ରିଦିବର ।

ଶ୍ରୀକର ପରଶେ ଯେହ୍ନେ କ୍ଷୀର-ପାରାବାର
ଉଜ୍ଜ୍ୱଳ ଆଲୋକ ରୂପେ ପ୍ଲାବଇ ସଂସାର ।
ଦଶି ଦଶି ଉଚ୍ଛୁଳଇ ଆଲୋକ-ପ୍ରବାହ,
ଦ୍ୟାବା ପୃଥିବୀର କିବା ଏ ଦୈବ ବିବାହ ।
ତରଳ ସ୍ୱର୍ଗୀୟ ଗୀତ ଉଷା ଉଦ୍‌ବୋଧନୀ
ଛାଡଇ ଭରତ ପୁତ୍ର ଆକାଶ ଅବନୀ ।
ଉଷାର ପରଶେ ଜାଗେ ପ୍ରଣିପାତ କରି,
ଅବନୀ ଶିଶିର-ମୁକ୍ତା ମାଳମା ସୁନ୍ଦରୀ ।

ଏମନ୍ତ ସମୟେ ପ୍ରଶ୍ୟ- ତୋଷ୍ଣା ସରସ୍ୱତୀ-
ତୀରେ ଉଭା କଏ ଯୁବା ଉଦାର-ମୂରତି,
ଦୀର୍ଘ-କାୟ ହେମ-ଗୌର ରମ୍ୟ କଳେବର,
ପ୍ରଶସ୍ତ ଲଲାଟ ଲୀଳା:- ମଞ୍ଚ ଚୈତନ୍ୟର ।

* * *

ଆଲୋକ-ମଣ୍ଡିତ ସେହି ପୁରୁଷ-ପୁଙ୍ଗବ
ପ୍ରଜାପତି-ଋଷି-ବଂଶ ଜ୍ୱଳନ୍ତ ଗୌରବ ।
ହିରଣ୍ମୟ ପ୍ରଭା ଯଥା ହିରଣ୍ୟାଂଶୁମାଳୀ,
ନାମରେ ହିରଣ୍ୟଗର୍ଭ ମହା ତେଜୋଶାଳୀ ।
ଦେବକନ୍ୟା ଉଷା ଶୋଭା ପୁଣ୍ୟ ସୋମରସ-
ପାନେ ଦେବ-ଭାବେ ପୂର୍ଣ୍ଣ ହୃଦୟ ସରସ ।
ମହାପ୍ରେମେ ବିସ୍ଫାରିତ ବିଶାଳ ଲୋଚନ,
ଏ ମହା ମାଧୁରୀ-ଲୀଳା କରନ୍ତି ବର୍ଣ୍ଣନ ।
ଦେଖୁଁ ଦେଖୁଁ ଅଦ୍ଭୁତ ମହାଭାବେ ଭୋଳା,
ଦେଖୁଁ ଦେଖୁଁ ନମୀଳିତ ନୟନର ତୋଳା ।
ଇନ୍ଦ୍ରିୟ-ପ୍ରତୀତ-ଭୂମି ଅତୀତ ସଂସାରେ
ନିମଗନ ମନ ପ୍ରାଣ ଧ୍ୟାନ-ପାରାବାରେ ।

ସହସା ସହସ୍ର ବିଦ୍ୟୁ-    ନ୍ନିହଃ ପରିଭବ
ଭ୍ରୂଷିର ଅନ୍ତରେ ଫୁଟିରେ    ମହାମୃତ ଛବି ।
ଅମୂର୍ତ୍ତି ମୂରତ ଆହା    ରୂପ ନିରୂପମ,
ଅନନ୍ତ ଅନଳ ବ୍ୟାପୀ    ସ୍ଥାବର ଜଙ୍ଗମ ।
ଦେଶ-କାଳାତୀତ ଦୃଶ୍ୟ    କଳ୍ପନା-ଅତୀତ,
ଅଥଚ ଜ୍ୟୋତିର ଜ୍ୟୋତି    ଚକ୍ଷୁ ଅଗ୍ରେ ସ୍ଥିତ ।
ଦୂରରୁ ସୁଦୂର ଚନ୍ତା-    ବାକ୍ୟ-ଅଗୋଚର,
ନିକଟୁଁ ନିକଟ ପ୍ରାଣ    ସମଗ୍ର ପ୍ରାଣର ।
ଅଶବ୍ଦ ଅସ୍ପର୍ଶ ସେହି    ଅରୂପ ଅରସ,
ଜାଣୁ ରେ ପରମ ସତ୍ୟ    ମହାନନ୍ଦ-ରସ ।
ନିଜ ମହିମାରେ ସ୍ଥିତି    ନିଜେ ନିରାଧାର,
ଅନନ୍ତ ଅଗମ୍ୟ ମହା    ବ୍ରହ୍ମାଣ୍ଡ-ଆଧାର,
ସମ୍ମୁଖେ ପଶ୍ଚାତେ ସେହି,    ନିମ୍ନେ ଊର୍ଦ୍ଧ୍ୱେ ସେହି,
ଦକ୍ଷିଣ ବାମରେ ସେହି,    ଅଥଚ ଅଦେହୀ ।
କେ ସେ ରେ ବରେଣ୍ୟ-ଭର୍ଗ    ପରମ ସୁନ୍ଦର,
ପୂର୍ଣ୍ଣ ଅପ୍ରତିମ ପ୍ରଭୁ    ବାହ୍ୟ ଅଭ୍ୟନ୍ତର ।
ଆବର କଲ୍ଲୋଳମୟୀ    ମହା ସରସ୍ୱତୀ,
ସ୍ତୁତି-ପୂର୍ଣ୍ଣା ସୁଗମ୍ଭୀର    ବାଣୀ ଭଗବତୀ,
ହସ୍ର ପ୍ରାସ୍ୱେ ଉଚ୍ଚାରିତ    ବେଦ ହୃଦୟର,
ଅମୃତ ସ୍ପନ୍ଦିତ ନାଦେ    ପୂରେ ଚରାଚର ।
ଭବଭୂମିରେ ଯଥା ଅବ-    ତୀର୍ଣ୍ଣା ଭାଗୀରଥୀ,
ମହାନାଦମୟୀ ବିଶ୍ୱ-    ପ୍ରହ୍ଲାଦନୀ ସତୀ ।
ତେସନ ଆଜ ଏ ଋଷି-    ପ୍ରାଣେ ଅବତରି,
କି ଏକ ଅମୃତ ବାଣୀ    ଯାଏ ରେ ପ୍ରସରି !
ଅଣିକି ଶବଦ ଭୂମା    ବାକ୍ୟ-ଅଗୋଚର,
ଶୁଣଇ ପ୍ରବୁଦ୍ଧ ପ୍ରାଣ    ସେ ନୀରବ ସ୍ୱର ।

କେ ଜାଣେ କାହିଁ ସେ ବାଣୀ- ବୀଣାର ଶବଦ,
କେମନ୍ତେ ପୂଜିଲ ଋଷି- ହୃଦ-ବକ୍ଷେ ପଦ ।
ବିଶ୍ୱବ୍ୟାପୀ ଅନ୍ତିକ୍ଷର ଓଁକାର ଝଙ୍କାର
ସମୁଦ୍ର ଧ୍ୱନିରେ ପୂରେ ନିଖିଳ ସଂସାର ।
କେମନ୍ତେ ବର୍ଣ୍ଣିବ ସେହି ସ୍ୱପ୍ନାତୀତ ଭାବ,
ଜୀବାତ୍ମାରେ ପରମାତ୍ମା- ଭୂମା ଆବିର୍ଭାବ ।
ନୁହେ ସେ ଧରାର ଦୃଶ୍ୟ, ଧରାର ଶବଦ,
ସେ ଭାବ ନୁହଇ କ୍ଷୁଦ୍ର ଧରାର ସମ୍ପଦ ।

(କୁସୁମାଞ୍ଜଳି)

## ଆକାଶ ପ୍ରତି

ଅନନ୍ତ ଅପାର ଶୂନ୍ୟ ରେ ମହା ଆକାଶ,
ପୃଥିବୀର କୀଟ ମୁହିଁ କ୍ଷୁଦ୍ର ବୁଦ୍ଧି ନର ।
କି ମହାନ କି ଗମ୍ଭୀର ତୋହର ପ୍ରକାଶ,
ଭାବିଲେ ସ୍ତବ୍ଧ ଚିତ୍ତ ହୁଅଇ ମୋହର ।

ନ ଥିଲାରେ ଯେତେବେଳେ ବିଚିତ୍ର ଭୁବନ,
ନ ଥିଲା ଏ ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରାବଳୀ ।
ନ ଥିଲା ଧରଣୀ ଏହି ଭୂତ ନିକେତନ,
ଅନନ୍ତ ଅଙ୍କାରେ ପୂର୍ଣ୍ଣ ଥିଲା ସର୍ବସ୍ଥଳୀ ।

ଅନନ୍ତ ନିବିଡ଼ ଘୋର ଅନ୍ଧକାରମୟ,
ଥିଲା ବିଶ୍ୱ ରୂପ-ରେଖା-ଶୂନ୍ୟ ନିରାକାର ।
ନିସ୍ତରଙ୍ଗ ଥିଲା ଯେବେ ଅନନ୍ତ ସମସ୍ତ,
ଘଟନା-ବିହୀନ ଘୋର କାଳ ପାରାବାର ।

ନ ଥିଲା ଯେ କାଳେ ସୃଷ୍ଟି-ଲୀଳା ଜଗତର,
କେବଳ ଜାଗ୍ରତ ଥିଲେ ଅନାଦି କାରଣ
ଦେଶ-କାଳାତୀତ ବାକ୍ୟ-ମନ-ଅଗୋଚର,
ଅନନ୍ତ ଚୈତନ୍ୟମୟ ବ୍ରହ୍ମ ସନାତନ ।

ସେ କାଳରେ ଅବଲମ୍ବି ଅନାଦି କାରଣେ,
ଅସୀମ ଆକାଶ, ତୁହି ମହା ମହିମାରେ ।
ସେ ମହିମା, ପ୍ରଭୁ, ତବ ଯାହାର ଚନ୍ତନେ !)
ବିରାଜିତ ଥିଲୁ ବେଢ଼ି ଅନନ୍ତ ଅନ୍ଧାରେ ।

ସହସା ପ୍ରଥମ ଊର୍ମି ମହାକାଳ-ନୀରେ,
ଖେଳିଲା ଅନନ୍ତ ମହା-ମହେଶ-ଆଦେଶେ ।
ସହସା ପ୍ରକାଶେ ଜ୍ୟୋତି-ଧ'ସ୍ୱ ତୋ ଶଙ୍ଖରେ,
ଶୁଭ୍ର ମନ୍ଦାକିନୀ ଯଥା ବ୍ୟୋମକେଶ କେଶେ ।

ଆଦି ସୃଷ୍ଟି କାନ୍ତି ଅବଗାହି ଜ୍ୟୋତି ଜଳେ,
କି ସୁନ୍ଦର କି ଉଦାର ଦେହଶ୍ରୀ ତୋହର !
କହ ବ୍ୟୋମ, କଏ ଅଛୁ ଏ ବିଶ୍ୱ ମଣ୍ଡଳେ,
ତୋ ରୂପେ ନୁହଇ ମୁଗ୍ଧ ଯାହାର ଅନ୍ତର ।

ସକଳ ସୌନ୍ଦର୍ଯ୍ୟ-ଲୀଳା ତୋହର ଉତ୍ସଙ୍ଗେ,
ନିତ୍ୟ ଲୀଳାଭୂମି ତୁହି କବିତା-ଦେବୀର ।
ନାଚଇ ଅଗଣ୍ୟ ବିଶ୍ୱ ନିତ୍ୟ ଲୀଳା-ରଙ୍ଗେ,
ତୋ ମହାସୁନୀଳ କକ୍ଷେ ଶାସନେ ବିଧିର ।

କେବେ ବେଶ ଧରି ବ୍ୟୋମ ହେଉ ପ୍ରକାଶିତ,
କେତେବେଳେ ଦିଗମ୍ବର ତୁହି ନୀଳାମ୍ବର ।

ନକ୍ଷତ୍ର ଶଶାଙ୍କେ କେବେ ତୋ ଦେହ ଭୂଷିତ,
କେବେ ମେଘ-ଆଡ଼ମ୍ବରେ ଦଶୁ ଭୟଙ୍କର ।

ସୁହାସିନୀ ଉଷାଦେବୀ ଅଳକ-ନନ୍ଦନୀ,
ବନ୍ଦେ ଭକ୍ତିଭରେ ଯେବେ ତୋର ପଦତଳେ ।
ସହସା ହସଇ ଜାଗି ଉଲ୍ଲାସେ ମେଦିନୀ,
ଲାବଣ୍ୟ-ଲହରୀ ଉଚ୍ଛୁଳଇ ଜଳେ ସ୍ଥଳେ ।

ସନ୍ଧ୍ୟା କଟାକ୍ଷେ ତୋର ରବ ଜ୍ୟୋତିର୍ମୟ,
ରଞ୍ଜଇ ଧରଣୀ ମୁଖ କନକ କିରଣେ,
ସହସା ଫୁଟଇ ଫୁଲ ବହଇ ମଳୟ,
ବିହଙ୍ଗ ସଙ୍ଗୀତ ଗାଏ ସୁମଧୁର ସ୍ୱନେ ।

ରଞ୍ଜିତ ଜଳଦ-ମଞ୍ଚ ଯେବେ ଅବନତ,
ବୁଡ଼ଇ ପଶ୍ଚିମେ ଭାନୁ କୋଳରେ ତୋହର ।
ଧୀରେ ଧୀରେ ଅନ୍ଧକାର ଶୈଳେ ଦିଗ ଆବରି,
ମଣ୍ଡଇ ନକ୍ଷତ୍ର ମାଳେ ତୋର କଳେବର ।

କି ଗମ୍ଭୀର କି ପ୍ରଶାନ୍ତ ଭାବ ଶବ୍ଦରେ,
ଜାଗଇ ଭାବୁକ ମନେ ତୋର ଦରଶନେ ।
କି ମହା ନୀରବ ବେଦ ପ୍ରସ୍ତରୁ ଗମ୍ଭୀରେ,
ଶୁଣଇ ନୀରବ ବିଶ୍ୱ ଭକ୍ତି-ସ୍ତବ୍ଧ ମନେ ।

କୌମୁଦୀ-ଚର୍ଚ୍ଚିତ ତୋର ନୀଳ କଳେବର,
ପ୍ରଶାନ୍ତ ପବିତ୍ର ମୂର୍ତ୍ତି ଭୁବନ ମୋହନ ।
କମେକେ କରଇ ଆତ୍ମା କ୍ଷୁଦ୍ର ତେ ସୁନ୍ଦର,
ଦର୍ଶନେ ପବିତ୍ର କରେ କଳୁଷିତ ମନ ।

ଗଭୀର ନିଶୀଥ କାଳେ ନିଦ୍ରିତା ଧରଣୀ,
ସ୍ୱପନେ ତୋ ମହାମୂର୍ତ୍ତି କରେ ଦରଶନ ।
ହସଇ ନୀରବେ ତେଣୁ ମହାନନ୍ଦେ ଧନୀ,
ସୁପ୍ତ ଶିଶୁ ଦେଖି ଯେସ୍ନେ ସ୍ୱର୍ଗୀୟ ସ୍ୱପନ ।

ଧନ୍ୟ ଧନ୍ୟ ରେ ଆକାଶ ଧନ୍ୟ ତୋ ମହିମା
ମହାଭାବ ଉପୁଜଇ ତୋର ଦରଶନେ ।
ଉଦାର ପ୍ରଶାନ୍ତ ତୋର ଅନନ୍ତ ନୀଳିମା,
ସଂସାରର କ୍ଷୁଦ୍ରଭାବ ବିନାଶଇ କ୍ଷଣେ ।

ମୁହୂର୍ତ୍ତିକେ ଯେବୁ ମୋତେ ରେ ମହାଗଗନ,
ପରମାତ୍ମା ପ୍ରାଣସଖା ମହେଶ ଶ୍ରୀପଦ ।
ମହାପ୍ରେମାବେଶେ ଅଶ୍ରୁ ବର୍ଷେ ମୋ ନୟନ,
ଲଭଇ ମୁଁ ସ୍ୱରଗର ଆନନ୍ଦ ସମ୍ପଦେ ।

(କବିତାବଳୀ—ଦ୍ୱିତୀୟ ଭାଗ)

## ବିଚ୍ଛେଦ

ହଜିନାହିଁ ଯାର କେବେ କାହୁଁହିଁ ରତନ,
ଏ ମର୍ତ୍ତ୍ୟସଂସାରେ ସେହି ଦୀନ ଅକିଞ୍ଚନ ।
ସେ ପୁଣି ଦରିଦ୍ରତର ହରାଇ ରତନ,
ଏ ଭବ ଭବନେ ତାହା ପାସୋରେ ଯେ ଜନ ।
ସେ ପୁଣି ଦରିଦ୍ରତମ କୃପା-ପାତ୍ର ଅତି,
ହରାଇ ପାଶୋରିବାକୁ ବଳେ ଯାର ମତି ।
ଶୋକର ଅସୀମ ମସୀମୟ ଅନ୍ଧକାରେ,
ପ୍ରେମର ପ୍ରଦୀପ ଜାଳି ମର୍ମ ବେଦନାରେ
ଯେ ଜନ ଜପଇ ନିତି ରାତ୍ରି-ଜାଗରଣେ,

ଅଶ୍ରୁ-ସୂତ୍ର ପ୍ରେମ-ମନ୍ତ୍ରେ ହୃଦୟ ରତନେ,
ସେହି ଏକା ଏ ଜଗତେ ମହାଧନେ ଧନୀ,
ଅକ୍ଷୟ ଭଣ୍ଡାର ତାର ଦିବସ ରଜନୀ ।
ପ୍ରଭୁହେ, ଶାଶ୍ୱତ ତବ ଶ୍ରୀ କୋଠ ଭଣ୍ଡାରେ,
ରଖ ବନ୍ଧୁ-ହୃଦ-ନିଧି ଲକ୍ଷ୍ମୀ-ପ୍ରତିମାରେ ।

(ଜଣେ ବନ୍ଧୁଙ୍କର ପତ୍ନୀ-ବିୟୋଗ-ଶୋକକୁ ଲକ୍ଷ୍ୟ କରି ଲିଖିତ)

(ବସନ୍ତ ଗାଥା)

## ଜୀବନଚିନ୍ତା

ରେ ଆତ୍ମନ୍ ! ନିଦ୍ରା ପରିହରି
ଫେଡ଼ି ଚିନ୍ତାର ଲୋଚନ କର କର ନିରୀକ୍ଷଣ,
ନିଃଶବ୍ଦେ ଜୀବନ ସ୍ରୋତ ଧାଉଁଛି କପରି,
ଭେଟିବାକୁ ମୃତ୍ୟୁ ସିନ୍ଧୁ-କରାଳ-ଲହରୀ । ୧

କି ବେଗରେ ଯାଉ ଅଛୁ ଚଳି
ସେହି ସ୍ରୋତ ସଙ୍ଗେ ଭାସି ଜୀବନର ସୁଖ ରାଶି
ଯାହାର ସ୍ମରଣେ ନର ଶୋକଶ୍ୱାସ ଢ଼ାଳି,
ଅତୀତକୁ ଉଦ୍‌ବୋଧଇ ବୃଥା ଭାଳି ଭାଳି । ୨

ସ୍ୱପ୍ନସମ ନିଦ୍ରା-ପାରାବାରେ
କ୍ଷଣକେ ହୁଅଇ ଲୀନ ଗର୍ବ, ଦମ୍ଭ, ଅଭିମାନ
ସଂସାରର ଆଡ଼ମ୍ବର ବୁଦ୍‌ବୁଦ ଆକାରେ,
ସକଳ ଗ୍ରାସଇ କାଳ-ମୁଖ ଗହ୍ୱରେ । ୩

× × ×

ଜଗତର ଲୋଚନ-ନନ୍ଦନ
ଯୁବତୀର ରକ୍ତାଧର, ରମ୍ୟ ଜ୍ୟୋତି ନଶ୍ୱର,

ସ୍ୱର୍ଣ୍ଣଘନସମ ବକ୍ଷ ସ୍ନିଗ୍ଧ ପଦ୍ମାନନ,
ଇନ୍ଦ୍ରଧନୁ ଶୋଭା ସମ ପଲାନ୍ତ ବସନ । ୪

× × ×

ବିମୋହନ ମନ୍ମଥ ବିଳାସ
ଟାଣେ ମନ ମାୟା ଯନ୍ତ୍ରେ, ଭୁଲାଏ କପଟ ମନ୍ତ୍ରେ,
କୌଶଳେ ଜନ୍ମାଇ ଚିତ୍ତେ କ୍ଷଣିକ ଉଲ୍ଲାସ
ଶତ୍ରୁକୁଳ ବିପ୍ଳବକୁ କରାଏ ପ୍ରକାଶ । ୫

ଆମ୍ଭାରାଜ୍ୟେ ସେ ଶ୍ରମ ବିପ୍ଳବ
ଧର୍ମର ପୁଣ୍ୟ ସଳନ୍ତୁ, ପ୍ରଜ୍ଞାର ମହତ ତନ୍ତୁ
ହୁଏ ପରାହତ, ପାପ ଗର୍ଜଇ ଭୈରବେ,
ପଳାୟନ କରେ ଶାନ୍ତ ସେହୁ ଉପଦ୍ରବେ । ୬

ମୁକୁଟ ମଣ୍ଡିତ ରାଜଶିର
ଲୁହଇ ଶାନ୍ତି-ଆସ୍ପଦ, ଆଶଙ୍କା, ଭୟ, ବିପଦ
ନିରନ୍ତର ରାଜମନ କରଇ ଅସ୍ଥିର,
ଆଜ ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର ! ୭

× × ×

କାହିଁ ଶାନ୍ତି, କାହିଁ ନିତ୍ୟ ସୁଖ,
ଯାହା ଲଭିବାର ଲାଗି, ଅଛୁ ଅବିରତ ଜାଗି
ତବ ଗୃହେ ଆଶାଦୀପ ଉଜ୍ଜ୍ୱଳ ମୟୂଖ
କାହିଁଗଲେ ପାସୋରିବ ମୃତ୍ୟୁ, ପାପ, ଦୁଃଖ । ୮

'ରେ ହୃଦୟ ! ନହୁଅ କାତର,
ସଂସାରର ବିଡ଼ମ୍ବନା, ପାପ, ସନ୍ତାପ, ଯାତନା,
ବିପଦ ଦୁର୍ଦ୍ଦିନତମ ଘୋର ଭୟଙ୍କର
ନିରେଖି ନିରାଶା-ବିଷେ ନ ହୁଅ ଜର୍ଜର । ୯

ଧର ଧୈର୍ଯ୍ୟ ଯେଉଁରେ ସାନ୍ତ୍ୱନା,
ଅଛୁ ସେହି ମହାଧନ, ସେ ମହାର୍ଘ ରତନ,
ସେ ଅମୃତ ମହୌଷଧ, ଯାହାର କାମନା
ଆଶା, ଜାଗ୍ରତ ସତତ, କରେ ଉଦ୍ଦୀପନା । ୧୦

ସ୍ଥିର ହୁଅରେ ଚଞ୍ଚଳ ମନ,
ଯେଉଁ ମହାତତ୍ତ୍ୱ ଦୀକ୍ଷା, ଜୀବର ପରମ ଶିକ୍ଷା,
ତେବେରେ ଲଭିବୁ ସେହି ପ୍ରାଣାରାମ ଧନ
ଆକୁଳ ହୃଦୟ କରେ ଯାର ଅନ୍ୱେଷଣ । ୧୧

ଧୂଳିର ଏ ନର କଳେବର,
ଅହୋ ମାନବ ଜୀବନ କି ଅଦ୍ଭୁତ ଉଦ୍ଭବନ !
ବିରାଜେ ଅମର ଆତ୍ମା ଦିବ୍ୟ ସୌନ୍ଦର୍ଯ୍ୟରେ
କମଳ ଶୋଭଇ ଯଥା ପଙ୍କମୟ ସରେ । ୧୨

ଏ ସଂସାର ଅନ୍ଧକାର ସ୍ଥାନ
ଅନ୍ଧାରେ ହେଲେ ଜଡ଼ିତ ନ ହୁଅଇ ବିକଶିତ
ଜୀବାତ୍ମା-କୁସୁମ ଏଥି ହୁଏ ମ୍ରିୟମାଣ,
ହରାଇଣ ଦିବ୍ୟ ଶୋଭା, ପ୍ରେମ, ଭକ୍ତି, ଜ୍ଞାନ । ୧୩

ଦିବାକରେ ନିରେଖି ଗଗନେ
ହର୍ଷେ ଫୁଟେ ପଦ୍ମଫୁଲ, ତେସନେ ଆତ୍ମା ପ୍ରଫୁଲ୍ଲ
ଅନନ୍ତ ମଙ୍ଗଳାଳୟ ବିଭୁ ଦରଶନେ,
ପୁଣ୍ୟର ତପନ ସେହି ପାପର ଭୁବନେ । ୧୪

ଯହିଁ ଦେବେ ଭୁଞ୍ଜନ୍ତି ଅମୃତ
ବିଭୁ ପାଦପଦ୍ମ ପାଶେ, ପୁଣ୍ୟ ଜ୍ୟୋତିର୍ମୟ ବାସେ

ରୋଗ, ପାପ, ମୃତ୍ୟୁ ଆଦ ଯହିଁ ପରାଭୂତ,
ସେ ସୁଧାମ ଲାଗି ଆତ୍ମା ସଦା ପିପାସିତ । ୧୫

ଏ ପିପାସ ନୁହଇ ନବାର
ଅସାର ସଂସାର ଜଳେ ଶସ୍ପୁଚସ୍ତ କୋଳାହଳେ
ନୋହେ ନବାପିତ କେବେଁ ; ଏକାଧର୍ମ ବାଣ
ଶମଇ ଏ ମହାଅଗ୍ନି ଅମୃତ ସନ୍ଧାଣ । ୧୬

ତେବେ ଆରେ ଅସ୍ଥିର ହୃଦୟ,
ତ୍ୟଜ କ୍ଷୁଦ୍ର ତ ବାସନା କର ତାଙ୍କ ଆରାଧନା,
ଧର୍ମରାଜ ପ୍ରଭୁ ଯେହୁ ମଙ୍ଗଳ ଆଳୟ,
ଅମୃତ ଜୀବନ-ଦାତା ବ୍ରହ୍ମାଣ୍ଡ-ଆଶ୍ରୟ । ୧୭

ପରହର ପାପ ପ୍ରଲୋଭନ
ଉଜ୍ଜ୍ୱଳ କର ବିଶ୍ୱାସ, ସ୍ୱାର୍ଥ ଅହଂକାର ନାଶ,
କରରେ ହୃଦୟାକାଶ ନର୍ମଳ ବହନ,
ତେବେ ରେ ଲଭିବୁ ଧର୍ମରସ ଆସ୍ୱାଦନ । ୧୮

ପ୍ରୀତିମୟ ଜୀବନ ରତନ
ବେବେ ତୋତେ ପରମେଶ, ତାଙ୍କର ପବିତ୍ରାଦେଶ
ନଃସ୍ୱାର୍ଥ ପବିତ୍ର ଚତ୍ତେ କରରେ ସାଧନ,
ଜଗତର ହିତ ଅର୍ଥେ ଦଅରେ ଜୀବନ । ୧୯

ହେ ଈଶ୍ୱର ପତିତ ପାବନ
ପ୍ରାଣାରାମ ନରଞ୍ଜନ, ଭୟବିଘ୍ନ ବିନାଶ
ତୁମ୍ଭେ ପ୍ରଭୁ ସନ୍ତାପିତ ପ୍ରାଣର ଚନ୍ଦନ,
ସଂସାର ବିପାକ୍ତ ନେତ୍ରେ ତୁମ୍ଭେ ହେ ଅଞ୍ଜନ । ୨୦

ଆସ ନାଥ ଅଗତିର ଗତି,
ତୁମ୍ଭ ବିନା ଏ ସଂସାରେ          ମରଇଁ ମୁଁ ହାହାକାରେ,
ଡାକ ମୋତେ ମହାପ୍ରଭୁ ଦେଇଣ ସୁମତି,
ଅନନ୍ତ ଦୟା ତୁମ୍ଭର, ଅନନ୍ତ ଶକତି । ୨୧
(କବିତାବଳୀ—ଦ୍ୱିତୀୟଭାଗ)

# ଫକୀରମୋହନ ସେନାପତି

(୧୮୪୩—୧୯୧୮)

## ଦେଶୀ ଓ ବିଲାତୀ

ରାଗ—ଚକ୍ରକେଳି

ଦେଖିଲି ସଂସାରେ ବସିଛି ହାଟ,          ଲୋକଗହଳରେ ନ ମିଳେ ବାଟ ।
ଦୋକାନ ପସରା ଧାଡ଼ିକି ଧାଡ଼ି,          ବାଟ ଦୁଇପାଖ ବସିଛି ମାଡ଼ି ।
ଭୁଲାଇବା ପାଇଁ ଗରାଖ ମନ,          ହାଟୁଆଙ୍କ ଦେଖ କେତେ ଯତନ ।
ହାଟୁଆ ବାଟୁଆ ଅଛନ୍ତି ଧାଇଁ,          ହାଟେ କିଣାବିକା କରିବା ପାଇଁ ।
ହାଟ କରିବାକୁ ବଳିଲା ମନ,          ମାଗିକି ନାହିଁତ ହାତରେ ଧନ ।
ବାହାରିଲି ହାଟ ଦେଖିବା ପାଇଁ,          ଦୋକାନମାନଙ୍କୁ ଦେଖିଲି ଚାହିଁ ।
ଡାକି କରୁଛନ୍ତି ଦୋକାନିମାନେ,          ଆସ ଗରାଖଏ ମୋହର ଦୋକାନେ ;
ଅଳପ ଲାଭରେ ଛାଡ଼ୁଛୁ ମାଲ,          ଭଣ୍ଡାଭଣ୍ଡି ନାହିଁ ଠକ ଅସଲ ।

×          ×          ×          ×

ଦେଖିଲି ଗୋଟାଏ ସ୍ୱଳପଦୋକାନ,          ଦୋକାନୀର ନାମ ସେ ଅବଧାନ
ଦେଶୀ ସଡ଼ାମାଲ ବିକଇ ସେହୁ,          ପିଲାଏ କିଣନ୍ତି ପଇସା ଦେଇ ।
ଦେଶୀ ମାଲ, ନାହିଁ ତା ଗୁଣ କିଛି,          ଦୋକାନୀ ବାପୁଡ଼ା ଯାଚି ଦେଉଛି ।
ସଉଦା ସହଜ ଲାଭ ଦୋକାନୀ,          ଦୁଇ, ଚାରି ବେଳ ଦଅଇ ଟାଣି ।
ପାଖେ ଅଛି ଆଉ ଗୋଟେ ଦୋକାନ,          ପିନ୍ଧିଛି ଦୋକାନୀ କୋଟ ପେଣ୍ଟାଲୁନ ।

ମାଷ୍ଟର ସତ୍ୟ ସେ ଦୋକାନୀ ନାମ, ପାଠ ବିକା ଅଟେ ତାହାର କାମ ।
ବିଲାତି ମାଲ୍ ଯେ ବିକଇ ସେହୁ, କଣ୍ଟ୍ରାକ୍ଟ ପିଲ୍ଲ ପଇସା ଦେଇ ।
ଏହୁ ମାଲ୍ ଦାମ ବହୁତ ଚଢ଼ା, ତଟକା ସେ ନୁହେଁ ପୁରସ୍ତ ସଢ଼ା ।
ନଗଦାନଗଦ ଦେଇ କହୁଛି, କଣ୍ଟ୍ରାକ୍ଟ ପିଲ୍ଲ ହନ୍ତୁଡ଼ା ପଡ଼ି ।
ଦେଖିଲି ବୁଝିଲି, ଏହି ଦୋକାନ, କେବଳ ନୋହେଟି ପିଲ୍ଲ ଭଣ୍ଡାଣ ।
ସୁନ୍ଦର ପାଚିଲା ଫଳ ବହୁତ, ଦୋକାନ ଭିତରେ ଅଛି ମଜୁତ ।
ବାଇରଣ, ପୋପ, ସେକ୍ସପିୟର, ୱାର୍ଡ଼ସ୍‌ୱାର୍ଥ, ମିଲ୍‌ଟନ, ହୋମର ।
✓ ହ୍ୟୁଷ୍ଟର, ଫିଲସଫି, ବୋଟାନି, ବିଲାରୁ ହୋଇଛି ଏ ଆମଦାନୀ ।
ପିଲାଏ ଖାଆନ୍ତି ଏସବୁ ଫଳ, ବାପ ଟଙ୍କା ଗଣିଦିଏ କେବଳ ।
ଏସବୁ ଫଳର ଗୁଣ ଓଲଟା, ହୁଏ ଦେହ ସରୁ, ବୁଦ୍ଧି ଟା ମୋଟା ।
ମାଫିକ ହଜମ ଯେ କରି ଜାଣେ, ଜଗତ ଜିଣେ ସେ ଆପଣା ଜ୍ଞାନେ ।
ଅଳପ ଖାଇଲେ ଘଟେ ଜଞ୍ଜାଳ, ବହୁତ ଖାଇଲେ ଫିଟେ କପାଳ ।
ତାହାପାଖେ ବସି ଗୋଟେ ଦୋକାନୀ, ହାତରେ ଧରିଛି ସେ ନାସଦାନି ।
ଆଣ୍ଠୁ ଲୁଗ୍ଣ ସାନ ଲୁଗା ସେ ପିନ୍ଧେ, ପୁରୁଣା ଗାମୁଛା ପଡ଼ିଛି କାନ୍ଧେ ।
ଦେଖିଲି ଦୋକାନେ ମାଲ୍ ସକଳ, ନହାତ ପୁରୁଣା ଶୁଖିଲା ଫଳ ।
ଶୁଖିଲା ନଡ଼ିଆ କଲି ବିଶ୍ୱାସ, ଉପରଟା କଡ଼ା ଭିତରେ ରସ ।
ମାତ୍ରକ ଦୋକାନୀ କରିଛି ଫନ୍ଦ, ସନାଡ଼ି ରଖିଛି ଶବଦ ସନ୍ଧ ।
କାଳିଦାସ, ଭବଭୂତି, ଶ୍ରୀହର୍ଷ, ତାହା ଗୋଦାମର ମାଲ୍ ସର୍ବସ୍ୱ ।
ଷଟତ୍ତ୍ୱ ପଟତ୍ତ୍ୱ ବେଦାନ୍ତ ବନ୍ଧୁ' ଦେଖି ନ ପଡ଼ୁରେ ଗବାକ୍ଷ କେନ୍ଦୁ ।
ତୋରା ଦେଇ ରଖିଅଛି ଗମ୍ଭୀରେ, ପୋଥି ପଡ଼ିଲାଣି ମୂଷା ମାଟିରେ ।
ଦେବା ପାଇଁ ସେହୁ ଗୋଦାମ ଝାଡ଼ି, ଉତ୍ସଟାରେ ମାଲ୍ ଦେଉଛି ଗୁଣ୍ଡି ।
ପୁରୁଣା ମାଲରେ ଶରଧା ନାହିଁ, କିଏ ଯେନସିବ ତାହା କିମ୍ପାଇଁ ?
ମାତ୍ରକ ଦେଖିଣ ଫଳ ପାଚିଲା, ଯେନଗଲେ ଥୋକେ ବ୍ରାହ୍ମଣ ପିଲା ।
ପଇସା ପାଇବେ କରି ଭରସା, ଖବର କାଗଜ ଲେଖା ବେବସା ।
କଣ ବସିଛନ୍ତି କେତେ ଦୋକାନୀ, ଦେଖିଲି ସେ ଗୁଡ଼ା ସବୁ ଅଜ୍ଞାନୀ ।
ଯାଚ ଯାଚ ମାଲ୍ ଦିଅନ୍ତି କାଳି,' ଟଙ୍କା ମାଗି ଯାଇ ଖାଆନ୍ତି ଗାଳି ।

ଏପରି ଗହକ ଥୋକେ ଅଛନ୍ତି, ଆଗ ମୂଲ ଦେଇ ମାଲ ନଅନ୍ତି ।
ଅଦ୍ଭୁତ ଦେଖିଲି, ସବୁ କଥାରେ, ଡର ମରି ଥାନ୍ତି ଲୋକଙ୍କଠାରେ ।
ମାତ୍ରକ ଯେ ବଳେ ବିଲାତି ମାଲ, ଖାଇପିଇ ତାର ଫୁଲିଛି ଗାଲ ।
ତାକୁ ଡରିଥାନ୍ତି ବହୁତ ଲୋକ, ନାଲେ ବୋଲିଦେବ କଥା ପଦକ ।
ଦେଖି ଲାଗିଲାଣି ତାଟଙ୍ଗା ମତେ, ଦେଶୀ ବିଲାତିରେ ପ୍ରଭେଦ ଏତେ ।
× × × ×
ହାଟେ ବୁଲି ବୁଲି ଜନ୍ମିଲା ଜ୍ଞାନ, ମୁଁ ମଧ୍ୟ ମେଲିଲି ଗୋଟେ ଦୋକାନ ।
ଅରଜିଅଛନ୍ତି ଲୋକେ ପଇସା, ମୁଁ ମଧ୍ୟ ପାଇବି ଭଲି ଭରସା ।
ଖାଣ୍ଟି ଖୁଣ୍ଟି ଦେଇ ଦୋକାନ ଖୋଲ, ଗୋଦାମେ ଭରିଲି ସାହିତ୍ୟ ମାଲ ।
ବିଲାତି ମାଲକୁ ନାହିଁତ ପୁଞ୍ଜି, ଦେଶୀ ମାଲ ଦେଲି ଗୋଦାମେ ଗୁଞ୍ଜି ।
ଛାପାଖାନାଠାରୁ ଆଣିଲି ଚାଲି, ଲାଭ ହେଲେ ଶୁଝିଦେବି ମୁଁ ଖାଲି ।
ମାଟିଆ ମାଲରେ ବହୁତ ଦୋଷ, କଳାନ୍ତର ବଢି ତୁଟେ ସନ୍ତୋଷ ।
ଭୁଲାଇବା ପାଇଁ ଗହକ ମନ, ଟାଙ୍ଗିଦେଲି କାନ୍ଥେ ସେ ବିଜ୍ଞାପନ ।
ପାଟିକରି ଦ୍ୱାରେ ଡାକିଲି ବସି, ଭଲ ମାଲ ନେଇ ନଅ ହେ ଆସି ।
ଅଇଲେ ଗହକ ଶୁଣି ମୋ ଡାକ, ପଚାରିଲେ ତୁମେ କି ଫଳ ବିକ ।
ବୋଇଲି ମୁଁ ଅନୁବାଦ ପ୍ରବନ୍ଧ, ଆଚ୍ଛା ମିଠା ଫଳ ଖାଇକୁ ଜାଣ ।
ବୋଇଲା ମୋ କଥା ଶୁଣି ଗରାଖ, ବିରକ୍ତିରେ କରି ଅଳପ ରାଗ ।
ଏ ଗୁଡ଼ାକ ସବୁ ପଚ୍ଚା ପୁରୁଣା, ଏ ସବୁର ମୂଲ୍ୟ ନହାତି ଉଣା ।
ଯେବେ ଦେବ ତୁମ୍ଭେ ବିନା ମୂଲ୍ୟରେ, କୃପା କରି ନେଇ ରଖିବୁ ଅରେ ।
ଦେଖାଇଲି ନେଇ ତାକୁ ନଭେଲ, ବୋଇଲା ସେ କଞ୍ଚା ପୁରସ୍ତ ବେଲ ।
ପୁଣି ଦେଖାଇଲି ତାକୁ କବିତା, ବୋଇଲା ଏ ଗୁଡ଼ା ନହାତି ପିତା ।
ଗରାଖ ମୁଖରୁ ଏକଥା ଶୁଣି, ନିଶ୍ୱାସ ପକାଇ ହେଲି ମୁଁ ତୁନି ।
ଭାବିଲି ମୋହର ସରିଲା ପାଠ, ଆଉ କରିବି ମୁଁ କଅଣ ହାଟ !
ବେଲାର ଦେଖୁଛୁ ଯେ ଲୋକଙ୍କର, ଦେଶୀ ଜିନିଷରେ ନାହିଁ ଆଦର ।
କେତେ ଲୋକ ଟଙ୍କା ପଇସା ଦେଇ, ଯାଆନ୍ତି ବିଲାତି ଜିନିଷ ନେଇ ।
× × × ×

ଛାପାଖାନା ଡରେ ଲାଭ ନ ଲୋଡ଼, ମୂଳେ ମୂଳେ ଦେଲ ମାଲକୁ ଛାଡ଼ ।
ହେଲେ ହେଉ ପଛେ ବହୁତ ତ୍ରୁଟି, ଛାପାଖାନା ଏଣେ ଧରିଛୁ ଚୋଟି ।
ତ୍ରୁଟି ସନ୍ତୁ ମାଲ ଖଟାଲେ ବଳେ, ଏଥିରେ କି ଖାଇ ବଣିକ ଚଳେ ?
ଦେଶୀ ସାହିତ୍ୟ ଯେ ବଣିକ କଲ, ଜାଣିଥିବ ସେହୁ ଲୋକଟା ମଲ ।
ଲାଭ କଥା ଖାଇ ଥାଉ ପଛକୁ, ଭୁଡାଇ ବସିବ ନିଜ ମୂଳକୁ ।
ଖଟାଲ ହାଟରେ ଥିବ କପାଇଁ ? ଦେଖ, ଦେଖିଲେ ଗ୍ରହଆଡ଼ଙ୍କୁ ଚାହିଁ ।
ଗୋଟାଇ ପସରା ବୋଝ ମୁଣ୍ଡାଇ, ଘରମୁହାଁ ହୋଇ ଗଲ ପଳାଇ ।
ଝାଡ଼ ଝୁଡ଼ ମାଲ ରଖିଲ ଘରେ, ପସୁଗବ ଦିନେ କେହୁ ଦା ଅରେ ।
ଏଣେ ତ ଗ୍ରାହକ ସବୁ ଭରସା, ଆହୁରି କପାଳେ ଅଛି ଦୁର୍ଦ୍ଦଶା ।
କାଲ ଦୁଆରକୁ ଆସି ପ୍ରିଣ୍ଟର, କଣବ କହୁତ ସେ ହରବର ।
ତାହାଠାରୁ ମାଲ ଆଣିଛୁ କାଲି, ନ ପାଇଲେ ଟଙ୍କା, ଦେବ ସେ ଗାଳି ।
ଛାପାଖାନା ଲୋକେ ନିହାତି ମନ୍ଦ, ପଇସା ସକାଶେ ଲଗାନ୍ତି ଦ୍ୱନ୍ଦ ।
ଲେଖିବ କବିତା ଦେବୁ ଛପାଇ, ପଇସା କପାଇଁ ନେବୁରେ ଖାଇ ?
ନିହାତି ତୁ ଯଦି ଛାଡ଼ିବୁ ନାହିଁ, ରହି ବସି ଦେବି, ଜଲ କପାଇଁ ?
ଲାଗିଛି ସଂସାର ମଧ୍ୟରେ ହାଟ, ମାତ୍ରକ ମୋହର ପଡ଼ିଲା ବାଟ ।
ନାହିଁ ଦେହେ ବଳ, ହେଲିଣି ବୁଢ଼ା, ମୋହ ନାମ ଖାଇ, ହାଟବାହୁଡ଼ା ।

(ଅବସର ବାସରେ)

## ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ

କୁସୁମ କଳିକା ଥିଲ ସୌରଭର ଖଣି,
ମଧୁମୟୀ ହାସ୍ୟମୁଖୀ ପ୍ରେମଲତା ମଣି ;
ଦୁଇଦିନ ପାଇଁ ମାୟା ମମତା ଲଗାଇ,
ହସି ହସି ଗଲ ମୋତେ କନ୍ଦାଇ କନ୍ଦାଇ ।

ଲୀଳା କରୁଥିଲ ନୀଳ ବାରିଦେ ଚପଳା,
ଦେଖି ତୃପ୍ତ ହେଉଥିଲ ମୋହ ନେତ୍ର ତୋଳା ;

ଅନନ୍ତ ଆକାଶେ ଗଲ ସହସା ହଜାଇ,
ହସି ହସି ଗଲ ମୋତେ କନ୍ଦାଇ କନ୍ଦାଇ ।

ଛାଇ ଦେଉଥିଲ ସୁଧା ପୂର୍ଣ୍ଣ ଶଶଧର,
ଦେଖି ତୃପ୍ତ ହେଉଥିଲ ମୋ ଚକ୍ଷୁ-ଚକୋର ;
ଅସ୍ତାଚଳ ଶିରେ ଜଳ ଦେହକୁ ଲୁଚାଇ,
ହସି ହସି ଗଲ ମୋତେ କନ୍ଦାଇ କନ୍ଦାଇ ।

ସନ୍ତାପରେ କରୁଥିଲ ସ୍ନେହବାରି ଦାନ,
ମୋ ଚକ୍ଷୁ-ଚାତକ ତାହା କରୁଥିଲ ପାନ ;
ଯୋଡ଼ିଗଲ ବାୟୁ ସେହି ବାରଦେ ଉଡ଼ାଇ,
ହସି ହସି ଗଲ ମୋତେ କନ୍ଦାଇ କନ୍ଦାଇ ।

ପୋଷଥିଲ ଶାରୀ କରି ବହୁତ ଯତନ,
ରବ ଶୁଣି ହେଉଥିଲ ଆନନ୍ଦିତ ମନ ;
ଉଡ଼ିଗଲ କାହିଁ ପ୍ରେମ-ଶିକୁଳି ଛିଣ୍ଡାଇ,
ହସି ହସି ଗଲ ମୋତେ କନ୍ଦାଇ କନ୍ଦାଇ ।

ଅନ୍ଧାର ଆଲୁଅ ମୋର ଶରଦ-ଚନ୍ଦ୍ରିକା,
ନନ୍ଦନର ପାରିଜାତ ବାସନ୍ତୀ ମଲ୍ଲିକା ;
ମୋ ବାଳେଶୀ ସୌରଭ ପବନେ ମିଶାଇ,
ହସି ହସି ଗଲ ମୋତେ କନ୍ଦାଇ କନ୍ଦାଇ ।

ମୋ ଘର ପ୍ରାଙ୍ଗଣେ ଥିଲ ଲବଙ୍ଗର ଲତା,
ଫାଟି ପଡ଼ୁଥିଲ ରୂପ କାନ୍ତି କୋମଳତା ;
ଆହା ଆହା କଏ ଦେଲ ତାହାକୁ ଶୁଖାଇ,
ହସି ହସି ଗଲ ମୋତେ କନ୍ଦାଇ କନ୍ଦାଇ ।

ହୃଦୟ-ସାଗରେ ଝୁଲୁଥିଲା ପ୍ରେମ-ତରୀ,
ନୃତ୍ୟ କରୁଥିଲା ମେଳି ଆନନ୍ଦ ଲହରୀ ;
କାହିଁ ଘେନିଗଲା ବାୟୁ ତରଙ୍ଗେ ବସାଇ,
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ ।

ଜୀବନ-ପ୍ରସ୍ତରେ ମୋର ନିର୍ଝର ରାଗିଣୀ,
ଦାରୁଣ ନିଦାଘେ ପୁଣ୍ୟ-ତୋୟା ତରଙ୍ଗିଣୀ ;
ଦରିଦ୍ର-ପରଶମଣି କେ ନେଲା ଛଡ଼ାଇ,
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ ।

ହୃଦୟ-କଷଟି ଶିଳେ କାଞ୍ଚନର ରେଖା,
ନୀଳାକାଶେ ଇନ୍ଦ୍ରଧନୁ ଚିତ୍ରମୟ ଲେଖା ;
ବେଦରୁ ଗାୟତ୍ରୀ ମନ୍ତ୍ର କେ ଦେଲା ନଷ୍ଟଇ,
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ ।

(ପୁଷ୍ପମାଳା)

## ଜୀର୍ଣ୍ଣ ପଲ୍ଲବର ଆଶୀର୍ବାଦ

ସହଧର୍ମୀ କେତେ ପତ୍ର ଥିଲେ ସବୃନ୍ତରେ,
ମଣ୍ଡିତ ଶୋଭିତ ହୋଇଥିଲୁ ପାଦପରେ ।
କରିଛନ୍ତି ଏକେ ଏକେ ସମସ୍ତେ ପ୍ରସ୍ଥାଣ,
ଏକାକୀ ରହିଛୁଁ ଜୀର୍ଣ୍ଣଦଶା ମ୍ରିୟମାଣ ।
ନୀରସ ବିକୃତ ଦେହ ଦିଶେ ଅସୁନ୍ଦର,
ଶୀତ ବାତେ କମ୍ପମାନ ସର୍ବ କଳେବର ।

ବସନ୍ତ ଆଗମେ ନବ ପଲ୍ଲବ ସକଳ
ଫଣୁଚନ୍ତି ମନୋହର କେମନ୍ତ ସୁଢଳ ।
ପାଦପର ରସ ବୃଥା କରେଁ ଅପଚୟ
ହେଉଛୁ କୋମଳ ପତ୍ର ଖାଦ୍ୟ ଅପବ୍ୟୟ ।
ଆଉ ମୁଁ ଶାଖାରେ ଲଗିଥିବ କ ଆଶୟେ ?
ସ୍ଥାନ ଲଭି ବୃଦ୍ଧି ପ୍ରାପ୍ତ ହେବେ କିଶଳୟେ ।
ଆଶୀର୍ବାଦ ! ଆଶୀର୍ବାଦ ! ନବ ପତ୍ରଦଳ
ଛାୟାଦାନେ ତୃପ୍ତ ପାନ୍ଥ ପାଦପ ସମୂଳ ।

(ସୁରଭିକୁସୁମ)

# ଗଙ୍ଗାଧର ମେହେର

(୧୮୬୨—୧୯୨୦)

## ମୋ ଅର୍ଜିତ ପାପ

"ମୋ ଅର୍ଜିତ ପାପ ମୋର ଦୁଃଖର କାରଣ,
ସେହି ପାପ ଏବେ ମୋର ହେଉଛୁ ସ୍ମରଣ ।
ମହିମା-ସାଗର ନାଥେ ମଣି ମୁଁ ଇତର
'ନାହଁରେ ଲକ୍ଷ୍ମଣ' ରବ ମଣିଲି ତାଙ୍କର ।
ମାତମନେ ଲକ୍ଷ୍ମଣଙ୍କୁ କରି ମାତ ଜ୍ଞାନ,"
ବଳାତ୍କାରେ ପଠାଇଲି ପ୍ରଭୁ-ସନ୍ନିଧାନ ।
ସେହି ପାପେ ଯେ ନାଥଙ୍କ ମହିମା ବର୍ଦ୍ଧନ
ଲଗି ହେଲି ପାପିମାତ ଶର ବିସର୍ଜନ ।
ଦୋଷହୀନ ଲକ୍ଷ୍ମଣଙ୍କୁ ଯେଉଁ ତିରସ୍କାର
ଦେଇଥିଲି, ପାଇଲି ତା ଯୋଗ୍ୟ ପୁରସ୍କାର ।

ଲକ୍ଷ୍ମଣଙ୍କୁ କରିବାକୁ ମୋ ନିକଟୁ ଦୂର
ହୃଦେ ତାଙ୍କ ମାରିଥିଲି ବଚନ-ଭିଦୁର ।
ଭକ୍ତି ଭରେ ସେ ଲକ୍ଷ୍ମଣ ପଡ଼ି ମୋ ଚରଣେ
ଦୂର କରି ଦେଲେ ମୋତେ ବିନମ୍ର ବଚନେ ।
ଛିନ୍ନ ଶିରଟିଏ ଆଣି ପାପୀ ଦଶାନନ
ମୋ ପାପ ନୟନେ ଅଗ୍ରେ କଲା ପ୍ରଦର୍ଶନ ।
ସ୍ୱାମୀଙ୍କର ଛିନ୍ନ ଶିର ବୋଲି ମୁଁ ଅଧୀରେ
କାନ୍ଦିଲି ବିକଳ ପ୍ରାଣେ ଭାସି ନେତ୍ର ନୀରେ ।
ସେ ଶିର ଅନାଇ ଯାହା ନ ମଲି ବହ୍ନନ,
ସେହୁ ପାପେ ହେଲି ଏବେ ଜୀବନ୍ତ ଦହ୍ନନ ।
ତୁମ୍ଭ ପଦ-ସେବା-ସୁଖ ମଣି ମୁଁ ଉଦାସ
ଆଶ୍ରମ ଦର୍ଶନ-ସୁଖ କଲି ଅଭିଲାଷ
ସେହୁ ପାପ ଶ୍ରୀ ଶ୍ରୀମୁଖୁ କରାଇ ଅନ୍ତର
ବୋଲୁଛୁ, 'ପାପିନି, ଯାହା ଇଚ୍ଛା ତାହା କର ।'
ଅଯୋଧ୍ୟାର ରାଜଲକ୍ଷ୍ମୀ-ପୀଠରେ ବସି,
ନ ହୋଇ ମୋ ସଙ୍ଗେ ଥିଲ ବହୁତ ଦିବସ ;
ଅଯୋଧ୍ୟାରେ ରାଜଲକ୍ଷ୍ମୀ ଲୋଡ଼ୁଥିଲା ଦାଉ,
ବନ୍ଧୁଜନ ଧନ୍ମାଳ ତା' ନ ପାଇଲା ଆଉ ।
ତା ଦୁଃଖର ସଙ୍ଗୀ ଥିଲେ ଯେଉଁ ପୁରଜନେ,
ତାଙ୍କୁ ହେରୁ କରାଇଲ ମୋର ବିସର୍ଜନେ ।
ଅଯୋଧ୍ୟାରେ ସପତ୍ନୀର ଶତ୍ରୁ ଯଶସ୍ୱିନୀ,
ନ ପାରଇ ତାଙ୍କୁ ପଥ-ଶତ୍ରୁ ମନସ୍ୱିନୀ ।
କୈକେୟୀଙ୍କ ପରାକ୍ରମ ଫଳିବାର ଶେଷେ,
ରାଜଲକ୍ଷ୍ମୀବଳ ଉଚ୍ଚହେଲ ସେହି ଦେଶେ ।
'ପ୍ରକୃତି ରଞ୍ଜନେ ଯେବେ ହୁଏ ପ୍ରୟୋଜନ
କରିପାରେ ପ୍ରାଣସମା ସୀତା ବିସର୍ଜ୍ଜନ ।'
ଅଷ୍ଟାବକ୍ର ମୁନି ଆଗେ ଯାହା ଭାଷିଥିଲ,

ସ୍ମରୁଥିବ ସେ ପ୍ରତିଜ୍ଞା ନ କର ଶିଥିଳ ।
ପିତୃବାକ୍ୟ-ପାଳନରେ ତୁମ୍ଭେ ଅବମୁଖ,
ପତିବାକ୍ୟ-ପାଳନରେ ନ ହେଲେ ମୋ ଦୁଃଖ,
ତେବେ ପିତା ତୁମ୍ଭ ପତ୍ନୀ-ପଦର ଭଜନ,
ମୁଁ ହେବି, ଏ କଥା ନର୍ଣ୍ଣେ ବୁଝିବ ମୋ ମନ ।
ପରଜା-ରଞ୍ଜନ ବ୍ରତେ ଅଟ ତୁମ୍ଭେ ବ୍ରତୀ
ମୁଁ ସହଧର୍ମିଣୀ ତୁମ୍ଭ ପଦାଙ୍କେ ମୋ ଗତି ।
ହେଉ ମୋର ନର୍ବାସନ ପ୍ରକୃତିର ତୋଷ,
ପ୍ରଭୁଙ୍କର ବ୍ରତ ହେଉ ସମ୍ପୂର୍ଣ୍ଣ ନଦୋଷ ।"
ସତୀଙ୍କ ରୋଦନେ ଗତି ସ୍ତମ୍ଭିଲ ବାତର,
ଜଳ ସ୍ଥଳ ଯେସନ ହେଲ ନସର୍ଗ କାତର ।
ସ୍ତମ୍ଭିଗଲ ଜାହ୍ନବୀର ତରଙ୍ଗ-ଅବଳୀ,
ବନ୍ଦ ହୋଇଗଲ ବନେ ବହଙ୍ଗ-କାକଳୀ ।
ନ ହଲିଲ୍ ପାଦପର କୋଟିଏ ପତର
ନ ଚଳିଲ୍ ଲୀଳା-ଶୀଳା-ବଲ୍ଲୀ କଳେବର ।
ଡାଳେ ଡାଳେ ବସି ପକ୍ଷୀ ପାଉଲେ ଶ୍ରବଣ
ଢାଳେ ଢାଳେ ପ୍ରାଣେ ଭର ଶୋକ ପ୍ରସ୍ରବଣ ।
ମୃଗଶିଶୁ ଜନମୀର ସ୍ତନ ମୁଖେ ଧର
ନିଶ୍ଚଳେ ରହିଲ କ୍ଷୀର ଶୋଷଣ ନ କର ।
ମୁଖ-ଦର୍ଭ ମୁଖେ ଧର ମୃଗ ମୃଗୀମାନେ
ଗ୍ରୀବା ଭଙ୍ଗି ହେଲେ ଶୋକ-ଧ୍ୟାନ ଧ୍ୟାନେ ।
ମୟୂର ମୟୂରୀଗଣ ଶାବକ ସହିତ
ଚକିତ-ପକ୍ଷେ ହେଲେ ଚାପଲ୍ୟ-ରହିତ ।
କରଭ କରଣୀ କଣ୍ଠ ହୋଇ ଊର୍ଦ୍ଧ ପର
ପଥେ ରହିଗଲେ ଗଙ୍ଗା ଗମନ ବସ୍ମରି ।

(ତପସ୍ୱିନୀ—୯ମ ସର୍ଗ)

# ମଙ୍ଗଳେ ଅଇଲା ଉଷା

ରାଗ—ଭୈରବୀ

ମଙ୍ଗଳେ ଅଇଲା ଉଷା ବିକଚ-ରାଜୀବ-ଭୂଷା
ଜାନକୀ-ଦର୍ଶନ-ତୃଷା ହୃଦୟେ ବହି,
କର-ପଲ୍ଲବେ ମନ୍ଦାର- ମୁକ୍ତା ଧରି ଉପହାର
ସତୀଙ୍କ ବାସ-ବାହାର-ପ୍ରାଙ୍ଗଣେ ରହି,
ଜଳକଣ୍ଠ-କଣ୍ଠେ କହିଲା,
"ଦରଶନ ଦିଅ ସତି, ରାତି ପାହିଲା ।" ୧ ।

ଅରୁଣ-ବସନାବୃ ବାସ, କୁସୁମ-କାନ୍ତି-ବିକାଶ
ପ୍ରଶାନ୍ତ ରୂପ, ବିଶ୍ୱାସ ଦିଅନ୍ତି ମନେ,
କେଉଁ ଯୋଗେଶ୍ୱରୀ ଆସି ମଧୁର ସ୍ୱପ୍ନେ ଆଶ୍ୱାସି
ଢାଳୁଛନ୍ତି ଦୁଃଖରାଶି ଉପଶମନେ ;
ଦେବା ପାଇଁ ନବଜୀବନ
ସ୍ୱର୍ଗୁଁ କି ଓହ୍ଲାଇଛନ୍ତି ମର୍ତ୍ତ୍ୟଭୁବନ । ୨ ।

ସମୀର ସଙ୍ଗୀତ ଗାଏ ଭ୍ରମର ବୀଣା ବଜାଏ
ସୁରଭି ନର୍ତ୍ତନେ ଥାଏ ଉଷା ଆଦେଶେ ;
କୁମ୍ଭାଟୁଆ ହୋଇ ଭାଟ ଆରମ୍ଭିଲା ସ୍ତବ ପାଠ
ଫିଙ୍ଗା ଅଇଲା ପାଠ ମାଗଧ ବେଶେ
ଲଳିତ ମଧୁରେ କହିଲା,
"ଉଠ ସତୀ ରାଜ୍ୟରାଣୀ, ରାତି ପାହିଲା ।" ୩ ।

ମୁନି-ମୁଖ-ବେଦ-ସ୍ୱନ ପୂର୍ଣ୍ଣ କଲା ଶ୍ୟାମ ବନ
ଉଠିଲା ଭେଦି ଗଗନ ଉଚ୍ଚ ଓଁକାର,
ବୈକୁଣ୍ଠେ ଦେଇ ଝମ୍ପତ ଅନନ୍ତ ଶ୍ରୁତିକ ଗତି
ବହିଲା କି ସରସ୍ୱତୀ ବୀଣା ଝଙ୍କାର ;
ବେଣୁ ବେଳ ବନ ଉତ୍ଫୁଲ୍ଲ
ମନ୍ଦବଳେ ଯେସନ୍ତେ ବଢ଼ି ଆସିଲା ବଳ । ୪ ।

ଏ କାଳେ ବ୍ରହ୍ମଷ୍ମରଣୀ                    ଅନୁକମ୍ପା ଉପସ୍ଥିତା
ଆସି ଜନକ ନନ୍ଦିନୀ ପାଶେ ଗମ୍ଭୀରେ,
ବୋଇଲେ, "ଉଠ ବୈଦେହି !                    ଉଷା ସୁକୁମାର-ଦେହୀ
ଆସିଛୁ, ଦର୍ଶନ ଦେଇ ତୋଷ ବଧୂରେ ;
ତମସା ରହିଛୁ ଅନାଇ,
କୋଳ ଟେକି ଥରେ ସୁଖ ଲଭିବା ପାଇଁ । ୫ ।
ପଦ୍ମିନୀ-ହୃଦ ଶିଶିର-                    ବନ୍ଦୁରେ ଝର ଋଷିର
ପ୍ରତିବିମ୍ବ ପରି, ବୀର ସ୍ୱମ-ମୂରତି
ଶୋକ-ଜର୍ଜ୍ଜରିତ ଚିତ୍ତ-                    ଫଳକେ କରି ଚିତ୍ରିତ
ହେଲେ ଆସନୁ ଉତ୍‌ଥିତ ଜାନକୀ ସତୀ ;
ନମି ଅନୁକମ୍ପା ପଦ୍ମରେ,
ବନ୍ଦିଲେ ଉଷାର ପଦ ସଜଳନୟନେ । ୬ ।
ବୋଇଲେ ତାଙ୍କୁ ପ୍ରଣମି,                    "ତୁମ୍ଭେ ତିମିର-ବିଧ୍ୱଂସୀ
ରବି-ଆଗମନ ଶଂସୀ ଦୁଃଖ ସଂସାରେ,
ତୁମ୍ଭ କୋମଳ ଚରଣ                    କରେ ଜୋଡ଼ି ଅଧରଣ
ଚାହିଁ ଥାଇଛୁ ଶରଣ ଦୃଢ଼ ଆଶାରେ
ଶୁଭ ସଦ୍‌ଗତ ରସିକେ,
ଶୁଭ-ସମାଚାର ଦୁଃଖ ଦେଷୁ ବଶିକେ ।" ୭ ।
ଉତ୍ସୁକ ହୃଦୟେ ଚଳି-                    ଶେଷରେ ଆଶ୍ରମ ଧାତ୍ରୀ
ତମସା ନିର୍ମଳ ଗାତ୍ରୀ-ପବିତ୍ର ଧାରୀ
ପ୍ରାଙ୍ଗଣେ କୁସୁମ ବନ୍ଧି                    ସୁବାସିତ ନୀର ସିଞ୍ଚି
ମଙ୍ଗଳ ପ୍ରଦୀପ ରଚି ପ୍ରସ୍ତୁତୀ ତାଙ୍କ.
ମୁହୁର୍ମୁହୁଃ ମୀନ ନୟନେ
ସ୍ତବ୍ଧ ଅଛି ସୀତା ସତୀ-ଶୁଭାଗମନେ । ୮ ।
ଉଚ୍ଚେ ତାପସ କନ୍ୟା-                    ଗଣଙ୍କ ଅତଲ-ବନ୍ୟା-
ପ୍ରାବନେ ଜଗତ ଧନ୍ୟା ସତୀ-ରତନ

ବାହାର ଅବଗାହନେ ଅନୁକମ୍ପାଙ୍କ ଗହଣେ
ତମସା ଧାର ବହନେ କଲେ ଗମନ ,
ସତୀଙ୍କି ତମସା ଅଙ୍କରେ
ଯେହ୍ନ ସ୍ନେହେ ଆଲିଙ୍ଗିଲ ତରଙ୍ଗ-କରେ । ୯ ।

× × ×

ସମସ୍ତେ ଅବଗାହନ ବଢ଼ାଇ ପ୍ରତ୍ୟାଗମନ
କରି ବାଲ୍ମୀକି ଚରଣ କଲେ ବନ୍ଦନା,
ଆଶିଷେ ମୁନି ପୁଙ୍ଗବ ବୋଇଲେ, "ଜ୍ଞାନ-ବିଭବ
ଅର୍ଜନେ ସୁସିଦ୍ଧି ଲଭ କରି ସାଧନା" ;
ବିଶେଷେ ସୀତାଙ୍କୁ ସାଦରେ
ବୋଇଲେ "ବୀରସୂ ହୁଅ ଅପ୍ରମାଦରେ । ୧୦ ।

ନନ୍ଦିନି ! ତୁ ଏ ଆଶ୍ରମ- ପାଦପଙ୍କୁ ସ୍ନେହ ଶ୍ରମ
ପ୍ରୟୋଗେ ନନ୍ଦନୋପମ କରି ଯତନ ;
ସେ ସବେ ତୋ ଅନୁଭବ ସ୍ୱଳ୍ପେ ହେବ ସମ୍ଭବ
ତବେ କେମନ୍ତ ଦୁର୍ଲଭ ସୁତରତନ ;
ଅନୁକମ୍ପା ଥିବେ ନିୟତ
ସକଳ ଅଶୁଭ ତୋର ମୋଚନେ ରତ" । ୧୧ ।

ମୁନୀନ୍ଦ୍ର ଆଦେଶ ମତେ ତହୁଁ ଚଳିଲେ ସମସ୍ତେ
କମଳ-କୋମଳ ହସ୍ତେ କଳସ ଧରି,
କନ୍ୟାମଣ୍ଡଳେ ଜନକ- ସୁତା-କାନ୍ତି ଜନକକ
ସ୍ଫଟିକ ମଧ୍ୟେ ହୀରକ-ପ୍ରତିଭା ପରି,
ଉପବନ କଲେ ଗମନ,
ବଢ଼ାଇଲା ବନ ଶୋଭା ପାଇ ସେ ଧନ । ୧୨ ।

(ତପସ୍ୱିନୀ—୪ର୍ଥ ସର୍ଗ)

# ଗୃହିଣୀ

ବସି ମୁନି ପାଶେ    ସୁତାକୁ ବସାଇ
କ୍ଷଣେ ସ୍ଥିର କରି ମନ ;
ସସ୍ନେହେ ବୋଇଲେ,    "ମାଆ ଗୋ, ତୁ ଆଜ
ଗମିବୁ ପତି ସଦନ ।
ଥିଲୁ ତପୋବନେ    ଶାନ୍ତିର ଭବନେ
ପକ୍ଷୀ ସଙ୍ଗେ ଖେଳ ରଙ୍ଗେ ;
ପଶିବୁ ଏଥର    ସମ୍ପତ୍ତି-ସଙ୍କୁଳ-
ସଂସାର-ସିନ୍ଧୁ-ତରଙ୍ଗେ ।
ନାବ ବିନା କେହୁ    ସାଗରେ ପଶିଲେ
ଲଭଇ ଘୋର ବିପଦ ;
ସଂସାର ସାଗର    ପାଇଁ ମହାପୋତ
ଏକମାତ୍ର ସ୍ୱାମୀ-ପଦ ।
ନାରୀମାନଙ୍କର    ସ୍ୱାମୀଟି ଈଶ୍ୱର
ସ୍ୱାମୀଙ୍କ ଚରଣ ସ୍ୱର୍ଗ,
ଲକ୍ଷ୍ମୀ ସଦା ପତି-    ବ୍ରତାର ସଙ୍ଗିନୀ
ସ୍ୱାମୀ-ପ୍ରୀତି ଅପବର୍ଗ ।
ସ୍ୱାମୀ ଗୁରୁ, ସ୍ୱାମୀ    ପରମ ବାନ୍ଧବ,
ସ୍ୱାମୀ ସେବା ନାରୀ ଧର୍ମ,
ସ୍ୱାମୀ ପଦେ ଭକ୍ତି    ଅର୍ଚ୍ଚନାରେ ମତି
ଅର୍ପି କରିବୁ କର୍ମ ।
ଯା କହିବେ ସ୍ୱାମୀ    ଦୁଷ୍କର ହେଲେହେଁ
ପାଳନେ ହେବୁ ତତ୍ପର ;
ଅରେ ଯା ବାରିବେ    ଆଉ ତହିଁ କେବେ
ହେବୁ ନାହିଁ ଅଗ୍ରସର ।

ଦୁଃଖ ଥିଲେ ମନ          ଦୂର କରିବୁ ତା
ସ୍ୱାମୀ ଦରଶନ ମାତ୍ର,
ପରିହାସ କଲେ          ତାଙ୍କୁ ନ ମଣିବୁ
ପ୍ରତି-ପରିହାସ-ପାତ୍ର ।
ସ୍ୱାମୀଙ୍କ ଭୋଜନ          ପରେ ତୁ ଭୁଞ୍ଜିବୁ,
ଶୋଇବୁ ଶୟନ ପରେ,
ସ୍ୱାମୀଙ୍କର ଶଯ୍ୟା          ତେଜିବା ପୂର୍ବରୁ
ଉଠିଥିବୁ ପ୍ରତ୍ୟୁଷରେ ।
ଅବସର ଦେବୁ          ନାହିଁ ତୋ ନେତ୍ରକୁ
ପର ପୁଂସ ନିରୀକ୍ଷଣେ,
ସୋଦର ହେଲେହେଁ          ନିର୍ଜନେ ନିକଟେ
ରହି ଦେବୁ ନାହିଁ କ୍ଷଣେ ।
ସ୍ୱାମୀ ଯେବେ କ୍ରୋଧ          ଜନିବେ, ଅଥବା
କରିବେ ଯଦ ଭର୍ତ୍ସନା,
ସେ ଦୋଷ ନ ଘେନ          ନତଶିରେ ସହ୍ୟ
କରିବୁ ତାଙ୍କ ଅର୍ଚ୍ଚନା ।
ଜନ କରେ ରକ୍ଷ          ଜଳେ ଦେଇଥିବୁ
ପତିଙ୍କି ଅନ୍ନ ବ୍ୟଞ୍ଜନ,
ଭୋଜନ ସମୟେ          ପାଶେ ବସି ଦୋଇ
ବୁଲାବୁ ଧରି ବ୍ୟଜନ ।
ସ୍ୱାମୀ ସେବା କାର୍ଯ୍ୟେ          ନାରୀ ପ୍ରତିନିଧି
କଦାପି କରିବୁ ନାହିଁ,
ବିନା ଚେତନର          ପଡ଼ାସ୍ୱରକାକୁ
ଘରୁ ଦେବୁ ଘଉଡ଼ାଇ ।
ସ୍ୱାମୀ ତୋ ଅବଜ୍ଞା-          କରି ବହୁଛନ୍ତି
ତୋ ଶିରେ ତାଙ୍କ ଚରଣ,

କେତେ ଧୈର୍ଯ୍ୟ ତୋହେ। ପାଇଁ ପ୍ରୟୋଜନ
ରଖିବୁ ସଦା ସ୍ମରଣ ।
ବାସ ଭୂଷଣର ଗର୍ବ ନ କରିବୁ
ଅବା ଉଚ୍ଚ ପାଇଁ ଅନ୍ନ,
ଯାହା ଦେବେ ତୋତେ ସନ୍ତୋଷେ ଘେନିବୁ
ଜାଣିବୁ ତାହା ତୋ ଭଲ ।
ଶାଶୁଙ୍କ ଚରଣ ସେବଥିବୁ ନତ
ଗୃହର ଦେବତା ମଣି,
ଶାଶୁଙ୍କି ସ୍ୱାମୀର ପୂଜା ସିଂହାସନ
ସର୍ବ ସମ୍ପଦର ଖଣି ।
ନଣନ୍ଦ ଅଳରେ କେବେ ନ ଚଳିବୁ
ଅଧିକେ କରିବୁ ସ୍ନେହ,
ବଅସୀ ହେଲେ ସେ କୋଳକୁ ଆଣିବୁ
ଅଇଁଷି ତା ମୁଖ ଦେହ ।
ଆନ୍ତ ଯେତେ ପୁର- ନାରୀ ଥିବେ ତାଙ୍କୁ
କରିବୁ ଭଗିନୀ ଜ୍ଞାନ,
ଯେ କଥା କଦାପି ନ କରିବୁ ଯହିଁ
ହେବ ତାଙ୍କ ଅପମାନ ।
ଗୁରୁଜନ ଦେହ ପାଶକୁ ଆସିଲେ
ଉଠିବୁ ତେଜି ଆସନ,
ଉଚ୍ଚାସନ ଦେଇ ବନ୍ଦି ସବିନୟେ
କରିବୁ ମୃଦୁ କଥନ ।
ଉଚ୍ଚହାସ କେବେ ନ କରିବୁ ପ୍ରୀତି
ନ କରିବୁ ଉପହାସ,
ପରିହାସ ଛଳେ କରିବୁ ନାହିଁଟି
ଶିଖାଇନ ମନ ହ୍ରାସ ।

ନିଜେ ପରିଷ୍କୃତ ଆଉ ନିଜ ଗୃହ
ରଖିଥିଲୁ ପରିଷ୍କାର,
ପରିଜନଙ୍କର ଦୁଃଖ ଶୁଣିଥିଲୁ
କରୁଥିଲୁ ପ୍ରତିକାର ।
ଅନାହୂତ ହୋଇ ଯଦି କେହି ତୋର
ଅଯଥା ପ୍ରଶଂସା କଲେ,
ଜାଣିଥିଲୁ ତାର ଆଗମନ ତୋତେ
ଠକିବାକୁ କଉଣଲେ ।
ସ୍ୱାମୀ ଦୋଷ, ଶ୍ରେଷ୍ଠ ଜନ୍ମାଇବାକୁ ତୋ
ବର୍ଣ୍ଣିବ ଯଦି ସେ ନାସ୍ତି,
ତା କଥା ବିଷମ ବିଷ ମଣିଥିଲୁ
ସେ ଏକା ତୋର ଉଦାର ।
କେତେଦିନ ଯାଏ ମଣିଥିଲୁ ପ୍ରିୟ
ସମ୍ପତ୍ତି ତୋ ତପୋବନ,
ଏଥର ମଣିବୁ ଅଖିଳ-ଅବନୀ
ହେବ ତୋର ପ୍ରିୟଧନ ।
ତପୋବନ-ମସ୍ତି- ବୃଦ୍ଧ-ଗତ-ସ୍ନେହ
ମସ୍ତରେ କରିବୁ ନ୍ୟସ୍ତ,
ମୃଗ-ମୃଗୀ-ଗତ ମମତା କରିବୁ
ମାନବ-ସମାଜ-ଗତ ।
ସ୍ୱାମୀ ତୋର ଋଷି- ସ୍ୱରୂପ ମଣ୍ଡିତ
କରିଛନ୍ତି ରାଜ୍ୟାଶ୍ରମ,
ସେ ଆଶ୍ରମ ମାତ ରକ୍ଷଣେ ନିଜର
ଜୀବନ କରିବୁ କ୍ଷମ ।
ଉଠ ମା ଏଥର ବୁଲ ଶୁଭକ୍ଷଣେ
ସ୍ୱାମୀ-ପଦ-କଞ୍ଜ ଧ୍ୟାୟି
ଗୌତମୀ ସହିତ ଶିଷ୍ୟ ଦୁଇ ତୋତେ
ତହିଁ ଦେବେ ପହଞ୍ଚାଇ ।

(ପ୍ରଣୟ-ବଲ୍ଲରୀ—୪ର୍ଥ ସର୍ଗ)

# ନନ୍ଦକିଶୋର ବଳ

(୧୮୭୫-୧୯୨୮)

## ଡାମରା କାଉ

୧

ଡାମରା କାଉ ରେ ଡାମରା କାଉ, ଉଚ୍ଚ ପରବତେ ବୋବାଉ ଥାଉ ।
ଉଚ୍ଚ ପରବତ ଘୂଷି ଘୂଷିକା, ତହିଁରେ ବସିଛୁ ତନ ମଣ୍ଡିକା ।
ଚନ ଚନ ପଣ ଅଠର ପଣ, ସେଇଙ୍କି ଉଡାଇ କଉଡ଼ି ଗଣ ।
କଉଡ଼ି ଗଣାରେ ପାହିଲା ରାତି, ସେଥିର ନେଇଗଲ କଜଳପାତି ।
ଷାଠିଏ ଟଙ୍କାର ବଳଦ ମଲା, ଏକା କାଳୀଗାଈ ମଥାନ କଲା ।
ଆସ ଗୋ ସଙ୍ଗାତ ଗାଧୋଇ ଯିବା, କାଇଞ୍ଚ କାକୁଡ଼ି ତୋଳି ଆଣିବା ।
କାଇଞ୍ଚି କାକୁଡ଼ି ମୁଣ୍ଡରେ ପିତା, ଛଅ ବୋହୂଙ୍କର ଛଅ ଦୁହିତା ।
କାଳେ ଛଅ କନ୍ୟା ଯୁବତୀ ହେଲେ ଛଅ ବର ଆସି ତାହାଙ୍କୁ ନେଲେ ।
କାନ୍ଦନ୍ତି ବସିଲେ କହୁଣ ମାତା "ନିଷ୍ଠୁର ଅଟଇ ତୋ ବିଧି ଧାତା ।"
ଡାମରା କାଉରେ ଡାମରାକାଉ ଜନମ ନିକଟେ କି ଗୀତ ଗାଉ ?
ଏ ମାୟା-ସଂସାର-ତତ୍ତ୍ୱ-କାହାଣୀ କହୁ କିବେ ଜାଣ ତହିଁ ବଖାଣି ?
"ସଂସାର ଅଟଇ ବିଷମ ମାୟା, କାୟା ଛଳେ ତାହା ଅସାର ଛାୟା ।"
ଡାମରା କାଉ ରେ ଡାମରା କାଉ ସତ ମିଛ କହୁ କି ଯଶ ପାଉ ?

୨

ଡାମରା କାଉରେ ଡାମରା କାଉ, ଗହନ କାନ୍ତାରେ ରୁ ରୁଥାଉ ।
ପ୍ରାବୃଟରେ ବନ ନବୀନ ଛବି, ଧରେ ଯା ନ ବର୍ଣ୍ଣି ପାରନ୍ତି କବି ।
ନୀଳ ନଭେ ଦେଖି ନବ ନୀରଦ, ହୁଏ ବର୍ଷା ପ୍ରଭେ ଷଡ଼ଜ ନାଦେ ।
ଉତ୍ପୁଚ୍ଛ-କଳାପୀ-ଆନନ୍ଦ-ସ୍ୱନ, ଶୁଣିଣ ମନୁଷ୍ୟ ହୁଏ ଉନ୍ମନ ।
ହେନ ଅରଣ୍ୟ-ପ୍ରକୃତ ଶୋଭା, ସଂସାର-ବିରାଗୀ ନୟନଲୋଭା ।
ନୀପାଶ୍ୱ-ନିକୁଞ୍ଜ-ଗହନ-ବନେ, କ୍ରୀଡ଼େ ନିର୍ଜନତା ନିବିଷ୍ଟ ମନେ ।

ଜଗତ ସୃଜରୁ ଯେବେ ସରସୀ, ହସେ ସରୋଜିନୀ ତା ଅଙ୍କେ ବସି ।
ଜଳଚ-କମଳ-କୋଷ କାସାର, କି ସେ ପଦ୍ମାଳୟା-ଶ୍ରୟା-ଆଧାର ?
ସରସୀ ସକାଶେ ମୃଗ ଦମ୍ପତି, ଭୁଞ୍ଜନ୍ତି ମଧୁର ପ୍ରେମ ସମ୍ପତି ।
ମୃଗେ ମୃଗବଧୂ ଲୋଲଲୋଚନା, ବୋଲଇ "ହେ କାନ୍ତ, ପାଶୁଁ ଯାଅ ନା" ।
ପିତୃକୂଳ ତେଜି ଧାଏଁ ତଟିନୀ, ହେବାକୁ ସୁଦୂର ସିନ୍ଧୁ ସଙ୍ଗିନୀ ।
ତଟିନୀ ତଟରେ ଭୃଙ୍ଗ ବିଟପୀ, ହୃଷ୍ଟ ଘନ ଗୁଳ୍ମଲତାକୁ ଚପି ।
ପାଦତଳେ ତାର ସ୍ୱପଦ୍ମରତା ଲୋଟଇ ଲଳିତ ଲବଙ୍ଗଲତା ।
ଲତାଯୁକ୍ତ ସେହି ଭୃଙ୍ଗ ବୃକ୍ଷେ, ରଥାଙ୍ଗ ମିଥୁନ କ୍ରୀଡ଼ନ୍ତି ସୁଖେ ।
ଅଦୂରଦଶନା ପ୍ରେମଗର୍ବିଣୀ ରଙ୍ଗେ ନାଚେ ଚକ୍ରବାକ-ଗୃହିଣୀ ।
ଡ଼ାମରା କାଉ ରେ ଡ଼ାମରା କାଉ, ସେ ପ୍ରେମ ରାଜ୍ୟେ ତୁ କି ଗୀତ ଗାଉ ?

ପ୍ରେମାନ୍ଧ ଦମ୍ପତି ହୃଦୟ ଜାଣି, ବର୍ଣ୍ଣୁ କହେ କାକ ତତ୍ତ୍ୱ କାହାଣୀ ?
ଆହା କି ଭ୍ରାନ୍ତିରେ ପୂର୍ଣ୍ଣ ଜଗତ, କିପାଇଁ ସଂସାରୀ ଏତେ ହସତ ?
ଯାଇଛୁ ପ୍ରାବୃଟ, ଆସେ ଶରଦ, ରହିବ ନାହିଁ ତ ବର୍ଷି ଆନନ୍ଦ ।
ଆସିବ ବାସର ଅନ୍ତେ ଯାମିନୀ, ହସିବ କି ସେ କାଳରେ ପଦ୍ମିନୀ ?
ନିଷାଦ ବାଗୁରା ସେବେ ପାତିବ, ହରିଣୀକୁ ଛାଡ଼ି ହରିଣ ଯିବ ।
ଧାଇଁ ନଦୀ ସିନ୍ଧୁ ପ୍ରଣୟେ ବାଇ, ସେ ତାକୁ ଫିଙ୍ଗଇ ଊର୍ଦ୍ଧ୍ୱେ ଉଠାଇ ।
ବିଟପୀ ଅଙ୍ଗରେ ଲତା ଲୋଟଇ, ବାତେ ସେ ତାହାକୁ ତଳେ ଫିଙ୍ଗଇ ।
ଦିନାନ୍ତେ ଆସିବ ଘୋର ରଜନୀ, କି କରିବ ଚକ୍ରବାକ ଘରଣୀ ?
ଡ଼ାମରା କାଉ ରେ ଡ଼ାମରା କାଉ, ସତ ମିଛ କହୁ କି ଯଶ ପାଉ ?

୩

ଡ଼ାମରା କାଉ ରେ ଡ଼ାମରା କାଉ, ଗ୍ରାମେ ଗ୍ରାମେ ଉଡ଼ି ତୁ ଗରୁଥାଉ ।
ଅଳପ ଅଳପ ପଡ଼ୁଛୁ ଝର ।, ଚିତ୍ର ବସନ କି ପିନ୍ଧିଛୁ ଧର ।
ଶିଶିର ପ୍ରଭାତେ ବାଡ଼ି ଉପରେ, ବସି ବାମାଗଣ ହରଷ ଭରେ ;
ନାନା ଗଳ୍ପ କରି ରମନ୍ତି ଚଞ୍ଚୁ, ନାଥ ଆସି ଦାଣ୍ଡେ ଆରମ୍ଭେ ଗୀତ ।
ଅଶୋକ କାନନେ ରାମ-ରମଣୀ, ବୀର ହନୁମାନେ ବୈଦେହୀ ବାଣୀ ।

ନଳ-ଦମୟନ୍ତୀ-ବିଚ୍ଛେଦ ଗାଥା, ଯମ-ସତ୍ୟବାନ-ସାବିତ୍ରୀ ବାର୍ତ୍ତା ।
କୈଳାସ ପର୍ବତେ ଗିରିଜା-ପଥ, ତପସ୍ୱୀ ଶିବଙ୍କ କଠୋର ମତ ।
ଉଷା ଯେସନ ନାଥ ଅନ୍ୱେଷ ଗମେ, ପ୍ରେମ ଗୀତ ବାଜେ ବାମା ମରମେ ।
ଅଳପ ବୟସେ ପ୍ରବାସୀ ପତି, ପତି ଭିନ୍ନ ତାର କେବଣ ଗତି ?
ଗୁନ ଗୁନ କରି ସଖୀ ଆଗରେ, କହେ କି ବାରତା ସାଶ୍ରୁ ନେତ୍ରରେ ।
ବାଉଁଶ ବକୁଳ-ପତ୍ର-ଗହଳେ, ରହି କି ବାରତା ତୁ ଗାଉ ଛଳେ ?
ଅସ୍ନାନ ଭୂଲିତାଯୁକ୍ତା ରମଣୀ, ଅଧୀର ହୁଅଇ ତୋ ରାବ ଶୁଣି ।
ଦେହଇଣ ଆଧାର ପୂଚ୍ଛ ଭ୍ରମନ୍ତ, ସୁଦୂରସ୍ଥ-ପ୍ରାଣ ବନ୍ଧୁ ଉଦନ୍ତ ।
ତା କର କମନ୍ତୁଁ ତଣ୍ଡୁଳ ଖାଇ, ନଇସ୍ୱଣ୍ୟ ଗୀତ ଦେହରେ ଗାଇ ।
"ତୁ ଯାକୁ ଦେଇଛୁ ଜୀବନ ମନ, ଅନ୍ୟେ ସେ କରିଛୁ ପ୍ରାଣ ଅର୍ପଣ ।"
ଅଶିଷ୍ଟାଗ୍ରସ୍ତ ତୁ ଅନ୍ତରେ କାହୁ, କୂଳବଧୂ ପାଶେ କି ଗୀତ ଗାଉ ।
କୃତଘ୍ନ ବାୟସ ତା ମନ୍ଦ ଗାହୁ, ଅନ୍ନଦାତ୍ରୀକି ତୁ କଳେ ଭସାହୁ ।
ନବୀନା ଯୁବତୀ କୋମଳମନା, ଲବଣୀ ପିଣ୍ଡୁଳା କୋଳଲୋଚନା ।
ଛି ଛି କାକ ଟାଣ ତୋର ପ୍ରକୃତି, କଠୋର ହୃଦୟ ସରଳା ସତୀ ।
ନ କହ ସଂସାର ଟାଣ ବାରତା, କୋମଳମନା ସେ ହେବ ଆରତା ।

(ନିର୍ଝରିଣୀ)

## ପଲ୍ଲୀ ବାସୀ

ଗ୍ରାମେ ବାନ୍ଧି ବସି କାକଗଣ
ଘନ ଘନ କରନ୍ତି ନସ୍ୱନ,
ଆନନ ବଙ୍କିମ କରି ଶ୍ୱନ୍ଦ ଛନ୍ଦି ତରି ତରି
ଏ ସୁନ୍ଦାଣି ଭଙ୍ଗୀ ତାଙ୍କୁ କିଏ ଶିଖାଇଲା,
କି ଗୂଢ଼ ରହସ୍ୟ ବହି ହେଥା ଉଆଇଲା ? ୧
"ଅରେ କାକ, ଆସ ଆସ ଆସ,
ପିତା ଭ୍ରାତା କରନ୍ତି ପ୍ରବାସ ।

ବସି ଏ ଚଣ୍ଡାଳ ଝାଟେ ଖାଇ କାକ, ଅନୁରାଗେ
କେ ବାହୁଡ଼େ ବିଦେଶରୁ କହ ଉଡ଼ିଯାଆ,
ବୃଥା ପୁଣି କାହିଁ ପାଇଁ ରାବୁ ଡାଆ କାଆ ?" ୨
କହ ଏହା ଅଳପ ବୟସୀ
ଯାଏ ଖ୍ଳ ଗୃହେ ହସି ହସି,
କହେ ଚଢ଼ି ପରିହାସେ ନବଯୁବ-ବଧୂ ପାଶେ,—
"ଫେରି ଆସୁଛନ୍ତି ଶୁଣ ତୋଜଣ ବିଦେଶ,
ଆସ ଗୋ ସୁନ୍ଦରି, ଆଜ ବାନ୍ଧେ ମୁକ୍ତ କେଶ" । ୩
ଉଡ଼ନ୍ତି ପକ୍ଷୀଏ ରାବ ଦେଇ
ଶିଶୁ ପଦ୍ମ ଉଷ୍ଣ ଜେମା ଦେଇ,
ଅନାଇ ବିହଙ୍ଗ-ସାରି ଡାକେ ତାଙ୍କୁ ହସ୍ତ ଠାରି,—
"ଆସ ଆସ ଚଢ଼େଇ ରେ ମୋ ପିଣ୍ଡାରେ ବସ,
ଖାଇବାକୁ ଦେବ ତୋତେ ନଡ଼ିଆର ରସ" । ୪
ରାଜପଥେ ପଥିକ ଦର୍ଶନେ
ବିସ୍ମରନ୍ତି ଗ୍ରାମେ ନାରୀଗଣେ,—
"କାହୁଁ ଆସେ, ଯାଏ କାହିଁ, କେତେ ଦୂରେ ଅଛି ଧାଇଁ
କାହିଁ ଘର ବାଟୋଇର, ଏବେ କେଉଁ ଗଲ୍ପ,
କେଉଁ ଦୂର ପରବାସେ ଯାଉଅଛି ଭଲା ?" ୫
"ଶ ଷ ଶୁଅ" ଆଦି କେତେ ଖେଳ
ଖେଳନ୍ତି ବାଳକେ ହୋଇ ମେଳ
"ଆଟେ ଶାଳ, ଅଟେ ଶୁଆ କାହା ହାତେ ନଦାଗୁଆ
କହ", ବୋଲି ଜଣେ କାଠି ଦିଏ କାହା ହସ୍ତେ,
ଧ୍ୱେର ହେବା ଭୟେ ମୌନେ ରହନ୍ତି ସମସ୍ତେ । ୬
କୁଇଁ କୁଇଁ ବାଜଇ କେନ୍ଦରା
ନାଥ ଆସି ଭିକ୍ଷା ମାଗେ ପରା ?
ଗାଇ ରାମ-ବନବାସ କୃଷ୍ଣ ମଥୁରା-ପ୍ରବାସ

ବେଳେବେଳେ ବଜାଇଣ ହରେ ଜନ ମନ,
ପୁଷ୍ପ ଆଳେ କରେ ନାଥ ସ୍ୱସ୍ଥାନେ ଗମନ । ୭
ଯେଣ କେଳା କେଳୁଣୀଙ୍କି ସଙ୍ଗେ
ଦାଣ୍ଡେ ନାଚ ଧୂଡୁକ ଜ ରଙ୍ଗେ
ବଜାଇ ଗାଉଛୁ ଗୀତ          ଶୁଣିଣ ମୋହିତ ଚିତ୍ତ
ଦଅନ୍ତି ତଣ୍ଡୁଳ ତାଙ୍କୁ ବାଳକ ବାଳିକା
କଣନ୍ତି ତାଠାରୁ ବଣି, ଗୋବଗ୍ର, ଖାଲିଜା । ୮
ଶାଖାଯୁକ୍ତ ବଟବୃକ୍ଷ ମୂଳେ
ପଲ୍ଲୀ-ପୁଷ୍କରଣୀ-ଜଳ-କୂଳେ
ଗ୍ରାମ ସୀମନ୍ତିନୀ କୁଳ          ହୋଇଣ ସ୍ନାନାର୍ଥ ଠୁଳ
କହୁଛନ୍ତି ପରସ୍ପର ସୁଖ ଦୁଃଖ କଥା,
ସ୍ନାନ ସାରି କେଉଁ ନାରୀ ପୋଛୁଅଛୁ ମଥା । ୯
ଶୁଣି ଗହଡ଼ଣୀ ହଟ ରୁଣ୍ଡ
ଗ୍ରାମନାରୀମାନେ ହୋଇ ରୁଣ୍ଡ
ଦହି, ଦୁଧ କେ କିଣନ୍ତି          ନ ଥିଲେ କେତେ ବୋଲନ୍ତି
"ହାତେ ଧନ ଥିଲେ ସିନା ପୂରଇ କାମନା,
ଦୁଃଖୀର ଜୀବନ ସିନା ବଧି ବଡ଼ମୁନା" । ୧୦
"ଲୁଣ, ତେଲ ମସଲା ଗୋ ନିଅ,
ଗତ ପାଳି କାଳି ପୁଟି ଦିଅ",
ଶୁଣି ଏ ଉଠିଆ ଡାକ          ଘରଣୀଏ ଡାକ ହାକ
ହୋଇଣ ଆସନ୍ତି, ପୁଣି ହୁଏ ଦେବା ନେବା
ଧାନ, ରବ୍ବ, ପଇସାରେ, ମିଳେ ଯାକୁ ଯେବା । ୧୧
ବଡ ଘିରେ ମେରୁସମ ଜୁଡ଼ା
କାଖେ ଯେଣ ସଜମୂର୍ତ୍ତି ଚୂଡ଼ା
ଝୁଡ଼ିଆଣୀ, କେଉଟୁଣୀ          ପାଦେ ମୂଢ଼ ରୁଣି ଝୁଣି
ବୁଲି ଗ୍ରାମେ ଘରେ ଘରେ ଫେରନ୍ତି ପସରା

ଧାନ କମ୍ବା ରବରେ ଯେ ପାତ୍ର ହୁଏ ଭସ୍ମ । ୧୨
ଗ୍ରାମ ମଧ୍ୟେ ଭାଗବତ ଘର
ନାନାବିଧ ଶାସ୍ତ୍ରର ଆକର,
ସନ୍ଧେ ଏହିଠାରେ ଆସି          ବସି କେତେ ଗ୍ରାମବାସୀ
ଶୁଣନ୍ତି ମହାଭାରତ, ଗୀତା, ରାମାୟଣ,
ଅଷ୍ଟାଦଶ ପୁରାଣାଦି ଶାସ୍ତ୍ର ଅଗଣନ । ୧୩
ଗ୍ରାମ ଜମିଦାରଙ୍କର ଘର,
ଦାଣ୍ଡେ ବୁଲିବାକୁ ମାଡ଼େ ଡ଼ର
ପାଇଣ ସ୍ନାନ ପ୍ରଭାତେ          ଉଚ୍ଚ ପିଣ୍ଡାରେ ସାଥାନ୍ତେ
ବସିଣ କରନ୍ତି ସେବା ପୂଜା ବିଧିମାନ,
ପ୍ରଜା ଗୁହାରି କଥାରେ ଦେଉଥାନ୍ତି କାନ । ୧୪
ଟଙ୍କା, ଧାନ, ସୁଧ, ମୂଳଜମା
ସତ୍ୟ ମିଥ୍ୟା ଯେତେ ମକଦ୍ଦମା
କଳହ ଅନର୍ଥ ମୂଳ,          ସକଳ ଏଠାରେ ଠୁଳ,
ମାରମ୍ଭକ ଠେଙ୍ଗା ହାତେ ଉଭା ଚଉକିଆ,
ପାଣିରୁ ବ୍ରାହ୍ମଣ ନାହିଁ ଏଠାରେ ଅବଧି । ୧୫
ବଡ଼ ଘର କୁମାରୀ ଦୁହିତା
ଦାଣ୍ଡ କାନ୍ଥେ ଲେଖିଛନ୍ତି ଚିତା
ପଦ୍ମ ବନ୍ଧ, ନାଗବନ୍ଧ          ଆଉ କେତେ ଚକ୍ର ବନ୍ଧ,
ଅଙ୍କଲିପି, ବର୍ଣ୍ଣଲିପି, ଗୋମୂତ୍ରାଦି ଛନ୍ଦ,
ଶ୍ରୀରାମ-ରାବଣ କୁରୁ ପାଣ୍ଡବଙ୍କ ଦ୍ୱନ୍ଦ୍ୱ । ୧୬
ଦେଖୁଛୁ ଦେବଙ୍କ ଆସି କୋଷ୍ଠି,
ବସିଛନ୍ତି ଖଣ୍ଡାୟତ ଗୋଷ୍ଠୀ,
ଭାଲେ ଗୋରଚନା ଟୋପା          ଶିରେ ଶୋଭେ ଗୁରୁଚମ୍ପା,
ପାଚିଲା କଣ୍ଠା ବାଉଁଶୀ ବାଡ଼ିଟି ଜଙ୍ଘରେ,
ପାଚିଲା ଗାମୁଛା ରାଜେ ପଇତା ସଙ୍ଗରେ । ୧୭

ଖଣ୍ଡାୟିତ କରଣମଣ୍ଡଳୀ
କାହିଁ ଦରବାରେ ଯାନ୍ତି ଚଳି
କଟିରେ ଚଦର ଭିଡ଼ା          ହାତେ ଅଛି ପାଞ୍ଜି ବଡ଼ା,
ଅଣ୍ଟାରେ ହୋଇଛି ଖୋସା ମୁନିଆ ଲେଖନ,
ଏହି ମୁନେ ବନ୍ଧା ଥିଲା ନିଖିଳ ଭୁବନ । ୧୮
ପଲ୍ଲୀ ମଧ୍ୟେ ବ୍ରାହ୍ମଣ ଶାସନ
ବିପ୍ରଯୁବା କରଣ ଆସନ
ବଲ୍ ବାଡ଼ି କଥା ଶୁଣି          ଚୂଡ଼ା ଦହି ମନେ ଗୁଣି
ପଢେ ମନୁ, ପରାଶର ଅବା ଅଭିଧାନ,
ବେଦ, ବ୍ରତ, ମନ୍ତ୍ର କିବା ସାଙ୍ଖ୍ୟ, ତନ୍ତ୍ର, ଧ୍ୟାନ । ୧୯
ବସି ବୃଦ୍ଧ ପିତାମହ ପାଶ
ନିରନ୍ତର ସେବୁଥାନ୍ତି ନାସ
ଶରତ ହୋଇଣ ବୃଦ୍ଧ          କରନ୍ତି ଅଶୁଦ୍ଧ ଶୁଦ୍ଧ
ମନେ ପଡ଼େ ପୂର୍ବ ଯୁଗେ ବ୍ରାହ୍ମଣ ପ୍ରାଧାନ୍ୟ
ଥିଲେ ଯେବେ ଏ ବ୍ରାହ୍ମଣ ଗୁଣେ ଗରୀୟାନ । ୨୦
ସ୍ୱର୍ଣ୍ଣ ଗୋରି ବସ୍ତ୍ର ନାରାୟଣ
କରି ପ୍ରାତଃ ସ୍ନାନ ସମାପନ
ଜଳାର୍ଦ୍ର ବସନ ଅଙ୍ଗେ          ମନ୍ତ୍ରର ଗଢରେ ରଙ୍ଗେ
ଫେରୁଛନ୍ତି ଗୃହେ, ହେଲେ ବ୍ୟଞ୍ଜନ ରନ୍ଧନ
ପଠ, ପୁତ୍ରେ ଆସି କର୍ମୁଁ କରିବେ ଭୋଜନ । ୨୧
ଗ୍ରାମର ଆଖଡ଼ା ଏହି ସ୍ଥାନେ,
ପ୍ରତି ରାତ୍ରେ ନୃତ୍ୟକାରୀ ମାନେ
ଶିଖନ୍ତି 'ଭରତ ଲୀଳା'          'କୃଷ୍ଣ ଲୀଳା', ରାମ ଲୀଳା',
ପର୍ବପାରବଣେ ଦେଶେ ବିଦେଶେ ନାଚନ୍ତି,
ଅର୍ଥଉପାର୍ଜନ କରି କୁଟୁମ୍ବ ପୋଷନ୍ତି ।
(ରଜା, ରାଣୀ, ମନ୍ତ୍ରୀ, ଗଧ ସମସ୍ତେ ନାଚନ୍ତି ! )

ଜଳହ୍ରଦରେ ଦୁଇ ବୀରାଙ୍ଗନା
ପରସ୍ପରେ କରନ୍ତି ବନ୍ଦନା !
ଜେ ନର୍ଦ୍ଦୋଷ ଜଳ ଦୋଷୀ ଦୁହେଁ ନଜ ନ୍ୟାସ୍ତ ଘୋଷ
ବଜ୍ରନାଦେ ଅନର୍ଗଳ କରନ୍ତି ବକ୍ତୃତା
ସାବାସ ଲୋ ବୀରନାରୀ, ସାବାସ୍ ବୀରସୁତା । ୧୩
ନାନା ଗୀତ ଗାଇ ଗ୍ରାମତଳେ
ବାଇ ବଂଶୀ ଗ୍ରାମର ଗୋପାଳେ
ଗ୍ରାମ ପ୍ରାନ୍ତେ ଗୋରୁ ଗୁଡ଼ ତରୁତଳେ ଧରି ବାଡ଼
ବୃନ୍ଦାଟିଏ ଆନନ୍ଦରେ ଚରନ୍ତି ଗୋଧନ,
ପତ୍ରଯୁକ୍ତ ତାଳ ଛତ୍ର ଦଶେ ଶୋଭାବନ । ୧୪

(ପଲ୍ଲୀଚିତ୍ର)

## ଚୁଟିଆ ମୂଷା

ଚୁଟିଆ ମୂଷା ରେ ଚୁଟେଇ ମୂଷି
ଧାନ ଅମାରକ ଖାଉଥା ବସି ।
କରୁଥା ଯାହା ତୋ ମନର ଖୁସି
ଘର ଗୁଡ଼ି ମୁହିଁ ଯାଉଛୁ ରୁଷି ।
ଟିକ ଟିକ ଧାନ ଶହେ ଭରଣ,
ସାତଟା ଅମାର କଲୁଣି ଶୂନ୍ୟ ।
ଗଣେଶ ବାହନ ଅଟୁରେ ମୂଷା,
ତୋତେ ମାରିବାକୁ ନାହିଁ ଭରସା ।
ପାଠ ନ ଆସିବ ମାରିଲେ ତୋତେ,
ଅବଧାନ ବେତ ମାରିବେ ମୋତେ ।
ଟୁଲୁବୁ ମୂଷା ରେ ଟୁଲେଇ ମୂଷି
ଖାଇବୁ ଯେତେକ ଖାଅରେ ଖୁସି ।

ଦୁଧ ପିଇବାକୁ କାନ୍ଦିଲେ କୃଷ୍ଣ,
କାନ କାଟି ନେଇ ସିବୁକି ଦୁଷ୍ଟ ?
ଆମାରେ ଯେତେକ ଧାନ ରୂ ଖାଉ,
ଗୁହାଳ ହାଣ୍ଡିରୁ ଗୁହାଳ ନେଉ ।
ବଡ଼ନ ଓଳିଆ କାଟ୍ କପାଳି
ଏତେ ଖାଇ ପେଟ ପୁରଇ ନାହିଁ ?
ଘରେ ବାହାର ଗୁ-ଭ ଟ୍ ଗୁଟ୍
କଖାରୁ ଗଛଟି ମୂଳକୁ କାଟ୍,
ଝାଉଁଳ ପଡ଼ଇ ପିଢ଼ା କଖାରୁ,
ଭେଭେ କଷିଫୁଲ ମୂଷା ରେ ମାରୁ !
ଖଗ ଗଡ଼ଯାଏ ବୁଡ଼ଇ ବେଳ,
ସାହୁ ପିଲମାନେ ହୋଇଣ ମେଳ,
ଗୀତ ଗାଇ ଗାଇ ବୁଲନ୍ତି ଗାଆଁ
"କନ୍ଦିଫୁଲ ଫୁଟେ ଠୋ—ଠା
ଚୁଟିଆ ମୂଷା କହୁ ଭାଇଚୁ
ଗୁହାଳ ମୁଠିଏ ଦେଇ ଯା ।"

(ନାନା ବାସ୍ନା ଗୀତ)

# ଚିନ୍ତାମଣି ମହାନ୍ତି

(୧୮୬୭—୧୯୪୩)

## ପଖାଳ ଓ କାଞ୍ଜି

ପଖାଳ ଉତ୍କଳେ ସଞ୍ଜୀବନୀ-ସୁଧା
ହରେ ଏକା କାଳେ କ୍ଳାନ୍ତି, ତୃଷା, କ୍ଷୁଧା ।
ମଧୁର ଶୀତଳ ପରିପୁଷ୍ଟିକାର
ତଥା ବଙ୍ଗଜନ ଲବ୍ଧ ଉପସ୍ଥାର ।
ଓଡ଼ିଆ ଜାତିର ପରମ ସମ୍ବଳ,
ବଢ଼େ ଉତ୍କଳାଙ୍କେ ଅମାନୁଷୀ ବଳ ।
ବର୍ଣ୍ଣି ନୁହେଁ ତାର ମହିମାର ଟେକ
ଗଙ୍ଗା ଗୋଦାବରୀ କରିଥିଲା ଏକ ।
ନୁହେଁ ଅତ୍ୟୁକ୍ତି ଅଣ୍ଟୁରୁ ପଖାଳ
ଜୀବନ-ସ୍ୱାସ୍ଥ୍ୟେ, ଜୀବନ-ସଖାଳ ।
ତୋହର ପ୍ରସାଦେ ଦରିଦ୍ର ମାନବ
ଭୁଞ୍ଜେ ଶାନ୍ତି, ପ୍ରୀତି, ସାଫଲ୍ୟ, ଗୌରବ ।
ଦେଖାଇ ସାହିତ୍ୟ-ଶିଳ୍ପାଦି ସମ୍ପଦ,
କରୁଥିଲୁ କାଳେ ଜଗତ ପ୍ରବଧ ।
ଜୀବନ, ଅଦୃଷ୍ଟ, ମନୁଷ୍ୟ ଗଠନ
ତବ କାର୍ଯ୍ୟ ଭୁକ୍ତ କରାଏ ସୃଜନ ।
ଉତ୍କଳ ଜନନୀ, ଉତ୍କଳର କୀର୍ତ୍ତି
ପ୍ରତ୍ୟେକରେ ତୋର ମୂର୍ତ୍ତି ଅବସ୍ଥିତ ।
ଅସମ୍ମାନ କଲେ ତୋ ମହା ମହତ୍ତ୍ୱ
ଉତ୍କଳର ସରିଯିବ ଉତ୍କଳତ୍ୱ ।

ବର୍ଣ୍ଣ-ବର୍ଣ୍ଣା କାନ୍ତି ପର୍ଣ୍ଣ-ବର୍ଣ୍ଣ-ମୟୀ
କୋଟି ବୃନ୍ଦେ ହେବ ନାହିଁ ତୋ ମହିମା ଗାନ ।
ପିତ୍ତବିନାଶିନୀ ବୃନ୍ତ ପଖାଳର କନ୍ୟା
ଦରବ ସମ୍ବଳ ଦେବୀ ବ୍ୟଞ୍ଜନର ଧନ୍ୟା ।
ପାଇଲେ ତୋହର ସ୍ୱାଦୁ ଦେବ ଦେବୀ ମାନ,
ଅମୃତ ଫୋପାଡ଼ି ଦେବେ ଜଗ ବୃନ୍ଦ ଜାଣ ।
ବ୍ରାହ୍ମଣର ନିତ୍ୟାଶ୍ରୟା ଅମ୍ଳରସମୟୀ,
ସୁଆ ପୋଳ ଦହି ତୋର ବଡ଼ ପ୍ରିୟ ସଖା ।
ମୂଳା ସହିତରେ ସଙ୍ଗେ ରସନା ଆସନେ,
ବସିଲେ ନ ମଣେ କିଏ ଅତୃପ୍ତି ଭୋଜନେ ।
ତୋହର ସଂସର୍ଗ ସଦା ଲୋଡ଼ା ଖାରୁ ମୁଣ୍ଡା,
ତୋ ବିହନେ କରେ ଭେଣ୍ଡି ମୁହଁଟା କୁଷ୍ମାଣ୍ଡା ।
କଳାଜିରା ବସୁଣର ସୃଷ୍ଟ ପାକ ପରେ,
ତୋ ସ୍ପର୍ଶ-ଶ୍ରୀ ଅଙ୍ଗ ଯେଉଁ ସୁବାସ ପ୍ରସରେ ;
ତାହାର ଆଘ୍ରାଣ ସୁଖ କି ବର୍ଣ୍ଣିବ କବି,
ଯାହା ଜିହ୍ୱା ଜଳେ ଉଠି ଯାଏ ନାହିଁ ଡୁବି ?
କରେ ତୋତେ ଉପାଦେୟ ଅଲଗୁ ସଂଯୋଗ
ଲୁଣ ସୁଧା ପଣ ଯେହ୍ନ ଅମରଙ୍କ ଭୋଗ ।
ଔଷଧ ରୂପରେ ପୁଣି ହେଉ ବ୍ୟବହୃତ,
ଜେତେବେଳେ ତୋର ନାମ ଅଷ୍ଟେ ଅମୃତ ।
ଅନୁଭବ କର ଯାଣି ତୋର ଏ ମହତ୍ତ୍ୱ,
ବୁଝିଲି ଯୁଗ ଯୁଗର ସୁଧା ଅଛୁ ଉଦ୍ଦେଶ୍ୟ ।

(ଭୌତିକ ଜଗତ)

## ଗୋପବନ୍ଧୁ ଦାସ

(୧୮୭୭-୧୯୨୮)

### ସ୍ୱରାଜ୍ୟ-ପଥେ

ଦେଶବାସୀ, ବନ୍ଧୁ, ଆତ୍ମୀୟ ସୋଦର,
କାରାଦଣ୍ଡ ହେଲ ମୋର କ କାତର ?
ଥିଲ ଅଗ୍ରୁ ଏହା ଜଣା ଶୁଣା କଥା,
ସେଥିପାଇଁ ତେବେ କପାଁ ମନେ ବ୍ୟଥା ?
କାତରତା ସିନା କାପୁରୁଷପଣ,
ବୀର ମାରେ ଅବା ମରି କରେ ରଣ ।
ପଛ ଘୁଞ୍ଚା ନାହିଁ ବୀରର ଜାତକେ,
ନ ମରେ ସେ କେଭେଁ ପଡ଼ିଣ ଆତଙ୍କେ ।
ଜାଣିଛ, ଲାଗିଛି ଏ ଶାନ୍ତ-ସମର ,
ନାହିଁ ଏଥି ତୋପ ହାତ ହତିଆର ।
ବଳ ନା ବଭବ ନାହିଁ ଏଥି ଲୋଡ଼ା,
ନାହିଁ ଲୋଡ଼ା ଯାନ ରଥ ହାତୀ ଘୋଡ଼ା ।
ଆଧ୍ୟାତ୍ମିକ ବଳେ ଲାଗିଛି ଲଢାଇ,
ଲଙ୍ଘିବାକୁ ପଶୁ ଦଳର ବଢ଼ାଇ ।
ଗୃହ ଧନ ଆଶା ଘରଦ୍ୱାର-ମାୟା,
ଯହିଁ ଶେଷେ ଯେ ସାଜ ଅଛି କାୟା,
ଅହିଂସା ବଳରେ ସେହିଁ ବଳୀୟାନ,
ଏ ରଣ ପ୍ରାଙ୍ଗଣେ ତାର ଏକା ସ୍ଥାନ ।
ଏଥିରେ ପ୍ରଥମ ଫଳ କାରାଦଣ୍ଡ,
ପଛେ ହୋଇପାରେ ଦେହ ଖଣ୍ଡ ଖଣ୍ଡ ।

ରୁହିଁ ଏହା ମୁହିଁ ପଶିଛୁ ସଗ୍ରାମେ,
ନାହିଁ ମୋ ବସ୍ତୁର ମାନ ଅପମାନେ ।
ମିଶୁ ମୋର ଦେହ ଏ ଦେଶ ମାଟିରେ,
ଦେଶ ବାସୀ ଚାଲି ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ-ପଥେ ଯେତେ ଗାଡ଼,
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।
ସ୍ୱାଧୀନତା ପଥେ ଚଳେ ହେଲେ ନର,
ମୋ ଜୀବନ ଦାନେ ହେଉ ଅଗ୍ରସର ।
ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛା
ପୂରୁ ଏ ପରାଣେ ଏହି ଶେଷ ଭିକ୍ଷା ।

× × ×

ଦେଖିଛୁ ଉତ୍କଳେ ଯେ ଦୃଶ୍ୟ ନୟନେ,
ଡରାଏ ତା ଭୂତ ପରାଏ ଶୟନେ ।
କେତେ କେତେ ଗୃହୀ ଭଲ ଭଲ ଲୋକ,
ନ ପାନ୍ତି ଦ ବେଳା ପେଟ ପୂର ଢୋକ ।
ଥିଲେ ଯେଉଁ ମଲ୍ଲ ଉତ୍କଳ ସୈନିକ,
ପାଇକ ପ୍ରଧାନ ମାଗୁଛନ୍ତି ଭିକ ।
ଦେହେ ନାହିଁ ମାଂସ, ଦୋହଲୁଛି କଣ୍ଠା
ଅନାହାରେ ଆହା ନ ଉଠଇ ଅଣ୍ଟା ।
ଅର୍ଦ୍ଧ ନ୍ତ ଯା ରୁଣ୍ଡେ ମାଣ ମୁଣ୍ଡ ଝାଳ,
ଦୁଷ୍ଟ ମହାଜନ, ଗ୍ରାମ କଣ୍ଟୁଆଳ
ପ୍ରଜାରକ୍ତ ଶୋଷି କେତେ ଜମିଦାର,
ହରନ୍ତି ସର୍ବସ୍ୱ ବଜାଇ ବାହାର ।
ଉତ୍କଳର କେତେ ବନ୍ୟା ନାରଖାର,
ନ କରନ୍ତି ପେଟ ପୁରାଇ ଆହାର ।
ଲଜ୍ଜା ଢାଙ୍କିବାକୁ ନ ପାନ୍ତି ବସନ,

ଫୁଟେ ନାହିଁ କେବେ ଅଙ୍ଗେ ଯଉବନ ।
ଚିକିତ୍ସା ନ ପାଇ ଘର କଣେ ପଡ଼ି,
ରୋଗ ଅନାହାରେ କେ ବା ମରେ ଗଡ଼ି ।
ଉଦର ଜାଳାରେ କେତେ ନରନାରୀ,
ଘର ଦ୍ୱାର ଛାଡ଼ି ଯାଆନ୍ତି ବାହାର ।
ପଡ଼ି ଅଛି ହଡ଼, କାହିଁ ବା ଗୁଳିଆ,
ଶ୍ମଶାନ ପରାୟେ ଦିଶେ ନଗ୍ରଟିଆ ।
ପଶିଗଲେ ଗ୍ରାମେ ନ ହୁଏ ଶବଦ,
ବେଦ ମନ୍ତ୍ର କିବା ଭାଗବତ ପଦ ।
ଗ୍ରାମ ବାସୀ ଗଣେ ନାହିଁ ପୂର୍ବ ମେଳ,
ଶିଶୁ ଖେଳେ ଦାଣ୍ଡ ନ ହୁଏ ଉଦବେଳ ।
ଶୋଇଅଛି ଭଙ୍ଗ ଗ୍ରାମ ଦେବାଳୟ,
ପୁରିଲଣି ପଙ୍କେ ବନ୍ଧ, ଜଳାଶୟ ।
ଗ୍ରାମର ଗୋକୁଳ କ୍ରମେ ଅତି କ୍ଷୀଣ,
ଯେଣେ ଅନାଇବ ସବୁ ଶ୍ରୀହୀନ ।
ନାହିଁ ଜନ ମୁଖେ ସତ୍ୟ-ଧର୍ମ-କାନ୍ତି,
ନାହିଁ ହୃଦେ ଶୌଚ, ପ୍ରାଣେ ସ୍ନେହ ଶାନ୍ତି ।
ପର ପ୍ରବଞ୍ଚନା କରନ୍ତି ବର୍ବର,
ଗ୍ରାମ ମୁଖିଆଙ୍କ ନିତ୍ୟ କାରବାର ।
ଆତ୍ମୀୟ ସୋଦର ପ୍ରତିବେଶୀ ସହ,
ନୀଚ ସ୍ୱାର୍ଥ ଲାଗି ଲାଗନ୍ତି କଳହ ।
ରାଜଦରବାରେ ବୃଥା ଅର୍ଥକ୍ଷୟ,
ଶେଷେ ସର୍ବଦଶା ଜନ୍ମ ପରାଜୟ ।
ଶାଶନ କୁହୁକେ ସର୍ବେ ଅବସନ୍ନ,
ବ୍ୟାଧ ଜାଲେ ପଡ଼ି କପୋତ ଯେସନ ।
ଜାଲେ ହଣାହଣି ଦୁଦଶା ନ ଜାଣି,

ଫଳେ ସର୍ବନାଶ ଧର୍ମ-ଅର୍ଥ-ଜ୍ଞାନ ।
ଦେଖନ୍ତି ବିଦେଶୀ ଦ୍ରବ୍ୟ ଝଲ ମଲ,
ଲୋଡନ୍ତି ପତଙ୍ଗ ଯେସନ ଅନଳ ।
ହେଉଅଛି କଂସା, ହଣ୍ଡା, ଜମି ବିକା
ବୁଡ଼ିଲଣି କେତେ ଜାତିର ଜୀବିକା ।
ଏହା ପରେ କ୍ରମେ ବଢ଼େ କରଦାଉ,
ଏଦେଶ ରହିବ କେତେ ଦିନ ଆଉ ?
ସରିଲଣି ସାର ପଡ଼ିଲଣି ସିଠା ।
ନାହିଁ ଗର୍ଭେ ପୁର, ଦିଶେ ପୋଲପିଠା ।
ହୁଡେଇଛି ଖଣ୍ଡା, ଢୋହଲଇ ଖାପ,
ରହିଛି ଅଙ୍ଗାର ନାହିଁ ତେଜ ତାପ ।
ପଡ଼ିଅଛି ପିଣ୍ଡ ଯାଇଛି ପରାଣ,
ଦେଖିଲେ ଏ ଦେଶ ବୁଡ଼େ ବୁଦ୍ଧିଜ୍ଞାନ ।
ସଢି ମଞ୍ଜ ଗଛେ ରହିଛି ବକଳ,
ସୁନ୍ଦର ସଜଳ ଚିକଣ ବିକଳ ।
ଫେରିବ ଏ ଦଶା ସୁଖୀ ହେବ ପ୍ରଜା,
ଉଡ଼ୁନା ଧାନ କି ସତେ ହେବ ଗଜା ?
ଉତ୍କଳର ଏହି ଚିତ୍ର ନିଦାରୁଣ,
ନାଚିବ ମୋ ଆଖି ଆଗେ ପୁଣ ପୁଣ ।
ଏବେ କାରାବାସ ଦୂର ପରଦେଶ,
ଦେଶ ଦଶା ଚିନ୍ତି ମନେ ଦେଲେ କ୍ଳେଶ,
କି ଲଭିବ ପରାଣେ ପାଇବ ଆଶ୍ୱାସ
ପୋଛିବ ଲୋତକ ଧରି କି ସାହସ ?
ହେ ଉତ୍କଳ ବାସୀ, ଆତ୍ମୀୟ ସ୍ୱଜନ,
ମୁଁ ଯେବେ ତୁମ୍ଭର ସେନେହ ଭାଜନ ;
କର ଯୋଡ଼ି କରେ ବିନତି ଏତିକି

ଅସହଯୋଗରେ ରଖିବ ମଥକ ।
ଛାଳି ଦଅ ପ୍ରାଣ ସ୍ୱରାଜ୍ୟ ସାଧନେ,
ଆଶ୍ୱାସିବ ଯେବେ ମୋତେ ନବାସନେ ।
ନ ହୁଅ ନୀରସ, ନ ହୁଅ ଦୁଃଖିତ,
ଉତ୍କଳର ଦେଖି ଦୁଃଖମୟ ଚିତ ।

(ବନ୍ଦୀର ଆତ୍ମକଥା

## ନୀଳକଣ୍ଠ ଦାସ

(୧୮୮୪-୧୯୬୭)

### ରାମଚଣ୍ଡୀରେ ସନ୍ଧ୍ୟା

କି କରାଳ ଆଜ ରଜନୀ ! ବହେ ଝଞ୍ଜା ପବନ ;
ତାରା ନ ଦିଶଇ ଗଗନେ ଶୁଭେ ଘନ ଗର୍ଜ୍ଜନ ।
ମୂଷଳ ଧାରରେ ବର୍ଷିକା ଦିଏ କମ୍ପାଇ କେବେ ;
ଶୋଇ ପଡ଼ିଛ ତ ବାପା ହେ ଜାଣୁ ନଥିବ ଲବେ ।
ଆଜ ଯେ କୁଆଁର ପୁନିଅଁ କେତେ ସୁଖ-ସରଧା ;
ମାଆ ଭଉଣୀଙ୍କ ଆଦର ନବ-ବସନ-ପିନ୍ଧା ।
ମନେ ପଡ଼ୁ ନାହିଁ ବାବୁ ହେ ଲାଗି ଯାଉଛୁ ନିଦ ;
ମାଆ ଭଉଣୀଏ ଭବନେ ' ଭଜୁଥିବେ ବିଷାଦ ।
ଲୁହରେ ହୃଦୟ ଲଗାଇ ସୁଝିଥିବେ ଜନନୀ ;
ପିଠା, ପଣା ଖାଉ ନ ଥିବ ଆଜ ସୁଖେ ଭଗିନୀ ।
ପବନ ଝଙ୍କାରେ ଶୁଣୁ ଯେ ଥିବେ ତାଙ୍କ ଉମ୍ଭର ;
ପଲକେ ପଲକେ ଚମକ ହେଉଥିବେ କାତର ।
ଫାଟି ଯାଉଥିବ କାହାଳ ତାଙ୍କ ହୃଦ-ସାଗରେ ;

ନିରାଶାରେ ଆଶା ଚମକେ  ଧ୍ରୁବ ସେତୁ ଜାଗରେ ।
ଜନନୀର ଗୁରୁ ବେଦନା  ଭଗିନୀର ବିଷାଦ ;
ସୁମର ସପନେ ଚମକି  ସ୍ୱର୍ଗେ ଯିବଟି ନଦ ।
ଶୁଅ ଶୁଅ, ଧନ ଆସେ  ଶୋଇ ଥାଅରେ ଶିଶୁ ;
ପଥ ଶ୍ରମ କରି ଆସିଛ,  ଶ୍ରମେ ବିରାମ ମିଶୁ ।

( ୨ )

ବନ୍ଧୁ ବାଲ୍ୟବନ୍ଧୁ ତେଜି ହେ,  ଆଜ ଆସିଛ ସ୍ୱଳ୍ପ ;
ସଇକତ-ନଦୀ-ଗରଭେ  ପଣି ହୋଇଛ ପାରି ।
ଉରଗ-କୁଟିଳ-ତଟିନୀ  ଭବ ଅପାର ନୀରେ ;
ବିସ୍ମୟ ସୋହାଗେ ଭେଟିଛ  କେତେ ବାଙ୍କେ ପ୍ରାନ୍ତରେ ।
ବାଟ ଭୁଲି କେତେ ଅନ୍ଧାରେ  ସହ୍ୟ ବରଷା ଧାସ ;
ନବ ଗୁଡ଼ୁଜଙ୍କ ଲଢକା  ମାଡ଼ି ସ୍ୱଳ୍ପ ପସ ।
କାନ୍ଧେ ଭାର ଦେଇ ଏ ସବୁ  ପଥେ ସନ୍ଧ ନରତେ ;
କୁରୁହଳେ ପୁଣି ଶାମୁକା  ସାଉଁଟିଛ ହେ କେତେ ।
ନୂଆ ଜାଣିଟିଏ ଝଲାରେ  ଦେଖି ନଈ-ମୁହାଣେ ;
ନାଚ ଉଠିଅଛ କି ଭାବ  ବନ୍ଧୁ ଶିଶୁ ପରାଣେ ।
ସେ ଭାବ ମୋହର ନାହିଁ ହେ  କାହୁଁ ବୁଝିବ ମୁହିଁ ?
ଶିଶୁ ମେଳେ ଯିନା ଭୁଲୁଛୁ  ନାଳ ଯାଉଛୁ ବନ୍ଧୁ ।
ସୁମରିଲେ ପଦ ବେଦନା  ଭାର ନ ଦଶେ ମୋତେ,
ଭରଟିଏ ନେବ ଭାବିଲେ  ପାଦ ନ ପଡ଼େ ହାତେ ।
ନିରର୍ଥକ ସେ ତ ଶାମୁକା,  ନାହିଁ ରୁଚ ମୋହର ;
କି ଅଛି ତହିଁରେ, କି ପାଇଁ  ବେଳା କଲ ହେ ଦୂର ?
ବୁଝାଇ ଦେବ କି ବାଳକେ  ଥରେ ଶୁଣିବ ମୁହିଁ ?
ଶି ଖାଇଚ ନଢ, ଶିଖିବ  ଆଜ ପରାଣ ଦେଇ ।
ପ୍ରବୀଣ-ବିଗ୍ରହେ ଉଠିବ  ଶିଶୁ ହୃଦସ୍ଥ ନାଚ ;
ସୁମର ଝରିବ ଆସିଛୁ  ମୁହିଁ ବେଳା ମୁରୁଛୁ ।

( ୩ )

ରହ ରହ ବାଆ, ବତାସି  ରହ ବରଷାଧାର ;
କୁଆଁର ପୁନଅଁ ହେଉ ରେ  ଆଜ ରଜନୀ ସାର ।
ଉଠି ଆସୁ ନୀଳ ଲହରୀ  ଭେଦ ତାରକା ରାଜ ;
ନଶାମଣି ଶୋଭୁ ଗଗନେ  ମଣି-ମୁକୁର ମାଜ ।
ସରଗୁ ରଜତ କରଣ  ଖେଳ ଯାଉ ଭୂତଳେ ;
ସରସ-ବାଲୁକା-ବିତାନ  ହସୁ ଜୋଛନା-ଖେଳେ ।
ପାଦପ-ପତର ଗହଳେ  ଝଲ ଝଣ୍ଟିଲ ଗ୍ରୁଇ ;
ଦୂର ଚକ୍ରବାଳ-ସୀମନ୍ତ  ଭଗ୍ନ ମନ୍ଦର ତହିଁ ।
ପୁନଅ-ଜୁଆର ପୁଲକେ  ଭରି ତଟିନୀ ମୁଖ ;
ମୃଦୁଳ-ଲହରୀ-ହିଲ୍ଲୋଳେ  ସ୍ମୃତି-ସ୍ୱପ୍ନ-ମୟୂଖ,
ଶବ୍ଦଲିତ-ନଦୀ-ଉରସେ  ନଭ ବିମଳ-ରୁଚ ;
ବନ୍ତ ଚୂଳେ ଶିଶୁ ଦେଖିବେ,  ହୃଦ ଉଠିବ ନାଚ ।
ମୁହିଁ ଦିନେ ଶିଶୁ ଥିଲଇଁ,  ମନେ ପଡ଼ୁଛି ମୋର ;
ବସି ଶିଶୁ ମେଳେ ଦେଖନ୍ତ  ଏ ନଭବ ରୁଚିର ।

( ୪ )

ଅସ୍ତ ହୁଅନ୍ତୁ କ ବତାସି,  ମେଘ ଯାଆନ୍ତେ ଗ୍ଳଳି
ପୁନଅଁ—ବନ୍ଧାରେ ବୁଲନ୍ତେ  ଶିଶୁ ଏଥି ବାହାରି ।
ଚନ୍ଦ୍ରିକ ଧବଳ ବିତାନେ  ସିକତିଲ ପ୍ରାନ୍ତରେ ;
ଶିଶୁ ସଙ୍ଗେ ବସି ପୁହାନ୍ତ  ରାତି ମୁଁ ଉଜାଗରେ ।

( ୫ )

କାହିଁକ ଗରଜ ବତାସି  ଆଜ ନୁହେଁ ତୋ ଦିନ ;
କୁମାର-ଉତ୍ସବ-ଜାଗରେ  ଜଣି ବିଶ୍ୱ ପ୍ରସନ୍ନ ।
ନଭସ ନୀଳିମା ବିକାଶୁ  ଶୁଭ୍ର ଶାରଦ ହାସେ ;
ଲବ୍ଧକ ସାଗରେ ରଜତ  ବିମ୍ବ ଉଠୁ ଆକାଶେ ।

ଖେଳନ୍ତି ପ୍ରାନ୍ତରେ ବାଳକେ ମେଳି କୁରଙ୍ଗ ପରି,
ଘଟଣେ ପୁଣି ଦେଖି ଆସନ୍ତି ଭଗ୍ନ କୋଣାର୍କ ଶିଖି ।

× × × ×

( ୭ )

ମନେପଡ଼ୁଛି ମୋ ସେ ଦିନ, ଯେବେ ବାଳୁତ ପଦେ,
କୋଣାର୍କ-ଆବେଗେ ପରାଣ ଭରି କିଶୋର ମୂଦେ ;
ବାଲୁକୁଞ୍ଜ ଗୁଡ଼ ପ୍ରାନ୍ତରେ ପଶି କୋଣାର୍କ ଦେଖି,
ଚମକ ପୁଲକେ ସ୍ପନ୍ଦିଲି, ହୃଦେ ରଖିଛି ଲେଖି ।
ବାରୁଣୀ-ତାମସ ଅରୁଣ- ସଙ୍ଗେ ପ୍ରାଚୀ-ଲଲାଟେ,
ଧୂସର ଉଳକ ମନ୍ଦିର ଦିଶେ ସାଗର-ତଟେ ।
ଫେନ ତାରକତ-ନୀଳମା ଭେଦ ଉଠିଲା ରବ ;
ପୁଚ୍ଛୁଥିଲି, "ଏକ କୋଣାର୍କ ଉତ୍କ-ଖାରଣ ରବ ?"
ଲଘୁ ସେ କିଶୋର ଚରଣ ସିକତିଳ ପ୍ରାନ୍ତରେ ;
କୁରଙ୍ଗ ବିଭବେ ପଶିଲା ବନ୍ତ ବନ୍ୟ ପ୍ରସାରେ ।
ଶାବକ ଗହଣେ ପଳାଏ ପଥେ କୁରଙ୍ଗ ବାଳା,
ଗ୍ରୀବା ଭଙ୍ଗେ ଦୂରେ ଦେଖାଏ ଲଘୁ ତରଳ ଲୀଳା ।
ଦେଖି ନ ଦେଖିଲି ସେ ଛବି ; ଗୁନ୍ଦ ଫୁଟିଲା ହସି,
ତରଳ ରଜତ ପ୍ଲାବନେ ଗଲା ସିକତା ଭାସି ।
ଉଠି ପଡ଼ି କେତେ ଅବାଟେ ଭଗ୍ନ ଶଇଳ ଭେଦ ;
ଅଦୂରେ ମନ୍ଦିର ଚତ୍ୱରେ ଚଢ଼ି ଦେଖିଲି ସାଧୀ ।
ପୃଥୁ ବାଜୀବର, ପର୍ଯ୍ୟାଣେ ରୁଙ୍ଗ ବପୁ ଷ୍ଟୀତ ;
ଦେଖି ଶିଶୁ ପ୍ରାଣେ କି ହେଲା ? କ୍ଷଣେ ରହିଲି ସ୍ଥିର ।
ଶିଳ୍ପ-ବିରଚନ ଜାଣିଲି ; ଗଲି ଉରସି ପାଶେ,
ଦେଖିଲି କୋଚନା-ଲବଣ୍ୟେ କିବା ମୂରତ ହସେ ।
ବାରମ୍ବାର ଭ୍ରମେ ଦେଖିଲି ପୁଣି ନରେଖି ଛବି,

ବାରମ୍ବାର ଚଣ୍ଡେ ଚମକ, ଗଲ୍ଭ ସ୍ୱଳକେ ଦ୍ରବ ।
ସ୍ଖଳିଲ୍ ମନ୍ଦିର ଲଲାଟେ, ବୁଲ୍ଭ ଦେଖିଲ୍ କେତେ ;
ସୂଚୀ-ଶିଳ୍ପ, କାରୁ-ଖୋଦନ, ରୁଙ୍ଗ ମୂରତ ଯେତେ ।
ଜୃମ୍ଭନ-ମନ୍ମୁଖ-ରସାଣେ ସବୁ ଦଶିଲ ଚୋରା,
ଜୀର୍ଣ୍ଣ କଳଙ୍କିତ ପଥର, ସବୁ ଲାବଣ୍ୟ-ଭରା ।
ଜୋଛନାର ସ୍ଥିର ଦଶିଲ ସ୍ତରେ ସ୍ତରେ ମନ୍ଦିରେ ;
କାଳର ଦ୍ୱାଭଙ୍ଗ ଲୁଚିଲ ପୂର୍ଣ୍ଣ ଜୋଛନା ପୂରେ ।
ପ୍ରତ୍ୟେ କୋଣାର୍କ ଦେଖିଲ କେତେ ଜୀବନ୍ତ ପର ;
ସୁଧାଂଶୁ କରଣେ ସତେ ଧା ପଡ଼େ ଅମୃତ ଝର !
ଦବା ଅଛଦାମେ ଶିଶୁ ଏ କାଳ-ଭଙ୍ଗୁର-ଲେଖା,
ଦେଖିଛନ୍ତି ; ରହ ଝଟିକା, ଫୁଟି ଉଠୁ ଚନ୍ଦ୍ରିକା ।

(କୋଣାର୍କେ)

## ଗୋଦାବରୀଶ ମିଶ୍ର

(୧୮୮୬-୧୯୫୬)

### କାଳିକାଇ

( ୧ )

"ଭଲକର ନାଆ ବାହା ରେ ନାଉରି !
ଝିଅକୁ ମାଡ଼ୁଛି ଡର ;
ଗଢ଼େ ଗଢ଼ ଲୌକ ' ବୁଢ଼ି ବସିଥିବେ,
ଝିଅ ଯିବ ଶାଶୁଘର ।"
ଭଲକର ନାଆ ବାହୁଛି ନାଉରି,
ଭଲେଇ କରୁଛି ଠିଆ ;

ମାମୁଁ ଭଉଣୀର କୁଣ୍ଡରୁ ଆସେ ଲୋ
ବହ ସୁଲୁ ସୁଲୁ ବାଆ ।
ଦନ ବଣ ଘଡ଼ ଦେଲଣିଟି ଆସି
ଖଗ ମାରେ ଘୂର୍ଣ୍ଣି ଘୂର୍ଣ୍ଣି,
ପାଞ୍ଚକୋଶ ବାଟ ଯିବାକୁ ଅଛୁ ଲୋ
ବେଳ ତ ପାଇବ ନାହିଁ ।

(୨)

ନାଉର ବାପୁଡ଼ା କାତ ମାରୁଅଛି
ଜୁଦାସେ ଗାଉଛି ଗୀତ ;
ନାଆ ଉଡ଼ଯାଏ ପବନ ପ୍ରାଣ୍ଟେ ଲୋ,
ଜଣା ନ ପଡ଼ଇ ବାଟ ।
ମାଆ ଭଉଣୀକ ସାଥୀ ସଙ୍ଗାତଙ୍କୁ
ଝିଅ ରେ ଅସିଛି ଗୁଣ,
ନାଆରେ ବସି ସେ ତାଙ୍କର କଥା ଲୋ
ହୁଏ ନରନ୍ତର ଜଳ ।
ମାଆ ଭଉଣୀଏ ସାଥୀ ସଙ୍ଗାତ ସେ
ରହିଲେ ଦୂରସ୍ଥେ କାହିଁ,
ପରତେ ନୋହୁଛି, ଆଉ କି ଦିନେ ଲୋ
ଫେର ସେ ଦେଖିବ ଯାଇ ।
ନାଆ ଚାଲୁଅଛି ପବନ ସମାନେ
ମୁହୂର୍ତ୍ତେ ନ ହୁଏ ଅସ୍ଥ ;
ଚନ୍ଦ୍ରା ଯେତେ ତାର ବଣ ପାହାଡ଼ ଲୋ
ଅନାଇ ଦେଖନ୍ତା ଝିଅ ।
ଘଣ୍ଟି ଶିଳା ଶିଖେ ଘୁଞ୍ଚି ସେ କହନ୍ତା
"ଦଥରେ ମେଲଣି ମୋତେ

ଭେଟ ଆଉ ଧନେ ନୋହିବ ଜୀବନେ
ଯାଉଛୁ ଘୋର ବନସ୍ତେ ।"
ସାଳଆ ନଈ ତା ଜଳ ଧନ ସାଥୀ
ସୁଖେ ବୁଲୁଥାଏ କୂଳେ ;
ବେଳେ ସୁଏ ତାର ସ୍ନାହାନ ସାଗ ଲେ
ହସି ଲେଉଟଇ ଘରେ ।
କାଲି ଅନ୍ଧାରୁ ସେ ଗୃଲି ଯେ ଅଇଲା
ଦେଖି ତ ନାହିଁଛୁ ତାକୁ,
ଜଣ ଖ୍ୟାତ ନଈ; ନାଆଁ ଟି ତାର ଲେ
ଛନ କୋଢ଼ କୋଣେ ଡ଼ାକୁ ।
ମାଆ ଭଗବତୀ ପୀଠ କୂଳେ ତାର
"ଜଗତ ତାରଣୀ" ନାଆଁ ;
ଡାକ କହୁଥାନ୍ତା, ନୋହିଲ ଆଉ ଲେ,
"ଯାହା ମୋ ଥିବୁଟି ମାଆ ।"
ନାଆ ଆସି ହେଲା ଦଣ୍ଡକେ ପ୍ରବେଶ
ଚଢ଼େଇହଗାର ତଳେ ।
ଘଣ୍ଟିଲା ଆଉ ନ ଦଣେ, ଲୁଚ ଲେ
ରହିଲା ସାଳଆ ଦୂରେ ।
ସ୍ୱହୁଁ ସ୍ୱହୁଁ ଆସି ଛୁଇଁଲା ତ ନାଆ
ମହି ଚଲଜାରେ ପୁଣି ;
ଝିଅର ଆଖିରୁ ଝରଇ ଲୁହ ଲେ
ଛନ୍ତ ପିନ୍ଧା ଟୁଟ କାନ ।
"ପାଣିବୁଦ ବୋଲି ଗାଇଜ ପୁଣି ଯେ
ଚଲକା ମହିରେ କାନ୍ଧି ;
କେମନ୍ତେ ମୂର୍ଚ୍ଛିଲ ଝିଅକୁ, ବାପା ହେ
ଏବେ ଦୂରେ ଦେବା ପାଇଁ ?

ବର ବୋଲି ଯାର ଧନ୍ଦାଇଲ ହାତ
କି ତାର ଦେଖିଲ ଶିଶ୍ର ?
ରୂପ ବିଦ୍ୟା ଆଉ ବିଭବ ବାପା ହେ
ଉଣ୍ଡିଏ ତନକ ବଳ ।
ମନ୍ତ୍ରୀମଣ୍ଡଳେ ତ ନ ଥିବେ କେ କାହିଁ
ମୋ ଭଳି ନରେଶ ଜନ,
ଏ ମହା ସମୁଦ୍ର ମଝିରେ, ବାପା ହେ
କେମନ୍ତେ ବଞ୍ଚିବ ଧନ ?
ଏତେ ସ୍ଥାନମାନ ଜଣବାକୁ ଯେବେ
ମନରେ ଥିଲା ବସ୍ତୁର,
ଏଗୁଡ଼ ଣାଳେଟି, କମାଇ ବାପା ହେ
ଉଣ୍ଡି ଚପି ନ ମାଇଲ ?
ଝିଅକୁ ନଷ୍ଟିଲେ ଦେଇଛୁ ପଠାଇ
ବନନ୍ତକୁ ଜାଣୁ ଜାଣୁ ;
କପାଳ ଆବର ଯାଉଛୁ ବୋଉ ଲୋ
ପାସୋର ନ ଦେବୁ ମନୁଁ ।"

( ୪ )

ନାଆ ଉଡ଼ଯାଏ ପବନ ସମାନେ
ନାହିଁ କ୍ଷଣେ ହୁଏ ଅସ୍ତ ;
ଝିଅ ବସିଅଛୁ ରୁନଟି ହୋଇ ଲୋ
ନେହୁ ବହୁଯାଏ ଲୁହ ।
"ନାଆ ଗ୍ଭଲଅଛୁ ପବନ ସମାନେ
ନ ମାନେ ପାଣି ପଥର ;
ରୂନ ହୁଅ, ଜାଇ, ନ କାନ୍ଦ ଆଉ ଲୋ
ଏଇ ବଣିଲଣି ଗଡ଼ ।"

ଏତେ ବୋଲ୍ ବାପା   'ଝିଅର ଆଖିରୁ
ଦେଲେ ଲୁହ ଧାର ପୋଛୁ ;
ଯେତେ ପଣ ତାଙ୍କୁ   ବୁଝାନ୍ତ ବସି ଲୋ
ଜାଇ ବୁଝୁନାହିଁ କଛୁ ;
"ଭଲକର ନାଆ   ବୁଢ଼ା ରେ ନାଉରି
ଝିଅକୁ ମାଡ଼ୁଛୁ ଡର ;
ଏବେ କାଲେ ଜାଇ   ନାଆରେ ବସୁଛୁ
ଯିବ ବୋଲି ଶାଶୁଘର ।"

(୫)

ଭଲ କର ନାଆ   ବୋହୁଛୁ ନାଉରି
ଭଡ଼ ମାରୁଅଛୁ କାତ ;
ସୁଲୁ ସୁଲୁ ବାଆ   ବୋହୁ ଆସୁଛୁ ଲୋ,
ଜଣା ନ ପଡ଼ଇ ବାଟ ।
ନାଆ ଛୁଟି ଆସି   ଦଣ୍ଡିକ ଭିତରେ
ଗଣ୍ଡରେ ପଡ଼ିଲା ଯାଇ,
ଥିର ହୋଇ ହେଲା   ନାଉରି ଠିଆ ଲୋ
କାତ ଆଉ ପାଉନାହିଁ ।
ଶୈଳର ଶିଖରୁ   ଚଳି ମେଘ ଖଣ୍ଡେ
ଉଠେଇ ଆସିଲା କାହୁଁ
ଲୁଚିଗଲେ ତହିଁ   ସୂର୍ଯ୍ୟ ଦେବତା ଲୋ
ଖବର ନ ପଡ଼ଇ ଆଉ ।
ମାଡ଼ି ଆସୁଅଛି   ଧାଡ଼କାରେ ମେଘ
ଜଟିଆ ନାସିକା ଧରି
ବରଷା ବତାସି   ଗରଜୁ ଅଛି ଲୋ
ଦନ ଦଣେ ସ୍ୱଢ ପର୍ବ ।

ନାଆ ପଡ଼ିଅଛୁ ମଝି ଗଣ୍ଡେ ଆସି
ବୁଡ଼ିଯିବ ହାଣ୍ଡି ଛଡ଼,
ଟଳମଳ ହୋଇ ଟଳୁଛୁ ନାଆ ଲୋ
ନାଉରିର ବଡ଼ ଶୀତ ।
"ଭଲ କରି ନାଆ ବୁହାରେ ନାଉରି
ନାଆ ହେଲା ଟଳମଳ
ବରଷା ବତାସି ଗରଜି ଆସୁଛି
ଝିଅକୁ ମାଡ଼ୁଛି ଡର ।"
ବରଷା ବତାସି ଗରଜି ଆସିଲା
ନାଆ ନୁହେଁ ଅସ୍ଥ କଣ,
ଏକା ପବନକେ ପାହାଡ଼େ ଯାଇ ଲୋ
ପିଟି ହୋଇଗଲା ଚୂର ।

( ୭ )

ମେଘ ଖୁଲିଗଲା ମେଘର ବାଟେ ସେ
ବତାସି ହୋଇଲା ଥିର ;
ପଡ଼ିଗଲା ଖବର ନିର୍ମଳ ହୋଇ ଲୋ
ପାଣି ହୁଏ କଳ କଳ ।
ବାପା ପଚାରନ୍ତି ଖୋଜି ନାଉରିରେ
"ଝିଅ ମୋର ଗଲା କାହିଁ ।"
ବୁଜି ଆଖି ଠିଆ ନାଉରି ନଜେ ଲୋ
ତୁଣ୍ଡ ତା ଫିଟଇ ନାହିଁ ।
ଟଳଢା ପାଣିରେ ଦୋଳୁଛି ଲହରୀ
ବୋହୁଛି ଶୀତଳ ବାଆ ;
ଘୋର ଘୋର ଖବ ଢଳି ଯାଉଛି ଲୋ
ଖେଳୁଛି ସହସ୍ର ନାଆ ।

ପାହାଡ଼ ଚଢ଼େଇ                ଉଡ଼ୁଅଛୁ ସବୁ
ମନେ କି ଅଛୁ ତା ଧୋକା ?
ପାଣି ତଳେ ଛୁଇ                ଭୁଲି ଯାଉଛୁ ଲୋ
ଜାଇଟି ନାହିଁଛୁ ଏକା ।

( ୭ )

ବାପା ଫେରି ଆସି                ବୋଉଙ୍କ ଆଗରେ
କଥା ନ ପାରନ୍ତି କହି ;
ଆରଡନ ପୁଣି                ନାଉର ଗଳ୍ପ ଲୋ
ନାଆ ସେଇ ବାଟେ ବାହି ।
କେତେ''ଣ' ବରଷ                ହେଲାଣି ସେ ଦିନୁ
ଗଣିକି କହିବ କିଏ ?
ନାହିଁ କିଛୁ ଆଉ                ସେ କାଳ କଥା ଲୋ
କାଇ ରହୁଅଛୁ ଜୀଏ ।
ବାଲୁଗାଁଆ କୂଳୁ                ନାଆ ଗଲା ବେଳେ
ପାରିକୁଦ ଗଡ଼ଠାକୁ,
ପାହାଡ଼ ସମୀପେ                ମଣିଷ ବୃନ୍ଦ ଲୋ
ନ ଶୁଣା ଯାଏ କାହାକୁ ?
ବରଷା ଢଳାସି                ଝଲକାରେ ଆଜ
ହୁଏ ନାହିଁ ତେଡ଼େ ଭଳି,
ଆପଦେ ବିପଦେ                ଜଣାପଡ଼ଇ ଲୋ,
ସାହା କିଏ ଥିଲା ପର ।
ନାଉରି ନେଉଟ                ପାହାଡ଼ ବାଟେ ସେ
ନାଆ ନେଇ ଗଲା ବେଳେ ;
କାମେ ଆପଣାର                ଶୁଭ ମନାସି ଲୋ,
ଜୁହାର କରଇ ଥରେ ।

ଡୋଳକେ ପାହାଡ଼ ଶୀତେ କାଳେ ଭଲ
ସୁନ୍ଦର ଦେଖିଲଟିଏ ;
ସେ ଦେଖିଲେ ଲୁଚି ସମୁଦ୍ରେ ଯେତେ ଯେ
ରତ୍ନର ଦେବତା କିଏ ?
ସୂର୍ଯ୍ୟ ବୁଡ଼ିଗଲେ, ଜଣବଦ ଯେବେ
ହୁଏ ସବୁ ସଞ୍ଜବେଳେ ;
ଏକା ହୋଇ ଯାଇ, ଲୋକେ କହନ୍ତି ଯେ
ବୁଲି ଯେ ଥାଏ ପାହାଡ଼େ ।
ନେନ୍‌ ବନ୍ଧୁଥାଏ ଲୁହ ଦୁଇଧାର
ଶୁଖି ଯାଇଥାଏ ମୁହଁ ;
ହେଲେ, ଠାଣ ହାତ, କାନ୍ଦି, କାହାଁକୁ ଯେ
ନବଣ୍ଟାଇ କରେ ଅସ୍ତ ।
ସେ ଯୋଗେ ନୋହୁଛି ଭାଳଜାଇ ଗଣ୍ଡେ
ଭଡ଼େ ଅଉ ଝଡ଼ ବାଆ ;
ତଣ୍ଟି ବୁଡ଼ିବାର ଶୁଣା ନ ଯାଏ ଯେ,
ଯଣ୍ଟି ଯେତେ ବୁଡ଼ୁ ନାଆ ।
ଭାଳଜାଇ ବଡ଼ ପ୍ରତ୍ୟକ୍ଷ ଦେବତା,
କୋଟି କୋଟି ଦଣ୍ଡବତ ;
ପାହାଡ଼ର ନାଆଁ ସଭିକେ ଖ୍ୟାତ ଯେ,
'ଭାଳଜାଇ ପରବତ' ।

(ଅଲେଖିକା)

## ଲକ୍ଷ୍ମୀକାନ୍ତ ମହାପାତ୍ର

(୧୮୮୮-୧୯୫୩)

### ବନ୍ଦେ ଉତ୍କଳ ଜନନୀ !

ବନ୍ଦେ ଉତ୍କଳ-ଜନନୀ

ଚାରୁ ହାସମୟୀ ଚାରୁ ଭାଷମୟୀ

ଜନନୀ, ଜନନୀ, ଜନନୀ । ଘୋଷା ।

ପୂତପୟୋଧି-ବିଧୌତ-ଶରୀରା
ତାଳ-ତମାଳ-ସୁଶୋଭିତ-ତୀରା
ଶୁଭ୍ର-ତଟିନୀ-କୂଳ-ଶୀକର-ସମୀରା
ଜନନୀ, ଜନନୀ, ଜନନୀ । ୧ ।

ଘନ-ଘନ-ବନ-ଭୂମି ରାଜିତ ଅଙ୍ଗେ
ନୀଳ-ଭୂଧର ମାଳା ସାଜେ ତରଙ୍ଗେ,
କଳ-କଳ-ମୁଖରିତ ଚାରୁ ବିହଙ୍ଗେ
ଜନନୀ, ଜନନୀ, ଜନନୀ । ୨ ।

ସୁନ୍ଦର-ଶାଳି ସୁଶୋଭିତ-କ୍ଷେତ୍ରା
ଜ୍ଞାନବିଜ୍ଞାନ-ପ୍ରଦର୍ଶିତ-ନେତ୍ରା
ଯୋଗିଋଷିଗଣ-ଉଟଜ-ପବିତ୍ରା
ଜନନୀ, ଜନନୀ, ଜନନୀ । ୩ ।

ସୁନ୍ଦର-ମନ୍ଦିର-ମଣ୍ଡିତ-ଦେଶା
ଚାରୁ-କଳାବଳୀ-ଶୋଭିତ-ବେଶା
ପୁଣ୍ୟ-ତୀର୍ଥଚୟ-ପୂର୍ଣ୍ଣ-ପ୍ରଦେଶା
ଜନନୀ, ଜନନୀ, ଜନନୀ । ୪ ।

ଉତ୍କଳ ଶୂରବର-ଦର୍ପିତ-ଗେହା

ଅରିକୁଳ-ଶୋଣିତ-ଚର୍ଚ୍ଚିତ-ଦେହା
ବଣ୍ଟ ଭୂମଣ୍ଡଳ-କୃତବର- ସ୍ନେହା
ଜନନୀ, ଜନନୀ, ଜନନୀ ।୫ ।
କବିକୁଳ ମୌଳି-ସୁନନ୍ଦନ-ବନ୍ଦ୍ୟା
ଭୁବନ-ବଘୋଷିତ-କୀର୍ତ୍ତି-ଅନନ୍ୟା,
ଧନ୍ୟେ, ପୁଣ୍ୟେ, ଶରଣରଣ୍ୟେ !
ଜନନୀ, ଜନନୀ, ଜନନୀ । ୬ ।

## ସବୁଥିରୁ ବଞ୍ଚିତ କର

ସବୁଥିରୁ ବଞ୍ଚିତ କର
କେଉଁ ଗଣବାନା ଉଡ଼ାଇବ ହେ ?
ଯାହା ଦେଇଥିଲ          ସବୁ ତ ନେଲଣି
ଆଉ ଏବେ କିସ ଛଡ଼ାଇବ ହେ ? (ଘୋଷା)
ଫସାରେ ସେ କରଇ ଆଶ,
ଧାଏଁ ପିନା ସେ ବୃନ୍ଦ ପାଣ,
ସକଳ ଭରସା          ଯା'ର ରୁଟିଲଣି
କିସ ବୋଲି ତାକୁ ଡରାଇବ ହେ ? ୧
ଠକ ଠକ ଥରକୁ ଥର
ବୁଝିଲଣି ବୃନ୍ଦ ଘୃତର,
ମନେ ପାଣ୍ଡିଛ କି          ହାଟ ମଝିଟାରେ
ଛୁଡ଼ା କର ବାଟ ଦୁଡ଼ାଇବ ହେ ? ୨
ବୃନ୍ଦ ଫନ୍ଦା ଏଡ଼ିବ ବୋଲି
ସବୁ ଧନ୍ଦା ଦେଲଣି ଠେଲି
ସ୍ୱର ଦଉଡ଼ ସେ          କାଟି ସାରଲଣି
କେଉଁ ଫାନ୍ଦେ ତାକୁ ଜଡ଼ାଇବ ହେ ? ୩

ହାତ ଠାରି ଲେଭ ଦେଖାଇ

ତାକ ନାଚ ଦେଖିବା ପାଇଁ

ସିହ୍ୱାଣ କରୁଛ ଅନ୍ତର ଥରେ କି

ନାଭ ଘଣ୍ଟି ଢାନ ମୋଡ଼ାଇବ ହେ ?

(ଜୀବନ ସଙ୍ଗୀତ)

## ସବୁଜ ନେଇଛ ଛଡ଼ାଇ

ମୋର ସକଳ ଗର୍ବ ଚୂର୍ଣ୍ଣ କରିଛ ସବୁଜ ନେଇଛ ଛଡ଼ାଇ

ଆଶାର ତୁଙ୍ଗ ଶିଖରୁ ଖସାଇ ଧୂଳିରେ ଦେଇଛ ଗଡ଼ାଇ । ଘୋଷା ।

ସବୁଥିରେ କରି ନିଃସ୍ୱ

ଶିଖାଇ ଦେଇଛ ଆପଣାର ବୋଲି

ମଣିବାକୁ ସାରା ବିଶ୍ୱ ;

ଅଜଣା ହାତରେ ଅମୂଲ୍ୟ ସମ୍ପଦ ଆପେ ଦେଉଅଛ ବଢ଼ାଇ । ୧

ଏକ ପ୍ରେମ—ଏକ ଛଳନା,

ଏକ ପରିହାସ ଅବା କଉତୁକ

କରି ନ ପାରିଲି କଳନା ;

ମୋହ ପାଇଁ ଯେବେ ଏତେ ଅନୁରାଗ,

ମିଳନ ନାହିଁ କି ଆଉ କିଛି ବାଗ ?

(ଏଣେ) ଛୁଟ ଛଡ଼ା ହୋଇ ନାଚ ଦେଖୁ ଅଛ

କେଣେ ଲଗାଇ ଦେଇଛ ଲଢ଼ାଇ । ୨

(ଜୀବନ ସଙ୍ଗୀତ)

## ଫୁଲଟି ଯେବେ ମୋର ଯାଏ ଝରି

ଫୁଲଟି ଯେବେ ମୋର ଯାଏ ଝରି
ସେ ତୋ କୁଞ୍ଜବନେ ଯାଇ ଫୁଟଇ ହେ ।
ଗୀତଟି ଯେବେ ମୋର ଯାଏ ସରି
ସେ ତୋ ଗୁଞ୍ଜରଣେ ଜାଗି ଉଠଇ ହେ ।।
ଏକାକୀ ବାଇ ବାଇ ଯେବେ ମୁଁ ଅକା ହୋଇ
ବସୁଟେ ବାଣାଟିକୁ ଭୂଇଁରେ ଦଏଁ ଥୋଇ,
ଅସରି ସେ ସୁରଟି ଆକୁଳେ ଛୁଟି ତୋର
ବଂଶୀ ତାଳେ ତାଳେ ରଟଇ ହେ । ୧
ବ୍ୟର୍ଥ ଜୀବନର ଲକ୍ଷ ବ୍ୟଥା ମୋର
ରକ୍ତଜବା ହୋଇ ବକ୍ଷେ ଶୋଭେ ତୋର ;
ମୋ ନୟନ ନୀରଧାର ଚରଣ ତଳେ ତୋର
ଅର୍ଘ୍ୟ ରୂପେ ପଡ଼ି ଲୋଟଇ ହେ । ୨

(ଜୀବନ ସଙ୍ଗୀତ)

## ପଦ୍ମଚରଣ ପଟ୍ଟନାୟକ

(୧୮୮୭—୧୯୬୭)

### ଧଉଳି ପାହାଡ଼

(୧)

ଧଉଳି ପାହାଡ଼, ଧଉଳି ପାହାଡ଼
ତାହିଁକ ମଉନେ ରହିଛ ଆଜ,
ଦଇଆ ବାଲିରେ କେତେ ଖୋଜୁଥିବ
ଅତୀତ ଗୌରବ-ଗରବ-ସାଜ ?
ଧଉଳି ପାହାଡ, ଧଉଳି ପାହାଡ,
ରୁକ୍ଷ ମୁଖେ ଦୁଃଖ-ଗୁଳ୍ମ ଆବରି,

ତପସ୍ୱୀ ପର୍ବତ ବସି ରହିଅଛ
କି ଭାବନା ଭାବ ଧବଳ ଶେଖର ?
ଧଉଳି ପାହାଡ, ଧଉଳି ପାହାଡ
ଲଜ୍ଜା ଦୁଃଖ ତେଜି ଟେକ ହେ ମଥା,
ଶୁଣାଅ ସେ କାଳ ଗୌରବ କାହାଣୀ
କହ ହେ ସେ କାଳ ଗରବ କଥା ।
ଧଉଳି ପାହାଡ, ଧଉଳି ପାହାଡ,
ଅଶୋକ ରାଜନ ରହିଲେ କାହିଁ
କାହିଁ ସେହି 'ଧର୍ମ', କାହିଁ ବା ସେ କର୍ମ
ଫଳେ କି ଏ କାଳେ ମିଳିବ ନାହିଁ ?

× × × ×

( ୩ )

ଧଉଳି ପାହାଡ଼, ଧଉଳି ପାହାଡ଼
କି କଥା କହିଲ ରାଜାଙ୍କ କାନେ ।
କି କଥା ଗାଇଲ, ଘଣ୍ଟକେ ରାଜନ
ବୁଡ଼ିଲେ ଅପୂର୍ବ ସମାଧି ଧ୍ୟାନେ ।
ରଣୋନ୍ମାଦେ ମାତ ବିଜୟ ଉଲ୍ଲାସେ
ଗଡ଼ୁଥିଲେ ତବ ଚରଣ ତଳେ,
ଗଡ଼ୁଥିଲେ କେତେ ଅଶାନ୍ତ ସଉଧ,
କାହିଁକି ଭାସିଲେ ନୟନ ଜଳେ ?
ଧ୍ୟାନ ଭଙ୍ଗେ କ୍ଷଣେ ସ୍ପନ୍ଦିଲେ ଚକିତେ
ତବ ଶିରେ ପୁଣି ପୋତିଲେ ମଥା,
"କି କଲି" "କି କଲି" କହିଲେ ଏକଲେ
ଲଭିଲେ ବା ପ୍ରାଣେ ଦାରୁଣ ବ୍ୟଥା !
"କି କଲି କି କଲି କାହୁଁ ଆସି କାହିଁ,
ପଶିଲି କି ଘୋର ଜିଗୀଷା ଜାଲେ !

"କବା କଥା ଲାଗି ଏ ସବୁ ବନ୍ଧନ,
ଲେଷିଲି କି ବନ୍ଧ ଏବେଣା ଲଲେ !
"ଶୋଣିତର ସ୍ରୋତ ଜନେ ବୁହାଇଲି
କେମନ ଏ ଶୋକ ଲଭିବ ମୋର ?
"ଆଗେ ଆସେ ମୋର ଜଳାଇ ବସିଲି
ଜୀବନାଶୀ ଚିତା ଭୀଷଣ ଘୋର !
"କେତେ ପ୍ରାଣୀ ଜନେ ନାଶିଲି ଏ କରେ
କେତେ ଦେଶ କଲି ଶ୍ମଶାନମୟ,
"କେତେ ସୁଖ ସୌଧେ ଜାଳିଛି ଅନଳ
କେତେ ପ୍ରାଣେ ମୁହିଁ ଆଣିଛି ଭୟ ।
"କି ପିପାସା ଘେନି ଲଭିଲି ଜନମ
ଭାଲେ କାଲେ ତାର ନ ହେଲା ଶାନ୍ତି,
"ସାରା ଜୀବନଟା ଅବୋଧ ବସିଲା
କି ଅଭାବ ଅଣା ମଧୁର ଭ୍ରାନ୍ତି ।
"ଲୁବ୍ଧ ମୃଗପରି ମୁଗ୍ଧ ହୋଇ ମୁହିଁ
ଉଦ୍ଧ୍ୱସ୍ୱର ସୁଖେ କାଟିଲି କାଳ,
"ଜ୍ୱଳନ୍ତ ଅନଳେ ଇନ୍ଧନ ଯୋଗାଇ
ପାପେ ପୂର୍ଣ୍ଣ କଲି ଏହି ସଂସାର ।
"ଧୂମ କେରୁ ପରି ଶ୍ୟାମ ପୁଚ୍ଛ ଧରି
ବୁଣିଲି ମଣ୍ଡଳ ଯାତନାରାଜି,
"ନୟନ-ଅଶ୍ରୁ-ରକ୍ତ ସୋତେ ଭାସି ଭାସି
ଏ ଭିକ୍ଷୁ ଚରଣେ ଆସିଛି ଆଜି,
"ଏ ଭିକ୍ଷୁ ଚରଣେ ଏହି ନଦୀ କୂଳେ
ଲଭିଲଣି ଆଜି ପରମ ଶିକ୍ଷା ;
"ଏ ଭଲଙ୍କ ବେଶ,ହେଲେ ମୋର ଗୁରୁ
ଘେନିବି ଏଥି ମୋ ଜୀବନ ଦୀକ୍ଷା ।

"ଏହି ଦେଶେ ବସି ଏହି ନଦୀ କୂଳେ
ଫେରାଇବ ମୋର ଜୀବନ ଗତି,
"ସାକ୍ଷୀ ରହ ମୋର ସବ ଦିଗପାଳ
ସାକ୍ଷୀ ରହ ମୋର ଜୀବନପତି ।
"ଶୁଭ ଯୋଗେ ସତେ କଳିଙ୍ଗ ବିଜୟେ,
ବଳିଲା ମୋ ମନ ଟଳିଲା ବଳ,
"ଦେବ-ଦେଶେ ଆସି ଦେବ-ଅନୁଗ୍ରହେ
ଭୋଗିଲି ଏ କେଉଁ ତପସ୍ୟା ଫଳ ?
"ଏହି ତପଫଳ, ଏହି ଧର୍ମବଳ
ଜୀବନର ମୋର ହେଉ ଭୂଷଣ,
"ସେହି ବଳେ ପ୍ରଭୁ ଘୁଞ୍ଚାଇ ବିଅ ହେ
ଲକ୍ଷ ଲକ୍ଷ ପ୍ରାଣୀ ପ୍ରାଣ କଷଣ ।"

( ୪ )

ପ୍ରିୟ ପ୍ରତିବେଶୀ ଧଉଳି ପାହାଡ଼
ତୁମ ମୁଖ ମୁହିଁ ଦେଖୁଛି ନିତି,
ଗୌରବ ଶିଖରେ ଅନାଇଁ ଅନାଇଁ
କେତେ ଦିନ ମୋର ଯାଇଛି ବିତି ।
ସୁନ୍ଦର ମଧୁର ଗୋଧୂଳି-ଗଗନେ
ଦିନ କାମ ସାରି ଦିବସପତି ।
ସିନ୍ଦୂର ଲହରି ଖେଳାଇ ପଶ୍ଚିମେ
ଅସ୍ତାଚଳେ ବେଗେ କରନ୍ତି ଗତି ;
ଗୋପାଳ, କୃଷକ ସଙ୍ଗେ ଧେନୁପଲ
ଆବେଗ ହୃଦୟେ ଫେରନ୍ତି ଘରେ,
ତମିର ବସନେ ଆବରି ଶ୍ରୀଅଙ୍ଗ
ସନ୍ଧ୍ୟା ଦେବୀ ହସେ ଅସନ୍ତ ଘରେ ।

ସ୍ମୃତି ବସିଥାଏଁ ଧଉଳ ପାହାଡ଼
ତବ ଶିରେ ଶୁଣେ ବହଙ୍ଗ ଗୀତ,
କାନେ ବାଜଯାଏ କେତେ ଯୁଗ ବାଣୀ
ବଢ଼ିଯାଏ ପ୍ରାଣେ ଅନନ୍ତ ପ୍ରୀତ ।
ଝୁଲିଯାଏ ଆଗେ ଚକ୍ଷୁ ଝଲସାଇ
ପୁଣ୍ୟ ମହିମାର ଅକ୍ଷୟ ଛବ,
ବ୍ୟାକୁଳ ପରାଣେ ଅନାଇଁ ଦେଖଇ
ବୁଡ଼ିଗଲେ ଧୀରେ ପ୍ରଦୀପ୍ତ ରବ ।
ଏହି ପର ପିନା କଳଙ୍କ-ତପନ
ବୁଡ଼ିଗଲେ ଦିନେ ଦଇଆ ତୀରେ,
ଏହିପରି ପିନା କଳଙ୍କ ଖାରବ୍ଧ
ଭସିଗଲ କାଳ-ସାଗର-ନୀରେ ।
କେତେ କ ମହିମା କେତେ ଦୟା କ୍ଷମା
ଦଇଆ-ଗରଭେ ଯାଇଛି ପଶି,
ସାକ୍ଷୀ ତାର ପାଶେ ଦେବାଳୟ ବସି
ଦୂରେ ତାର ସାକ୍ଷୀ ତପନ ଶଶୀ ।
ଆସିଥିଲେ କ ହେ ସ୍ୱପନରେ ଭାସି
ସ୍ୱପନରେ ଖେଳ ଫେରିଲେ ଘରେ,
ଏତେ ଉଚ୍ଚ ଆଶା ବାସନା କ ସତେ
ଦ'ଦନେ ବକଶି ଦ'ଦନେ ସରେ ?
ଯଶ-ମନ୍ଦିରରେ ସାମନ୍ତ ବୋଲିଣ
ଭାଲେ ଲଭିଥିଲେ ଗୌରବ ଟୀକା,
ମହିମା-ଉଜ୍ଜ୍ୱଳ ସେ ବରବପୁ କ
ପଡ଼ିଗଲ ; ଶେଷ ହେଲ ସେ ଶିଖା ।
କେତେ ଜାତ ହାତ ଧରି ଆଗେ ଚଳ
ଆଗୁଆ ହୋଇଣ ରଖିଲେ ନାମ,

ସତ୍ୟ ସାହସର ଜନମଭୂମିକୁ
ସତେ ମୋର ବିଧି ହୋଇଲେ ବାମ ।
ରାଜା, ରାଜଧାନୀ, ପ୍ରାସାଦ ସଉଧ,
ଲୁଚିଗଲେ ସବେଁ ଦରିଆ-ଜଳେ,
ଗୁମ୍ଫା ତାର କି ହେ ଲୁଚି ନ ବୁଲଇ
ଏବେ ହେଲେ ଶୂନ୍ୟେ ଧଉଳି ଚୂଳେ ?
ଲିଙ୍ଗରାଜ ତୁଙ୍ଗ ମନ୍ଦିର ରହିଛି,
ରହିଛି ତ ସେହି ଧଉଳି ଗିରି,
ରହିଛି ଅନାଇ ଖଣ୍ଡଗିରି-ଦରୀ
ନ ଗାଏ କି ମୁଖେ ସେ ଦିନ ଶିକ୍ଷା ?
ନ କହେ କି ସେହି ହୃଦ ବିଦାରଣ
କଳିଙ୍ଗ ପ୍ରବଣ ମହିମା କଥା,
ଅତୀତ କାଳର ଗୌରବ ବଖାଣି
ନ ଆଣେ କି ପ୍ରାଣେ ଦାରୁଣ ବ୍ୟଥା ?
ପ୍ରତି ଶିଳା ଖଣ୍ଡେ ପ୍ରତି ଝାଙ୍ଗି ମୁଣ୍ଡେ
ନ ଅଛି କି ଲୁଚି କୀରତିରାଜି ?
ଏତେ ଥାଇ ଥାଇ ଏତେ ଦେଖି ଦେଖି
ଏ ଦେଶ ସପନ ନ ଯାଏ ଭାଜି !
କହ ତେବେ ମୋତେ, ଧଉଳି ପାହାଡ,
କହ ଭଲ ବାରେ ମୋ ମୁଖ ଚାହିଁ,
ଧଉଳି ଦେଶରେ ସେ "ଧର୍ମ" ଜୀବନ
ଆସିବ କି ଆଉ ଆସିବ ନାହିଁ ?

( ଆଶା ମନ୍ତ୍ରୀ )

## ଗୋଦାବରୀଶ ମହାପାତ୍ର

(୧୮୯୯ —୧୯୬୫)

### ଉଠ କଙ୍କାଳ !

ଦୁର୍ଗମ-ଗିରି-ଦୁର୍ଗ-ପ୍ରାଚୀର ଜୀର୍ଣ୍ଣ ଦୁଆରେ ବସି,
ଡାକେ ତାନ୍ତ୍ରିକ ମନ୍ତ୍ର ସାଧନେ—ଜାଗ୍ରତ ପୁରବାସୀ !
ପୃଥ୍ୱୀ ବଡାର ବାରବାଟୀ ମଡ଼ା ଉଠ ଉଠ ଚଞ୍ଚଳ,
ଖୋରଧାର ଶତ ସରଦାର ଶିର କର ଉନ୍ନତତର !
ଉଠ କଙ୍କାଳ, ଛିଡ଼୍ ଶୃଙ୍ଖଳ, ଜାଗ ଦୁର୍ବଳ ଆଜ !
ଉଠ୍ ଗତ ଗୌରବ, ଦ୍ରୁତ ଗୌରବ, ମୃତ ଗୌରବରାଜ ।
ମେଘାସନ ତଳ ମନ୍ଦ୍ର ନିନାଦ ବାଜେ ଙ୍ଘୁଲଙ୍ଘର ବୁକେ,
ରାଇବଣିଆର ରଣ ସଂଗୀତ ଗଞ୍ଜାମ ପଥେ ଡାକେ ।
ସିଂଭୂମି କହେ ମରଣ ଦୁଆରେ ବଣାଖାପାଟଣେ ଶୁଣି
ସନ୍ତାନ ମୁଖେ, ଶମଶାନ ବୁକେ ପ୍ରାଣ ସଙ୍କେତ ନାହିଁ ।
ଉଠ ଦୁର୍ବଳ, ଜାଗ କଙ୍କାଳ, ଛିଡ଼୍ ଶୃଙ୍ଖଳ ଆଜ
ଉଠ୍ ଗତ ଗୌରବ, ଦ୍ରୁତ ଗୌରବ, ମୃତ ଗୌରବରାଜ ।
ଚର-ବନ୍ଧନା ବନ୍ଧନୀ ମାଆ ବନ୍ଧନ ଫେଇବାରେ,
ସମ୍ବଲପୁର ସମ୍ବଲୀର ଦମ୍ଭ କି ନାହିଁ ଧରେ ?
ଗଙ୍ଗା ଧୋଇଲା ଚକ୍ରଧର ଯାହାର, କୃଷ୍ଣା ଚରଣ ତଳ
ଶମଶାନ ଆଜ ମଡ଼ା ଦେଶ ଆଜ, ଏହି ସେହି ଉତ୍କଳ ।
ଜାଗ ଦୁର୍ବଳ, ଛିଡ଼୍ ଶୃଙ୍ଖଳ, ଉଠକଙ୍କାଳ ଆଜ ।
ଉଠ୍ ଗତ ଗୌରବ, ଦ୍ରୁତ ଗୌରବ, ମୃତ୍ୟୁ ଗୌରବରାଜ ।
ନନ୍ଦାମ ଭୁବନେ ଭୂଲକର୍ଗର ଅର୍ଗଳ ଏଡ଼ି ବନେ
ଗଜପତି ବୀର 'କେଶର' ଭେଦିଲା ଜସ୍ତ ଗୌରବ ଗାନେ ।
ଦୁର୍ବାର ଗଡ଼, "ଦେବର କୋଣ୍ଡା" କହେ ଆଜ ସେହି କଥା
ବାରବାଟୀ ବୀର ଦେଇଥିଲା ତାର ରଣେ ଉନ୍ନତ ମଥା,

ଛିଡ଼୍ ଶୃଙ୍ଖଳ, ଜାଗ କଙ୍କାଳ, ଉଠ ଦୁର୍ବାର ଅଜ
ଉଠ୍ ଗତ ଗୌରବ, ହୃତ ଗୌରବ, ମୃତ ଗୌରବରାଜ ।
ଖଣ୍ଡାକୁଶଳ ଖଣ୍ଡାୟୁଧର ଦୁର୍ବାର କରବାଳେ
ଅଜେୟ ବଙ୍ଗ-ବାହିନୀ ଶୋଇଲେ 'ଶତଗଡ଼' ପ୍ରାନ୍ତରେ,
ଗଉଡ଼ ଭୁବନ ହେଲା ପଦାନତ ମଗଧ ପାଇଲା ଲୀନ,
ପ୍ରତାପୀ ପୁଷ୍ପମିତ୍ର ହଟିଲା ଦେଇ ଛକ୍କାଲେ ରଣ ।
ଜାଗ କଙ୍କାଳ, ଜାଗ କଙ୍କାଳ, ଜାଗ କଙ୍କାଳ ଆଜ,
ଉଠ୍ ଗତ ଗୌରବ, ହୃତ ଗୌରବ, ମୃତ ଗୌରବରାଜ ।
କଥା କହ, କଥା କହ କଙ୍କାଳ ! ସେ କେତେ ଯୁଗର କଥା,
ହିମାଚଳ ତଳେ ଟେକିଥିଲା ଯେବେ ଏ ଜାତିର ବୀର ମଥା ।
ତେଜସ୍ୱୀ 'ବିଜୟନଗର' ମାଗିଲା ଶରଣ ଚରଣ ତଳେ,
“ବାହ୍ମନୀ” ପଠ ଯବନ, ଶମନ କାତରେ ଲୁଚିଲା ଘରେ ।
ଉଠ କଙ୍କାଳ, ଉଠ ଦୁର୍ବଳ, ଛିଡ଼୍ ଶୃଙ୍ଖଳ ଆଜ,
ଉଠ୍ ଗତ ଗୌରବ ହୃତଗୌରବ, ମୃତ ଗୌରବରାଜ ।
ହାତ ପାଣୁ ଆଜ ଖପା ବନ୍ଧୁ ଆସୁ, ଫୁଟୁ ମଡ଼ାମୁଖେ ହସ,
ଭଗ୍ନ ଏ ଗଡ଼ ମଧ୍ୟରେ ଶୁଭୁ ଦୁନ୍ଦୁଭି ଅହର୍ନିଶ ।
ଶମଶାନ ଧୂଳି ଅଞ୍ଜଳି ଭରି ନିଅ ପୁରବାସୀ ଜନ,
ଲକ୍ଷ ଜୀବନ  ସାକ୍ଷ୍ୟ ଦେବ ସେ ଗୌରବେ ମହାସ୍ନାନ,
ଉଠ କଙ୍କାଳ, ଭେଦ ମହାକାଳ, ଜାଗ ଦୁର୍ବଳ ଆଜ
ଉଠ୍ ଗତ ଗୌରବ ହୃତ ଗୌରବ, ମୃତ ଗୌରବରାଜ ।
ବେଳ ନାହିଁ, ବେଳ ନାହିଁ, କଙ୍କାଳ ! ଟେକ ଚଞ୍ଚଳ ମଥା
ବିଦାରି ଉପଳ ନିର୍ମଳ ତବ ପିଞ୍ଜରୁ ଉଠ୍ ବ୍ୟଥା,
ବାଜି ଉଠୁ ବାରେ ମରଣ-ତେଜସ୍ୱୀ ବଂଶୀ ସେ ବୁକୁତଳେ,
ଧୂର୍ଜଟୀଜଟାଜୁଟ କମ୍ପାଇ ଯୌବନ କୁତୂହଳେ ।
ଉଠ କଙ୍କାଳ, ଉଠ ଦୁର୍ବଳ, ଜାଗ କଙ୍କାଳ ଆଜ
ଉଠ୍ ଗତ ଗୌରବ, ହୃତ ଗୌରବ, ମୃତ ଗୌରବରାଜ

(ଉଠ କଙ୍କାଳ)

## ହରେକୃଷ୍ଣ ମହତାବ୍
(୧୮୯୯—

### ନାଇଲ ନଦୀର ତୀରେ

ନାଇଲ ନଦୀର ତୀରେ ସୂର୍ଯ୍ୟ ଅସ୍ତମିତ,
ଜ୍ୟୋତ୍ସ୍ନାର ମଧୁର କୋଳେ ଉଜ୍ଜ୍ୱଳ ଶ୍ମଶାନ,
ବାସଶୂନ୍ୟ, ଜନଶୂନ୍ୟ, ନୀରବ, ନିସ୍ତବ୍ଧ ।
କେବଳ ରହିଛୁ ଉଚ୍ଚ ପିରାମିଡ଼ମାନ
ସହସ୍ର ସହସ୍ର ବର୍ଷ ଇତିହାସ ଘେନି ।
ଅଦୂରେ ବିଶାଳ ମୂର୍ତ୍ତି ସ୍ଫିଙ୍କସ ସାଗ୍ୟଦେବ,
ବର୍ଷ ପଞ୍ଚ ସହସ୍ରର ଅର୍ଜ୍ଜିତ ଗୌରବେ
ଭରିଛୁ ଯେ ଇଜିପ୍ଟର ଐତିହ୍ୟ ଭଣ୍ଡାର
ତାହାର ରକ୍ଷକ ଏହୁ ପରମ ସ୍ୱଜନେ ;
ପଳାଏ ବିସ୍ମୃତି ଚାହିଁ ଏହାଙ୍କ ତାଡନେ ।
ବିଶାଳ ଶ୍ମଶାନ ଏହା କାଳର ପ୍ରତୀକ
ଜଣାଏ ଜଗତେ ନିତ୍ୟ ନଶ୍ୱରତା ତାର ;
ତଥାପି ଶ୍ମଶାନ ବୁକେ ଖେଳୁଛୁ ଯେ ସ୍ମୃତି
ସରଳା ବାଳିକା ଭଳି ଜ୍ୟୋତ୍ସ୍ନାର ଆଲୋକେ
ଉପହାସ କରେ ସିନା କାଳ ବିଶ୍ରୀତିକା
ଉପୁଜାଇ ଭାବୁକର ମନେ ଦେବ ଭାବ
ଦେଖାଇ ଦର୍ଶକେ ଏକ ସୂକ୍ଷ୍ମ ଇନ୍ଦ୍ରଜାଲ
ଅନିତ୍ୟ ଗୁନ୍ଥିଲା ଗୁଚ୍ଛା ପରମାର୍ଥ-ସୂତ୍ରେ
ଅଦ୍ଭୁତ ଇନ୍ଦ୍ରଜାଲ ସ୍ମୃତିର ଭଣ୍ଡାର ।
କାତରେ ମନୁଷ୍ୟ କଲା ଉଚ୍ଚ ନିବେଦନ
ସ୍ଫିଙ୍କ୍ସ ଦେବତା ଆଗେ ଆବେଗ ହୃଦୟେ

ମିଳବ ଉତ୍ତର ବୋଲି ରହିଲ ଅନାଇ ।
ଅତୀତର ପୁଞ୍ଜୀଭୂତ ଇତିହାସଯାକ
ଗୋପନେ ଆସିଲେ ଧାଇଁ ପିଟ୍ରମିଡ଼ ପରେ
ଲୁଚ କରି ଶୁଣିବାକୁ ପ୍ରଶ୍ନର ଉତ୍ତର ;
ବହୁଛ ଶ୍ମଶାନ ମଧ୍ୟ ମନ କରି ଠୁଳ
ଡେରିଲ ଶ୍ରବଣ ଶୁଣିବାକୁ ସେ ଉତ୍ତର ;
ନଭର ଆଲୋକେ ଗର୍ବୀ ସୁଧାଂଶୁ ଆକାଶେ
ଅନ୍ୟର ଗୌରବ ଈର୍ଷା-ମଳିନ ତାରକା,
ନଭର ସୌନ୍ଦର୍ଯ୍ୟ ସ୍ଫୀତ ନମନାସ୍ୱ ଜ୍ୟୋତ୍ସ୍ନା
ଏକମନ ହୋଇ ସର୍ବେ ହୋଇଗଲେ ସ୍ଥିର
ଶୁଣିବାକୁ ମନୁଷ୍ୟର ପ୍ରଶ୍ନର ଉତ୍ତର ।
କିଛି କ୍ଷଣ ପରେ ଧୀରେ ବହିଲା ସମୀର
ମୃଦୁ ମଧୁ ଅଳ୍ପ ଶୀତ, ଶ୍ମଶାନ ପୃଷ୍ଠଇ ;
ମନୁଷ୍ୟର କାନେ କାନେ କହିଗଲା ଧୀରେ
ଦୈବତର ପ୍ରତ୍ୟୁତ୍ତର ମନୁଷ୍ୟ ପ୍ରଶ୍ନର :—
"ସ୍ୱଳ୍ପ ସ୍ୱଳ୍ପ ଭ୍ରମ ପଥେ ସେହି ଭ୍ରମ ଭାମ
କରିଛୁ ମୁଁ ପରମାତ୍ମ ସେ କାମ ମୋହର,
ଆସଗଲା ଲୋକଙ୍କର ପାଦୁକାକୁ ଚାହିଁ
ପଛଗଲା ଲୋକ ଜାଣେ ଆଗ ପରମାତ୍ମ ।
ମହିଁ ପଥେ ଅଛି ସିନା ପରମାତ୍ମ ସତ
ପଥ ଶେଷେ ମହାଶୂନ୍ୟ ସେଠି ନାହିଁ କିଛି,
ଯାତ୍ରାର ଆରମ୍ଭ ଯେବେ କରିଛ ପଥିକ,
ଯାତ୍ରା ଶେଷ ହେବ ନଶ୍ଚେ, ତାହା ହିଁ ନିୟମ ;
ମୁଣ୍ଡ ନଇଁ ଦୃଢ ପଦେ ଚାଲିଥିଲେ ବାଟ
କିଛି କାଳ ରହିଯିବ ପାଦୁକାର ଚିହ୍ନ ।
ପଛେ ଯେ ପଡ଼ିବ ଆଖି ପଡ଼ିବ ସେଥିକି,

ତା ପରେ ସେ ଚନ୍ଦ୍ର ଯିବ ବୁଆଡ଼େ ହରେଇ ।
ପରମେଶ୍ୱ ନୁହେଁ ମଧ ଚିରକାଳ ସ୍ଥାୟୀ ।
କୋଟି କୋଟି ବର୍ଷ ହେଲା ପଡ଼ିଛୁ ଏ ପଥ,
ସ୍ମୃତିରେ ରହିଛୁ ମାତ୍ର ହଜାର କେତେଟା,
କିଛୁ କାଳ ପରେ ଲୁପ୍ତ ହେବ ମଧ ଏହା
ଏହାହିଁ ଜଗତ ଭାଗ୍ୟ, ନ ହୁଅ ଦୁଃଖିତ ।
ଏହା ଜାଣି କଣଯାଅ ତୁମ୍ଭେ ତୁମ୍ଭ କାମ
ଛାଡ଼ି ଦିଅ ପଛ କଥା ମୋ ବିଶାଳ ହସ୍ତେ ।
ଆଗରୁ କାହାକୁ ମୁହିଁ ନ ଦିଏ ଜଣାଇ
କ ବସ୍ତୁର ଭବିଷ ମୁଁ ପଛେ ଯାହା ପରେ ।
ତୁମ୍ଭର କୃତଜ୍ଞ ଛାଡ଼ି ଧରି ଯେବେ ମୋତେ
ନ ପାରିବ କିଛୁ କରି କହୁଛୁ ମୁଁ ସ୍ପଷ୍ଟ,
କୃତଜ୍ଞ ଗରବେ ଯଦି ଭୁଲି ଯାଅ ମୋତେ
ଭୁଲି ମଧ ଯାଏ ମୁହିଁ ଉଦ୍ଧତ ପଥିକେ ।
ତୁମର ପ୍ରତ୍ୟୁପକାର ଅନୁଗ୍ରହ ମୋର
ମିଶିଲେ ଦୁଇଟି ଯାକ ପୂର୍ଣ୍ଣ ହେବ ବାଞ୍ଛା ।
ଆପେ ଆପେ ଲବ୍‌ଧ ହୁଏ ଅନୁଗ୍ରହ ମୋର ।
ଅତି ସୂକ୍ଷ୍ମରେ ଏହି ଏ ପଥ ଯାତ୍ରୀର
କହି ଦିଅ ସାଙ୍ଗ ଲୋକେ ଏ ଗୋପନ ମନ୍ତ୍ର ।"
ଶୁଣିଲା ମନୁଷ୍ୟ, ବାଣ୍ଡ଼ା ଶୁଣିଲା ଶ୍ମଶାନ,
ଶୁଣିଲେ ଚନ୍ଦ୍ରମା, ତଥା ଶୁଣିଲେ ତାରକା,
ରଖିଲେ ସମସ୍ତେ ମନେ, ହୋଇଗଲେ ନମ୍ର ;
ମନୁଷ୍ୟ ବରଗ କିନ୍ତୁ ଭୁଲିଗଲା ତାହା ।

(ପ୍ରସ୍ତାପଥର ଯାତ୍ରୀ)

# କୁନ୍ତଳାକୁମାରୀ ସାବତ

(୧୯୦୧—୧୯୩୮)

## ଶେଫାଳି ପ୍ରତି

ଶେଫାଳି !

କେଉଁ ଦୂର ତରୁବରେ ଫୁଟିଅଛୁ ଗୋପନେ,
ଭୁରୁ ଭୁରୁ ଗନ୍ଧ ତୋର ଭାସି ଆସେ ପବନେ,
ବାତାୟନ ପାଶେ ବସି    ସ୍ୱପ୍ନେ ନବୋଦିତ ଶଶୀ
ହସି ହସି ସତେ ଉଠି ଆସେ ଦୂର ଗଗନେ
ଭାବାବେଶେ ମୁଗ୍ଧ ମୁହିଁ ମଜ୍ଜିଅଛୁ ସ୍ୱପନେ । ୧ ।

ଭାବରାଜ୍ୟ ବୁଲେଁ ସତେ ହଜିଅଛୁ ଚେତନା,
ଅନନ୍ତ ଅନ୍ତର ରାଜ୍ୟ ପୂରିଅଛୁ କଳ୍ପନା
ବିଶାଳ ଏ ବିଶ୍ୱକ୍ଷେତ୍ରେ    ଅର୍ଦ୍ଧ ନିମୀଳିତ ନେତ୍ରେ
ଦେଖେଁ ସତେ ଶୋଭାରାଶି ପଡ଼ିଅଛୁ ଉଛୁଳି
ତହିଁ ସୁଧା ଢାଳୁ କି ରେ ଗନ୍ଧେ ଗଙ୍ଗଶିଉଳି ? । ୨ ।

ଶାରଦ ଦିନାନ୍ତେ ବସି ବାତାୟନ ପାଶରେ,
ବୁଡ଼ିଅଛୁ ମନ ମୋର କିବା ପ୍ରେମ ରସରେ,
ଆବେଶେ ପୁଲକେ ମୋର    ନୟନରୁ ବହେ ଧାର
ହୃଦ ତନ୍ତ୍ରୀ ବାଜି ଉଠେ କି ଅମୃତ ସ୍ୱରରେ,
ନିମିଷେ ଭାବଇଁ ମୁଁ ତ ଅଛୁ ଅବା ସ୍ୱର୍ଗରେ । ୩ ।

ସାରା ଦିନ ପରିଶ୍ରମ କ୍ଳେଶ କ୍ଳାନ୍ତି ଅଶେଷ,
ନାନା ଚିନ୍ତା, ରୋଗ, ଶୋକ, କଷ୍ଟ ଦେଲା ବିଶେଷ,
ସହୁଁ ରବି ଅସ୍ତାଚଳେ    ଧୀରେ ଧୀରେ ଚଳି ଗଲେ,
ସାନ୍ଧ୍ୟଗାଥା ଗାଇ ପକ୍ଷୀ ଫେରିଲେ ସ୍ୱସଦନେ
ତମୋରାଶି ବୋଳିଦେଲା ନିଶା ଧିରେ ଆନନେ । ୪ ।

ନୀଳ ନଭ ମଣ୍ଡି ଧୀରେ ହସି ଦୀପ୍ତ ଲୋଚନେ
ଦେଖା ଦେଲେ ଶତ ଶତ ତାରା ଜ୍ୟୋତି ବସନେ,
ଧନେ ବୋଲି ସୁଧାରାଶି          ଶଶାଙ୍କ ଉଇଁଲା ଆସି
ଝରି ଝରି ପଡ଼ିଲା କି ଭୁବନରେ ଅମୃତ,
ସତେ କି ଧରଣୀ-ପ୍ରାଣୀ ଦୁଃଖ ହେଲା ବିସ୍ମୃତ । । ୫ ।
ରବି ବିରହରେ ଧନୀ କାନ୍ଦିଥିଲା ମଉନେ,
ଅନ୍ଧକାରେ ନତ ନେତେ ବିଷାଦିତ ବଦନେ,
ଚନ୍ଦ କି ଆସିଲା ଉଠି          ଚନ୍ଦ୍ରିମା ଚୁମ୍ବିଲା ଓଠ,
ହସିଲା କି ବସୁମତୀ ଧରୁ ଶୁଭ୍ର ଦୁକୂଳେ,
ଫୁଟିଲୁ ଶେଫାଳି ତହୁଁ ତୁ କି ପ୍ରେମ ଅକୂଳେ । । ୬ ।

ଶେଫାଳି !

କ୍ଷୁଦ୍ର ତୋର ତନୁ ତହିଁ ଭରା ଏତେ ଅମୃତ,
କହୁ ଲୀଳା କେ ବୁଝିବ ଜ୍ଞାନାତୀତ ଅଦ୍ଭୁତ,
ଗୋପନେ ଫୁଟିଲୁ ଦୂରେ          ତରୁପତ୍ର ଗହଳରେ
ତଥାପି ତୋ ବାସେ ମୋର ପ୍ରାଣ ହୁଏ ଆକୁଳ
କହ କେଉଁ ଶିଳ୍ପୀ ତୋତେ ଗଢ଼ିଅଛୁ, ରେ ଫୁଲ ! । ୭ ।
କି କୋମଳ, କି ଲଳିତ, କି ମଧୁର ସୁରଭି,
କର୍କଶ କୁତ୍ସିତ ପତ୍ରେ ଶୋଭେ କଳ୍ପ ଅଟବୀ,
ରୁକ୍ଷ ପତ୍ରରାଶି କୋଣେ          ଫୁଲ, ଫୁଟୁ ଏତେ ଗୁଣେ,
ଲୁଚି ଲୁଚି ବାସେ ତୋର ମୁଗ୍ଧ କରୁ ସଂସାର
ନୀଚ ମଧ୍ୟେ ଉଚ୍ଚ ସୃଷ୍ଟି ବିଧାତାର ବିଚାର । । ୮ ।
ପଙ୍କେ ପଦ୍ମ ଗଢ଼ିଅଛୁ ବିଧାତା କି ଯତନେ,
ଶାମୁକା ଗରଭେ ଜନ୍ମଅଛୁ ମୁକ୍ତା ରତନେ,
କଳାମେଘ କଳେବରେ          ସୌଦାମିନୀ ଶୋଭା ଧରେ
କଳା କୋକିଳ କଣ୍ଠରେ ପୂରିଅଛୁ ପିୟୂଷ,
ବୁଝୁ ଭବେ କୋହ୍ନେ କହୁ କ୍ଷୁଦ୍ର ତୋର ସଦ୍ଗୁଣ । । ୯ ।

ଶେଫାଳି !

ମନେ ମନେ ରୂପ ତୋର କଳ୍ପନାରେ ଆସେ କି,
ସ୍ୱପ୍ନ ସ୍ୱପ୍ନ କଥା ତୋର ଉଲ୍ଲାସରେ ଭାସେ କି,
ଏକ ରାତ୍ର ପାଇଁ ଫୁଟି ସୁବାସେ ଯାଉଛୁ ଲୋଟି,
କ୍ଷୁଦ୍ର ତୋର ଜୀବନରେ ସୁମହତ ବିକାଶ,
କ୍ଷୁଦ୍ର ବୋଲି ମୁହିଁ କମ୍ପା ହୋଇବି ରେ ନିସ୍ତ୍ରାଣ । । ୧୦ ।

ଶେଫାଳି !

କ୍ଷୁଦ୍ର ମୁହିଁ, ଦୀନ ମୁହିଁ, ରେଣୁକଣା ଜଗତେ,
ଗ୍ରହିଲେ ବିଶାଳ ବିଶ୍ୱ ଅଛୁ କି ପରତେ,
କ୍ଷୁଦ୍ର ହେଲେ ସୁଦ୍ଧା ମୁହିଁ ଅକାରଣେ ଜନ୍ମି ନାହିଁ
ଅନନ୍ତ ବିନାଶ ମୋର ଲେଖା ନାହିଁ କପାଳେ,
ଏକ ରାତ ପାଇଁ ଫୁଟି ଝଡ଼ିଯିବ ସକାଳେ । । ୧୧ ।

ଶେଫାଳି !

ନିତି ପ୍ରାତେ ଦେଖେଁ ପଡ଼ିଅଛୁ ତରୁ ମୂଳରେ,
ଝଲ ଝଲ ହେମବିନ୍ଦୁ ଶୋଭେ ଶୁଭ୍ର ଦଳରେ,
ସ୍ଫଟିକ ପ୍ରବାଳ ପଦ୍ମ ଗଠିତ ତୋ ତନୁ ତୋର।
ମନୋନ୍ମାଦକର ତହିଁ ସ୍ରବଅଛୁ ସୁବାସ
କି କୋମଳ, କି ମୋହନ, କି ଲଳିତ ବିକାଶ । । ୧୨ ।

ଶେଫାଳି !

କି ଯତନେ ଆଦରି ମୁଁ ଗୁନ୍ଥେ ମାଳା ଆଦରେ,
ପୁଲକିତ ପ୍ରେମ ସ୍ପର୍ଶେ ଦୋଳାଏ ମୋ କଣ୍ଠରେ,
ଧୀରେ ପରଶି ଅଧରେ କେତେ ମୁଁ ତୋତେ ଆଦରେ
କି ବୁଝିବୁ ପ୍ରାଣହୀନ ! ଆକୁଳତା ମୋହର,
କେତେ ପ୍ରେମ କରେ ତୋତେ ଗୋପନେ ମୋ ଅନ୍ତର । । ୧୩ ।

ଶେଫାଳି !

କହେ ତୋ ଆଗରେ ସବୁ, ତୁ କି ବନ୍ଧୁ ଜୀବିତ,
ହେଲେ ମୋ ହୃଦୟ ଶତ ବେଦନାରେ ବ୍ୟଥିତ,

ଆପଣା ମନେ ମୁଁ ଏବେ ତୋତେ ଶୁଣାଇବା ଆଶେ
ଶୁଣୁକି ନ ଶୁଣୁ ଏକା ଜାଣୁ ତୁହ ସୁମନ,
ବୁଝୁ କି ନ ବୁଝୁ ମୋର ଗତ ଗୀତ-ବଚନ । । ୧୪ ।

ଶେଫାଳି !
କହୁ ନହୁ କରୁ ମୁହିଁ ଲଭେ ପ୍ରାଣେ ଆରାମ,
ତୋ ବୁଝିବା ନ ବୁଝିବା ମୋର ପକ୍ଷେ ସମାନ,
କହୁଥିବ ଦବାଗ୍ନତ ପ୍ରାଣେ ତ ଲଭିବ ଶାନ୍ତ
ତୋ ଉଦ୍ଦେଶେ ଆରେ ଫୁଲ, ମୋ ପ୍ରାଣର ଏ ବ୍ୟଥା
ତୁ ନ ଶୁଣୁ, ଅନ୍ୟ ଜଣେ ଶୁଣିବ ତ ମୋ କଥା । । ୧୫ ।

ଶେଫାଳି !
ମୋ ଜୀବନ ଶେଷ କାଳେ ପଡ଼ିବ ତ ମୁଁ ଝରି,
ତୋତେ ନେବ ନାହିଁ କି ସେ ମୋତେ ଯତ୍ନେ ଆଦରି,
ମୋର ଆତ୍ମା ଫୁଲ ସ୍ତବୁ ଚରଣେ ଦଳିବା ଠାରୁ
ତାର ପ୍ରିୟ-ନିକେତନ ସଜାଇବ ନେଇ ସେ,
ତୋଷିବ ପ୍ରାଣଟି ମୋର କେତେ ପ୍ରେମ ଦେଇ ସେ । । ୧୬ ।

ଶେଫାଳି !
ତୋହ ପରି କ୍ଷୁଦ୍ର ମୁହିଁ, ତୋହ ପରି କ୍ଷଣିକ,
ହସେ, ବାସେ, ରସେ, ମାତ୍ର ଫୁଟିଅଛୁ ପଲ୍ଲକ,
ମାଟିରେ ମିଶିବୁ ତୁହ ମାଟିରେ ମିଶିବ ମୁହିଁ
ତଥାପି ମୋ ଆତ୍ମା ଫୁଲ ନ ଯିବ ରେ ମଉଳି,
ତେଣୁ ଆଶା ବନ୍ଧୁ ଧନ କାଢେ, ଗନ୍ଧ ଶିଉଳି । । ୧୭ ।

ଶେଫାଳି !
ଶେଷ ଗତ ନୁହେଁ ମୋର ମୃତ୍ୟୁ କେଉଁ କାଳରେ,
ମରିବାକୁ ଫୁଟି ନାହିଁ ଭବତରୁ ଡାଳରେ,
ଅଛୁ ରମ୍ୟ ଉପବନ ଯହିଁ ଫୁଟି ଝରି ଧନ

ଅନନ୍ତ ଅମୃତ ପ୍ରେମ ସୁଧାମୟ ସୁବାସେ
ମୋହବ ମୋ ପ୍ରାଣପ୍ରିୟ ଦେବତାଙ୍କୁ ଉଲ୍ଲାସେ । ୧୮ ।

ଶେଫାଳ !

ମୃଣ୍ମୟ ଶରୀର ତୋର ଏଡ଼େ ସ୍ୱଳ୍ପ ଶୋଭିତ,
ନ ଜାଣି ମୋ ଆତ୍ମାଫୁଲ୍ କି ସୌନ୍ଦର୍ଯ୍ୟେ ଗଠିତ,
ତୁ ଯଦ ମୋ ନେତ୍ରପ୍ରିୟ ତାଙ୍କ ନେତ୍ରେ ହେବ ହେୟ
ମୁଁ କି, କେଉଁକାଳେ ମୋର ନ ହୁଏ ତ ଉଚ୍ଛ୍ୱାସ,
ଫୁଟିବ ମୁଁ ଚିରଦିନ, ନ ହେବ ମୋ ବିନାଶ । । ୧୯ ।

(ଉଚ୍ଛ୍ୱାସ)

## କାଳିନ୍ଦୀଚରଣ ପାଣିଗ୍ରାହୀ

(୧୯୦୧—)

### ପୁରୀ ମନ୍ଦିର

କାଷ୍ଠ-ପାଷାଣ-ଗଠିତ ହେ ନିର୍ଜୀବ ଦେବତା ମୂରତ !
ଏ ଦେଶ ଶୋଣିତେ ଅଜ ଜାଗ୍ରତ ଯେ ବିଶ୍ୱର ଭାରତ,
ମାନବର ଶିଳ୍ପକଳା କଳ୍ପନା-ଘଟିତ
ଯୁଗ ଯୁଗ ଧରି ଯାହା ହୋଇଛୁ ଗଠିତ
ମାନବର ହସ୍ତେ ବନ୍ଧ ରୂପ
ସ୍ୱର୍ଗେ ତାର କରୁଛ ବିଦ୍ରୂପ,
ଅନ୍ତର ଗୁହାର
ଶୁଣ କି ତାହାର
ଶୂନ୍ୟପ୍ରାଣ
ହେ ପାଷାଣ ?
ନ ଲଭି ସାନ୍ତ୍ୱନା କାହିଁ ଭଗ୍ନପ୍ରାଣ ମାନବ ସନ୍ତାନ
କାଷ୍ଠ ପାଷାଣର ଦେହେ କରଇ ସେ ଦେବତା ନିର୍ମାଣ,
କୋମଳ ମଧୁର ଯାହା କରି ଆରାଧନା
ନୋହେ ଯେଣୁ ଉପଶମ ଅନ୍ତର ବେଦନା,
ବ୍ୟାକୁଳ ହୃଦୟେ ଲୋଡ଼େ ସେହୁ
ଦୟା, କ୍ଷମା, ପାଷାଣର ଦେହୁଁ,
ପାଷାଣର ଗାତ୍ରେ
ମସ୍ତକ ଆଘାତେ
ଅକାରଣ
ଅଶରଣ ।

ହେ ପାଷାଣ, ମାଗୁନାହିଁ ଶମିବାକୁ ମୋ ମରମଜ୍ୱର
କ୍ଷମିବାକୁ ଅପରାଧ, ଭୁଞ୍ଜିବାକୁ ବ୍ୟର୍ଥତା ଆଶାର,
ଲୋଡ଼ୁନାହିଁ ଲଭିବାକୁ ତବ ଅନୁଗ୍ରହ,
ଧନ, ମାନ, ଯଶଖ୍ୟାତି, ଅଭୟହସ୍ତ ଦସ୍ତ
ମୃତ୍ୟୁପରେ ମୁକ୍ତି ନାହିଁ ମାଗେ,
ବଇକୁଣ୍ଠ ନାହିଁ ଭଲ ଲାଗେ,
ଏ ମର୍ତ୍ତ୍ୟ ଭୁବନ
ମୋ ସ୍ନେହ ସଦନ
ଏ ଧରଣୀ
ସୁଖମଣି ।

ଜୀବନର ଯନ୍ତ୍ରଣାରେ ବନ୍ଧଯାଏ ମୋର ପ୍ରତି କ୍ଷଣ,
ନାହିଁ ବେଳ ଭାବିବାକୁ ମୁକ୍ତି ଅବା ମୃତ୍ୟୁର ଚନ୍ଦନ,
ଲଭିଅଛୁ ଯେ ସମ୍ପଦ ଏ ମର ଜୀବନେ
ମିଳଇ ସେ କେବେ କେଉଁ ଅମର ଭୁବନେ ?
ଏ ଜୀବନେ ଲଭିଛୁ ଯେ ନିଧି
ଭୁଞ୍ଜ କରିଦଏ ସ୍ୱର୍ଗସିଦ୍ଧି
ଖୋଜିବାକୁ ତାହା
ବେଳ ନାହିଁ, ଆହା !
କିବା ଲୋଡ଼ା
ସ୍ୱର୍ଗ ଯୋଡ଼ା ?

ଏ ଧରାର ସୁଖ ଦୁଃଖ ସ୍ନିଗ୍ଧ ରୁକ୍ଷ ସୁନ୍ଦର କୁତ୍ସିତ
ଅତି ଆଦରର ମୋର, ଏ ଜୀବନେ ଅତି ପରିଚିତ
କେତେ ଆଶା କେତେ ମୋର ଅଲଙ୍କାର ଧନ
ଛାଡ଼ି ମୁହିଁ ନ ଲୋଡ଼ଇ ସ୍ୱରଗ ଭୁବନ,
ଜନନୀର ଅମୃତ ସେନେହ

ଲଳିତ କରଇ ଏ ଯେ ଦେହ,
ଆଶିଷ ପିତାର
କଲ୍ୟାଣ ଅଧାର
ଏତେ ପ୍ରାଣ
ଏତେ ଗାନ !

ସକଳ ମମତା ତେଜି ନ ଖୋଜଇ ମୁକତି ମାରଗ,
ଛୁଅଁଇ ନାସ୍ତ କ ପଛେ, ନଲୋଡ଼ଇ ଅପର ସ୍ୱରଗ,
କି ଆନନ୍ଦ ନନ୍ଦିତ ସେ ସ୍ୱର୍ଗ-ପରବାସେ
ତୁଏ କି ତା ସୁଷମିତ ଶିଶୁର ସୁହାସେ ?
ଯେ ସଙ୍ଗୀତ ପ୍ରିୟାର ନୂପୁରେ
ଅଛି କେଉଁ ବଇକୁଣ୍ଠପୁରେ ?
ପ୍ରିୟା-ରୂପ-ଶଶୀ
ସେ କେଉଁ ଉର୍ବଶୀ
ପାରେ ଜିଣି
ଗରବିଣୀ !

ତଥାପି ନମଇଁ ତୋରେ ହେ ନିର୍ଜୀବ କର୍କଶ ପାଷାଣ !
ଘନୀଭୂତ ଏଥି ଯେଣୁ କେତେ ପୁଣ୍ୟ ଶିଳ୍ପୀର ପରାଣ
ଯେ ସ୍ୱଜନ ଗଢ଼ିଲା ଏ ପାଷାଣର ଗିର,
ଯେ ବରିଷ୍ଠ କଳ୍ପନାରୁ ଉଦଭୂତ ଏ ଶିଳ୍ପ,
ବିଶ୍ୱପାଇଁ କରିଲା ଦାଦନ
ଅନ୍ତରର ବିପୁଳ ବେଦନ,
ହେବାକୁ ନିର୍ବଂଶ
ଲୋଡ଼ିଲା ଅଯଶ
ବଂଶଗର୍ବ
କରି ଖର୍ବ !

ତ୍ୟାଗର ମହିମା ଯେଣୁ ଏ ଦେଉଳ ଘୋଷଇ ପବନେ
ତ୍ୟାଗର ଜୟ-ପତାକା ଉଡ଼ାଉଛି ଅନନ୍ତ ଗଗନେ,

ବିଶ୍ୱର ଯେ ଆତ୍ମା ଏହି ପାଷାଣେ ନିହିତ,
ଉଦ୍ଦେଶ୍ୟେ ତାହାରି ଆଜି ନମ୍ର ମୋର ଚିତ୍ତ,
ରକ୍ତ ମାଂସର ଯେତେ ହସ୍ତ,
ନିର୍ମିଲା ଏ ପ୍ରସ୍ତର ସମସ୍ତ,
ତାହାର ସକାଶେ
ଏ ପାଷାଣ ପାଶେ
ନମସ୍କାର
ବାରମ୍ବାର ।

ମାନବର ସୃଷ୍ଟି ଏ ଯେ ମାନବର ଅନ୍ତର ଆରତି,
ନମଇଁ ମୁଁ ଏଥି ତେଣୁ ଜଣାଏଁ ମୋର ବ୍ୟଥାର ସ୍ୱରତି,
କାତର ଚିତ୍କାର କେତେ ଅନ୍ତରର ଦୁଃଖ
ଜଡ଼ ଏ ପାଷାଣ ଦେହେ ରହିଅଛି ମୂକ,
ଆଜି ଏହି ଦେଉଳ ଗହ୍ୱରେ
ଶତକଣ୍ଠ ପ୍ରତିଧ୍ୱନି ଥରେ ;
ମିଶାଇ ତା ସଙ୍ଗେ
ଏ ମନ୍ଦିର ଅଙ୍ଗେ
କଣ୍ଠସ୍ୱର
ଉଠେ ମୋର ।

ଲୁକ୍କାୟିତ ବିଶ୍ୱମଧ୍ୟେ ମାନବ ପ୍ରାଣର ଆଶା ଆଧି
ଏ ପାଷାଣ ଜନ୍ମେ ହୋଇ ସ୍ତୂପୀକୃତ ଲଭିଛି ସମାଧି,
ବିରହ ମଧୁର କେତେ ଯୁବତୀ ଗୃହାର
ସନ୍ତାନ-ସ୍ୱାନାର କେତେ ଶୋକ-ଅଶ୍ରୁ ଧାର
ହୋଇଅଛି ଏଥି ଘନୀଭୂତ,
ଅନ୍ତରର ବାସନା ଅଦ୍ଭୁତ,
କେତେ ନରଶ୍ରସ୍ତ
ଲୋଡ଼ିଛି ଅଭସ୍ତ
ସଙ୍ଗୋପନେ"
ଅଶାମନେ ।

ଶ୍ରେଷ୍ଠ ମାନବ-ଅନ୍ତର କେତେ ଏଥି ଆସିଅଛୁ ଧାଇଁ,
ଅକପଟ ପ୍ରେମର କେତେ ରସଉତ୍ସ ଦେଇଛୁ ବୁହାଇ ;
ତରଳାଇ ନିର୍ଜୀବ ଏ ପାଷାଣର ଅଙ୍ଗ
ଜୀବନ ରସର କେତେ ଉଠିଛୁ ତରଙ୍ଗ
କେତେ ଶତ ଜୀବନ୍ତ ଦେବତା
ବିଶ୍ୱପାଇଁ ପ୍ରକାଶିଛୁ ବ୍ୟଥା
ଏ ଶିଳା ବିଚିତ୍ର
ହୋଇଛୁ ପବିତ୍ର
ଲଭି ଯେଣୁ
ପଦରେଣୁ ।
(ଆକର୍ଣ୍ଣ ଯାହାର ମହା ସାମ୍ୟଗୀତ ନାହିଁ ଭେଦ-ଜ୍ଞାନ,
ମାନବ ଶିଶୁର ଯହିଁ ନାହିଁ ଜାତି-ଦ୍ୱେଷ ଅପମାନ, )
କବୀର, ନାନକ, ବୁଦ୍ଧ, ଚୈତନ୍ୟ, ଶଙ୍କର,
କଲେ ଯହିଁ ସମାବେଶ ସକଳ ଧର୍ମର
ଲେଖିଲେ ଏ ପାଷାଣର ଗତେ
"ସକଳ ଯେ ସମାନ ଜଗତେ"
ସବୁ ବଡ଼ ସାନ
ଦୀନ ଧନବାନ
ନତମୁଣ୍ଡ
ଏଥି ବୁଣ୍ଡ ।
ଯେତେ କୋଟି ଯାତ୍ରୀ ପଦ ପଡ଼ିଛୁ ଏ ମନ୍ଦର ଦୁଆରେ
ଭବିଷ୍ୟତେ କେତେ ପୁଣି ଲାଗିବ ଏ ପାଷାଣ ଦୁଆରେ
ନ ରହିବ ଇତିହାସ, ନ ରହିବ ଚିହ୍ନ
ଏ ପାଷାଣ-ଗାତ୍ର କାହିଁ ନୋହିବ ବିଦୀର୍ଣ୍ଣ
କିନ୍ତୁ ସେ ଯେ ବିଶ୍ୱାସ ଅକ୍ଷତ
ତା' ଉଦ୍ଦେଶ୍ୟେ ଜଣାଏଁ ମୁଁ ନତି,

ମାନବ ଜୀବନେ
ଅମୂଲ୍ୟ ଏ ଧନେ
ନମସ୍କାର
ବାରମ୍ବାର ।

( ସବୁଜ କବିତା )

## ପଥ କାହିଁ ?

( ସଙ୍ଗୀତ )

ହେ ସାରଥୀ ! ଆଜ ଚଉପାଶେ ଏ କି ବ୍ୟୂହ ?
ନ ଚଳଇ ତୁରଗ, ନ ପାରଇ ରଥ ବାହ ;
ଯେଣି ଦେଖେ ମୁଖ ଫେରାଇ ଶୁଭଇ ବାଣୀ—
ପଥ କାହିଁ ? ପଥ କାହିଁ ?

ଅଚଳ ପ୍ରାଚୀର ଆକାଶେ ଟେକିଛି ଶିର
ସକଳ ଦୁଆର ରୁଦ୍ଧ ହେଲା ରେ ବୀର !
ଶୂନ୍ୟ ହୋଇଛି ତୂଣୀରୁ ତୋହର ଶର
ନାହିଁ ନାହିଁ ଆଶା ବଣ୍ଟ୍ ଜୟ ପାଇଁ—
ପଥ କାହିଁ ? ପଥ କାହିଁ ?

ହେ ଗାୟକ, ତୋର ମୂର୍ଚ୍ଛିତ ମୂରଛନା
ମାରିଦେଲା ସବୁ ଅନ୍ତର ଅରଚନା
ଯେ ଗୀତ ରଚିଲୁ ଆରେ, ତର ଆନମନା !
କଣ୍ଠ ତୋହର ନ ପାରିଲା ତାହା ଗାଇ—
ପଥ କାହିଁ ? ପଥ କାହିଁ ?

ସକଳ ପ୍ରଦୀପ ନିଭିଗଲା ଆଜ ପୁରେ,
ବିଜୟ ଶଙ୍ଖ ନ ଉଠିଲା ବାଜ ଦୂରେ,
କାହା ଆଗମନ ପାଇଁ ଆଶାପଥ ଗୁ ରେ
ଚକିତ ନୟନେ ରହୁ ଚଉପାଶେ ଚାହିଁ,
ପଥ କାହିଁ ? ପଥ କାହିଁ ?

ଧ୍ୱଂସର ଖାତ ଖୋଳି ଅଛେ ଦଣ୍ଡ ଦଣ୍ଡ
ରଣଭେରୀ ତୋର ସେ ଗ୍ରାମ ଶବଦେ ମିଶୁ
ମରଣ ତୋହର ମୂଳଦରେ ଯାଉ ମିଶୁ !
ଠନ ଭାଲ ତୋର ଜୀବନର ଅନୁଯାୟୀ ;
ପଥ କାହିଁ ? ପଥ କାହିଁ ?
(ମୋ କବିତା)

# ବୈକୁଣ୍ଠନାଥ ପଟ୍ଟନାୟକ

( ୧୯୦୪— )

## ବନ୍ୟା ବିପ୍ଳବ

( ୧ )

ବନ୍ୟା, ବନ୍ୟା, ଚତୁର୍ଦ୍ଦିଗେ ପ୍ରଳୟ ପ୍ଳାବନ ;
ଲକ୍ଷ ଆର୍ତ୍ତ କଣ୍ଠ ଡାକେ, ରଖ ନାରାୟଣ !
ଅନାଥ-ଶରଣ ପ୍ରଭୁ, ଅଶ୍ରୁ ନିବେଦନ,
ବିକଳ ପ୍ରାର୍ଥନା ସତେ ହେବ ଅକାରଣ ?
ବିଫଳ କି ହେବ ଅସହାୟ ହାହାକାର,
ନ ଫିଟିବ ରୁଦ୍ଧ ତବ ମନ୍ଦିର ଦୁଆର ?
ମରଣ ପ୍ରଖର ସ୍ରୋତେ ଯିବେ ତେବେ ଭାସି
ମୂକ ପଶୁ ସମ, ଜନ ପ୍ରାଣୀ ରାଶି ରାଶି ?
ନୀରବେ ରହିବ ସ୍ୱାମି ମୂକ ଶିଳା ସମ ?
ନିଷ୍ଠୁର ଏ ନୀରବତା ତୁମର ଧରମ ?
ନ ଟଳିବ ତଳେ ତୁମ ନିଷ୍ଠୁର ବିଧାନ ?
ମଳିନ ସକଳ ଦମ୍ଭ, ଜ୍ଞାନ, ଅଭିମାନ ?
ସୃଜନ ପ୍ରଳୟ ତବ ନିତ୍ୟ ସହୋଦରେ
ନିର୍ବିକାରେ ତବ ଶଙ୍ଖ ନିର୍ଘୋଷେ ନୀରବେ !

(୨)

ଛୁଟେ ହର୍ଷେ ଜଳସ୍ରୋତ !   ପ୍ରବଳ ଗର୍ଜନ !
ପ୍ରାଣ ଭଷା ଶୁଣି ବ୍ୟଙ୍ଗ କରଇ ମରଣ ।
ଉପହାସ କରେ ବାତ୍ୟା, ଖସିଯାଏ ତଟ
ମରଣ ଗରଜେ ତରୁ-କାଣ୍ଡ-ପତ୍ର ପର ।
ନିଷ୍ଫଳ ବେଦନା-ଅଶ୍ରୁ ଆତ୍ମ-ସମର୍ପଣ,
ଆତ୍ମ-ତ୍ୟାଗ, ସେବା, ନିଷ୍ଠା, ଜଳ ନିମଗନ,
ପାପ ପୁଣ୍ୟ, ଗ୍ଳାନି ଦୟା, ସବୁ ଏକାକାର,
ଧର୍ମାଧର୍ମ, ଭେଦ ବୁଦ୍ଧି ମାନସ ବିକାର,
ଲୁପ୍ତ କରି ବହିଯାଏ କାଳ-ବନ୍ୟା ସ୍ରୋତ
ମାନବର ପ୍ରଜ୍ଞା ଯେଉଁଠି ଅସହାୟ ପୋତ !
ସବୁ ମିଥ୍ୟା କରି ପ୍ରଭୁ ହୁଏ ପରଜିତ
ଅଲଙ୍ଘ୍ୟ ବିଧାନ ତବ !   ତବ ମଙ୍ଗଳ ସଙ୍ଗୀତ—
ମୃତ୍ୟୁ ଗର୍ଭୁ ଶୁଣେ ମାଗେ ପରାହତ ଜନ,
ତୁମ ଦୀପାଲୋକେ କର ତିମିର ହରଣ ।

(୩)

ମରିବୁଁ ସକଳ ଜନ ମୂକ ପଶୁ ସମ ?
ଏ ସକଳ ହାହାକାର ଆତ୍ମ-ନିବେଦନ—
ନିଷ୍ଫଳ ହେବ କି ସତେ ପାଷାଣ ଦେବତା ?
ନ ଫିଟିବ ରୁଦ୍ଧ ଦ୍ୱାର ?   ନ ବାଜିବ ବ୍ୟଥା ?
ମରିବୁଁ ମାରିବେ ନିଶ୍ଚେ ମରିବୁଁ, ମାତର
ତୁମ୍ଭ ନାମ ନିଷ୍ଠୁରତା ଗାଇବୁଁ ନିକର ।
ଉଚ୍ଚସ୍ୱରେ କମ୍ପାଇ ଏ ଅସୀମ ଗଗନ
କରି ନମସ୍କାର ପ୍ରଭୁ ବରିବୁଁ ମରଣ ।
ଯାହାର ଇଚ୍ଛାରେ କୋଟି ଗ୍ରହଚନ୍ଦ୍ର ତାର

କରନ୍ତୁ ବହାର ଅବରତ ସୃଷ୍ଟି ସାରା
ମୁଷ୍ଟିମେୟ ନଃସ୍ୱଜନ ଆମେ କବା ଛାର
ନୀରବେ ବଧାନ ତବ ଭଣକୁଁ ପ୍ରସ୍ତର ?
ନଅ ଅଶ୍ରୁ, ସୃଷ୍ଟି-ସ୍ଥିତି-ପ୍ରଳୟ କରତା
ଜଳ ସ୍ରୋତେ ଭାସିଯିବୁଁ ନାହିଁ ଟଳେ ବ୍ୟଥା ।

( ୪ )

ଦୁର୍ଭେଦ୍ୟ ଏ ମରଣର ଅନ୍ଧକାର ଭେଦ
କରେ ବହ୍ନ ଆଶା-ଦୀପ ଅସ କଏ ସେଦ ?
ନଃସ୍ୱର ଜୀବନ-ଦାତା ?   ମାନବ ସେବକ ?
ଦେବତାର ଦୂତ ଅବା ?   ରକ୍ଷ ପ୍ରାଣ ରକ୍ଷ !
ଲକ୍ଷ ମୂକ ଜନଙ୍କର ଦୁର୍ବଳ ଜୀବନ,
ପାଞ୍ଚ ଦନ ହେଲ ପିଣ୍ଡେ ପଡ଼ ନାହିଁ ଅନ୍ନ ।
ନୀରବେ ଗଲେଣି ଭାସି ମୂକ ପଶୁ କେତେ
କରନ୍ତ କଳନା କେହୁ, ବାକ ଜଣ କେତେ
ନୀରବେ ରହନ୍ତୁ ଶୁଣି କାଳର ଆହ୍ୱାନ,
ଦେବତାରୁ ବଳ ତୁମେ, ରଖ ରଖ ପ୍ରାଣ !
ସାମାନ୍ୟ ମାନବ ନୁହଁ ତୁମେ ଦେବଦୂତ,
ତୁମ ରକ୍ତେ ନର୍ତ୍ତିବ ଏ ଧରା ନତ୍ୟ ପୂତ,
ଅମୃତ ମଙ୍ଗଳମୟ ତୁମ ପାଦ ସ୍ପର୍ଶେ,
ମୃତ୍ୟୁ-ତନ୍ଦ୍ରେ ପ୍ରାଣ-ପଦ୍ମ ବକଶେ ହରଷେ ।
ବନ୍ୟା ପ୍ରପୀଡ଼ତ ପଞ୍ଚଶତ ନଃସ୍ୱ, ଦୀନ ଗ୍ରାମବାସୀ
ସହାୟ-ସମ୍ବଳ-ହୀନ କ୍ଷୁଦ୍ର ପଲ୍ଲୀ ଯାଇଛୁ ଯେ ଭାସି
ଗତ ରାତ୍ରେ ।   ଶୂନ୍ୟ ହସ୍ତେ ଗ୍ରାଉଁ ସବୁ ଆସିଲେ ପଳାଇ
ପଥପାର୍ଶ୍ୱେ ।   ବୃକ୍ଷ ତଳ ବନା ତାଙ୍କ ଆଶ୍ରା ଅନ୍ୟ ନାହିଁ ।
ତା ପରେ ପ୍ରବଳ ବୃଷ୍ଟି, ଅବରଳ ଧାରା ପଡ଼େ ଝର
ଶୂନ୍ୟ ପିଣ୍ଡ, ବବସନ ଦେହ, ମଜ୍ଜା ଅସ୍ଥି ଉଠେ ଥର ।

ଲତା ଗୁଳ୍ମ ଅନ୍ତରାଳେ ଯୁବା ନାଗ୍ର ରଖେ ତାର ମାନ
ତା କୋଳେ ବୁଭୁକ୍ଷୁ ଶିଶୁ, ପାଶେ ବୃଦ୍ଧା କହେ, ଗଲା ପ୍ରାଣ ।
ମୂକ ପଶୁ ସମ ସର୍ବେ ଶୂନ୍ୟଙ୍କୁ ରହିଛନ୍ତି ଚାହିଁ ।
କାନ୍ଦିବେ ଆଶ୍ରୟ ଲାଗି ? ନେତ୍ରେ ତାଙ୍କ ଜଳବିନ୍ଦୁ ନାହିଁ ।
କାହା ମୁଖେ ନାହିଁ ଅବା କ୍ଷେଗୀଜନ କ୍ଷୀଣ ଆଶା ରେଖା,
ଗୋଷ୍ଠ-ଗାଗ୍ରି-ସମ ମୂକ କରୁଛନ୍ତି ମରଣ ଅପେକ୍ଷା ।
ଗୃଧ୍ର ଦଳ ବୃକ୍ଷ ପାଶେ କରୁଛନ୍ତି ଅବା ଉପହାସ ।
ନର ଭାଗ୍ୟ ଦେଖି ତହିଁ, ଚତୁର୍ଦ୍ଦିଗ ମରଣର ତ୍ରାସ ।

୬

ସାମ୍ୟବାଦୀ ଦେଶସେବୀ ଧର୍ମ-ସୌଧେ ଅଙ୍ଗୁଳି ଦର୍ଶାଇ,
ତର୍ଜି କହେ, "ଧ୍ୱଂସ ବିନା ଅନ୍ୟ ଗତି ନାହିଁ ।
ପର-ଅଙ୍ଗ-ପୁଷ୍ଟ ଯେତେ ଜନବର୍ଗ ବିଳାସ ବ୍ୟସନେ
ଗତ୍ୟନ୍ତର ନାହିଁ ଯେବେ ନ ମିଶିବେ ମାଟିରେ ସେ ରଣେ ।"
ବନ୍ୟାକ୍ଲିଷ୍ଟ ବୃଦ୍ଧ କହେ, "ଲୋଡ଼ା ନାହିଁ ବାବୁ ଅଭିଶାପେ,
ସୃଷ୍ଟିର ମଙ୍ଗଳ ହେଉ, ଆମେ ପଛେ ମରୁଁ ଆତ୍ମ-ପାପେ ।
ପୁରାତନ ଏ ଧରାରେ କେତେ ଧ୍ୱଂସ କେତେ ସୃଷ୍ଟି ଲୀଳା
ପ୍ରୟାସ କରଇ ବ୍ୟର୍ଥ—କହ ଏହି ବନ୍ୟା କାହିଁଥିଲା ?
ସକଳ ଉଦ୍ଦେଶ୍ୟ ତାର । ନଷ୍ଟ ଏ ଯେ ଯେତେ ପରକାର,
ନାଚେ ନର କୀଡ଼ନକ ସମ, ପଶୁ ସମ କରେ ହାହାକାର ।
ଜାଣେ ଏକା ସେହି ସିନା ପଥ ଧାରେ କମ୍ପା କଲା ଠିଆ
ଉଦ୍ଦେଶ୍ୟ ତା ହେଉ ସିଦ୍ଧ, ଏ ଜୀବନ ଯାଉ ଦଅ ନିଆ ।
ଜଗନ୍ନାଥ, ଜଗନ୍ନାଥ, ସେହି ଏକା ଭରସା ଜୀବନେ ।"
କହି ନୀରବିଲା ବୃଦ୍ଧ ; ଅଶ୍ରୁ ନେତ୍ରେ ନମେ ନବ ଜଣେ ।

( କାବ୍ୟ ସଞ୍ଚୟନ )

# ମୂକ ଭଗବାନ

ଜୀବନର ପଙ୍କେ ପଶି ଦୀନ ଅକିଞ୍ଚନ
ଲଭନ୍ତି ଆଦୃତ, ତହିଁ ପାଇଛ ଆସନ
ହେ ଦରିଦ୍ରସଖା ! ନିଖିଳର ରାଜେଶ୍ୱର !
କରିବାକୁ ଏ ଜୀବନ ସୁନ୍ଦର ଅମର ।
ବରି ନେଇଅଛ ଆପେ ଦୈନ୍ୟ ନିର୍ଯ୍ୟାତନ,
ସହସ୍ର ଲାଞ୍ଛନା କ୍ଳେଶ କ୍ଷତ, ଅନଶନ,
କରିଅଛ ଶୁଭ୍ର ଦେହ ଶୋଣିତ-ଆପ୍ଳୁତ
ମାନବ ଗରଳ ବର୍ଷି କରୁଛ ଅମୃତ ।
ଅଶ୍ରୁ ଅନ୍ତରକୁ ତହିଁ ଫୁଟାଉଛ ହାସ,
ନିର୍ଘଣ ଅନ୍ଧାରୁ ତବ ଆଲୋକ ପ୍ରକାଶ ।
ପ୍ରଭଞ୍ଜନ ଝଞ୍ଜା ମେଳେ ହସ ତୁମେ ଶାନ୍ତ
ମୃତ ଜୀବନର ଭସ୍ମେ ଅରବିନ୍ଦ-କାନ୍ତ ।
ନିଖିଳ ବିଶ୍ୱର ପାପଙ୍କରେ ନିକ୍ଷେପିତ
ମନ୍ଦହାସେ ଗାଉଅଛ ଅମର ସଙ୍ଗୀତ ।

ଗାଉଛ ଦରିଦ୍ରସ୍ୱରେ ନିଖିଳର ବ୍ୟଥା,
ଭ୍ରାନ୍ତ ଏ ମାନବ ଲାଗି ଏତେ ହିଁ ମମତା !
ନୟନ ଯୁଗଳୁ ବହିଯାଏ ବାରିଧାର
ତନୁ ମନ ବହେ ଯେତେ ଜୀବନର ଭାର
ଅତ୍ୟାଚାର କାଳସର୍ପ-ବକ୍ଷେ ହୋଇ ସାର
ପଡ଼େ ନାହିଁ ତୁମ ବ୍ୟଥା ଶ୍ରବଣେ କାହାର ।
ତୁମ ଅଶ୍ରୁ ଯୋଗେ ହୁଏ କୁଳିଶ ତରଳ,
ମୂକ ପଥରରୁ ଫାଟି ପଡ଼େ ଅଶ୍ରୁଜଳ ।
ହେ ମୂକ ପାଷାଣ ପ୍ରଭୁ ! ଚିର ଅଚଳ,
ହେ ଲାଞ୍ଛିତ, ନିକ୍ଷେପିତ, ହେ ଶିବ, ମଙ୍ଗଳ !

ତୁମର ଶୋଣିତ ଅଶ୍ରୁ ଦୀନ ଜନ ପ୍ରାଣ,
ପରଶିଛୁ, କ ଆଦେଶ ଗାଇବାକୁ ଗାନ ?
ନତ ଶିରେ ଶ୍ରୀପଦ୍ମରେ ମାଗେ ଆଜ ଭିକ୍ଷା,
"ଦିଅ ସେ ରୌରବ ବାସ ଦାରିଦ୍ର୍ୟର ଦୀକ୍ଷା ।"

( କାବ୍ୟ ପଞ୍ଚସ୍ୱନ )

# ଅନ୍ନଦା ଶଙ୍କର ରାୟ

(୧୯୦୪—)

## ପ୍ରଳୟ ପ୍ରେରଣା

( ୧ )

ଅଗ୍ନିକଣା ! ଅଗ୍ନିକଣା !
ଦେହ-ଦୀପେ ଜାଳ ଦୀପ୍ତ ଶିଖା ;
ତୀବ୍ର ତେଜେ ଦହିବ ମୁଁ
ଜଡ଼ତାର ଅନ୍ଧ କୁଜ୍ଝଟିକା ।
ଶକ୍ତି-ମଦେ କ୍ଷିପ୍ତ କର
ଶକ୍ତି ପାଇଁ ସର୍ବାଙ୍ଗ ଅଧୀର ;
ଅଲୋକ ଆସବ ଦେଇ
କର ମୋତେ ଉନ୍ମାଦ-ମନ୍ଥର ।
ଝଞ୍ଜାବାୟୁ ! ଝଞ୍ଜାବାୟୁ !
ଡାକ ମୋତେ ପ୍ରଳୟ ଆହବେ,
ମୂଢ଼ ମୂକ ଧରିତ୍ରୀବକ୍ଷେ
ମାତିବ ମୁଁ ଷୋଲ୍ଲାସ ତାଣ୍ଡବେ
ମୋତେ କର ବଂଶୀ ତବ
ବଜାଇବ ଭୈରବୀ ରାଗିଣୀ ;

ଝଞ୍ଜାଗର୍ଜି ! ମୋ ସଙ୍ଗୀତେ
ମିଶୁ ତବ କଙ୍କଣ କଙ୍କିଣି ।
ମୃତ୍ୟୁ ମନ୍ତ୍ରେ ଦୀକ୍ଷା ଦିଅ,
ଦିଅ ମୋତେ ଜ୍ୱଳନ୍ତ ଜୀବନ,
କଣ୍ଠେ ମୋର ବଜ୍ରବାଣୀ
ନେତ୍ରେ ମୋର ପ୍ରଳୟ ଦୀପନ ।
ଅନନ୍ତ ଜୀବନମୋର
ଅବହେଳେ ଛିଣ୍ଡିବ ମରଣେ,
ସମାଜେ ମାନବ ନାହିଁ
ନୈକମତ ଦଳିବ ଚରଣେ ।
ଝଟିକା ମୁଁ—ବହୁଯିବ
ଦେଶ ପରେ, ଯୁଗର ଉପରେ,
ଅନଳ ମୁଁ—ଦହୁଯିବ
ନର୍ତ୍ତବେ, ସ୍ତବରେ, ଅକାତରେ ।
ଯେତେ ପାପ, ଯେତେ ମିଥ୍ୟା
ଯେତେ ମୋହ, ଯେତେ ପ୍ରବଞ୍ଚନା,
ଧର୍ମ ନାମେ, ଜାତ ନାମେ,
ନୀତି ନାମେ ଯେତେ ଅବର୍ଜନା ।
ବୈଷମ୍ୟର ଭେଦରେଖା,
ଭଣ୍ଡାମିର ଯେତେ ଆଚ୍ଛାଦନ,
ଦୁର୍ବଳର ହାହାକାର,
ପୀଡ଼ିତର ମରମ ବେଦନ—
ବଧ୍ୱ ପଦେ ଧରିତ୍ରୀର
ଦୁଃଖ ଶୋକେ ଭରା ଅର୍ଘ୍ୟଥାଳ—
ନଷ୍ଠୁର ନର୍ମମ ମୁହିଁ,
ନର୍ବିକାରେ ସବୁ ଦେବ ଜାଳି ।

ଛିନ୍ନ କର ଜୀର୍ଣ୍ଣ କର
ଯେତେ ବାଧା ଯେତେକ ବନ୍ଧନ,
ମାନବ କଳଙ୍କ ସ୍ତରେ
ରଚିବି ମୁଁ ପ୍ରଳୟ-ଇନ୍ଧନ ।
ଖଣ୍ଡ ଖଣ୍ଡ କରି ସବୁ
ଭଗ୍ନ କରି ଚୂର୍ଣ୍ଣ କରି କ୍ଷଣେ,
ନିକ୍ଷେପିବି ବହୁଦୂରେ
ବିସ୍ମୃତିର ଗୁପ୍ତ ଗୃହକୋଣେ ।
ଏଇ ଭଗ୍ନ ଅବଶେଷ
ଉପରେ ମୁଁ ରଚିବି ନନ୍ଦନ
ମର୍ତ୍ତ୍ୟରେ ଅମରାବତୀ,
ନବ ଦେହେ ଜୀବନ-ସ୍ପନ୍ଦନ ।

( ୨ )

ମୁକ୍ତ ହୁଅ, ମୁକ୍ତ ହୁଅ,
ଜଗତର ଯେତେ ନର ନାରୀ,
ମୃତ ସମାଜର ଶିରେ
ସିଞ୍ଚିଦିଅ ସଞ୍ଜୀବନ ବାରି ।
ନର, ତୁମେ ଭୁଲିଯାଅ
ଅତୀତର ଦୁଃସ୍ୱପ୍ନ ଯେତେକ,
ସ୍ୱର୍ଣ୍ଣ କାଳ ଅଭିମୁଖେ
ନବ ପଥେ ହୁଅ ହେ ପଥିକ ।
ନାରୀ ! ତୁମ୍ଭେ ଆସ, ଆସ,
ଧର ହାତ, ହୁଅ ସହଚରୀ,
ସେବା, ସ୍ନେହ, ସମବ୍ୟଥା
ବିନା ନର ବଞ୍ଚିବ କିପରି

ଜନନୀ, ଭଗିନୀ, କନ୍ୟା,
ପ୍ରାଣପ୍ରିୟା, ଜୀବନ ସଙ୍ଗିନୀ,
ଦାସୀ ନୁହ, ଦାସୀ ନୁହ,
ନୁହ ତୁମ୍ଭେ ନୁହ ବନ୍ଦିନୀ ।
ଉଚ୍ଚ ସ୍ୱରେ କହ ଉଠ—
"ମୁକ୍ତ ମୁହିଁ, ମୁକ୍ତ ମୋ ଜୀବନ,
ମୁକ୍ତ ମୋର ପ୍ରେମ ଆଜ
ତବ ପ୍ରେମେ ଲଭିବ ମିଳନ ।
ଅବରୋଧେ ଯେ ଜୀବନ
ସଢ଼ି ଯାଏ ଆଲୋକ ଅଭାବେ,
ଅନଚ୍ଛୁକ ଯେ ପ୍ରେମ
ଅରପେ ମୁଁ ସେବା ଦାସୀ ଭାବେ,
ପ୍ରଳୟ-ପରଶମଣି
ଛୁଇଁଲାଣି ମୋ ପ୍ରାଣେ, ମୋ ପ୍ରେମେ,
ନବ ନର, ନବ ଯୁଗେ
ଢାଳ ତେଜ ନଅ ଆଜ ହେମେ ।"
ହେ ଦୁର୍ବଳ, ହେ ବଞ୍ଚିତ,
ଦୀନ, ହୀନ, ଅସ୍ପୃଶ୍ୟ, ଚଣ୍ଡାଳ,
ଧର୍ମଧ୍ୱଜୀ ବ୍ରାହ୍ମଣର
ସଯତ୍ନ-ଗ୍ରଥିତ ମିଥ୍ୟା-ଜାଲ
ଫୁତ୍କାରେ ବିଦୀର୍ଣ୍ଣ କର
ଦୃପ୍ତ ଶିରେ ଗର୍ଜି ଉଠ ବାରେ—
"ଆଉ ମୁଁ ଭୁଲିବି ନାହିଁ
ବିଧିଦତ୍ତ ମୋର ଅଧିକାରେ ।"
ମୁକ୍ତ ହୁଅ, ମୁକ୍ତ ହୁଅ,
ପତିତ ପାତକ ଯେତେ ଜାତି,

ପରାଧୀନ ଯେତେ ଦେଶ
ମୁକ୍ତି ପାଇଁ ଉଠ ଥରେ ମାତି
କାପୁରୁଷ ଜୀବନେ ଯେତେ
ଅଛି ପାପ, ଅଛି ଅବଳତା,
ବୈଷମ୍ୟ, ବିରୋଧ ଯେତେ,
ଅବିଶ୍ୱାସ, ଭୀରୁତା, ଭଣ୍ଡତା ।
ସର୍ବୋଦୟ ନିର୍ବିଘ୍ନରେ
ନିର୍ବିକାରେ ଅନଳେ ଆହୁତି ;
ତେବେ ତ ଲଭିବ ସିଇ
ଦାସତ୍ୱର ନିଗଡ଼ୁ ନିଷ୍କୃତି ।
ଜଗତର ନର ନାରୀ,
ଶୁଣ ମୋର ଅଗ୍ନିଗର୍ଭ ଧ୍ୱନି—
"ମୁକ୍ତ ହୁଅ", "ମୁକ୍ତ ହୁଅ",
ଗର୍ଜେ ଆଜି ପ୍ରଳୟ-ଅଶନି ।

( ସବୁଜ କବିତା )

# ମାୟାଧର ମାନସିଂହ
( ୧୯୦୫— )

## ମହାନଦୀରେ ଜ୍ୟୋତ୍ସ୍ନା-ବିହାର

ଶିଳାଗୁହ ଅନ୍ଧକାରବାସୀ ମୁଁ ଜନନ !
ଉତ୍କଳ ! ନ ଥିଲି ଜାଣି, ଅଛି ଲୋ ତୋ ପୁରେ
ଏମନ୍ତ ରୂପର ଲୀଳା ; ନ ବାହୁଁ ତରଣୀ
ଆଜ ଏ ଜ୍ୟୋତ୍ସ୍ନାରେ ନୀଳ ମହାନଦୀ ପୁରେ । ୧
ଆହା କି ବିପୁଳ ଶୋଭା ଭାସେ ଆଖି ଆଗେ
କେମନ୍ତେ ବର୍ଣ୍ଣିବି ମୋର ମୁଗ୍‌ଧ ଅନୁଭବ,
ଚକ୍ଷୁ ମୋର ଅନ୍ଧ ହୁଏ ଜ୍ୟୋଛନା ପରାଗେ,
ବାଣୀ ମୋର ନାହିଁ ଫୁଟେ, ମାନ ପରାଭବ । ୨
ଧବଳ-ଉଚ୍ଛ୍ୱାସ ସମ ରଜନୀ ବଧୂର
ଜ୍ୟୋଛନା ବ୍ୟାପିଛି ଦୂର ଦିଗଚକ୍ର ଲଗି,
ତଳେ ତାର ଏ ଧରଣୀ ପ୍ରକୃତି-ମଧୁର
ହୋଇଛି ମଧୁରତର ତା ପରଶେ ଜାଗି । ୩
ଆକାଶର ଖଣ୍ଡ ସମ ମହାନଦୀ-ବାରି
ଚନ୍ଦ୍ରିକା-ଚୁମ୍ବନ ପାଇ ଧବଳ-ଚପଳ,
ତରଳ ମୁକୁର ଅବା ଦେଇଛି କେ ପାରି
ଦେଖିବେ ବଦନ ନଭ-ସୀମନ୍ତିନୀ ଦଳ । ୪
ଦୂର କୂଳେ ବୃକ୍ଷ ରେଖା ଜ୍ୟୋଛନା ଧଉତ
ପାଣ୍ଡୁର ଆଲୋକେ ଧରି ତନ୍ଦ୍ରାଳସ ଶିର
ସ୍ୱପ୍ନପୁରୀ କରେ ସୃଷ୍ଟି ; ଅଳସ ମରୁତ
ଜ୍ୟୋଛନା-ମଦିରା-ମତ୍ତ ବହେ ଧୀର ଧୀର । ୫

ଅଙ୍ଗେ ଯେଣୁ ମନ୍ଦାକିନୀ-ଶୀକର ନିଷେକ
ଦୂରେ ଓ ନିକଟେ ଦିଶେ ନଦୀ ପଠା ଶତ—
ଶରବଣ ଶ୍ୟାମଚ୍ଛବି, ଦୀର୍ଘୀକୃତ-ବେକ—
ବିରହୀ ଚକୋର ଯହିଁ କାନ୍ଦେ ଅବିରତ । ୬

ଦୂରବାହୀ ନାଇଗ୍ରାର ସରଳ ସଙ୍ଗୀତ
ପବନେ ଆସଇ ଭାସି ନଦୀ-ବକ୍ଷପରେ
କ୍ଷେପଣି ଆଘାତେ ଦେଖ ଚନ୍ଦ୍ରିକା-ରଞ୍ଜିତ—
ନଦୀବାରି, ଲକ୍ଷ ରୌପ୍ୟଗୁଚ୍ଛ ସୃଷ୍ଟି କରେ । ୭

ପଶ୍ଚାତେ ପ୍ରସାରି ନୀଳ-ଶୁଭ୍ର କାଶ ଶ୍ରେଣୀ
ମିଶାଇ ଆକାଶ ତଳେ ; ସମ୍ମୁଖେ ମୋହର,
ଗମ୍ଭୀର ସୁନ୍ଦର ଗିରିମାଳା ଉଠେ ଭାସି
ଚନ୍ଦ୍ରିକା-ଚନ୍ଦନେ ଚର୍ଚ୍ଚି ନୀଳ କଳେବର । ୮

ଉଠିଛୁ ଶିଖର-ମାଳା-ପଶ୍ଚାତୁଁ ଆକାଶ
ସନ୍ନ୍ୟାସିନୀ-ମୁଖସମ ପ୍ରଶାନ୍ତ ଧବଳ,
ତା ତଳେ ରଜନୀ ବଧୂ ଚନ୍ଦ୍ରିକାର ବାସ
ଉଡ଼ାଇ ଧରଣୀ କରେ ପରଶେ ଉତଳ । ୯

ଏ ବିଚିତ୍ର ତଟଗୃହେ ଅଚେତ ମୁଁ ଦୀନ
ମୁଗ୍ଧ ସମ ରହେ ବାନ୍ଧି ମହା ମହିମାରେ
ସ୍ୱର୍ଗେ ବା ହୋଇ ଏହି ଜ୍ୟୋତ୍ସ୍ନାରେ ପ୍ରଲୀନ
ଦେବଗଣ ଯେ ସୁଧା ଝରେ ଆଜି ଏତେ ଧାରେ । ୧୦

( ୭ )

ହାୟରେ ଉତ୍କଳ ଭୂମି, ପ୍ରକୃତ-ସୁନ୍ଦର,
ମନ୍ଦାକିନୀ ସମ ନଦୀ, ମରକତ ଗିରି,
କାନନ, କେଦାରେ ଲକ୍ଷ ଶୋଭାର ବହର
ଥାଉ ତୋର, କହ କିମ୍ପା ଏତେ ହତଶିରୀ ? ୧୧

ଏ ସ୍ୱର୍ଗ ସୁଷମା ଯାର, କରିବ ବିଶ୍ୱାସ
କେମନ୍ତେ କହ ଲୋ ତାର ଅନ୍ତର ଅଭାବ ?

ମୃଗସମ ମୁଗଧ କରେ ମୋରେ ଯା ନିଶ୍ୱାସ,
ତା ଦେହେ ସମ୍ଭବେ କାହୁଁ ଦୁର୍ଦ୍ଦିନ ପ୍ରସବ ? ୧୨
କାନନ-ଶ୍ୟାମଳ-ବାସ, ଶିଖରୀ—ମୁକୁଟ,
ଚରଣ ଚୁମ୍ବଇ ମହା-ସାଗର-ଲହରୀ
ଏ ବେଶେ ହୁଅଇ ଯାର ମହିମା ପ୍ରକଟ,
କେମନ୍ତେ ସ୍ୱଭାବ ତାରେ ଅଭିଶପ୍ତା କରି ? ୧୩
ଆଜି ତୋର ଇତିହାସ ସାକ୍ଷୀ ଏ ତଟିନୀ—
ଜଳେ ମୋ ତରଣୀ ଯେବେ ଭାସିଯାଏ ଧୀରେ
ଜନନୀ ! ଗୌରବ ତୋର କଳ୍ପନା-ସଙ୍ଗିନୀ
ଗୋଟି ଗୋଟି ଦୃଶ୍ୟେ କାଢ଼ି ଦିଏ ମୋ 'ସ୍ମୃତିରେ । ୧୪
ସେ ଦିନ ତୋ ଗିରି ସଙ୍ଗେ, ତୋର ଗଜପତି
ତୋଳିଲା ସ୍ପର୍ଦ୍ଧାରେ ତାର ଦୁର୍ଗ ଅଭ୍ରଂକଷ
ତୋହର ଏ ନଦୀର ସମ ମହାନିରପତ୍ତ
ହୃଦରେ ଉଦାର କରି ଜିଣି ନେଲା ଯଶ । ୧୫
ସେ ରାଜା ଯାଇଛି ଃସ୍ୱଳି, ଦୁର୍ଗ ତାର ନାହିଁ ;
ତା ସଙ୍ଗେ ଯାଇଛି ପୁଣି ସେ ବୀର ହୃଦୟ,
ତୋହର ଅତୀତ ମା ଗୋ ଆଜି ଥାଇ ଥାଇ
କରେ ନିଷ୍ଠୁର ପରିହାସ ଘୋର ବ୍ୟଥାମୟ । ୧୬
ତରଣୀ ଚଳଇ ମୋର ବାରବାଟୀ ତଳେ
ରହରେ ନାଉରୀ, ଦଣ୍ଡେ ଭିଡ଼ ଏଥି ତଟୀ,
ମୋ ମଥା ଲଗାଇ ପୂତ ସୋପାନ ପ୍ରସ୍ତରେ
ଦିଏ ଅପଦାର୍ଥ-ପ୍ରାଣେ କୃତକୃତ୍ୟ କରି । ୧୭
ସେ ଦିନ ଏ ଶିଳାପରେ ଅବଗାହେ ଆସି ।
ସୁକୁମାରୀ ରାଜବାଳା ଅଙ୍କିଥିବ ତାର
ଲାକ୍ଷା ରକ୍ତ ପଦଚ୍ଛବି କରି ମଞ୍ଜୁଭାଣୀ
କଠିଣ ପାଷାଣ ଦେହେ ଆନନ୍ଦ ସଞ୍ଚାର । ୧୮

ସେ ଦିନ ସଜନୀ ମେଳେ ରୂପସୀ ମହିଷୀ
ଏକ କରେ ଦୁର୍ବାକ୍ଷତ, ଶଙ୍ଖ ଆନ କରେ
ଓଜସ୍ୱୀ ପୁତ୍ରର ଶିରେ ମଙ୍ଗଳ ଆଶିଷି
ବର ନେଇଥିବେ ଗୃହେ ଏଇ ଶିଳାପରେ । ୧୯
ସେ ଦିନ ଏ ଶିଳାପରେ ନାଗରିକା ଶତ
ହରିଦ୍ରା ପ୍ରଲେପେ ରଞ୍ଜି କନକ ବଦନ
ବନ୍ଦିଥିବେ ଶଙ୍ଖ ବାଇ ରାଜାର ବୋଇତ
କରିଛି ଯେ ଜବ ଦ୍ୱୀପୁଁ ମୁକ୍ତା ଆନୟନ । ୨୦
ସେ ଦିନ ଏ ଶିଳା ପରେ ନଗର-ଜନନୀ
ଏକତ୍ରେ ପଠାଇ ପୋତେ ସନ୍ତାନେ ସମରେ
ରହିଥିବେ ଦୂର ଦିଗେ ସେ ବୀର ରମଣୀ
ଲୁଚାଇ ଆଖିର ଲୁହ ଅପମାନ ଡରେ । ୨୧
ସେ ଦିନ କାହିଁ ଗୋ ଶିଳା ?   ଏ ଦୁର୍ଗର ଗ୍ରସ୍ତା
ପଡ଼ି ଏ ତଟିନୀ ଜଳେ, ଚକୋଷ୍ଠ-ଚକୋରେ,
ଆଜି ଯେବେ ଜଣା ଖ୍ୟାତ ; ଜୀବନର ମାୟା
ଏ ଜାତ ନ ଥିଲା ଜାଣି ସପତ୍ନିର କୋଳେ । ୨୨
ଚିରଦିନ ପାଇଁ ସେ କି ଯାଇଛନ୍ତି ଚାଲି
ନ ଫେରିବେ ରାଜାରାଣି, ନ ଫେରିବେ ବୀରେ ?
ବୋଇତ ବନ୍ଦାଣ ଲାଗି ଏ ତଟିନୀ ବାଲି
ନାଗରିକା-ପଦ-ପ୍ରାନ୍ତ ନ ଚୁମ୍ବିବ ଧୀରେ ? ୨୩
ଦୁର୍ଗ ଆଉ ଉଠିବନି ? ରାଜାର ବୋଇତ
ନ ଫେରିବ ମୁକ୍ତା ଧରି ଏ ତଟିନୀ ବାଟୁ,
ନଗରର ବଧୂ ଯେତେ ମଙ୍ଗଳ ସଙ୍ଗୀତ
ନ ବନ୍ଦିବେ ତାହେ କେବେ ମଧୁ କଣ୍ଠେ ଗାଇ ? ୨୪
ସେ ସୌଭାଗ୍ୟ ଶେଷ ହାୟ, ଏ ଜାତିର ଶେଷ
କି ଥିଲା ବିଧାତା କାମ୍ୟ ?   ସେ ଗୌରବ ପରେ,

ବଞ୍ଚିବା ଧରି ଏ ଖାଲି କଙ୍କାଳ ଅଶେଷ
ଅଶ୍ରୁ ଆବେଗ ; ମରଣରୁ ଶତ ଗୁଣେ ବଳେ ! ୨୫

( ୩ )

ଏମନ୍ତ ଜୋଛନା ରାତେ ସେ ଦିନ ଏ ସ୍ଥଳୀ
କି ଶୋଭା ଧରଇ ଅବା କଳ୍ପନା ସଜନି,
କହ ମୋତେ, ଶତ ଶତ ନାଗରକେ ତହିଁ
ବାହୁ କେନ୍ଦ୍ରେ କରୁଥିବେ ମୁଖରା ରଜନୀ । ୨୬
ନୃପତିର ଗଜଦନ୍ତ ତରୀ ଥିବ ଆଗେ,
ମୁଖରା ଗାୟିକା କଣ୍ଠେ ସୁଗନ୍ଧେ ଉଚ୍ଛଳା,
ନୃପତି କୁଣ୍ଡଳମଣି ଚନ୍ଦ୍ରିକାର ରାଗେ
ଝଲସେ, କମ୍ପଇ କଣ୍ଠେ କୁସୁମର ଝରା । ୨୭
ରାଜ-ତରୀ ପାଶେ, ପଛେ, ଶତ ତରୀ ବାହି
ଚଳନ୍ତ ନଗରଜନେ ବିଳାସ-କୁଶଳ
ମୁଖରି କରି ଏ ନଦୀ ଉଚ୍ଚେ ଗୀତ ଗାଇ
ଉଦ୍ଦାମେ କ୍ଷେପଣ କରି ଆକୁଳ ଏ ଜଳ । ୨୮
ଊର୍ଦ୍ଧ୍ୱେ ତେଣେ ଚନ୍ଦ୍ରଶାଳା ପୁରେ ରାଜରାଣୀ
ସ୍ୱର୍ଣ୍ଣଦୀପ ପଛେ ରଖି ବାତାୟନ-ମୁଖୀ
(ଦେଖନ୍ତି ଏ ମହାଲୀଳା, ଫୁଟେ ନାହିଁ ବାଣୀ,
ବଦନେ ଆସେ କି ଭାଷା ପ୍ରାଣ ହେଲେ ସୁଖୀ ?) ୨୯
ଆନ କକ୍ଷେ ରାଜବଧୂ କୋମଳା କିଶୋରୀ
ସୁନ୍ଦରୀ ସଜନୀ ମେଳେ ଧରି ଫୁଲ ହାର
ଦେଖନ୍ତି ଚନ୍ଦ୍ରମା ଶୋଭା ଚନ୍ଦ୍ରମୁଖ ତୋଳି,
ଏ କାଳେ ମିଳିଲେ ପାଶେ ନୃପତି କୁମାର । ୩୦ ।
ତୀରେ ବାଦ୍ୟ-ନହବତ, କମ୍ପଇ ଧରଣୀ,
ସେ ପାରି ପର୍ବତମାଳା ଦିଏ ପ୍ରତିଗୀର ।
ମନ୍ଦିରୁ ଉଠେ ଦୁର୍ଗ କକ୍ଷ, ରାଜାର ତରଣୀ

ନଗ୍ନ ଏ ଉନ୍ମାଦେ ନୀଳ ମହାନଦୀ ନୀର । ୩୧
ସେ ଦନ ମୁଁ ଥାଆନ୍ତ କ ସୃଜନ ଗହଣେ,
ତୋଷି କ ନ ଥାନ୍ତେ ଏହ ଦରଦ୍ର ଚତ୍ତ
ଗୁଣଗାଥା ସୃଜା ମୋର, ରହୁ ବତରଣେ ?
ବଧାତା, ହୃଦସ୍ଥ ଭରି ଗାଇଥାନ୍ତ ଗୀତ । ୩୨

( ୪ )

ଫେରବା କହୁଛ ବନ୍ଧୁ, ପୁଣି ଅନ୍ଧକାରେ ?
ଫେରବାକୁ ହେବ ସତେ ! ହାୟ ଏ ଜୀବନ !
ଅବସର ନାହିଁ ମିଳେ କ୍ଷଣେ ଭୁଲ୍‌ବାରେ
ଜୀବନର ହାହାକାର, ପ୍ରାଣର ଦହନ । ୩୩
ଚନ୍ଦ୍ରମା ଉଠିଛୁ ଊର୍ଦ୍ଧ୍ୱେ, ବସୃଷ୍ଟ ଧରଣୀ
ନୀରବ, ନସ୍ତବ୍‌ଧ, ଶାନ୍ତ ମହାନଦୀ ଜଳ
କ୍ଳାନ୍ତ ଶିଶୁ ସମ ଶାନ୍ତ । ଉଜ୍ଜ୍ୱଳ ରଜନୀ
ପକ୍ଷ ପାତ ଆବୋରଛ ନଭ, ଜଳ, ସ୍ଥଳ । ୩୪
ଏ ମହା ନୀରବ କ୍ଷଣେ. ଏ ଜ୍ୟୋଛନା ତଳେ
ମୁଗ୍‌ଧ ମୁଁ ଏକାଇଁ ଏହ ବପୁଳ ଶୋକରେ,
ଅନୁଭବେ ଆହା କାର ସ୍ପର୍ଶ ଏ ଅନ୍ତରେ
ବଚନୁଁ ଅତୀତ, ମୁହିଁ ପ୍ରଣମେ ତାହାରେ । ୩୫
ସେ ଯେ ସତ୍ୟ, ଶିବ ସେହ, ଏକା ସେ ସୁନ୍ଦର,
ଭୂମା ସେ ରହଛ ପୁର ରେଣୁ ରେଣୁ ଭେଦ,
ଅନନ୍ତ ଲୀଳାର ହେରୁ ଅସୀମ ହୃଦର
କ୍ଷଣକେ ସୃଜେ ସେ ତାର ମହାପୂଜା ବେଦୀ । ୩୬
ବନ୍ଧୁ ହେ, ପାଇଛ ଆଜ ଏ ଆକାଶ ତଳେ
ମୋ ଜାତ-ଅତୀତ-ସାକ୍ଷୀ, ଏ ନଦୀ ପୁଲନେ
ଜ୍ୟୋତ୍ସ୍ନାର ଏ ମହାଐକ୍ୟେ, ଏ ତରଣୀ ପରେ
ଜାନୁ ପାତ ବନ୍ଧୁ, ଡାକେ ଯେନ ହେ ଜୀବନେ । ୩୭

ଇଚ୍ଛା ମୋ, ହୁଅନ୍ତା ଏଡ଼ ନିର୍ମଳା ରଜନୀ
ଅସରା, ମୁଁ ଖୋଜୁଥାନ୍ତି ସତ୍ୟ ଶୁଭ ଭାବେ
ଏ ସୁନ୍ଦର ଜ୍ୟୋସ୍ନା ତଳେ, ବାନ୍ଧୁ ଏ ଜରଣୀ
ମୃତ୍ୟୁ ଯାଏ, ନ ଫେରି ସେ ମହା ଅନ୍ଧକାରେ । ୩୮

(ମାନସିଂହ ଗ୍ରନ୍ଥାବଳୀ)

## ଝଡ଼ିଜନ ବେଳା

୧

ଝଡ଼ିଜନ ବେଳା, ଝଡ଼ିଜନ ବେଳା,
କହୁ ନାହୁଁ କାହିଁ ବୋଇତ ଗଲା !
ବୋଇତ ଗଲା !
ସଉଦାଗରର ସାନ ଝିଅ ମୁଁ
ସାତ ଭାଇରେ,
ଶୟନ ମୋହର ହଂସତୂଳ ଶେଜେ,
ସ୍ନାହାନ ମୋହର ସୁବାସ ନୀରେ ।
ସାତ ସାଧବର ସାତ ଝିଅ ରେ
ଭାଉଜ ମୋର,
ଜଣକେ ଜଣକେ ଜନକ ଶିଖା,
ଜଣକୁ ଜଣକୁ କନକ-ପୂର ।
ସାତ ଭାଉଜର ସତର କଥା
ମୋହ ପାଇଁକି,
ଜଣେ ଭୁଞ୍ଜି ଦେଲେ ପାଞ୍ଚ ପତନୀ
ଅନେକ ପଣ୍ଟରେ, "ଇଚ୍ଛା କାହିଁକି" ?
ସାତ ଭାଇଙ୍କର ସାତ ବୋଇତ
କେ ଦେଖି ନାହିଁ ?

ମଣି ମୁକୁତାରେ ବେପାର ଯାଲା
କେଉଁ ଦଶଆରେ ନ ପଡ଼େ ଘ୍ରାଇ ?
ସାତ ଖଣ୍ଡ ସାତ ରାଜକୁମର
ଦେବତା ପରି,
ଜଣେ ଆଣି ଦେଲେ ବହୁଦ ଶାଢ଼ୀ
ଆରେକ ଯାଚଇ କନକ ଝରି ।
ବଜନ ବେଳା, ବଜନ ବେଳା
କହୁଲୁ ମୋହର କ ଦୁଃଖ ଥିଲା ।

୨

ହାଇରେ ହାଇ, ହାଇରେ ହାଇ,
ଯୁବା ସେ ଆସିଲେ
ବୋଇତ ବାହି ।
ଘଇଙ୍କି ବନାଇ ଅସିଥିଲି ମୁଁ
ତୋହର ଗରେ,
ଏଇଠାରେ ଛିଡ଼ା ହୋଇଥିଲେ ସେ
ଦେଖି ଦୁଇ ପାଦ ଚଳିଲା କରେ ?
ବାଲିରେ ଲୁଚିଲା ମାଣିକ ମୁଦ
କନକ-ବଳା,
ହାତରୁ ଖସିଲା ଫୁଲ-ହଳଦୀ
ହାତରୁ ଖସିଲା ଗୃହଲ-ସରା,
ଝୁଣ୍ଟି ପାଉଲି କ ଭଲା ସେ ମୁଖେ
ଲାଜେ ମରିଲି,
ତରୁକ ମିଶିଲା ଉରଜେ ଆସି
ପଚାରିଲି ହଜେ, "ଏକ ଦେଖିଲି" ?
ହସିଲେ ଖଲ୍ଲଜେ, ଗୃହିଲେ ଖଇ
ରହିଲି ଠିଆ,

ବନ୍ଦାଣ ସରିଲା, ଚଳିଲେ ପୁରେ
କେ କଥା ବୁଝିବ ବାଳିକା-ହୃଦୟା ?
ବିଦେଶୀ ଯୁବକ ଜାଣିବେ କସ
ବାହୁଲେ ଝିଷ୍ଟ,
କାହିଁଗଲେ ବେଳା, କାହିଁ ଗଲେ ରେ,
ତା ବିନେ କେମନେ ଜୀବନ ଧରୁ ?
ବିଜନ ବେଳା, ବିଜନ ବେଳା,
କହୁ କାହିଁ ଗଲ ବୋଇତବାଲା !
ବୋଇତବାଲା !

୩

କେଉଁ ଧନେ ସେ ଗୋ ବଣିକ ଯୁବା
କରେ ବେପାର,
ନାରୀ-ହୃଦୁ ଘେନ କି ତା ବେବସା
ଭୁଆସୁଣୀ ଲୁହେ ତା କାରବାର ?
ଯେ ଦେଶେ ଯାଏ ସେ, ମୋହ ସର ଗୋ
ସେ ଦେଶେ ନିକ,
କୁଳଝିଅ ତାକୁ ଆପଣା ମନେ
ଆପଣା ହୃଦୟ ଦିଅଇ ବିକ ?
କାହୁଁ ଆସିଥିଲ ?   ମୋ ହୃଦ ସାଥେ
କି ନେଲ ଏଥୁ ?
ଆକାଶେ ପବନେ ଅଛ ଦେବତା
ଫେରାଇ ଆଣନ୍ତ ଗମନପଥୁ !
ଜୀବନ ଏ କସ ପରମାଦ ଗୋ
ନ ଥିଲି ଜାଣି
ହସୁଲି ଶେଯରେ ନ ଆସେ ନିଦ
ଅଖି ଅଗେଁ ସ୍ୱପେ ତାହାର ଠାଣି !

ଏତେ ଲୋକ ମେଳେ ଜୀବନ, ଏକା
ଲାଗଇ ମୋତେ,
ତାହାର ପରଶ ଖୋଜଇ ଦେହ
ଭୁଜ ତା' ମୋ ଦେହ ଭିଡ଼ନ୍ତା ସତେ !
ଶୋଇବାକୁ ଗଲେ ଆରେକ ପାଇଁ
କରଇ ଥାନ,
ନ ଆସିଲା ସେତ, ଆସିଲାନ ରେ
ଏକା ଏକା ମୋର ଯାଉଛି ଦିନ ।
ହୋଇଛି ରଜନୀ, ଉଠିଛି ଚାନ୍ଦ
ନାଚେ ଦରିଆ
କାହାପାଇଁ ମୁହିଁ ସାଧବ ଝିଅ,
ଏକାକୀ ତୋ ତୀରେ ହୋଇଛି ଠିଆ ?
ଫେରିଯିବ ଘରେ ? କି ସୁଖ କହ
କନକ ପୁରେ ?
ମନର ମଣିଷ ନ ମିଳେ ଯଦି
ବୁକୁର ବେଦନା ରହେ ବୁକୁରେ ।
ସାତ ଭାଇ ମୋର ସେ ଦେଶେ ଯାଇ
ସେଇ ମାଣିକ
ଆଣିଲେ ମାନନ୍ତି ସାଧବ ଠିକେ
ଜାଣନ୍ତି କେମନେ ସେଠ ବଣିକ ।
ସେ ମାଣିକ ସତେ ମିଳେ କାହାକୁ
ମିଳେ ନାହିଁ ରେ ।
କନକ ପୁରର ଚମକ ଦେଖି
ସ୍ୱଗ-ମାଳା ଦେଇ ତାକୁ ପାଇ ରେ ?
କେ ଅଛ ଦେବତା, କହ ହେ କହ
ପାଇବା ପଂଥ,

ଭୁଅଁଶୁଣି ଯାହା ଦେବାର ଦେବ,
ରକତ ଦେଇ ମୁଁ ପାଳିବି ବ୍ରତ,
ମୋ ପରି କି ଅଛି ତରୁଣୀ କେହି
                    ପାଇଛୁ ତାକୁ ?
କିପରି ଲଭିଲି ?   ଖୋଜେ କିପରି ?
କହିଲେ ଦେବି ଏ ଜୀବନଟାକୁ ।
ଆଜି କେ ଯୁବତୀ ଶୁଣେ କି ତାର
                    ବଦନୁ କଥା ?
କିପରି ସେ ବାଣୀ ? ଅମୀୟ ସେ କି ?
ଶୁଣି ଲୁଚିଯାଏ ପସ୍ୱଣ-କଥା ।
ଆଜି କେ ଯୁବତୀ ବାହୁରେ ତାର
                    ପଡେ଼ କି ଢଳି ?
କିପରି ସେ ସୁଖ ? ଜାଣିବନି କି ?
ଭାବିଲେ ହୃଦୟ ହୁଅଇ ଦଳି ।
        ବିଜନ ବେଳା, ବିଜନ ବେଳା,
        ସାଧବ ଝିଅର ଏ ଦୁଃଖ ହେଲା ।
        ମାଣିକ ଘଟରେ ବୋହିଲା ଲୁହ
        କହୁ କହୁଁ କାହିଁ ବୋଇତ ଗଲା ।
                    ବୋଇତ ଗଲା ।
                    (ଉତ୍କଳ ସାହିତ୍ୟ, ୩୩।୨।୭୩)

## ଅନନ୍ତ ପଟ୍ଟନାୟକ

( ୧୯୧୦— )

### ନଜ ବନ୍ଦନା ପଢ଼େ

ନଜ ବନ୍ଦନା ପଢ଼େ, ସଜନରେ !
ନଜ ବନ୍ଦନା ପଢ଼େ
ରଶ୍ମି ଲୁଳିତ ରସ-ଉତ୍ସବେ
ଝିମି ଝିମି ଆଜ ପ୍ରୀତ-ସନ୍ତ୍ରରେ
ନବ ତୃଷ୍ଣାର ଝଙ୍କେ ।
ଯଦ୍ୟପି ତୁମେ ମୁହଁ ମୋଡ଼ିଯାଅ
ମୁହଁ ମୋଡ଼ି ରହ ଦୂରି
ମୁଗ୍ଧ ମୋ ଧରା
ପ୍ରୀତ-ଅମରା
ରସ-ଶୃଙ୍ଗାରେ ସଙ୍ଗୀତ ଝରା
ରଚେ ଅଭିସାର କାହ୍ନି !
ଶ୍ରମଶିଞ୍ଜନୀ ଯମିଲ ଗୁମ୍ଫା
ମନ ଅଙ୍ଗନେ ପଡ଼େ
ନଜ ବନ୍ଦନା ପଢ଼େ ।

ଏଇ ରାଜଧାନୀ ରାଜଘାଟ ତଳେ
ରୁଧିରେ ରୁଧିରେ ମର୍ମ ପଖାଳି
ନିଭୃତେ ଜଳେ କେତେ ଉପସୀର ଶିଖା
କେତେ ସଂଶୟ ମୂଢ଼ରେ ମୂଢ଼ରେ
ତାର ବିଦ୍ୟୁତ୍-ଭୂଷା ।
ନଜ ବନ୍ଦନା ପଢ଼େ, ସଜନୀରେ
ଅନୁକମ୍ପାରେ ହସ !

ନିଜ କ୍ଷୁଦ୍ରତା ଅଞ୍ଚଳେ ଖୋଜୁ !
ସ୍ୱର ବିଭ୍ରମେ ପଣ !
ତୁମେ କି ଜାଣିଚ ?
ସେ ପାଶେ ଖଡ୍‌ଗ, ଏ ପାଖେ ଅଶ୍ରୁଧାର,
ପଶ୍ଚାତେ ନାଚେ ମରୁ
ସମ୍ମୁଖେ ଥରେ ଘନ-କୁଜ୍‌ଝଟି ରଣ-ଉଦଜାନ ତ୍ରାସ
ଧୀରେ ଅସ୍ଥିରେ
ହୃଦ-ବସ୍ତିରେ
ତୁଲେ ନିର୍ଭୀକ ବୋଧି କଳ୍ପର ତରୁ !!
ଶତଦର୍ଶନ ଶାଖାରେ ଶାଖାରେ
ଆଶା-ଆଗ୍ନେୟ କଢେ
ନିଜ ବନ୍ଦନା ପଢେ ।

ଝଲମଲ କରେ ସମୀପେ ସୁଦୂରେ କେତେ ହତ୍ୟାର ପ୍ରେତ,
ମର୍ମର ଉଡ଼େ ପ୍ରାଣ ଊର୍ମିର ନେତ !
କେତେ ଉଦ୍ଧତ ସ୍ୱର୍ଣ୍ଣର ହ୍ରେଷା
ମତ୍ତ ବାରଣ ବୁଲ
କାହିଁ ନିଭିଗଲା… …କାହିଁ !
ଇତିହାସ-କୂଳେ ଛିନ୍ନ ସଜନ !
ଖାତ୍ ବିବାଦେ ଅନ୍ଧ କ୍ରୀଡ଼ାର ପାଲ୍
ନିଶ୍ୱାସେ ମୋର
ନାହିଁ ବାନ୍ଧବୀ ନାହିଁ !
ଠକ୍ ଠକ୍ ବାଜେ ମୈତ୍ରୀ-ନିହାଣ
ନିରୋଳ କର୍ମ-ମାଡ଼େ
ସ୍ୱଚ୍ଛ ସ୍ୱପନ ସଙ୍କେତେ ଅବଗାହ,
ଜଗ-ଯୌବନ-ପଂକ ଉହାଡ଼େ

ଦସ୍ୱେଷ୍ଟି ବାଣ୍ଡି ବଢ଼େରେ ଚଢ଼ି ବଢ଼େ ।
କେତେ ବ୍ୟର୍ଥତା ବାଲିର ପାହାଡ଼େ
ଉତ୍ତାପ କୁଣ୍ଡ ବଢ଼େ
ଜନ ବନ୍ଦନା ପଢ଼େ !

ଜନ ବନ୍ଦନା ପଢ଼େ, ସଜନରେ !
କୁଞ୍ଚିତ କର ନାସା,
ସ୍ୱେଦ-କର୍ମିତ ପଙ୍କରୁ ଉଠାଇ ସ୍ନାନ ହଂସୁଲୀ କଣ୍ଠା
ଜନ ବନ୍ଦନା ପଢ଼େ ସ୍ପର୍ଦ୍ଧାରେ
ଗୀତ ଶ୍ରଦ୍ଧାରେ
ନବ ଶୌର୍ଯ୍ୟର ସ୍ୱପ୍ନ-ଶାଦ୍‌ବଳ ଗଢ଼େ
ଜନ ବନ୍ଦନା ପଢ଼େ !

ମୁଁ କ ଢାଳୁନାହିଁ କୁସୁମ ଅର୍ଘ୍ୟ
ଦଗ୍‌ଧ ନୟନ ପଥେ ?
ମୁଁ କ ଜାଳୁନାହିଁ ସୂର୍ଯ୍ୟ-ସ୍ୱେଶନ
ହୃଦ-କୋଣାର୍କ ରଥେ ?
ମୁଁ କ ତୋଳୁନାହିଁ ମୈତ୍ରୀ-ମୀନାର
ମମତା-ସେତୁରେ ଅଶ୍ରୁ-ଝରଣେ ତାନ ?
ମୁଁ କ ଗୋଳୁନାହିଁ ଗହ୍ୱମ୍-ହ୍ୱସରେ
ବିସ୍ମୃତ ଏସ୍ୱସ୍ୱଜ ?
ମୁଁ କରେ ଦଳୁନ ନଶ୍ୱରେ ନଥରେ
ଦୁର୍ନୀତି-ବୃତ
ଚର୍ଚ୍ଚିତ ତନୁ
ଦୁଃଖର କ୍ଷତ ?
ମୁଁ କରେ ଡାହୁନ
ଧୂଳି ଧରଣୀର ଧୀର ଶର୍ମିଳ ଗାନ ?

ମୁଁ କବେ କୋଟ୍‌ନ
　　　　ବାହାରେ ଆକାଶ ଭିତରେ ଆକାଶ
ଅନ୍ଧ ନାଡ଼ିର ମଣି ପଦ୍ମରେ ଭୃଙ୍ଗର ହାସ
ମୁଁ କରେ ମାନଚ ବ୍ୟବଧାନୀ କଥୀ ସମ୍ମାନ-ଅବଧାନ ?
　　　　ମୁଁ କରେ ଖୋଜୁନ ମର୍ମର ଖଣି
　　　　ମରୁ ଖଣ୍ଡ୍‌ରେ ଫୁଲ ଫଲଗୁର ଧାର
　　　　ମୁଁ କରେ ବୁଣୁନ ଜଗନ୍ନାଥର ବୀଜ ଓଁ କାରେ
'ଜାଗ' ଜୀବନର କେତେ ଝୁମୁରୁର ଜ୍ୱାଳା ।

କାଶ୍ମିଣୀ ବଧୂ ରକ୍ତ କପୋଳେ
　　　ମୁଁ ଯେ ସତର୍କ
　　　ପ୍ରୀତ-ବିତର୍କ
　　　　　କେତେ ବିକଶିତ ନଶି ଆଶ୍ଳେଷେ
　　　　　ଅଗ୍ନିଳ ଲକ୍ଷ୍ମୀ ମଙ୍ଗଳର ଅଭିଯାନ,
ସଂଗ୍ରାମୀ ମୁଁ ତ ଭାଲ ଉତ୍ତର୍ଷା,
ଚର ଚଳନ୍ତ୍ ଧୀର ଉକାର୍ଷା
　　　　　　　ଅଣୁ ଗର୍ଭରେ
　　　　　　　ନମିଷ୍ ନମିଷେ
　　　　　　　ଜୀବନର ଅଭିଜ୍ଞାନ ।
ଲଢ଼େ ମୁଁ ନୀରବେ
　　　　ଲଢ଼େ ମୁଁ ଧୀରବେ
　　　　　　　ମୃତ୍ୟୁର ହସ ଲଢ଼େ
ନଜ ବନ୍ଦନା ପଢ଼େ, ସଜନରେ
　　　　ନଜ ବନ୍ଦନା ପଢ଼େ !
ବର୍ତ୍ତୁଳ ପ୍ରରେ ଯେ ହାତ ନସ୍ଥ ଏ
　　　　ବରବର୍ତ୍ତିନୀ ବିଶ୍ୱ,
　　　ଯେ ହାତ ଅମ୍ବା

ଗୃଢ ସନ୍ଧୀର
କୃଢ-ମନ୍ଧୀର
ଗଢ଼େ ମୁଁ ଗର୍ବେ ଗଢେ
କେତେ କରଷାର କିଙ୍କିଣୀଜାରର ବକ୍ଷେ ଜଳରେ
ଛୁବଧେ ଢଳ ରେ
ରଣ ଉତ୍ସବ ଦଳ ମୁଁ ଦଳରେ
ନନ ବନ୍ଦନା ପଢେ
ତୃପ୍ତି ବଞ୍ଚନ ତୃଣ ତୃଷାରେ
ସ୍ନେହ ଶୀତ୍କାରେ ପଢେ,
ଶୁଷା ବଞ୍ଜୁଷାର ବନ୍ଧନ ଚଇ
ତୋର ଚୁମ୍ବନ ଝଡ଼େ !
ସଜନ ଲେ, ତୋର ଚୁମ୍ବନ ଝଡେ !
ଚୁପ୍ କର ଚୁପ୍ କର !
ମୋ ବୃହ୍ ବାଜିଲ କପାଳେ କପାଳେ
ଠକ୍ ଠକ୍ ଏଇ
ସାମ୍ୟର ତାଳେ
ହୃଦୟେ ହୃଦୟେ
ଶାନ୍ତ ଉଦୟେ
ପ୍ରୀତ-ଉଦ୍‌ବାହେ
ନର୍ମମ ଥର ଥର
ଚୁପ୍‌କର ! ଚୁପ୍‌କର !
ମୋ ବୃହ୍ ବାଜିଲ ଠକ୍ ଠକ୍ ଏଇ
ସୁନ୍ଦର ତମ ସୃଷ୍ଟିରେ ଝର୍ ଝର୍ ।

(ଝଙ୍କାର, ୯ମ ବର୍ଷ, ୧୧ ସଂଖ୍ୟା)

# ରାଧାମୋହନ ଗଡ଼ନାୟକ

(୧୯୧୧—)

## ମାଟି

ସକଳେ ଗୃହିଲେ ମାନ, ଉଚ୍ଚାସନ, ସ୍ୱାଧିକାର ଶ୍ରେଗ,
ପ୍ରଥମେ ପାଇଲେ ଯେବେ ପ୍ରସ୍ତାର ନିଯୋଗ ।
ସୃଷ୍ଟି ପରେ
ଅନନ୍ତର ଜଣାଇଲେ ସୁପ୍ରଶାନ୍ତ ସ୍ୱରେ,
"ବାଞ୍ଛିତ ଆସନ ମୋତେ ହେ ବିଧାତା ଦିଅ, ମତେ ଆଗେ
ନିଖିଳ ସୃଷ୍ଟିର ଊର୍ଦ୍ଧ୍ୱ ଭାଗେ ।"
ଅଂଶୁମାନ ଦିବାକର କଲେ ଆବେଦନ
"ମୋହର ବିହାର ଲାଗି ମିଳୁ ତେବେ ଅନନ୍ତ ଅଙ୍ଗନ
ଏଇ ଗଗନର ବକ୍ଷ
ସାଧିବି ମୁଁ ଭ୍ରମଣର ଯା ଲକ୍ଷ୍ୟ ।"
ଚନ୍ଦ୍ର ନିବେଦିଲେ, "ମୋର ସେଇ ଅଭିଳାଷ
ସେଇ ବ୍ୟୋମେ ଦିଅ ମୋତେ କରିବି ମୋ ନୈଶ ଅଧିବାସ ।"
ବାରିଦ ମାଗିଲେ, "ମତେ ଦିଅ ଏଇ ବର
ମତେ ସୂର୍ଯ୍ୟ-ଚନ୍ଦ୍ର-ଜୟୀ କର,
ଦିବାରାତ୍ରି ଯେବେ ଉର୍ଦ୍ଧ୍ୱେ
ଦେଖା ଦେବି ମୁହିଁ,
ସବିତା ଶଶାଙ୍କ ଯେହ୍ନେ ରହିବେ ସନ୍ତ୍ରାସେ
ଅପ୍ରକାଶେ ।"
ପ୍ରଭଞ୍ଜନ ଜଣାଇଲେ, "ପ୍ରଭୁ ମତେ କର ଘନତ୍ରାସ
ବଜ୍ର- ବିଦ୍ୟୁତ୍-ଇରମ୍ମଦ ମସ୍ତ
ଦେହିଁ ପଛେ ଘନ

ବକ୍ଷେ ତାର ଜଗାଇ କମ୍ପନ
ଉଡ଼ାଇବ ଯେଣ୍ଟେ ତାରେ ମୋର ଇଚ୍ଛାମତେ
‘ବିଶ୍ୱପଥେ ।’’
ସ୍ରଷ୍ଟାର ନିକଟେ ତେବେ ଯେ ଚାହିଁଲେ ଯାହା
ଚକ୍ଷୁର ପଲକପାତେ ସେ ପାଇଲେ ତାହା ।
ତୁମେ କିନ୍ତୁ ମୌନମୟୀ ଅଗୋ ମାଟି ସେତେବେଳେ କାହିଁ
ପଦଟିଏ ଉଚ୍ଚାରିଲ ନାହିଁ ?
ଏଡ଼େ ଦେଇ ସୁବର୍ଣ୍ଣ ସୁଯୋଗ
ମାଗି ନେଲ ନାହିଁ କିଛୁ ସଭ୍ରମ ସଙ୍କୋଚ ?

ସବୁରି ଚରଣ ପ୍ରାନ୍ତେ ପାଇନେଲ ମଳିନ ଆସନ
ନିଜର ଧାତର ଅକିଞ୍ଚନ ।
ତୁମର ସେ ନୀରବତା ମୌନତା ସତ୍ୱର
ପରଶିଲା ଶିଅଳୀ ସେ ବିଧାତାର ଗୋପନ ଅନ୍ତର
ଦୃଷ୍ଟି ଢାଳି ପ୍ରୀତ-ଛଳ ଛଳ
ଜିଜ୍ଞାସିଲେ ସୃଷ୍ଟିର ଈଶ୍ୱର,
‘‘ତୁମର କି ନାହିଁ କିଛୁ ଭିକ୍ଷା ?’’
‘‘ତବ ଇଚ୍ଛା ସେଇ ମୋର ଦୀକ୍ଷା ।’’

‘‘ମୋର ଇଚ୍ଛା ଭୟଙ୍କର ଅତି
ସମ୍ଭାଳି କି ପାରିବ ଧରତି ?
ସୃଜିବ ସେ ଜୀବଜନ୍ତୁ ତବ ବକ୍ଷ ପରେ
ନିବାସ ବିରଚି ସର୍ବେ ଲୀଳା ଖେଳା ରଚିବେ ସାଦରେ
ସବୁ ପାଦଭାର
ସହି ପାରିବ କି ତବ ଅଙ୍ଗ ସୁକୁମାର ?

ସୃଷ୍ଟିର ମୋ ଶ୍ରେଷ୍ଠ ଜଣ ସୃଜିବ ମନୁଷ୍ୟ
ଦୁର୍ଦ୍ଦମ, ଦୁର୍ଦ୍ଧର୍ଷ ।
କୃଷି ପାଇଁ କୃଷ୍ଟି ପାଇଁ ପ୍ରତି ମୁହୂର୍ତ୍ତ
ବକ୍ଷ ତବ କରିବେ ବିକ୍ଷତ
ସେତେବେଳେ ବିଚଳିତ ହେବନାହିଁ ଜୀବନ ସଂଗ୍ରାମୁଁ ?"
"ଅଚଳା ମୁଁ, ସର୍ବଂସହା ମୁଁ ।"

ଆଉ ଥରେ ଚାଳିଦେଇ ଅମୀୟ ସୁହାଣୀ
ଦେହମୟ ବୋଳିଦେଇ ସ୍ନେହମୟ ପାଣି
ପ୍ରକାଶିଲେ ବିମୁଗ୍ଧ ବଚନେ,
"ଜୟସ୍ୱିନୀ ଆଜ ତୁମ୍ଭେ ଏ ବିଶ୍ୱ ଭୁବନେ
ସୁନ୍ଦରୀ କଲ୍ୟାଣୀ
ନମ୍ର ହୋଇ ହୋଇଛ ବରିଷ୍ଠ, ଆଜ ତୁମେ ଜଗତର ରାଣୀ ।"

ଚକ୍ଷୁର ନିମିଷେ
ଏ କି ହେଲା ସାରା ସୃଷ୍ଟି ଦେଶେ !
ଉନ୍ନତ ଗଗନପଟ ପ୍ରଣମିଲେ ପରମ ଆଦରେ
ଲମ୍ବିତ ଲଗାଇ ତଳେ ତବ ପାଦ ତଳେ ।
ସଙ୍ଗେ ସଙ୍ଗେ ପ୍ରଭାପୀ ତପନ
ତୁମର ଚରଣ ପ୍ରାନ୍ତେ ରଶ୍ମି-ଛାପ କଲେ ବିକୀରଣ ।
ସ୍ୱଚ୍ଛ-ଚନ୍ଦ୍ରିକା-ଲେପନେ
ରଚିଲେ ଚନ୍ଦନ ଚର୍ଚ୍ଚା ବିମଳିନ ତବ ଅପଘନେ ।
ସ୍ୱଚ୍ଛ ସ୍ୱଚ୍ଛ ପ୍ରମତ୍ତ ମୁଦିର
ଅଭିଷେକ ବଢାଇଲେ ଢାଳି ଧାରା-ନୀର ।
ପ୍ରଭଞ୍ଜନ
ସଲୀଳ ହିଲ୍ଲୋଳେ କଲେ ଚାମର ବ୍ୟଜନ ।

ସେବା-ଦାସ ପରି ସର୍ବେ ଚରଣେ ତୁମର
ସେବିଲେ ପରମାନନ୍ଦେ ଦିବସ ଶର୍ବରୀ
ଉଚ୍ଚାରିଲେ ମୁଗ୍ଧ' କୈବ ବାଣୀ,
"ଜୟ ମାଟି, ଜଗତର ରାଣୀ ।"

(କାବ୍ୟ ନାୟିକା)

## କବି ବନ୍ଧୁର ଗୌରବ

୧

ନଗନ ଭୂଇଁ, ନଗନ ମାଟି ଘର,
ଅଗଣା ତଳେ ନଇଟି ଯାଏ ବନ୍ଧ,
ନାହିଁ ବିଳାସ, ନାହିଁ ଆଡ଼ମ୍ବର
ତମରି ସାଥେ ପ୍ରିୟ ହେ, ଅଛୁ ରନ୍ଧ ।
ବୁକୁରେ ମୋର ଆନନ୍ଦର ରସ
ମୁଖରେ ଫୁଟେ ପରାଣଖୋଲା ହସ,
ସ୍ୱହେଁନ ଧନ, ସ୍ୱହେଁନ ବଇଭବ
ତୁମେ ଯେ କବି, ସେଇ ମୋ ଗଉରବ ।

୨

ମାଟିର ଘରେ ଟଙ୍କା ଫଳୁନାହିଁ,
ମଣି ମୁକୁତା ଦେଖିନ ମୋର ଆଖି,
ତହିଁକି କେବେ ମୋ ମନ ବଳୁ ନାହିଁ
ତହିଁକି କେବେ ଝୁରେନ ମୋର ଆଖି ।
ଦେଖିଲେ ତୁମ କବିତା ଗୀତମାନ
ପୂରଇ ଆଶା, ଭରଇ ମନ ପ୍ରାଣ,
ସ୍ୱହେଁନ ଧନ, ସ୍ୱହେଁନ ବଇଭବ
ତୁମେ ଯେ କବି, ସେଇ ମୋ ଗଉରବ ।

୩

ଦେଖିଛୁ ପ୍ରିୟ ତୁମର କବତାରେ
ସରଗ ନଇଁ ଧରାର ଧୂଳି ମାଗେ ;
ଚଇତ ତୁଲେ ଛଇଳ ଅବତାରେ,
ଫୁଲର ତୁଲେ ଭଗ୍ନର କଥା ଲାଗେ ;
ପକ୍ଷୀ ଗାଏ, ଭ୍ରମର ବୀଣା ଧରେ,
ଦେଖଇ ମୁଁ ତ ଶୁଣଇଁ ପ୍ରୀତିଭରେ ;
ସ୍ବର୍ଗେନ ଧନ, ସ୍ବର୍ଗେନ ବଇଭବ,
ତୁମେ ଯେ କବ, ସେଇ ମୋ ଗଉରବ ।

୪

ଦେଖିଛୁ ପ୍ରିୟ ତୁମର କବତାରେ
ଦୁଃଖ କୋଳୁ ଆନନ୍ଦର ସ୍ୱର ;
ବଜୁଲି ଫୁଟେ ମେଘ ଅନ୍ଧକାରେ
ମରୁର ବୁକେ ଉଚ୍ଛୁଳ ପଡ଼େ ଝର ;
ଅଭାବ କୋଳୁ ବକଶି ଉଠେ ଭାବ
କ୍ଷତର କୋଳୁ ଝଲସି ଉଠେ ଲାଭ ;
ସ୍ବର୍ଗେନ ଧନ, ସ୍ବର୍ଗେନ ବଇଭବ
ତୁମେ ଯେ କବ, ସେଇ ମୋ ଗଉରବ ।

୫

ଦେଖିଛୁ ପ୍ରିୟ ତୁମର କବତାରେ
ଗଢିଛ କେତେ ରୂପର ପ୍ରୀତିପ୍ରସ୍ତ ;
ଦେଖା ଯାଉଛି ମୁକୁଳା ଝରକାରେ,
ନାଗରକାର ବସନ ଯାଏ ଉଡ଼ି,
ଅଦୂରେ ତୁମେ ହେଉଛ ଚଞ୍ଚଳ
ଧରବା ପାଇଁ ତାହାର ଅଞ୍ଚଳ

ତହିଁରେ ମୋର ଈର୍ଷା ନାହିଁ ଲବ,
ତୁମେ ଯେ କବ, ସେଇ ମୋ ଗଉରବ ।

୬

ଦେଖିଛୁ ପ୍ରିୟ୍ନ ତୁମର କବତାରେ
ପଲ୍ଲୀ ବାଲା କୁଞ୍ଜାରେ ଫୁଲ ମାଳ
କାଖରେ ଭଗ୍ନ କଳସି ଧରେ ଗୁଲ୍
ଯୌବନ ରଙ୍ଗେ ତାହାର ପଦ ଗ୍ଲଳ ;
ତାନଟି ଧର ନୁପୁର ତାଳେ ତାଳେ
ବାନ୍ଧଅଛୁ ବୀଣାର ତାରେ ତାରେ
ତହିଁ ତ ମୋର ଶୋଚନା ନାହିଁ ଲବ
ତୁମେ ଯେ କବ, ସେଇ ମୋ ଗଉରବ ।

୭

ଦେଖିଛୁ ପ୍ରିୟ୍ନ ତୁମର କବତାରେ
ବସିଛୁ ମୋର ବଧବା ଭଉଣୀଟି ;
ଲୋତକ ନୁହେଁ ତୁହୁ ରକତ ଧାରେ
ପତ୍ରାଣ ତାର ଯାଉଛୁ ଆଜ ଫାଟି ;
ସେଇ ରକତେ କଥର ଲେଖାମାରେ
ଦେଇଛ କାଟି ସମାଜ-ଅମାଡରେ ;
ତହିଁ ତ ମୋର ତୁମର ଜସ୍ତ-ରବ
ତୁମେ ଯେ କବ, ସେଇ ମୋ ଗଉରବ ।

୮

ଦେଖିଛୁ ପ୍ରିୟ୍ନ ତୁମର କବତାରେ,
ଧରଛ ତୁମେ ବପ୍ଲବୀର ବେଶ,
ଜାତର ସବୁ ପତତ ପତତାରେ,
ଛାତରେ ଆଣି ଦେଇଛ ଅଶ୍ଲେଷ ;

ଦମ୍ଭରେ ଜନତା କୋଳେ ପଶି
ସମାଜ ବୃନ୍ଦେ ତୋଳିଛ ତୁମେ ଅସି ;
ତହିଁ ତ ମୋର ତୁମର ଜୟ-ରବ
ତୁମେ ଯେ କବି, ସେଇ ମୋ ଗଉରବ ।

୯

କେତେ ଯେ କ'ଣ କବିତା ଅଛ କରି
ସକଳ କ'ଣ ପାରିବି ମୁହିଁ କହି,
ଜଗତ ସାରା ଆଣିଚ ପାଶେ ବରି
ଅଭେଦ-ଭାବ ମରମ-ତଳେ ବହି ।
ଜଗତ-ଗୀତ ତୁମର ବୀଣା ଧରେ
ଶୁଣାଇ ମୁଁ ତ ଶୁଣଇ ପ୍ରୀତିଭରେ
ସ୍ପୃହେଁନ ଧନ, ସ୍ପୃହେଁନ ବଇଭବ
ତୁମେ ଯେ କବି, ସେଇ ମୋ ଗଉରବ ।

୧୦

କେବେ ବା ପୁଣି ବିପୁଳ ଧରାଧାମେ
ଜନତା କୋଳେ ଆକୁଳେ ଘୂରୁଥାଅ,
କରମୀ ମେଳେ ମରମୀ ଆହେ ତୁମେ
ତୁମେ ତା' ଜାଣ ତହୁଁ ଯା ସୁଖ ପାଅ ।
ଦୁନିଆ ଯେବେ ଖୋଜଇ ତାର ଧନ
ମନୁଆ ତୁମେ କେବଳ ସ୍ପୃହେଁ ମନ
ସ୍ପୃହେଁ ନଧନ, ସ୍ପୃହେଁନ ବଇଭବ
ତୁମେ ଯେ କବି, ସେଇ ମୋ ଗଉରବ ।

୧୧

କେବେ ବା କଳ କୋଳାହଳର ଦୂରେ
ହେ ମୋର ପ୍ରିୟ, ଝକାଞ୍ଚନ ତୁମେ

ତରୁ ଗହଳେ, ନଈ ନାଳର କୂଳେ,
କବିତା କଥା ଭାବୁଥା' ବସି ତୁମେ ;
ନ ବୁଝି ତବ ଧ୍ୟାନ, କେତେ ଗୂଢ଼,
ବାଇଆ ବୋଲି କହଇ କେ ସେ ମୂଢ଼ ;
ତହିଁ ତ ମୋର ଶୋଚନା ନାହିଁ ଲବ,
ତୁମେ ଯେ କବି, ସେଇ ମୋ ଗଉରବ ।

୧୨

ସନ୍ଧ୍ୟାବେଳେ ଆଲୁଅ ଦେଇ ଜାଳି
ଏକେଲା ବସି କବିତା ଗୀତ କର,
ଯତନେ ମୁହିଁ ଖେଷେଇବା ସାର
ଦୁଆର ମୁହଁ ଫେରଇ କେତେ ଥର
ଅନ୍ନ ଦୋ'ଟି ସିମିଠ ଶୁଖିଯାଏ
ସ୍ନେହେ ରହ ମୁଁ ବହୁତ ରାତିଯାଏ ;
ତହିଁ ତ ମୋର ଦୁଃଖ ନାହିଁ ଲବ
ତୁମେ ଯେ କବି, ସେଇ ମୋ ଗଉରବ ।

୧୩

ହେ ମୋର ପ୍ରିୟ, ଦେଖିଛୁ ବନ ବାଟ
ତୁମର ନାମ ବାଜଇ ଦୂର ଦେଶ,
ଗଉରବରେ ଫୁଲଇ ମୋର ଛାତି
ଅଭାବ-ଜ୍ୱାଳା ଲାଗଇ ନାହିଁ ଲେଶ ।
ତୁମେ ତ କବି, ମୁହିଁ ତ କବି-ବଧୂ
ଭୁଞ୍ଜେ ନିତ୍ୟ ଆନନ୍ଦର ମଧୁ ;
ସ୍ନେହେନ ଧନ, ସ୍ନେହେନ ବଇଭବ
ତୁମେ ଯେ କବି, ସେଇ ମୋ ଗଉରବ ।

(କାବ୍ୟ ନାୟିକା)

# କୃଷ୍ଣ ଚନ୍ଦ୍ର ତ୍ରିପାଠୀ

(୧୯୧୧—)

## କେଉଁ ଅନ୍ଧାରେ ଗୁଳ ବାନ୍ଧି ତୁମ ତରଣୀ ?

ଯେଉଁଠାରେ ନାହିଁ ଦୂର ଦିଆଁଦେଇ ଟିକିଏ
ଇମିତ ଗାଇନ କିଏ କାହିଁ ଅଛ ଦେଖି ହେ ?

ତଥାକେ କଥାକେ ଖାଲି ଗୃଳାବାଜି ଖେଳଇ
ଜଣକୁ ଜଣେ ଯେ ଜଗି ଜଗି ଖାଲି ଚଳଇ
ଜଣେ ଯେବେ ହସି ଦୁନିଆର କଥା କହଇ
ଆନ ଜଣେ ଖାଲି ଗମ୍ଭୀର ହୋଇ ରହଇ
ସେନେହ ସୋହାଗ ମଧୁ ଆଳାପନ ଭିତରେ
ଛୁରି ଧରି ଜଣେ ଚୋଟି କାଟି ଚାଲେ ସତରେ ।

ସତ କହିବାକୁ କାର ଗୁଢ ନାହିଁ ପରାଏ
ମିଛ କହିବାକୁ ଜଣେ ଯେ ଜଣଙ୍କୁ ବତାଏ
ମିଛରେ ଭଣ୍ଡି ଯେ ଯାରେ ପାରିଲ ମାରି ହେ
ସେ ପୁଣି ସବୁଠୁ ପାରିବାର ଅଟେ ସାର ହେ ।

ହଟହଟା କରି ଆନକୁ ପାରିବା ଦବାଇ
ଆନର ବିପଦେ ହସି ବାହାଦୂରି ନବାହିଁ
ପୌରୁଷ ବୋଲି ଗର୍ବେ ଯେ ଗ୍ରୀବ ଟେକଇ
ସିଏ ପୁଣି ସାର ମଣିଷ, ଦୁନିଆ ଲେଖଇ ;
ଆଜି ସିଏ ତୁମ ବନ୍ଧୁ ପଡ଼ିଶା ଭାଇ ହେ
କାଲି ଦ ଗୋଇଠା ଦେଲଣି ତାହାକୁ ଥୋଇଁ ହେ
ପର ଦିନ ତାକୁ ପଥ-ଭ୍ରଷ୍ଟ କଲଣି
ଜୀବନ ଧରି ଯା ବଞ୍ଚି ରହିଛୁ, ମଲଣି !

ସୀମା ସ୍ୱାନ କେତେ ଜୀବନର ଢେଉ ଫେଲଇ
ଘୂର୍ଣ୍ଣି ଦେଲେ ଢଳେ ଅନ୍ତର କେତେ ପ୍ରହର ।
ଏ ମହା ଲୀଳାରେ ଆଶ୍ଳେଷ ଦେଇ ନସ୍ୱତ
ଖେଳିବାକୁ ତୁମ ଇଚ୍ଛା ହେଉନ କସ୍ୱତ ?

ଅନ୍ତର ଭଗ ଦୁନିଆକୁ ଭଲ ପାଇବା
ଦୁନିଆ ଓଠରେ ହସର ଜୁଆର ବାନ୍ଧିବା
ଏ କି ନୁହେଁ ତୁମ ଜୀବନର ମଧୁ ସରଣୀ
କେଉଁ ଅନ୍ଧାରେ ଖେଳି ବାନ୍ଧ ତୁମ ତରଣୀ ?

(ଭାରତୀୟ କବିତା-୧୯୫୪-୫୫)

# ନିତ୍ୟାନନ୍ଦ ମହାପାତ୍ର

(୧୯୧୨—)

## ଏ ମରଣ ନୁହେଁ ନୁହେଁ

ସେଠି ମୁଁ ଦେଖିଛି ଲୋକ ଉପାସରେ ପିଠି ପେଟ ଏକାକାର
ଏଠି ମୁଁ ଦେଖଇ ମେଦର ବୃଦ୍ଧି ଉଦର ସର୍ବସାର ।
ସେଠି ମୁଁ ଦେଖିଛି ପଞ୍ଜରା ତଳୁ ଉଠିବାର ଅନ୍ୱେଷଣ
ଏଠି ସାଙ୍ଗ ସୁରା ସନ୍ଧତରେ ଭୁରୁ ଭୁରୁ ଅଗୁରୁର ବାସ ।
ସେଠି ପରବରେ ଗରିବ ଜଳଇ ଶହ ଶହ ଦୀପାବଳୀ
ବିଜୁଳି ଆଲୁଅ ଝଲକ ଉଠୁଛି ଏଠି ଦେଖେଁ ଝଲ ଝଲି ।
ସେଠି କେତେଙ୍କର ଜୀବନ ଯାଉଛି କାଣି କଉଡ଼ିର ମୂଲେ
ମଣିମାଣିକର ଚହଲା ଏଠେଇଁ ମଣିଷ-ହୃଦୟ ଭୁଲେ ।
ସେଠି ଲୋକ ଶୋଷ ରୋଗ ଭୋଗ କରେ ରକ୍ତ ମାଉଁସ ଦେହ
ଏଠି ମଣିଷର ମନର ଲାଳସା ଘୃଣି ଖାଏ ଅହରହ ।
ସେଠି ଲାଜ ପଡ଼େ ଗଡ଼ ଗଡ଼ ହୋଇ ଗଢ଼ା-ବେଢ଼ା କୋଣାରକ

ଏଠ ଦେଖିଲାବେ ହଅଁ ନାହିଁ ଖାଲି ମୁଖଶାଳା ଚଳ ଚଳ ।
ସେକାଳ ପେଟର ସନ୍ଧ୍ୟାରେ ଯେଠି ମରଣର ବାଘାପାଲ,
ଏଠି ଭାଲଗାଟ କାଟେ ଟିକ ଟିକ ହୃଦସ୍ପନ୍ଦ ଫୁଲ ଡାଲ ।
ଜୀବନ ସେଠେଁ ଜୀବନ ହେଉଛୁ ସେନେ ଶୋଷେ ମର ମଣ
ଶ୍ଳାଘର ତଳେ ପଲାତଳ ଏଠି ମରଣ ପଶୁଛୁ ଭବ ।
ଜୀବନର ଏହି ବେଳାତଟେ ମୁହିଁ ପଡ଼ୁଛୁ ଦୁଇର ମୁହେଁ
ସେ ମରଣ ମୁହିଁ ବରିବାକୁ ଯୁଝେଁ, ଏ ମରଣ ନୁହେଁ ନୁହେଁ ।
(ଝଙ୍କାର ବରଷା-୧୯୫୪-୫୫)

# କୁଞ୍ଜବିହାରୀ ଦାଶ

(୧୯୧୪—)

## ଝଡ଼ର ସହସ୍ର ପଦ ଧ୍ୱନି

ମାଟିରେ ଫଳାଇ ସୁନା
ନଜେ ଯିଏ ହୋଇଗଲା ମାଟି
ନଡ଼ାର କୁଡ଼ିଆ ତଳେ ଗୁଇ ସମ ରହି
ଭୂମ ପାଇଁ ଦେଇଥିଲା ଗଢି ଇଟାମାଟି ।

ବୁକୁର ରକତ ଜାଳି ଭୂମର ଉଦ୍ୟାନେ
ଫୁଟାଇଲା ଗୋଲାପର କଳି
ଦେହ ତା' ଅଙ୍ଗାର ସମ
ଜାଳି ଜାଳି ଗ୍ରୀଷମ ହୁତାଶେ
ଭୂମକୁ କରିଲା ଶୁଭ୍ର ସୁନା .
ଝଡ଼ି ଗଲା ନଜେ ହୋଇ ମଳି ।

ନିଜେ ହୋଇ ଦିଗମ୍ବର ସାଜିଲ ତୁମର ରାଜବେଶ
ତୁମକୁ ନିଶ୍ଚିନ୍ତ କରି
ଚିନ୍ତାରେ ସେ ହୋଇଗଲ ନିଃଶେଷ ।

ନିଜେ ହେଲା ଅମାଛାୟା
କଳା କଳା ସୁଖଶାନ୍ତ ଡାଳ
ତୁମ ଘରେ ସାଜିଲ ପୂର୍ଣ୍ଣିମା
ଜୀବନର ଯେତେ ସମାରୋହ
ସବୁ ସିଏ ଦେଲା ତୁମ ଜିମା ।

ତୁମର ସୁଗନ୍ଧେ ଭରି କୁସୁମ ସୁବାସ
ନିଜେ ସିଏ ହୋଇଗଲା ଦୁର୍ଗନ୍ଧ
ନିଜେ ହୋଇ ଛନ୍ଦହୀନ
ଜୀବନେ ଭରିଲା ତୁମ ଛନ୍ଦ ।

ଲହୁରୁ ଲହୁଣୀ ଛାଣି ଦେଲ ତୁମ ହାତେ
ଝାଡ଼ି ଝାଡ଼ି ଆପଣାର ଦେହେ ନେଲ ଯେତେ ରୋଗ
କରିଲା କଣ୍ଟକାକୀର୍ଣ୍ଣ ପଥ ତାର
ଯେତେକ ଦୁର୍ଯୋଗ ।

ସ୍ୱେଦର ସାଗରୁ ତୁମେ ଲକ୍ଷ୍ମୀ ନେଲ ଟାଣି
ନିଜେ ସିଏ ହୋଇଗଲା ମୂକ
ତୁମର ବୀଣାରେ ଭରି ବାଣୀ
ନାହିଁ ତାର ଶିଳାଲିପି ନାହିଁ ପଦ ଚିହ୍ନ
ପରିଚୟ-ହୀନ ପରିଚୟ ।

ବିସ୍ମୃତିର ବେଳା ବାଲିପରେ
ବଳୟ ଗାଇଲା ତା'ର ଜୀବନର ଜୟ ।

ଲଲାଟର ଲିପି ମାନ
କେବେ ଆସି କେବେ ପୁଣି
ମିଶିଗଲା ଘନ ଅନ୍ଧକାରେ
ଭାସିଲା ବନ୍ୟା ଜଳେ
ଦେଖାଇ କଙ୍କାଳ
ଛଳି ବା ପଡ଼ିଲା ପଥଧାରେ ।

ଭାସିଗଲା ଚମିନର ଧୂଆଁ ସାଥେ
ଜଳ ତ ବୁଝିଲା ନାହିଁ ଭାଷା
ବନ୍ଧୁ ବନ୍ଧୁ ଧୂସ ଭସ୍ମ ସମ
ଭାଜିଗଲା ଲକ୍ଷ ଲକ୍ଷ ଆଶା ।

ତାକ ତାକ ମାଟିକ ସେ ଶେଷେ
ଦେଲା ଉପହାର
ନଜର ମୂର୍ଦ୍ଧାରି
ପାରେ ନାହିଁ ରଖି ସେତୁ ନଜର ସମ୍ମାନ
ଦସ୍ୟୁ ଆଗେ ଛୁଡ଼ା ହୁଏ ପଦ ଭାଙ୍ଗି ଭାଙ୍ଗି
ସ୍ୱଳ୍ପଧନ ଲାଗି
ସେ କରବ ଧ୍ୟାନ
ଭଗବାନ !

ଅର୍ଜିବ ସେ ପୁଣ୍ୟରାଶି ଲଭିବାକୁ ସ୍ୱରଗ, ବୈକୁଣ୍ଠ
ପଠାଇଛ ପହିଁ ତାକୁ ରୂମ ଜେଲ ରୂମ ଫାଶିଖୁଣ୍ଟ
ଏକ ହତ୍ୟା ଅପରାଧେ
ଲକ୍ଷ କୋଟି ହତ୍ୟାକାରୀ ପରମ ସନ୍ନ୍ୟାସୀ
ସୌଧେ ଯୋଗ ସାଧେ ।

ଅଶ୍ରୁର ସାଗରେ କେଣୁ ମରୁଭୂମି ଧାରେ
ଜାଗିଛୁ ତୋଫାନ
ପଳାତକ ଦୈବ, ଭଗବାନ୍ ।

ପଳାତକ ଅତୀତର ପ୍ରେତ
ଶ୍ମଶାନର ଛାୟା
କୁହୁଚକୀ ଇନ୍ଦ୍ରଜାଲ ମାୟା
ପଳାତକ ଝରା ପତ୍ର ସମ
ଯେତେ ରୋଗ ବ୍ୟାଧି
ମଣିଷର ଗ୍ଳାନି ସମାଧି ।

ଶୁଣିଥିଲ ପଦ୍ମ ବନେ ଅତ୍ୟାଗୃଷ୍ଟ
ଝଡଗର୍ଭ ଝନ୍‌ଝନ
ଛନ୍ଦ ଶୁଣେ ନବ ଯୁଗ ଅଗ୍ରଦୂତ
ଝଡର ସହସ୍ର ପଦଧ୍ୱନ ।

(ଭାରତୀୟ କବିତା ୧୯୫୪-୫୫)

# ସଚ୍ଚିଦାନନ୍ଦ ରାଉତରାୟ

(୧୯୧୬—)

## ଗ୍ରାମ ଶ୍ମଶାନ

ଗ୍ରାମଶେଷେ ଶମଶାନ                    କୁହ କୁହ ହାଡ଼ମାନ
ବାଉଁଶ, ମାଠିଆ ପୁଣି ଅଙ୍ଗାରମାଳ,
ପାଉଁଶ ବଭୂତ ବୋଳ                    ଯୋଗୀସମ ଅଛୁ ପଡ଼ି
ହାତରେ ଧରିଛୁ ସେ ତ ଖପ୍ପର ଥାଳ ।
କୁଲ, ଶିକା, ଗୁଞ୍ଜୁଣି ଥୁଆ,
ଗହଳ କୋଚିଲା ବଣେ                    ନଗ୍ନଟିଆ ନରଜନେ
ବାଢ ଅଧେ ଘନ ଘନ ଡ଼ାକେ ବିଲୁଆ । ୧

ଦାଢ଼ କାଟି ଲୁଣୀନଈ                    ସାପ ପରି ଯାଏ ବହି
କୂଳବକ୍ଷେ ଧାଡ଼ି ଧାଡ଼ି ବହଳିକିଆ,
ଝୁମ୍ପୁରି ଗଉଡ଼ଙ୍ଗସା-                    ଡ଼ାଳେ ପେଚ୍ଛ ବାନ୍ଧେ ବସା
ଶାହାଡ଼ା, ଅରଖ, କେନ୍ଦୁ ହୋଇଛି ଠିଆ
ବାଢ ହେଲେ ଶକୁନ-ପିଲ୍ଲ,
ମଣିଷ ମାଉଁସ ଲାଗି                    ଉଜାଗରେ ରହେ ଜାଗି
ନୂଆ ମୁରୁଦାର ଦେଖି ମାରଇ ଚଳ । ୨

ଧକଧକ ଜଳେ ଜୁଇ                    ଧୂଆଁ ମୋଡ଼ି ମୋଡ଼ି ହୋଇ
ପାଚିଲା କୋଚିଲା ଶିରେ ବାନ୍ଧଇ ଜଟା,
ଶିବା ଶାଗୁଣାର ରବ                    ଅଗହଚ ପକ୍ଷଶବ
ସେ ଶବଦେ ପୁରି ଉଠେ ଝାଙ୍ଗର ଜଟା ।
ଗୋଠହଜା ଗାଈର ଗଳେ

ବାଜ ଝିପା ଘନ ଘନ ଅଚେତ ମଶାଣି ଘୂମ
ଭଜାଉ ଦଅଇ ପୁଣି ସନ୍ତ୍ର ପଦ୍ମରେ ।୩

ଅଶିଣ ଭୁଆଁ ସ ଘୁଡ ଗରଭଣା ସଙ୍କଗ୍ରନ୍ତ
ଦଶାଗତେ ଢାଳିଯାଏ ତରଳ କାଳି,
ମିଟିମିଟି ଆଖି ଫେଇ ଶତ ତସ୍ର ଯାଏ ଗୁନ୍ଧି
ମଶାଣିର ବୁକେ ଜାଳି କୋଟି ଦୀପାଳୀ ।
ବରଗଛ ଡାଳରେ ବସି,
ଦୁଇଗୋଡ଼ ଦେଇ ମେଲି ଶିଶୁରେ ଏନୁଡ଼ି ଜାଳି
ସେକୁଥାଏ ଚରୁଗୁଣୀ ଦକଃ ହସି ।୪

ପୁଣି ନଡ ଶନବାରେ 'ଗୁଡ଼ି କଳକଳାସ୍ୱରେ
ପିତାଶୁଣି ନଈପଠା ବାଲିରେ ଚରେ,
ଦୂରୁ ଆଖୁ କଅଁଆରେ ଚେଣ୍ଡା ଶବଦ ସମୀରେ
ଭାସିଆସେ, ନାହିଁଭାଆ ଶିବ ସ୍ୱନରେ ।
କଳା କଳା ଚସ୍ୱର ଗୁଇ
ଅନ୍ଧାରରେ ବେଣାବନେ ଭାସିଯାଏ ଅକାରଣେ
ଢେଣା ଗୁଟି ମାଛ ଜଳେ ଯାଏ ଉଭାଇ ।୫

ଶୁକଳ ନଅମୀ ଜହ୍ନ ଧୋଇଦଏ ଶଣବନ
ଧାନ କ୍ଷେତେ ଭାଙ୍ଗ୍ ଜଗିଥାଏ ମୂଲିଆ,
ତୋଟାରେ ମଶାଲ ଦଣେ ବାପେଲୀ ଗଦ୍ଦଣେ କସେ
ଡ଼ାଆଣୀ ଆଲୁଅ ଭାବ ହୁଏ ଗୁନିଆ
ବାହ୍ୱାର ତା ଗାମ ଦେଇଛନ୍ତି,
ମଶାଣି ପଦାରେ ହଜେ ଜଗୁଆଳ ଭସ୍ମେ ଭଜେ,
ନଭଳ ଅଷ୍ଟାଟି ଜାଳି ରଖେ ପଦ୍ମୁଲ ।୬

ଆଉ ସାଲେ ଏକ୍ଷଠାରେ ଚମକି ଦ'ଜଣ ମଲେ
କି ହେବ କେ ଜାଣେ ମାଆ ବାସେଲୀ ସାହା,
ନଈରୁ ଅଚଳା ଖସି ଚମକାଏ ଦଶଦିଶି
କାଚ ଗ୍ଲାଷ୍ଟ ନାହିଁ ଯେ ସମାଲେ ନାଆ ।
ମନେ ମନେ ଗୁଣେ ସେ ପଦ,
ସବୁ ଡ଼ର ସବୁ ଭୟ କାଟି ସେ କରବ ଜୟ
ସଙ୍କଟ ସାପକୁ ସେ ଯେ କାଟୁଆ ଗଦ । ୭

ଗ୍ରେଟ ଗ୍ରାମଟିର ଶେଷେ ଶୋଇଛୁ ଲୁଖୁଗ୍ର ବେଶେ
ଧୂଳି ମଳି ବୋଲି ହୋଇ ମଶାଣି-ପଦା,
ଗାଆଁ ଗୋଟାକର ଦେହ ଲଭି ତା ଆଦର ସ୍ନେହ
ଶେଷେ ହେବ ଏଇଠାରେ ପାଉଁଶ ଗଦା ।
ଗ୍ରାମଟିର ସେ ପରଶେଷ,
ଆଗ, ପଛ, ଆଜ, କାଲି ସବୁ ହେବ ତାର ବାଲି
ମୁଁ ବାଟିଲି ତା ପଦରେ ମୋହର ନତ । ୮

(ପଲ୍ଲୀଶ୍ରୀ)

## ପୋଛ ମାତା ପୋଛ ଅଶ୍ରୁରାଶି

ପୋଛ ମାତା ପୋଛ ଅଶ୍ରୁରାଶି
ତୁମର ପ୍ରକର ଜୟ ଗାଏ ଆଜ
ଚରାଚରବାସୀ ।
ତୁମର ଯା ଧନ ଜନେ
ବଶ୍ୱ ତାରେ କରିଛୁ ନଜର,
ନଖିଳର ଗର୍ଭେ ଆଜ ଶିଶୁ ତବ
ଲଭେ ଜନ୍ମାନ୍ତର ।

ନବ ନବ ଆଗନ୍ତୁକ ମେଳେ
ଫେର ଆସେ ବୀର ଶିଶୁ
ରୂପହୀନ ଅଦେହର ଖେଳେ ।

ଶତ ଶତ ନବାଗତ ଦେହେ
ନିଅ ତାକୁ ଖୋଜି କୋଳେ
ଦିଅ ଚୁମା ଗାଲେ ତାର ସ୍ନେହେ ।

ନବ ନିଶା, ଊଷା ଉଦୟନେ
ତାର ଜନ୍ମ ଏ ଦେଶର କୋଟି ମନେ
ନିଭୃତ ସପନେ
ଶେଷହୀନ ମୁକତି ସମରେ
କୋଟି ନବାଗତ ସୈନ୍ୟ ଶିବିରେ ଯେ
ତାର ନାମ ସ୍ମରେ ।
ଲଭିବାକୁ ଶକ୍ତିର ଅମିୟ ।
କ୍ଷତ ଠାରୁ ଆପଣାର
ମୃତ୍ୟୁଠାରୁ ଧଳ ସେତ ପ୍ରିୟ ।

ଯେଉଁ ଦୂର କ୍ଷୁଦ୍ର ପଲ୍ଲୀଗ୍ରାମେ
ହେ ଜନନୀ, ପେଟ ପୋଷ ଧାନକୁଟି
ନିଶି ଶେଷ ଯାମେ ।
ଢିଙ୍କି ଗାତେ କରାଙ୍ଗୁଳି ସ୍ଖଳି
ଜ୍ୱରରେ ଶିଥିଳ ତନୁ ବାରେ ବାରେ
ନାହ୍ନା କଥା ସ୍ମରି
ଭୂଇଁ ତଳେ ଲୋଟିପଡ଼େ ହେଳେ ।

କାନେ ତବ ମାତା ପିତା
ଶୁଭେଲ ଅବା ବାଜେ ବେଳେ ବେଳେ,
ମାଆ ମାଆ ଡାକ ଯାଏ କେନ୍ଦ୍ରୁ

ସେଇ ଡ଼ାକ ସେଇ ଧ୍ୱନି
କେହୁ ନାହିଁ, ବତାସର ଛେହୁ ।
ନଦୀ୍ପନ ଚକ୍ଷୁ ଉଚ୍ଚ ସ୍ୱର
ଝରିପଡ଼େ ମ୍ଲାନ ବାସେ ଦୁଇ ଗୋଟି ଲୋତକର କଳି
ଅକରୁଣ ଗତିର ବତାସ
ହେଲାରେ ଉଡ଼ାଇ ନିଏ ତବ ଚୂର୍ଣ୍ଣ
ବୁକୁର ନିଶ୍ୱାସ ।
ଜଗତ କି ସେ ଖବର ପାଏ ?
ହୃଦୟର ସେ ସମ୍ବାଦ
ଦେହନାର ସୁରରେ ମିଳାଏ ।
ଆଜି ମାତା ପଡ଼େ କି ଗୋ ମନେ
ଶ୍ରାବଣେ କୃଷ୍ଣମେଘ ଛୁଇଁ ଯେବେ
ଦୂର ଆମ୍ର ବନେ
ସ୍ୱର ସ୍ୱର ପଡ଼ୁଥିଲା ଝରି
ଆକାଶର କଳାଗ୍ରଇ ନଦୀକଳେ
ନାଚୁଥିଲା ହସି ।
ଶତ ବକ୍ର ଡ଼ାକୁଥିଲା ଠାଣ
ସନ୍ଧ୍ୟାର ନେପଥ୍ୟେ ଯଥା
କାର ହିପ୍ରଖର କରତାଳି ।
ପଥଭୁଲି ରାଜହଂସ ଏଣ
ନଦୀ କୂଳେ ଯାଉଥିଲା ଅତି ଧୀରେ
ଭୁଲି ତାର ଡଗ
ତୁମେ ତେବେ କୁଟୀର ଦୁଆରେ
କାନ ପାତି ବସୁଥିଲ କେଉଁପଣ ସନ୍ଧ୍ୟା ଅନ୍ଧକାରେ
ପନ୍ତାରର ପଦଧ୍ୱନି ଶୁଣି
କହାଇ ଦେଉନ ତୁମେ କେତେ

ସଞ୍ଜ ପ୍ରହର ଜନନୀ !

.ତାହାପରେ........................

ବାହୁଡ଼ି ସେ ଆସୁଥିଲା ପୁଣି ଯେବେ ଘରେ
ଘୋଡ଼ାଇ ଆପଣା ବାହୁ
ଘରେ ତାଙ୍କୁ ଆସୁଥିଲ ରଖି ;
ଶାବକରେ ଯଥା ବନ ପକ୍ଷୀ
ଗୃହବଧୂ ଅଞ୍ଚଳ ଉଢ଼ାଳେ
ବତାସର ନିଶ୍ୱାସରୁ ପ୍ରଦୀପରେ
ଯଥା ରକ୍ଷା କରେ,
ତୁମେ ତ ସେପରି
ରଖୁଥିଲ ଢାଙ୍କି ତାଙ୍କୁ ନିଜ ଭୁଜ-
ପଲ୍ଲବ ଆବରି ।
ଅତୁଳ କି ମନେ ପଡ଼େ ଆଜି
ଅସ୍ତ ଗୋଧୂଳିର ଶଂଖ
ବନେ ବନେ ଯେବେ ଉଠେ ବାଜି
ହେମନ୍ତର ବିଷଣ୍ଣ ସନ୍ଧ୍ୟାରେ
ମହୁମାଛି ଯେବେ ଫେରେ ଘରେ
ନାରିକେଳ ଗଛର ଶାଖାରେ
ଜନଗଣନାର ସବୁ ତାହାଙ୍କର ବସେ ଯାଏ କ୍ଷଣ
ଫୁଲର ସାମ୍ରାଜ୍ୟ ଫେରି ଆସିଛନ୍ତି ଆଜି କେତେଜଣ
ଗଣିବାର ପାଇଁ
ତୁମର ପଞ୍ଜୁରୀ ତଳେ କି ବେଦନା
କରେ ହାଇ ହାଇ ।
ପୁଣି ଯେତେବେ ଗ୍ରାମର ଦେଉଳେ
ସ୍ୱପ୍ନର ରେଶମୀ ଜାଲ
ଜଡ଼ୁଥାଏ କନକ ଝିଣ୍ଟୁଳେ ।
ସ୍ମରଣେ ତୁମର

କାହାର ପେଲବ ତନୁ
ନଷ୍ଟ ଚନ୍ଦ୍ରପଣ ଦୁଃସ୍ୱପ୍ନର
ଜାଗି ବାରେ ନଇଯାଏ ପୁଣି
ସିକ୍ତ ଆଖି ସରୋବର ଯାଏ
ଘନ ଅଶ୍ରୁ ରେଣୁ ବୁଣି ।
ଗ୍ରାମଶେଷେ ଜନସ୍ୱାନ ପଥ
ନ ଯିବାକୁ ଏକା ତାକୁ ଯେ ବାଟରେ ଦଅନ୍ତୁ ଶପଥ—
ଆଜି ସେଥି ବାଦୁଡ଼ର ଦଳ
ଆପଣା ଖେଳନ ଶାଳେ ଗୂଢ଼ ଜାଗେ
ନୈଶ କଳରୋଳ—
ଭାସି ଆସେ ଦୂରୁ
ଖେତ ଜଗୁଆଳ କାନେ ବନ୍ଧୁ ଦୂରେ
ଫସଲ ଖେତରୁ ।
ନଈ ବାଁ କେ ମତ୍ସ୍ୟଜୀବୀଗଣ
ଗଢର ଆହାର ରନ୍ଧି କରୁଛନ୍ତି
ନୀରବେ ରନ୍ଧନ ।
ଶରବଣେ ଉଠେ କଳା ଧୂଆଁ
ତାହାଣି ଅଲୁଅ ଥରେ ବଣ ପାଢ଼େ
ଜହ୍ନରାଢ-ଜୁଆ ।
ଆଜି ମାତା ଲାଗେ କି ଗୋ ଡର
ପଥଭୁଲା ଶିଶୁ ଲାଗି ଆଜି ତୁମେ
ମାଗ କି ଗୋ ବର
ଗ୍ରାମଦେବୀ ଶୀତଳାର ପାଦେ ?
ଆଜି କି କାହାରେଣି ଯାଚ
ନିଜମନେ ମାଆର ପ୍ରସାଦେ ?
• ଭଂଗା ତବ ପଂଜରର ତଳେ

ହେ ଜନନୀ ! ଯେ ବେଦନା ମୁହୁ ମୁହୁ
ଚିତା ସମ ଜଳେ
ଉପହାର ଦିଅ ମୋତେ ତାରେ
ନିରମିବ ଶିଳାଲିପି ମୂର୍ତ୍ତି ଏକ ତାହାର କଂକାଳେ
ବେଦନାର ବିଗ୍ରହ ମିନାର
ମୁଁ ଗଢ଼ିବ ନିଜ ହାତେ
ବୁକୁ ପରେ ସେ ମହା ବ୍ୟଥାର ।
ହେ ଜନନୀ ହେ ଗର୍ଭଧାରିଣୀ
ଅଭିମାନ କେନ ଗୋ ମାନିନୀ ;
ଏ ଜାତିର ଉଦାର ସ୍ମରଣେ
ଶିଶୁ ତବ ବଡ଼ ହୁଏ
ପଳେ ପଳେ ଜିଣି ଗୋ ମରଣେ ।
ଆଜି ତାର ଶୁଭ୍ର ଅଭିଷେକ
ଏ ଜାତିର ଘରେ ଘରେ
ଢାଳ ମାତା ମଙ୍ଗଳ ନିଷେକ ।
ପ୍ରତିଜନ୍ମ ପରଜନ୍ମ ବେଳେ
ତାହାର ଅଭୁଲା ସ୍ମୃତି ଏ ଦେଶର
ପଥ ମନେ ଖେଳେ ।
ଜନ୍ମେ ସେତୁ ଦାଏ ଦସ୍ୟା,
ପରଜନ୍ମେ ଦେଇଯାଏ ଆଶା
ସେ ନୁହେଁ ଭ୍ରମର ଖାଲି
ସେ ଯେ ମାତା ବକ୍ଷର ପିପାସା ।
ନୁହେଁ ସେ ତ କେବଳ ସନ୍ତାନ
ସେ ଯେ ଚିର ମୁକ୍ତି-ବୀଜ
ଜନତାର ଶୁଭ ଅନୁଷ୍ଠାନ ।

( ବାଜିରାଉତ—ପାଞ୍ଚ )

# ସ୍ୱଗତ

ତଥାପି ମୋ ଜୀବନରେ ବାରଂବାର ଦୁଃଖର ପ୍ରହାରେ,
ସେ ଯେଉଁ ପ୍ରଚ୍ଛନ୍ନ ଇଚ୍ଛା
ସବୁବେଳେ ଅଛି ବାଦ ସାଧେ ।
ତାକୁ ମୁଁ ଦେଖିଛି ଏଠି ପୃଥିବୀର ନଗ୍ନହ ଗଳରେ
ଅସଂଖ୍ୟ ମୁଣ୍ଡସ୍ତ ଘଟେ, ଯାହାକୁ ମୁଁ ଚଢ଼ି ଦେଇ ପାରେ
ଅକ୍ଳେଶରେ ଗୋଟାଏ ଧକ୍କାରେ ।
କିନ୍ତୁ ଏଇ ବାଧା ବାଡ଼ ଅନିବାର୍ଯ୍ୟ ଦୁଃଖର ପାହାଡ଼
ସବୁ ସେ ଇଚ୍ଛାର ଖେଳ, ସବୁଥିରେ ସେଇ ଖେଳଉତ୍ତାପ ।
(ଅନ୍ୟମାନେ, ଅନ୍ୟସବୁ, ନିମିତ୍ତ କେବଳ !)
ତେଣୁ ମୁଁ ତ ଛନ୍ନଛାଡ଼ୁ, ଖସିପଡ଼େ ମୋର ରାଇଫଲ୍ !
ଉଠାଇ ପାରେ ନା ଆଉ ଗାଂଡୀବ ଯେ ହାତ ଥରଥର ।
ହେ ମୋର ଶେଷ ଚନ୍ଦ୍ର ! ସଂଗ୍ରାମର ଶୁଭ୍ର ଖଡ଼ ସବୁ !
ତୁମେ ମୋତେ ଶାଂତ ଦିଅ । ଦିଅ ନିଦ୍ରା ।
ଟାଣି ଦିଅ ତୁମ ମାୟା-ତଂତୁ ।
ଏ କାହାର ଖାଷଣ ହସ ପିଚ୍କାରୀ ପରି ଉଡ଼େ ଲଗେ ?
ସେଇ ଦୁଷ୍ଟ ଓଷ୍ଠ କଂପେ, ଯେଇ କଷ୍ଟ ଗ୍ରସ୍ତରେ ପଗରେ
ମୁଁ ଯିମିତ ତାଂକ ହୋଇଯାଏ, ମୁଁ ଅବା କ ବାକ୍ୟହିଏ
ଏଠ ଗଭ଼ ନାୟାର୍ଗ ନିସ୍ୱାର ?
ସେ ଯେଉଁ ଅଦୃଶ୍ୟ ହାତ ଉପୁଜାଏ ଅଗ୍ନି,
ଜଳାଏ ଯା ଦୁଃଖର ଅରଣି
ସୂର୍ଯ୍ୟାବର୍ତ୍ତ - କପାଳେ ମୋ ତା ଚରମ ସ୍ପର୍ଶ
ବେଳେ ବେଳେ ଅନୁଭବେ ପୁଣି ॥
ଏ ମୋର ବକଲ୍ତ ସତ୍ତା ଯେବେ ନିଆଁ ଗାଡେ
ଆପଣାକୁ ପ୍ରଦକ୍ଷିଣ କରେ,

ଜ୍ୱଳନ୍ତ ବକ୍ଷୁର ଘରେ ଶରୀର ଭେଦରେ,
ମୁଁ କାହିଁକି ଡରେ ମୋ ପ୍ରେତରେ ?
ପୁଣି କଅଁ ମୁଁ କଅଁରେ ଖେଳେ ?
ମୋ ହାତରେ ଗଢ଼ା ପଣାକାଠି ମୁଁ ଗଡ଼ାଇ
ସ୍ୱର୍ଗେ କସ ଦୋମୁହାଁ ଆଶାରେ ?
ମୋ କଅଁ କଣ୍ଢଲୀ ଦେହେ କେଉଁ ଅର୍ଘ ଷଣେ
ଭାସେ ଯେବେ ମୃତ୍ୟୁର ହୁନ୍ନାଂଶ
ମୋ ଅମ୍ମାକୁ ଡୋ'ଲ ନେଇ ଭେବେ ଷଟ-ଟଣା,
"ସରଟର ଶୁଭ ଆଂକୃନ୍ଦନସ" ।।
ବଦକ୍ଷ ପ୍ରାଂତରେ ବସି ପୋଡ଼ା ମାଟି, ଝିଙ୍ଗା ବଲେ,
ଜଳା ଘାସେ କଅଁ—
ଭୁଣିବାର ସ୍ୱପ୍ନ ଦେଖେ କଥା ବନ୍ଧନର
କେବେ ପୁଣି ସେ ଅଭିକ୍ରନ୍ଦସ୍ୱ ?

(ଜବଳା-୧୯୬୬)

## ଜ୍ଞାନୀନ୍ଦ୍ର ବର୍ମା
( ୧୯୧୬— )

### ମୂର୍ତ୍ତି ଓ ମନ୍ଦିର

ଶାସ୍ତ୍ରର ବାହାରେ ପୁଣି ତୁମେ ଏ ଯେ ଭୁଲ
କହ ହେ ଇଶ୍ୱର,
ତମକୁ କ ପାଇଛନ୍ତି ସବେ ଲୋକ କେତେ
ଆମ ଏ ବଶ୍ୱର ?
ତମକୁ ଯେ ପାଇ କସ କଣ ଯାଗିଛନ୍ତି
କହ ଅହେ କହ,

ତମ ଭଳି ଧନ ପାଇ ସେ କ ପାରନ୍ତ
ନାଶି ଦୁଃଖୀ ଲୁବ୍ଧ ?
ତବ ନାମେ ଅନୁଷ୍ଠାନ ଯାହା ତୁ'ସେ ଗଢିଲେ
ନାହିଁ ହେ ମଙ୍ଗଳ,
ସାନ ଏକ କୃଷକର କୁଟୀରୁ ତ ତାହା
ନୁହେଁ ମହତ୍ତର ।

ଦୁନିଆଁରେ ବୈଷମ୍ୟର ସ୍ଥାନ ଯଦ ଥାଏ
ତାହା ତ ମନ୍ଦିର
କାରାଗୃହ ମୋ ବକ୍ଷରେ ଏହାଠାରୁ ଭଲ,
ଏହାଠୁଁ ରୁଚିର ।
ଅର୍ଦ୍ଧ ଆଗେ ବନ୍ଦୀ ବସି ନିଜ ପାପ ନାଶେ
ଡାଳେ ଗ୍ଲାନି ନୀର,
ଏଠି ଯେ ମନ୍ଦିର ବାଜେ ପ୍ରତ୍ୟହ ପ୍ରଦୋଷେ
ବ୍ୟଙ୍ଗଭରଣୀର ।

ତେବେ ତୁମେ କସ ଭଳ ଏ ମନ୍ଦିରେ ବସି
ମୁଁ ପଞ୍ଜରେ ଅରେ,
ଏହୁ କବା କାମ ତବ ମଣିଷକୁ ନେବା
ପିଚ୍ଛିଳ ପଥରେ
ପରକାଷ୍ଠା ତବ ଅଙ୍ଗେ ନଷ୍ଟ ଇବା
ଲଭେ ପ୍ରାଦୁର୍ଭାବ,
ସୀତାର ବଦନ ତବ ସତୀ ଦାହେ ଯଥା
ହୋଇଲା ସମ୍ଭବ
ତୁମେ ଥିବ, ଥିବ ପୁଣି ତମ ଇତିହାସ,
ଥିବେ ପ୍ରବଞ୍ଚକ

କୋଟି ଯୁଗେ ନ ପାରିବ ଭାରତ ଲଭିବାର
କୌଣସି ପାବକ ।
ଭାରତୀ ବନ୍ଧୁ ନାମ ଗାଏ ଯେଉଁ ଦେଶେ
ମୃଗ କରେ ସ୍ତୁତ,
ଅଠ ଭଣ୍ଡ ଯେଉଁ ଦେଶେ ସାଧୁ ହୋଇପାରେ
ମାଖିଲେ ବିଭୂତ,
ବୃକ୍ଷରେ ସିନ୍ଦୂର ବାଜି ତମେ ଜନ୍ମ ନିଅ
ସେ ଦେଶ ଉପର
ନିର୍ବାସିତ ତମେ ହେବ, ହେ ପାଷାଣ ପ୍ରାଣ,
ବୃକ୍ଷମସ୍ତ ହର !

ମନ୍ଦର ଭାଙ୍ଗିବ ସତ ଶୀଳା ତ ରହିବ,
ରହିବ ତ ତରୁ ;
ତେବେ କିବା ଏହି ଦେଶେ କରିବାକୁ ହେବ
ଆରବର ମରୁ ?
ବେ-ଦୁଇନ ପରି ପଛ ଜୀବନ କାଟିବା
ତାହା ବରଂ ଶ୍ରେୟ,
ଧ୍ୱଂସ ହେଉ ଅନ୍ଧକାର କୁମ୍ଭୀପାକବାସ
ଏ ଜୀବନ ହେୟ ।
( ଭାରତୀୟ କବିତା-୧୯୫୩)

# ବିନୋଦ ଚନ୍ଦ୍ର ନାୟକ

(୧୯୧୯—)

## ଗ୍ରାମ ପଥ

୧

ଦୂରେ ତାଳବଣ ଆକାଶେ ଶୁଣାଏ
ମାଟିର ମମତା କଥା ସେ
ଏ ଗ୍ରାମର ପଥ ତହିଁ ହଜନ୍ତି ମିଶେ ।
କ୍ଷେତ ପରେ କ୍ଷେତ
କାଶ ଫୁଲ ଆଉ
ବେଣାରେ ଜଟିଳ ପାଟ
ପାଟପରେ ବଣ, ବଣ ପାରି ହେଲେ
ମାମୁଁ ଘର ଗାଆଁ ଦିଶେ ।

୨

ପଥର ସେ ପାଖେ ବୁଣା ହରଡ଼ ଓ ବୁଟ,
ଆଗରେ ଚରଣ ପଡ଼ିଆ ଗୋରୁ ଗୋଠ,
ଶିମୁଳି ଶାଖାରେ
ବାହୁନେ କପୋତୀ
ଉଠ୍ ପୁତ ଉଠ୍
ଉଠ୍ ପୁଷଲକ୍ଷ୍ମୀ ମାଣ,
ଏ ପାଖେ କଇଁର ପୋଖରୀ ଗାଧୁଆ ତୁଠ ।

୩

ଭୂଆସୁଣୀ ମାଳେ ପାଦର ପାହୁଡ ଏଥି
ମୁକୁଳା ବେଣୀରେ ପଖାଳେ ଦେଇଣ ମେଥି
ନଈଘ ତାଡ଼ାର
ଅଧିକ ଚରୁଣ୍ଡ
ଖାଲରେ ହଳଦୀ ମାଖେ
ହଲଦ ପାଣିରେ ମୁହଁର ଛାଇକ ଦେଖେ ।

୪

ପୋଇ ଶାଗ ଆଉ ପାଣି କଖାରୁର ଲତା
ମାଡ଼ ମାଡ଼ ଆସି ଝିପିଲାଣି ଘର ମଥା
ସଜନାର ଶାଖୁ
ଝରେ ପଢ଼େ କେତେ ଫୁଲ
ବାଡ଼ ଦେହେ ପୁଣି ଅପରାଜିତାର ଛଟା ।

୫

ସେଇ ପଥେ ଫେରେ ଗ୍ରାମ ବଧୂ ସାଥେ
ସକାଳ ସ୍ନାହାନ ଏକା
ଧୂଳିରେ ଆଙ୍କ ସଜଳ ଚରଣ ରେଖା
ମାଆ ବୋଲି ଥରେ
ଡାକିବାକୁ ପ୍ରାଣ ଲୋଡ଼େ,
ପୃଥିବୀର ସମ ସହନଶୀଳା ସେ
ଅସୀମ କରୁଣାବତୀ
ନୟନେ ଶତେକ ଯୁଗର ବେଦନା ଲେଖା ।'

୬

ଏ ପଥେ ଗ୍ରାମର ତରୁଣ ବିଦେଶେ ଯାଏ
ଲେଉଟା ପଥକୁ ନୂତନ ଘରଣୀ
ଆକୁଳେ ଅନାଇ ଥାଏ ।
କି ବାରତା ତାରେ ଆଣେ
କିଏ ଜାଣେ
ଅଧାର ଲେଖା ଏ କାଳ ।
ଏ ଗ୍ରାମ ଦେବତା
ସେ ବ୍ୟଥା ବୁଝେ କି ହାୟ !

୭

ଏ ପଥରେ ଗ୍ରାମେ ପ୍ରବେଶ ହୁଅନ୍ତି ବଧୂ
ବିତରି ବୁକୁର ମମତା ମୁଖର ମଧୁ
ପୁଅ ଝିଅ ନାତିନାତୁଣୀରେ ଘେରି
ମଶାଣି ଏ ପଥେ ଫେରେ
ଆସିବା ଜନର ସାକ୍ଷୀ ଏ ପଥ
ଫେରିବା ଜନର ବନ୍ଧୁ ।

୮

ଜହ୍ନ ଏ ପଥେ ଢାଳଇ ରଜତ ମାୟା
କୁମାରୀ ଦଳର ମିଳିତ କଣ୍ଠୁ
ସଙ୍ଗୀତ ଉଠେ ଆହା,
ଧାନ କ୍ଷେତେ ଚଳେ
କୃଷକ ତରୁଣ
ଗତ୍ର ଶୟନ ପାଇଁ

ପ୍ରାନ୍ତର ଦେଇ ଧାଏଁ ଦେଖ ଦେଖ
ଭସାଣି ମେଘର ଛାୟା ।

୯

ଧୂଳିଘର ଛାଡ଼ି ଏ ପଥେ ଚଳଇ
ଶାଶୁ ଘର ଗାଆଁ ଝିଅ
ମାଆର ପଣତେ ବନ୍ୟା ଉଠଇ
ଅମାନିଆ ଆଖି ଲୁହ ।
ଏ ପଥର ସ୍ମୃତି ଚେତନା ଲେଖଇ
ସେ କେଉଁ ଜନମ କଥା ।
ଛାତି ଫାଟିଯାଏ କ୍ରନ୍ଦନେ ତାର
ବିଧାତା ଙ୍କ ପାଇଁ ଏ ବିଧାନ ଭଲ କୁହ ।

୧୦

ଶ୍ୟାମ ପ୍ରାନ୍ତରେ ଉଲଙ୍ଗ ଶିଶୁସମ
ଏ ପଥ ଘୁମାଏ
ନୀଳ ନଭେ ଯଥା
ଛାୟାପଥ ମନୋରମ ।
ଗ୍ରାମ ଝରଣାରେ
ଲଙ୍ଘେ ଏ ପଥ
ସହର ସୀମାକୁ ଧାଏଁ
ସନ୍ନ୍ୟାସୀ ସେ କି, ହୃଦର କରୁଣା ଧନ ।

୧୧

ବନ୍ଦନା ଗତେ କରଇ ରେ ଗ୍ରାମ ପଥ
ବାଳକ ବେଳର ହେ ମୋର ପ୍ରିୟ ସାଥି

ଅସ୍ଫୁଟ ଦଣ୍ଡବତ ।

ତରୁଣ ଦିନର
କେଳିକୁଞ୍ଜ
ତୋ ତନୁ କର୍ପୂର ରେଣୁ
ତୋର ବେଣୁବନ ବିତାନେ ମୁଁ ଆଜି
କ୍ଳାନ୍ତ ଦିବସ ଯାପନରେ ଉପଗତ ।

୧୨

ଭିଷାଣୀ ପ୍ରାଣ ପୀଡେ ମତେ ଅହରହ
ପାଥେୟ କାଞ୍ଚନ ପଥିକ ମୁଁ ମଣେ
ଯାତ୍ରା ଏ ଦୁର୍ବିବହ
ଖଇ ଓ ଭୁଲାରେ ଶୁଭ୍ର କର ତୋ ତନୁ
ରାମନାମ ସତ ମନ୍ତ୍ରେ ଚଳିବି
ତୋ ଘର ଶମଶାନେ
କେବେ କହ କେବେ କହ ।

( ସ୍ୱରଗ୍ରାମ୍ୟ କବିତା, ୧୯୫୩ )

# ଗୁରୁ ପ୍ରସାଦ ମହାନ୍ତି
(୧୯୨୪—)

## ଆଖିର କପୋତ ମୋର

ଆଖିର କପୋତ ମୋର ଆକାଶର ଇସ୍ପାତ ଦେହରେ
ବାଧାପାଇ ପ୍ରତିଦିନ ଫେରିଆସେ ଏହି ପୃଥିବୀକୁ
ଯେଉଁଠାରେ ତୁମେ କର ପ୍ରତିଦିନ ବିଜନ ପ୍ରତୀକ୍ଷା
ଜରାମୃତ୍ୟୁ ବ୍ୟାଧି ପୁଣି ଜୀବନର ଅର୍ଥ ବୁଝିବାକୁ ।

ସମୁଦ୍ରର ଢେଉ ସବୁ ଶ୍ରେଷ୍ଠ ଛୋଟ ହାତ ପାପୁଲିରେ
ସ୍ଥବର ବାଲିର ଦେହ କେବେ ଦିଏ ଆଉଁଷି ଆଉଁଷି
ମୁଁ ଯାଏ ବିବ୍ରତ ହୋଇ ଭେଦ ଖରା ଦିପହରର ତପ୍ତ ଧୂସରତା
ମୋର ପିତୃ ପୁରୁଷର ସ୍ମୃତି ଖୋଜି ତୁମର ବିବର୍ଣ୍ଣ ଦେହରେ—

ତୁମେ କୁହ କଥା କୁହ ଘାସ ଆଉ ପତରର ଗୋପନୀୟ କଥା
ଘାଟିବଣ ଜଙ୍ଗଲର କଥା ଯେତେ ଶିହଳୀ ଶାମୁକା ଆଉ
ସମୁଦ୍ରର କଥା—

ବସନ୍ତ ଗଛରେ ଛନ୍ନ ବଉଦରେ ବିବର୍ଣ୍ଣ ଜନ୍ମର
ଏ ପାରରୁ ଭାସିଯାଏ ସେ ପାରରେ ମଣିପିବା କଥା—
ଚଇତର ଜୀର୍ଣ୍ଣଦେହ ଏ ବାଲିର ଶ୍ରେଷ୍ଠ ଶ୍ରେଷ୍ଠ ଭଉଁରୀ ଭିତରେ
ଏ ପାଖେ ସେପାଖେ ଯାଏ ଉଡ଼ି ଉଡ଼ି ତୁମେ ନଥ ସାଉଁଟି ସାଉଁଟି,
ତୁମେ ପୁଣି ଭୁଲ ପାଅ ତୁମେ ପୁଣି ହାତ ଧରି ଡାକ
ତୁମର ଆତ୍ମା ବା କାହିଁ ? ମୋ ଦେହ ବା ଜୀବନ୍ତ କେଉଁଠି ?
ମେଘର ଇସ୍ପାତ ଦେହ ଛୁଇଁ ପୁଣି ବାଧା ପାଏ ସେଇଠି ତୁମେ
ମନର କପୋତ.

ଆଖିର କପୋତ ମୋର ଫେର ଆସେ ଯେତେବେଳେ ଆକାଶର
ଭ୍ରାନ୍ତ ପାଖ ହୋଇ
ତୁମର ଦେହରେ ଏତ କ୍ଲାନ୍ତ ଆଉ ସ୍ୱେଦ ଶୋଷ ଉତ୍ତେଜନା ଖେଦ
ଆଉ କୋହର ଭିତରେ
ମୋ ଦେହର ସ୍ୱପ୍ନ ଧରା ବନ୍ଧଯାଏ ସମସ୍ତର ନଈ,
ନସ୍ତବଧ ଦ'ପହରେ ପତ୍ରଝଡ଼ା ଶୁଭେ ନାହିଁ ଶୁଭେ ନାହିଁ ଖସ୍ୱର ନଶ୍ୱାସ,
ଝାଉଁବଣ ମିଶିଯାଏ ଧୂଆଁ ହୋଇ ଆକାଶ ଭିତରେ
ମନେ ମୋର ପଡେ ନାହିଁ କେବେ ମୋର ଆଖିର କପୋତ
ତୁମର ସଧାନ ଦନେ ପାଇଥିଲ କଟକ ବା ଉଚ୍ଚସ୍ୱନୀ ସହର ପ୍ରାନ୍ତରେ
( ନୂତନ କବିତା )

# ଜାନକୀ ବଲ୍ଲଭ ମହାନ୍ତି

( ୧୯୨୪— )

## ଶାନ୍ତି-ସମାଚାର

ବିପୁଳା ଏ ଧରିତ୍ରୀର ଦେଶେ ଦେଶେ ବିସ୍ତାର ଦିଗନ୍ତ
ପରିବ୍ୟାପ୍ତ ଶ୍ୟାମ ଶସ୍ୟ କ୍ଷେତ୍ର
ଗହମ ଓ ଧାନ୍ୟ
କାହିଁ ବା ଖର୍ଜୁର କାହିଁ ଅଙ୍ଗୁର ଉଦ୍ୟାନ ।
ବଳୟିତ ତୃଣପୂର୍ଣ୍ଣ ସ୍ୱରଣ ପ୍ରାନ୍ତରେ
ଅଗଣନ ଦୁଗ୍ଧବତୀ ଗୋମାତା ବିଚରେ
ତଥାପି ଏ ସର୍ବଂସହା ଧରିତ୍ରୀର କୋଳେ
କ୍ଷୁଦ୍ର ଏ ମାନବ ଶିଶୁ,
ମଦମତ୍ତ ହିଂସା କଳରୋଳେ

ସିକ୍ତ ଜଳେ ଧରଣୀର ସୁପବିତ୍ର ଧୂଳି
ଉଷ୍ଣ ରକ୍ତ ଢାଳି
ଧୂମ୍ର ବାଷ୍ପେ ଭରି ଜନପଦ
ଜାତି ଧର୍ମ ମୁଖେ ବୋଳି ମସୀ
ଗରଜେ କମାଣ ତାର
ହସି ଉଠେ ଶାଣିତ ତା ଅସି ।
ଧରଣୀର ଶସ୍ୟ, ଫଳେ
ସ୍ୱର୍ଣ୍ଣ-ରତ୍ନେ ଯାଗରେ ସଗର୍ବେ
ସବୁରି ଯେ ସମ ଅଧିକାର
ବାଜେ ନା କି କାନେ ତାର
ଏ ଶାଶ୍ୱତ ଶାନ୍ତି-ସମାଚାର ।

( ଭାରତୀୟ କବିତା, ୧୯୫୪-୫୫ )

## ଗୋପାଳ ଚନ୍ଦ୍ର ମିଶ୍ର

( ୧୯୨୫— )

### ଅଜନ୍ତା

ପାହାଡ଼ ପାହାଡ଼ ପଥର ଯେମିତି ମଣିଷ କରିଛି ଚୂନା
ପାହାଡ଼ ପଥର ମଣିଷ ହାତରେ ହୋଇଛି କମଳ ସୁନା
ପଥର ଯେମିତି ମଣିଷ ହାତରେ ଧରିଛି ଦେବତା ବେଶ
କହୁଛି ମୁଁ କବି କହୁଛି ସେ ପରି ସୁଦୂର ପ୍ରମିଳା ଦେଶ
ଉଡ଼ି ଉଡ଼ି ଯାଏ ପାହାଡ଼ ପଥର ଉଡରେ ପଥର ଉଡ଼ି
ମଣିଷ ତୋ ଦେହେ ତା ହାତ ବଳାଇ ତୋଳିଛି ସପନ ଗଡ଼
ଉପରେ ପଥର, ମଣିଷ ଦୋଠାରେ ଲଗାଇ ଦେଇଛି ଡେଣା
ଉଡ଼ିଗଲା ମୋର ଅଜନ୍ତା ବାହାର ପକ୍ଷୀ ହେଲା ବାହବଣା ।

ପଥର ଦେହ ତ କଠିଣ ନୁହଇ ଲୁହାଠାରୁ ବଳି ଲୁହା
ଲୁହାର ଜଉଁରେ କା ହାତ ରେଖାରେ ଝରଣା ହେଉଛୁ ରୁହା
ମେଘର ମୟୂର ଚନ୍ଦ୍ରାର ତାରକା ଗୋଟି ଗୋଟି ରେଖା ଟାଣି
ହେମ କମଳର ଫରୁଆ ଭିତରେ ପ୍ରସ୍ରାଭ କାକର ପାଣି
କବା ଟାଣି ଦେଇ ମରୁ ବାଲୁକାରେ, ମୁଗୁନି ପଥର ଚଉ
ମାଳ କରି ଫୁଲ ତନୁ ଚୁମି ଚୁମି ମଧୁପ ଲଭଇ ବ୍ୟଥା
ପଥର ଯେଉଁଠି ମଣିଷ ହାତରେ ପାଇଛୁ ମଣିଷ ଶିଷ୍ଟ
ଡାକୁଛୁ ମୁଁ ନବ ଅଜନ୍ତା ଦେହର ପଥର ଦେହଳି ଚଉ ।

ପଥର ଦେହରେ ମଥା ପିଟେ ଏବେ ମଣିଷ ଏକାକୀ ବସି
ଶିଳ୍ପକଳା ପାତଳ ଖପରା ବାଟରେ ପଦ ତାର ଯାଏ ଖସି
ମଣିଷ ମନର ଜାଗରଣ ତଳେ ରୂପଶିଳ୍ପ ମାଗେ ଫେଲ
ତୂଳୀ ଧରି ପଗ୍ର ଯୁଗ ଯୁଗ ଧରି ମଣିଷ ଖୋଜୁଛୁ ବେଳ
ଲେଖିବା ପାଇଁକି ପଥର ଦେହରେ ମଣିଷ ମନର ଗ୍ରନ୍ଥ
ଟେକିଯାଏ ବାହୁ ଥକିଯାଏ ମନ, ବେଳ ନାହିଁ ବେଳ ନାହିଁ
ମଣିଷ ମନର ଏହୁ ଯେଉଁ ରୂପ ସ୍ୱଜଧାମୀ ବାଟହାଟ
ଆହୁରି ଅନ୍ଧାର ଘନ ଗିରିତଳେ କାଟରେ ପଥର କାଟ ।

( ସ୍ୱରସ୍ତାସ୍ୱ କବିତା, ୧୯୬୪-୬୬

## ବେଣୁଧର ରାଉତ

(୧୯୨୭—)

### ଆଶାବରୀ

କୁମୁଦବତୀ ସନ୍ଧ୍ୟାର ଶାନ୍ତ ଅବତରଣରେ
ତାର ନୀଳ ବେପଥୁର ଅଜସ୍ର ତରଙ୍ଗରେ
ଫୁଟି ଉଠୁଥିଲା ଆକାଶ ଅଙ୍ଗନରେ ଅସୁମାର ନକ୍ଷତ୍ରର କଳି,—
ସତେ ସିମିଠ ରୁପାର ଟୋପା ଟୋପା ତରଳ ଚନ୍ଦ୍ରମଲ୍ଲୀ ;
ଆଉ, ତା'ର ଭିତରେ
ଚନ୍ଦ୍ରର ଉତ୍ସବରେ ଆହ୍ଲାଦିନୀ ମୋର ବିଶାଖାର ସମଗ୍ର ସ୍ମିତ ବିଭବ ;
ମୋର ମନେ ହେଲା—ହୁଏତ ଇଏ ଚିରନ୍ତନ ଆନନ୍ଦୋତ୍ସବ ।

ନିର୍ଜନ ଜନତାମସ୍ତ ଗୃହଶାଖ ଏକାନ୍ତ ଗୋପନରେ
ତୋଳିଲି ଅର୍ଦ୍ଧ ଫୁଲ ସେଇ ନିଭୃତ ଅଙ୍ଗନରେ,
ଆଉ, ଭାବିଲି, ଏ ଫୁଲରେ ଚିର ସଦ୍ୟ ସ୍ତବକ ରଚିବି
ଏବଂ ସଜାଡ଼ିବି ଏଇ ଅଚଳା ପୀନାସ୍ତନା ଉପର ପୃଥିବୀ
—ପ୍ରୀତିର ନନ୍ଦର ଅବା କୈତ୍ର ରଥେ,
ପ୍ରତିଟି ଆତ୍ମାରେ ଆତ୍ମାନ୍ତରର ଅଦ୍ୱୈତ-ସଙ୍ଗମ ମନୋରଥେ ।

କିନ୍ତୁ ହାୟ ! ଅକସ୍ମାତ୍ ଆଗନ୍ତୁକା, ସୂର୍ଯ୍ୟାସ୍ତରେ ସୁବର୍ଣ୍ଣା ଉଷାରେ
ଦେଖିଲି ସେ ଫୁଲଗୁଡ଼ିକ ଲଜ୍ଜିତ ଓ ବ୍ୟାକୁଳ ନିସ୍ୱଶାରେ
ଦବିଗଲା ବିନ୍ଦୁ ବିନ୍ଦୁ ପ୍ରତିଟି ଘାସରେ
ଅଶ୍ରୁର ଆକାଶ୍ଚି ମୁକ୍ତା ପରି, କି କଥାରେ ! କାହାର ତ୍ରାସରେ !!
ବୋଧ ହୁଏ ଇଚ୍ଛା ନୁହେଁ ସନ୍ଧ୍ୟାର ନେଲି ନେଲି ବସ୍ତୁ,ଚ
ମୋ କାମ୍ୟକ ଉପବନ ଗଢ଼ି ଦବ ପ୍ରାଣେ ଭରି
ସେ ଫୁଲର ସୁରଭିତ ମଧୁ ଆଉ ଦ୍ୟୁତି ।

( ମେଦିର ପ୍ରଦୀପ-କବିତା ବିଶେଷାଙ୍କ )

# ଚିନ୍ତାମଣି ବେହେରା

(୧୯୨୮—)

## ଶୟତାନ ପାଇଁ ଗୋଟିଏ ସ୍ତୁତି

ମୋର ଅସ୍ଥି-ପିଞ୍ଜରକୁ ହାତୁଡ଼ିର ନିର୍ମମ ପ୍ରହାରେ ଚୂର୍ଣ୍ଣ କରି
ତାର ନିର୍ଯ୍ୟାସରେ ସୃଷ୍ଟି କରେ ମୌନ ଆତ୍ମାର ସେ ସ୍ତବ୍ଧ ସଙ୍ଗୀତ
ଦୁଷ୍ଟ ଗ୍ରହର ଅଧିବାସୀ ସେଇ କୁତ୍ସିତ ଶିଳ୍ପୀ ଶୟତାନକୁ ମୋର ପ୍ରଣାମ ।

ସେ ଶୟତାନ ମୋର ଆଖିର ଅଶ୍ରୁକୁ ବୀଭତ୍ସ ଆନନ୍ଦରେ ମୁଗ୍ଧ ଭଳି
ପାନ କରି
ନିର୍ଲଜ୍ଜ ଉନ୍ମାଦନାରେ ମୋର ରକ୍ତାକ୍ତ କ୍ଷତ ଉପରେ ଫୁଟାଏ
କଣ୍ଟକିତ ଗୋଲାପ
ସେ ଶୟତାନର ଶିଳ୍ପ-ଚାତୁରୀକୁ ମୋର ଧନ୍ୟବାଦ ।
ସେ ଶୟତାନ ତାର ହିଂସ୍ର ନଖଦନ୍ତରେ ମୋର ଅସହାୟ ଶରୀରକୁ
ବିଦୀର୍ଣ୍ଣ କରି
ମୋହର ରକ୍ତରେ ହୋରି ଖେଳି ଉନ୍ମତ୍ତ ଭାବରେ ସୃଷ୍ଟି କରେ
ଆକାଶରେ ଇନ୍ଦ୍ରଧନୁର କବିତା
ସେ ଶୟତାନର କାରିଗରି ମୋର କାମ୍ୟ ।

ନିର୍ଜୀବ କ୍ରୀଡ଼ନକ ଭଳି ସେ ଶୟତାନ ମୋତେ ହାତରେ ଧରି
ସ୍ୱର୍ଗ ନର୍କରେ ନଚାଇ ବୁଲେ
ମୋହର ସ୍ୱପ୍ନରେ ସୃଷ୍ଟି କରେ ଆକାଶର ଅଗଣିତ ତାରକା
ମୋହର ପ୍ରବୃତ୍ତିରେ ରଚନା କରେ ଅନ୍ତସ୍ଥଳ ପାତାଳର
ବିଚିତ୍ର ବର୍ଣ୍ଣୋତ୍ସବ
ସେ ଶୟତାନକୁ ମୋର ସ୍ୱାଗତ ।

ମୋହର କରୁଣ କାତର ନାଃଶ୍ୱାସରେ ଯେ ରଞ୍ଜିତ କରେ ସବିର
ଅନନ୍ତ ଗମ୍ଭୀର ରୂପ
ମୋର ଜୀବନ୍ତ ଶରୀର ଉପରେ ରଚନା କରେ ଯେ ଶ୍ମଶାନସ୍ୱପ୍ନ
ଶିବ ଭଳି ପ୍ରଳୟର ତାଣ୍ଡବ
ସକଳ ଅଶୁଭର ସ୍ରଷ୍ଟା ସେଇ ଶୟତାନ ମୋର ଉପାସ୍ୟ ।
ଯେଉଁ ଶୟତାନ ମୋର ସକଳ ସ୍ନାୟୁକୁ ଏକତ୍ରିତ କରି ପ୍ରସ୍ତୁତ କରେ
ତାର ବୀଣାର ତନ୍ତ୍ରୀ
ମୋତେ ନୀରବ, କରୁଣ ଓ ନିର୍ଜୀବ କରି ଖିଆଲି ସ୍ୱରରେ ତୋଳେ
ତାର ବୀଣାର ଝଙ୍କାର
ଯେଉଁ ଝଙ୍କାରର ମୂର୍ଚ୍ଛନାରେ ମୁଁ ଜନ୍ମ ନଏ ହରଣ୍ସସ୍ପ ସୂର୍ଯ୍ୟ ଭଳି
ଗମ୍ଭୀର ତାମସୀ ରାତ୍ରିର ଗର୍ଭରୁ
ସଫଳ ହୁଏ ମୋର ରାତ୍ରିର ତପସ୍ୟା
ସେ ଶୟତାନ ମୋର ସିଦ୍ଧିଦାତା ଦେବତା
ବଚିତ୍ର କାବ୍ୟର ସ୍ରଷ୍ଟା—ମୋର ଅଦ୍ଭୁତ ଆତ୍ମାର କାରିଗର ।
(ମେଦ୍ଦେର ପ୍ରଦୀପ—କବିତା ବିଶେଷାଙ୍କ)

# ବିଦ୍ୟୁତ୍‌ପ୍ରଭା ଦେବୀ

(୧୯୨୯—)

## ଖଦ୍ୟୋତିକା

୧ ପ୍ରଦୀପ

ନିରଳସ ଏକ ନୀରବ ସ୍ୱରୂପ ସମ
ସଧ୍ୟାର ଏକୁ ସ୍ତିମିତ ପ୍ରଦୀପ ସ୍ନେହେଁ
ଛିନ୍ନ ମାନସେ ଶଲ୍ୟା ଦ୍ୱଜଳ ପର
ସମୀରଣେ ଶିଖା ଶୂନ୍ୟେ ମିଳାଇ ଯାଏ ।

୨ ସିନ୍ଧୁ

କଏ କହୁବ ତା ଅନ୍ତର ତଳେ
କେବା ଦୁଃସହ ଆବେଗ ଫୁଟେ
ଯୁଗ ଯୁଗ ଧରି ଉନ୍ମାଦ ସମ
କାନ୍ଦିକ ପଡ଼େ ସେ କାନ୍ଦିକ ଉଠେ ?

୩ ଝରା ଶେଫାଳି

କେଉଁ ଦେବତାର ସସ୍ନିଗ୍ଧ ଆଶିଷ
ଶୁଭ୍ର ପାଖୁଡ଼ା ଧରି
ସୁନ୍ଦର ଏକୁ ଶରତ ସକାଳେ
ଭୂତଳେ ପଡ଼ିଲୁ ଝରି ?

୪ ପୁଷ୍ପିତା ଲତା

ପହିଲି ଫୁଲଟି ଧରି
ହସେ ନବ ପ୍ରସୂତିକା ଲତା
ମୁଖେ ତା ଉଠିଛି ଫୁଟି
ଅନୁପମ ବାତ୍ସଲ୍ୟ ମମତା ।

୫ ପ୍ରକୃତି

ଉଦୟେ ଆବରୁ  ଯୋବ ପଦ୍ମରଣ
ନୀଳ ଛିଟ ଶାଢ଼ୀ ନଣାରେ,
ତାପସୀର ବେଶେ କେବେ ଆଁସୁ କେବେ
ବାସନ୍ତ ସଜ୍ଜା ଭୂଷାରେ ।

୬ ଜ୍ଲା-କନ୍ଦୁକ

ଦୁଇ ହାତେ ଦୁଇ  କନ୍ଦୁକ ଘେନ
ଖେଳେ ପ୍ରକୃତି ବସି—
ଊଷା-କରେ ଧରେ  ରକ୍ତିମ ରବି
ପ୍ରଦୋଷର କରେ ଶଶୀ ।

୭ ଷଟ୍ ଋତୁ

ରୂପେ ଅନୁପମା  ଛଅଟି ଭଉଣୀ
ଗୋଟିଏ ଗରଭୁଁ ଜାତ,
ମୃଦୁ ପାଦ ପାତେ  ଆସନ୍ତି ମରତେ
ଧରି ଜଣେ ଆନ ହାତ ।

୮ ମେଘ

ଶୂନ୍ୟ-ବନ୍ଦର  କେଉଁ ବାଜିକର
କାଉଁଶ୍ରୀ ମନ୍ତ୍ର ଜାଣେ,
ପକ୍ଷ ମେଲିଲେ  ବକ୍ଷେ ଖେଳଇ
କୋଟି ଜୀବ କୋଟି ପ୍ରାଣେ ।

୯ ବିଜୁଳି

କଳା କାହ୍ନା ପାଟ ଶାଢ଼ୀର
ଦୀପ୍ତ କନକ ଧଡ଼ି ସେ ?

କଏ କହେ ଏହି ଚପଳା
ହେବ ବରଷା-ବଧୂର ମେଖଳା
ନଭ-ବନେ ଅବଲମ୍ବିକା
ଘନ-ତରୁରେ ଉଡୁଛି ଜଡ଼ି ସେ
କଳା କାହ୍ନା ପାଟଶାଢୀର
ଦୀପ୍ତ କନକ ଧଡ଼ି ସେ ?

୧୦ ବଜ୍ର

କେଉଁ ଋଷି ଦୁର୍ବାସାର
ଅଭିଶାପ-ବାଣୀ ଏହି ଶୁଭେ
ଆତଙ୍କ ପଡ଼ଇ ମହୀ-
ମେରୁ ଠାରୁ ତରୁଲତା ଦୁବେ ।

୧୧ ଇନ୍ଦ୍ରଧନୁ

କୁଆଡେ କେହି ନାହିଁ ମେଲାଇ ଦେଲା କଏ
ଆକାଶ ପଥଧାରେ ରଙ୍ଗ ଛଡାଟିଏ ?
ମୁଗଧେ ସ୍ୱପ୍ନଁ ସ୍ୱପ୍ନଂ କେ ବୁଣି ଦେଲା ଭୁଜ
କାହାର ଛତା କଏ ନ ହେଲା ଟଳେ ବୁଝି ।

୧୨ କୁଆଁ ତାରା

ସରଗ ନଈର
ପଶ୍ଚି କୂଳରେ
ପ୍ରଭାତ ସିନାନ ସାରି
ଗୃହେ ଚଳେ ଉଷା
ଏଇ ପଦୁଅଁଟି
ସସ୍ତେ ଗଙ୍ଗରେ ମାଠ ।

୧୩ ସାଧକ ବୋଦ୍ଧ

ଏ ଜଗତେ ସତେ କେଉଁ ମାଆ ତାର
ଝିଅକୁ କରନ୍ତି ବଡ଼ା ;
ଅକ୍ଷି ପାଉ ନାହିଁ ଦିଗ ଦିଶୁ ନାହିଁ
ଝୁଣ୍ଟିଲେ ନୟନ ସିଧା ।
ପଥେ ଚୁଲେ ବୋଦ୍ଧ ସଘନ ଗଗନେ
ଗରଜେ ଅଶନି ଲାଠ,
ଧର ପାଦ ପାଚେ ତ୍ରିସ୍ୱ ଭବନେ ତା
ପଦ୍ମର ଏ ନାଲି ପାଠ ।

( ପଞ୍ଚସ୍ୱନ )

# ରମାକାନ୍ତ ରଥ

( ୧୯୩୪— )

## ଲଣ୍ଡନ

କାରଖାନା, କଳ ଧୂଆଁ, ବତିଶିଖା ଏବଂ କଳ କାଟ
ଏ ସମସ୍ତ ଏକାକାର ଏ ଧାତବ ପରିବେଷ୍ଟନୀରେ
ଏ କଲେଇଗଡ଼ା ଟିଣ ପେଟତଳେ ଅଗ୍ନିର ସମୁଦ୍ର
ଢେଉ ମାରି ଜଳୁଅଛି ଭୟଙ୍କର କୃଷ୍ଣ ରଜନୀରେ ।

ନିଆଁ ଜଳେ ପୋଷା ମାଛ, ମାଛ ଏଇ ଟିଣର ପତ୍ୟ
ସର୍କସର ବାଘ ପରି ଏ ଦୁର୍ଦ୍ଦାନ୍ତ ନିଆଁ ସୁନାପିଲା,
ସତେ ବା ଏ କଳା କଳା ଟିଣ ସାଙ୍ଗେ ପରିଚୟ ନାହିଁ
ସତେ ବା ସେ ଜାଣେ ନାହିଁ କପରି ଏ ଲଣ୍ଡନ ଭାଉଳ !
ତମେ ଯିଏ ମୌସୁମୀର ଅଳସ୍ୟକୁ ପତା ତଳେ ଖୁନ୍ଦି
ତୋଳା ସଞ୍ଚାଳନ ପାଇଁ ପ୍ରାଣ ପଣେ ପରିଶ୍ରମ କର
ଏବଂ ଗହଳ ବାଳ ତଳେ ଲେପି ଦେଇଚ ଚମ୍ପକ

ତମେ କେବେ ଦେଖିପାର ପ୍ରଜ୍ୱଳିତ ଅସ୍ତିତ୍ୱ ମୋହର ?
ଅନୁମାନ କରିପାର, ମୁଁ ଜଳୁଚି ଓ ଜଳୁଚି ଗାବ୍ ଦରଜରେ
ମିଡ୍‌ସମ୍ ଧୋଉ ଏବଂ ଇସ୍ତ୍ରୀ କରା ଅଧା କମିଜରେ ?

( କେତେ ଦିନର )

## ବ୍ରଜନାଥ ରଥ

(୧୯୩୭—)

### ଶିମୁଳୀ

ବସନ୍ତର ସାମ୍ରାଜ୍ୟରେ
ଏତେ ଦୁଃଖ ଆସିଲା କେଉଁଠୁ ?
ଯେଉଁ ଦୁଃଖ —
କ୍ରୁଶବିଦ୍ଧ ଯୀଶୁସମ
ଶିମୁଳୀର ଫୁଲ ହୋଇ ଫୁଟେ
ଯେଉଁ ଫୁଲ —
ରକ୍ତସ୍ରାବୀ ଯନ୍ତ୍ରଣାର
ନିର୍ମମ ଦହନେ ଦଗ୍‌ଧ ହୋଇ
ଆତ୍ମ-ଦହନର ଦୁଃଖେ
ଲୋହିତ ସ୍ପର୍ଦ୍ଧାର ରଙ୍ଗେ
ଆକାଶର ନୀଳ ନୀଳ-ଚକ୍ଷୁ ଛଟପଟେ ॥

ନଗ୍ନେଲା ଆକାଶ ଆଜି
ସୀମାହୀନ ଏ ସ୍ତବ୍ଧ ପ୍ରାନ୍ତର
ଲମ୍ବି ଅଛି ଯେଉଁ ଦୂର ଦିଗ୍‌ବଳୟ ଯାଏଁ
ଫଗୁଣର ଫଗୁ ବୋଲି ଉଡ଼ି
ନୀରବତା କଥା କହେ
ଖାଲି କଥା କହେ ;
ନୀରବତା ପକ୍ଷୀ ହୋଇ ଉଡ଼େ
ଆଜି ଏହି ପୃଥିବୀର

ଅଗଣିତ ମଣିଷର ଛତେ
ଯେତେ ଦୁଃଖ ଯେତେ ଅଶ୍ରୁ,
ମର୍ମାନ୍ତକ ଯେତେକ ବେଦନା ;
ବ୍ୟଥାଦଗ୍ଧ ହୃଦୟର ଭଗ୍ନପାତ୍ରେ
ସଞ୍ଚିତ ଏ ଜୀବନର ଯେତେ ରକ୍ତକଣା ;
ଶିମୁଳୀର ଫୁଲ ହୋଇ
କଣ୍ଟକିତ ସହସ୍ର ଶାଖାରେ
ଆକାଶକୁ ରକ୍ତାପ୍ଳୁତ କରେ ;
ଶୂନ୍ୟତାକୁ ଜଣାଏ ପ୍ରାର୍ଥନା
ଏ ମାଟିର ସ୍ୱପ୍ନଭଂଗ—ତାରୁଣ୍ୟର ନିଷ୍ଫଳ କାମନା ।।

ବସନ୍ତର ସାମ୍ରାଜ୍ୟରେ
ଅଗଣିତ ଦୁଃଖ ଯଦି
କଣ୍ଟକିତ ଶିମୁଳୀର ଫୁଲ ;
ଶିମୁଳୀର ଫୁଲ ହେବ
ଆକାଶରେ ଉଦ୍ଦୀପିତ
ଲକ୍ଷ ଲକ୍ଷ ଆଶାର ମଶାଲ ।।

("ଜୀବନ ରଙ୍ଗ" କବିତା ବିଶେଷାଙ୍କ)

## ସୀତାକାନ୍ତ ମହାପାତ୍ର

(୧୯୩୭—)

### ଝଡ଼

ସ୍ୱର୍ଗରେ ନାଗିଲା ମଥା, ମହାଶୂନ୍ୟ ବୁଝି ହେଲା କିପରି ଶ୍ୟାମଳ ତନୁ ସମ୍ପଦରେ
ସାଗ୍ରହତ' ଝଡ଼ାଟନ ବଂଶୀ ବାଇଗଲା ବ୍ଲୁମେ ନାଚ ନାଚ ଗ୍ରାସିଗଲା ।
ପଙ୍ଗର ସ୍ୱର୍ଗକୁ ନାଧ ମୁକ୍ତ କେଶ ଗୋଳ ପୋଡ଼ ଛଡ଼ା ହେବା ଆଗାଚନ ବରଷ୍ଣୁ
ଠେଗ ଟିଏ ଥାନରେ ; ହଠାତ୍ ଗୋପୀଙ୍କ ପର ଗଛ, ବୃଛ ଘର ଘାଟ
ଧାଇଁଲେ ଭମର ପଛେ କୋଇଠି ବାଳୁଛ ବଂଶୀ ଖୋଜ ଖୋଜି
ମାଟିର ସ୍ନେହରୁ ଝାଙ୍କି, ଦଶଶିର ଦୃଷ୍ଟି ହୋଇ, ଝୁଣି ହୋଇ ହାଡ଼ ଓ ମାଉଁସ
ରକ୍ତାକ୍ତ କରି ଆପଣା ସଂଖ୍ୟାଧ୍ୱାନ ପୁଷ୍ପିତ ଅଙ୍ଗକୁ, ଚନ୍ଦ୍ରାକର ଫୁଲଫୁଟାବେଳ
ସାତଲକ୍ଷ ଅଗ୍ନେୟଗିରି ହୃଦ୍‌ଗାଳ ଅଶ୍ରୁ ଝାଳ ଭୂଷୁଡ଼ି ପଡ଼ିଲା ସ୍ୱଡ
ପରିତ୍ୟକ୍ତ ଗୋପୀମାନେ ମୁହଁମାଡ଼ି କାନ୍ଦୁଥିଲେ ସିନ୍ଧୁର ଧୂଳିରେ ଦୁଃଖର ପାହାନ୍ତ
ଭ୍ରମର ଦେଖା ନ ଥିଲା, ବାଳିଭୁଜ, ଭଙ୍ଗା ପୋଲ, ଚହଦରେ ଆଉଙ୍କ କାକୁତ !

ଗୋଠରୁ ଓ ଗୁହାଳରୁ ଗାଈଂକ ଅଡ଼େଇ ନେଇ, ପଘାରୁ ଫିଟେଇ
ଭସ୍ମ ନଈ ଭିତରକୁ ପେଲିଦେଲା, ଅହେତୁକୀ କୌତୁକ ଭ୍ରମର
ନଷ୍ଟଜୁଣ ସକାଳକୁ କଣ୍ଡିଆ ଓ ଅତଡ଼ାରେ ଜହ୍ନିଫୁଲ ଠୋ ଠା
ଭଗ୍ନ ଟଗର ଯେତେ ଧଳା କଳା କସରା ଓ ନାଲିଫୁଲ ଫୁଟିଗଲା
ଶ୍ମଶାନରେ ଫୁଲଶେଯ ସାଜଦେଇ ଗଢ଼ିଦେଲା ଫୁଲଫୁଟା ବେଳ !!

ଦଧ୍ୟାକଲି ଅରକ୍ଷ ଥୁଣ୍ଟା ଶିମ୍ନିଳି ଗଛଟିକ ମଝି ଗହ୍ୱରରେ
ବନା ବାହୁସାକୁ ପୋଡ ବାରହାତ ବାଲି ତଳେ
ତା' ଅଷ୍ଟବୁଣ୍ଡା ଧୋଡରୁ ଫାଳେ ନେଲା ଶୂନ୍ୟରେ ଉଡ଼େଇ
(ଧଳା ବହଦ ତେନାଏ ଆକାଶରେ) ଗଛଟିକ ଦଶଵର ନୂଆ ଲୁଗା ପିନ୍ଧେଇଲା

ଓ ତାହା ଗୁଡ଼ରୁ ତୁଳେ କୁନା ପାଳ ଝାଙ୍କି ନେଇ ତା ମୁଣ୍ଡରେ
ଝାମ୍ପୁରା ବାଳ, ମୁହଁରେ ନଣ ଆଉ ଦାଢି ଯୋଡ଼ ଦେଲ
ହେ ଆମର ରଙ୍ଗମଞ୍ଚ ବେଶକାରୀ ନଜର କୃତରେ ପୁଣି ମୁଗ୍ଧ ହୋଇ
ଶୂନ୍ୟତାର ଅଗଣାରେ ତୁମେ କିଏ ଶୁଖିଲ ହସିଲ !!
ଉଡ଼ିଗଲେ ଗେଂଡ଼ାଳିଆ, ଟେଁଟେଁଇ, ପାରା ଓ ବଣି ଚଢେଇ, ଉଡ଼ିଗଲେ କଂକ,
ପାଣିହଂସ

ଯାଦୁକର, ତମେ ତମ ତାଂକୁ ଡେଣା ଦେଲ, ଶୂନ୍ୟବେହ, ଉଡ଼େଇ ବ ନେଲ
କେମିତ ତମ ସକାଳ ପୂର୍ଣ୍ଣ ହେବ ବହୁଂଗ କୁହୁ କାକଳି, ଲକ୍ଷ କଳରବେ
ସିଂଦୂର ଫାଟିଲେ କଏ ଆଖିମଲ ଅନେଇବ ଗଛଡାଳୁ ଆପଣା ବସାରୁ
ପାହାଂନ୍ତଆ ଆକାଶକୁ ଦୋହଲାଇ ଆନଂଦ ଉତ୍ସବେ ?

ଗାଉଁଲି କମାର ତମେ ଆହା କେତେ କଷ୍ଟ କଲ
ଘରପାଖ ପିଟିପିଟି ଲୁହା ଖୁଂଟ ବାଂକା କଲ, କାଟିଦେଲ ଟେଲିଗ୍ରାଫ୍ ତାର,
ଭାଂଗିଲ ପୋଲ, ପାଚେରୀ. ଅବରୋଧ କଲ ରାସ୍ତା ଘାଟ
ସମ୍ପର୍କ ତୁଟେଇବାକୁ ବାଜୁଥିଲ ?

ସମୁଦ୍ରେ ଓ ଏକା ଏକା ଶୂନ୍ୟ ଦ୍ୱୀପ, କ୍ଷୀଣ ଦ୍ୱୀପ କମ୍ପିତ ହୃଦୟ
ତମର ଶୂନ୍ୟ ନକ୍ସାର ନୀଳସିଂଧୁ ସେମାନଂକୁ ଯାହା ରଖେ ଧରି
ଏକଛତ୍ର ଶାସନରେ କି ଅବା ଅଭାବ ଥିଲା ହେ ସମ୍ରାଟ
ବିଜ୍ଞଜନ ମୀତ ଧରି ଘୋ ଘୋ ସିଂଧୁଘୋଷେ ତାବଡ଼ା କରି
ବ୍ୟକ୍ତିଗତ ବେଦନାର କ୍ଷୀଣସ୍ୱର ତଂଟିଚପି ମାରି ଦେଲ
ଜଗାଇଲ ଶୂନ୍ୟତାର ବଂଧାଣାରେ କେଉଁ ମୃତବନ୍ଦୀପାଇଁ ନସ୍ତବ୍ଧ ପ୍ରହରୀ !!

ତମେ ଯଦ ଜାଣିଥାଂତ ହେ ଆମ କାଳିଆଚୁନା ବଂଶୀଧାରୀ, ଆମ ବେଶକାରୀ
କପଟରେ ବଂଶୀ ଫୁଂକ ଉଚାଟନ କରି ପୁଣି କମିଷକେ ହେଲେ ଅନ୍ତର୍ଦ୍ଧାନ
ଯେତେ ଫୁଲଫୁଟା ବେଳ ତ୍ନା ହେଉ । ଭାଂଗିପଡ଼ୁ ଗଛଡାଳ, ଚୁନ୍ ଛତର୍ ହୋଇ

ଉଣାରୁଳା ଅନୁଭବ, ପତ୍ରଫୁଲ ହଡ଼ ଆକାଶରେ
ମାଟିରୁ ନଳକୁ ଝାଂକ ମୃତ୍ୟୁର ସ୍ପର୍ଶ ଭସ୍ମ ମେଳ ମୁହଁ ଗାଡ଼ିବାକୁ ଆସୁ
ତଥାପି ହସିବ ଗଛ । ରକ୍ତ ଓ ମାଂସର ଯେତେ କଷ୍ଟ ଦୁଃଖ
ମାଟିର ଉର୍ବର ଯେତେ ଅଂଧାରରୁ ଫେନେ ଗଜୁରିବ ।
ମୋ ଗଛର ପତ୍ର ଥିବ ଦୁଃଖରେ ଥରହରତ
ଡାଳରୁ ଝୁଂକ ମାଣବ ଚୂନା ଚୂନା ଲୁହ ବୁଂଦା ଟିକ ଟିକ ଫୁଲ
ମୋ ଗଛରୁ ବସଂତ ନୁହେଁ, ନୁହେଁ ଖାଲି ଆନଂଦର ଏକୋଇ ଫସଲ ॥

ମୋ ଅଷ୍ଟୁଟଂଡା ଜଗଣ ବଦାଗ୍ରସ୍ତ, ନଣଦାଡ଼ି ପ୍ରସ୍ତନ ଜୋକର ଚେହେରା
ସମସ୍ତେ ଖସି ଦୁଅଂରୁ । ଦେଶକାଳ ତମେ ଖୁସି ହୁଅ
ତଳକଂଠା ଉପରକଂଠାରେ ଯେତେ ପୋଡଦେଲେ ଏଂଗୁଡ଼ି ଶାଳରୁ ନେଇ
ବାରହାତ ତଳେ, ଏ ହୃଦସ୍ଥ ଗୀତ ଗାଇ ମାଟିକୁ ଫଟେଇ
ଆଲୁଅକୁ ଲଂଘିବ । ରଜା ଆସିଲେ ଆସିବେ ଆଂସନ୍ନୁ ବା ମଂତ୍ରୀ ଭଟ୍ଟଥାଳ
ଫୁଲସବୁ ସାଂଗୁଥିବେ ଲହଡ଼ି ସମୁଦ୍ର ପଣ ସବା ହଇ ଡ଼ାଳେ ॥
ତମେ ଯଦ ଜାଣିଥାଂତ ହେ ଆମର ଗାଉଁଲି କମାର
ସାଂଗୋଦଅ ଯେତେ ପୋଲି, ଯେତେ ଖୁଂଟ, କାଟିଦଅ ସପକର ତାର
ଓ ବଢଦ ବକୁଳର, ବଜନାଦେ, ଆକାଶକୁ ପକାଅ ଝସେଇ
ଇଂଦ୍ରଧନୁ ମେଘ ଓ ସୂର୍ଯ୍ୟ ଆସିବେ ପୁଣି ଫେରି
ବାସସ୍ଥାନ ଓ ଫୁଙ୍ଗଲା ଅନେକ ଚଢ଼େଇ ସୂର୍ଯ୍ୟର ନଅଁ ପୋଉଁବେ
ଝଡବାଢ ଶେଷହେଲେ । ଭଂଗା ମକସ୍ତ ଡେଣା ସବୁ ସଜାଡ଼ିବେ
ଦୂରତାକୁ ଥଂଟେ ଧରି ଧାଡ଼ିବାଂଧି ଉଡ଼ିଯିବେ ପୁଣି ଦୂର ଆକାଶର ନୀଳେ ॥

(ଝଙ୍କାର—ଅଗଷ୍ଟ ୧୯୬୮)

# ଲୋକ ଗୀତ

(କାନ୍ଦଣା ଗୀତ, ଚନ୍ତ୍ରଣା, ଛଗଛମାଳି, ଡାକବଚନ)

ପହିଲି ପାଳି ବୋଉ ! ଦେଲୁ ପଠେଇ,
ସାଙ୍ଗରେ ଯାଇଥିଲେ ଯାନ ଭକେଇ ଲୋ ।
ଅଧା ବାଟକୁ ବୋଲି ମୋ ନନା ଗଲେ,
"ଝିଅ, ଯାଉଛୁ" ବୋଲି ମେଲଣି ଦେଲେ ଲୋ ।
ନନାଙ୍କ ମୁଁହକୁ ଯେ ଚାହିଁଲି ମୁଁହ,
ନନା ଧଇର୍ଯ୍ୟ ଧର ପାରନ୍ତି ନାହିଁ ଲୋ ।
'ଗଣ୍ଡାଶ୍ୱର'ଙ୍କ ମାଳୀ ସେଠାରେ ଥିଲା,
ନନାଙ୍କ ଆଖିଲୁହ ପୋଛୁଣି ଦେଲା ଲୋ ।
"କାହିଁକି କାନ୍ଦ ମିତ୍ରେ" ! ଯାଅ ଘରକୁ,
ଝିଅ ଜନମ ସିନା ପର ଘରକୁ ହେ ।"

୨

ବୋହୂ ବୋଲେ ନଣନ୍ଦେ— "ମୁଁ ଯେ କହୁଛି ପଦେ
ଟହ ଟହ ନ ହସିବ ଗୁରୁସ୍ତ ଆଗେ ।
"ସେ ଯେ ଶାଶୂ ଶଶୁର ତାଙ୍କୁ ଭକ୍ତିବ ମୋର
ତାଙ୍କୁ ମୋର କଲେ ଜେମା, ଭରିବ ଘର ।
"ନଜ ଗୁରୁସ୍ତ ଠାଇଁ ଆଶା ଥିବ ଲଗାଇ
କଥା ନ କହିବ ଜେମା, ମୁଖକୁ ଚାହିଁ ।
"ସେ ଯେ ଦଅର ସ୍ୱବ ଗେଲ ହାତେ ମାରିବ
ସେ କଥାକୁ ଜେମା ଆଉ ରୋଷ ନୋହିବ ।
"ଟାହୁ ଟାପରା ଲେଟେନ ସେ ଯେ କହନ୍ତି ଥୋକେ
ସବୁ ସହି ନେବ ଜେମା, ଗଜପଲଙ୍କେ ।"

"ତୁମ୍ଭେ ଥାଅ ଇଠେଇ                    ଏବେ ଯାଉଛି ମୁହିଁ
କାହାକୁ ଡାକିବ 'ଯିବା ଆସ ଗାଧୋଇ' ।
"ଆହା ସଂଗାତ ସଖି                    ଦୟା ଥିବଟି ରଖି
ନୟନୁଁ ନ ରହେ ମୋର ତମକୁ ଦେଖି ।
"ଆହା ଚମ୍ପା ବଉଳ,                    ତମେ ଆମର ମେଳ
ଆଜଠାରୁ ଛୁଡ଼ିଗଲା ବେନଙ୍କ ଖେଳ ।
"ଆହା କଣି କାକୁଡ଼,                    ମୁଁ ତ ଯାଉଛୁ ଛାଡ଼
ମନରେ ପକାଉଥିବ ଘଡ଼କ ଘଡ଼ ।"

୪

ହସିଲେ ବୋଲନ୍ତି ଖୁଡ଼ି ଦାନ୍ତ ହେଲାଣି ;
କାନ୍ଦିଲେ ବୋଲନ୍ତି ଖୁଡ଼ି, କଏ ମଲାଣି ।
ଉଠିଲେ ବୋଲନ୍ତି, ଖମ୍ବ ଡେଙ୍ଗ ହୋଇଛୁ ;
ଶୋଇଲେ ବୋଲନ୍ତି ଖୁଡ଼ି, ଢିଙ୍କି ପଡ଼ିଛୁ ।
ନଇଁଲେ ବୋଲନ୍ତି ଖୁଡ଼ି, ମାଠି ଗୋଡ଼ଟା ;
ବସିଲେ ବୋଲନ୍ତି, ଚକା ପଥର ଏଟା ।
ଟେପନ କଂସାଏ, ଲୋ ଖୁଡ଼ି, ଦପନ୍ତି ବାଢ଼ି ;
ବୋଲନ୍ତି, ଦେଉଳ ପ୍ରାଏ ବସିଲା ମାଡ଼ି ।
ଟେପନ କଂସାକ, ଲୋ ଖୁଡ଼ି, ଦଣେ ଅଧିକ ;
ହଲଣ୍ଡ ମାଲପା, ଖୁଡ଼ି, ଡେଣିକ ଭଖ ।

୫

ଭଣ୍ଡାର ଘରେ କ ଖୁର ନଥିଲା ! ଲୋ ବୋଉ,
ଗୁଡ଼ିଆ ଘରେ କ ଗୁଡ଼ ନ ଥିଲା,
ଜହର ନଥିଲା ବଣିଆଁ ଘରେ ।
ଅମ୍ବ ପେଣ୍ଡି ପେଣ୍ଡି ଗଛକୁ ଯାଉ,
ମୁଁ ହୋଇ ଥିଲି କ ତୁମକୁ ଭାର ।
ସଡକ ଉପରେ ଅରଖ ଗଛ,

ଚାଲିଲାଠାରୁ ତ ନେବେ ପରଖ ।
ଚାଲିଲେ କହିବେ, ବଳା ଚାଲୁଛୁ ;
ବସିଲେ କହିବେ ପେଟ ବସିଛୁ ।
ମେଘ ଡଉବଉ ଚାଲ ଉପରେ,
ତାଙ୍କ ତଉବଙ୍କ ମୋହ ଉପରେ,
ଦର୍ପଣେ ଦେଖିଲେ ମୁହଁ ଦଣିଦ,
ସପନେ ଦେଖିଲେ ମନେ ରହିବ ।
ତୋର ମୁହଁ ଆଉ ଦଶିବ ନାହିଁ,
ମୋର କଥା ମନେ ରହିବ ନାହିଁ ।
ଦେହଲ ଉପରେ ସାପ ଟେକୁଛୁ,
ମୋତେ ଚୁଣ୍ଡିବାକୁ ପଣ କରୁଛୁ ।
ସବାଗ ଉପରେ ରଙ୍ଗ ମୁକୁଟ,
ଯମ ଆସିକଣ ଦେଲ ଦକଟ ।
ବାଡ଼ରେ ସପୁରି ବାଡ଼ିରେ କାଆ,
କରପତ୍ର ଯୋଡ଼ି କଣିବ ଠିଆ ।
ଓଳା ପାଣି ଗଡ଼େ ପିଣ୍ଡା ତଳକୁ,
ଝିଅ ଜନମ ତ ପର ଘରକୁ ।
ଖୁଦ କୁଣ୍ଡା ଦେଇ ଥିଲୁ ବଢ଼ାଇ,
ଯାହା ବଳଦ ସେ ନେଲା ଅଡ଼ାଇ ।
କରଞ୍ଜ ପତର ମଞ୍ଜିରେ କଳା,
ସେ ସେଇଁ ମାଲୁଣୀ କାଟିବ ଗଳା ।
ମାଲୁଣୀ ବେକରେ ଧଣ୍ଡା ପଡ଼ିଛୁ,
କର ପତ୍ର ଯୋଡ଼ି ଖଣ୍ଡା ଧରିଛୁ ।
ହାଣ୍ଡିଶାଳ ଘରେ ଇଟା ପଥର,
କପର କରବ୍ ଛାଡ଼ ପଥର ।

ଅନ୍ତୁଡ଼ିଙ୍କ ପରି ବଢ଼ାଇ ଥିଲୁ,
ସାବୁଡ଼ିଙ୍କ ଭଳି ଚୁଣ୍ଡାଇ ଦେଲୁ ।
ଚୁମ୍ବକ ତେଜ ଦେଲ ଲୁହା ଜନମ,
ମୋତେ କାଏ ଦେଲ ଦୁଃଖ ଜନମ ।
ସୂର୍ଯ୍ୟ ତେଜକୁ ତ ଗ୍ରହ ନ ଥିଲୁ,
ନଗମ ଖପ୍ପରେ ବସାଇ ଦେଲୁ ।
ସେଠାରେ ଖପରି କାଟିବ ଦିନ,
ବର ତ ସୁନ୍ଦର ଘର ତ ସ୍ଥାନ ।
ପଲମ ଶୋଷଣ ଫନ୍ଦି ନ ଥିବ,
ମୋ ହାଟ ରୋକ ତ ଆଗେ ବସିବ ।
ଏଣିକି ଗୁନ୍ଧିଲେ ଗଛ ପଥର,
ତେଣିକି ଗୁନ୍ଧିଲେ ସମସ୍ତେ ପର ।
ଝଡ଼ଗଲ କୁଆ ଥଣ୍ଟ ମାରିବ,
ସ୍ୱଳି ଗଲ ବାଟ କଥା କହିବ ।

ନଈ ସେପାଖରେ ପାରିଲି ବେଲ, ମୋ ସାଙ୍ଗ ମାନେ,
ଗାଧୁଆ ତୁଠରେ ପହରେ ଗେଲ ।
ନଈ ସେପାଖରେ ଶୁଖିଲ କଥା,
ଗାଧୁଆ ତୁଠରେ ପହରେ ଠିଆ ।
ଜଳକୁ ପଡ଼ୁଛୁ ବଲ ମାଧୋଇ,
ସାଙ୍ଗ ହୋଇ ଯାଇଥିଲେ ଗାଧୋଇ ।
ନଦୀରେ ହେଉଛୁ ନବ ଯାତ୍ରା,
ଝୁଲୁଡ଼ି ପଡ଼ୁଛୁ ଗୋପ ମଥୁରା ।
ଶାଗରେ ଶାଗରେ ବଡ଼ଙ୍ଗ ଶାଗ,
ଛାଡ଼େ ଛାଡ଼ କଂସା ନ ଛାଡ଼େ ସାଙ୍ଗ ।
ଛାଡ ଛାଡ଼ିଗଲେ ଆସି ଖାଇବ,
ସାଙ୍ଗ ଛାଡ଼ିଗଲେ କାହୁଁ ପାଇବ ।

ବାଲି ନଳପକୁ ବାନ୍ଧ ଗଳାରେ, ହେ ବାପା,
ଫିଙ୍ଗି ଦେଲି ମୋତେ ମଝି ନଈରେ ।
ପାଚଣ ଉପରେ ପାଚିଲା ପାନ,
ଲକ୍ଷ ସୁନା ଥାଳୀ ସୁବର୍ଣ୍ଣ ଦାନ,
ଦାନ ଦେଇ କଣ କ ପୁଣ୍ୟ କଲ,
ଶବର ସଙ୍ଗରେ ସମର କଲୁ ।
ଜାଉରେ ଶବର ବଣରେ ଘର,
ଶିଆଳି ଲଟାରେ ଛପର ତାର ।
ଯାହା ଘରେ ନାହିଁ ଖଣ୍ଡିଆ କୋଡ଼ି,
ତାହା ଘରେ ଦେଲ ସୁବର୍ଣ୍ଣ ଚୂଡ଼ି ।
ବାପା ଯାଉଥିଲେ ନାଳ ବନ୍ଧରେ,
ଗଡ଼ି ପଡିଗଲେ ଯମ ଦାଣ୍ଡରେ ।
ଯମ ଦାଣ୍ଡରେ ତ ମାଲ୍ୟାଣୀ ଥିଲା,
ଝୋଲା କୁହୁକରେ ବନ୍ଧନ କଲା ।
ପାଞ୍ଚଖଣ୍ଡ ପାନ ଭାଙ୍ଗି ରଖିଲା,
ସଞ୍ଜପ ବଇଣା ପକାଇ ଦେଲା,
ପାଣି ପାଞ୍ଚ ଢାଳ କାଢ଼ି ରଖିଲା,
ଖଣ୍ଡିକ ପାନରେ କି ମନ୍ତ୍ର ଦେଲା,
ଦକ୍ଷିଣ ଅମ୍ବାର ଦେଖାଇ ଦେଲା ।
ଛଅ ପିଣ୍ଡା ଦେଖି ଛତା ଡେଇଲ,
ପାନ ଖଣ୍ଡିକରେ ଜବାବ ଦେଲ ।
ବଡ଼ଘର ନୁହେଁ ବରଡ଼ା ଭାଟି
ପଦାକୁ ଦିଶଇ ତମାର ଖଟି ।
ଯେଉଁ ପାଣି ଢାଳ ବଡ଼ ଦେଖିଲ,
ସେହୁ ପାଣି ଢାଳେ ଗୋଡ଼ ଧୋଇଲ,
ଯେଉଁ ପାନ ଖଣ୍ଡ ଲଦେଇମଗ

ସେହୁ ପାନ ଖଣ୍ଡ ଖାଇଲ ପରୁ ।
ସେଇ ପାନ ଖଣ୍ଡ କ ମନ୍ତ୍ର ଜଲ୍,
ଭ୍ରମର ମନକୁ ଭୁଲାଇ ନେଲା ।
ସୁନାର ସ୍ୱର୍ଗ ତୁ ଦେଖାଇ ଦେଲା ।

୬

ଦୋଳ ହୁଏ ରଟ ମଟ ସଙ୍ଗାତ ଲୋ ଦୋଳ ହୁଏ ରଟ ମଟ ;
ମୋ ଭାଇ ମୁଣ୍ଡରେ ସୁନା ମୁକୁଟ ଲୋ
ଝଣୁଥିବ ଝଟ ଝଟ ।
ଦୋଳ ଉଡ଼େ ସାଇଁ ସାଇଁ ସଙ୍ଗାତ ଲୋ ଦୋଳ ଉଡ଼େ ସାଇଁ ସାଇଁ ;
ମୋ ଭାଇ ଯୁଦ୍ଧରୁ ଫେରିବା ପାଇଁ ଲୋ
ଦୁଆରେ ବସିଛୁ ଗୁହିଁ ।
କଳିଙ୍ଗ ଅଙ୍ଗ ଜିଣିବ ଲୋ ସଙ୍ଗାତ କଳିଙ୍ଗ ଅଙ୍ଗ ଜିଣିବ ;
ହାତୀ ଘୋଡ଼ା ଚଢ଼ି ପଟୁଆର କରି
ଭାଇ ମୋର ଆସୁଥିବ ।
ନିର୍ମଳା କହଇ ସଖୀ,
ଦୋଳ ଖେଳିବାକୁ ଭୟ ଲାଗଇ ଗୋ
ମୋତେ ନ ଡାକ ଖେଳିବା ପାଇଁ, ସଜନୀ ନୀଗୋ,
ଭବାନ୍ଧରେ ସବୁଜଣା,
ମୋତେ ନୁଟନାହିଁ ନବାତ ପଣା,
ଦୂରୁ ଯାଏ ଚୂଣ୍ଡ ଶୁଣା ।
କହିଁଚ ଫୁଟେରେ ମୀନ,
କାନ୍ତ ମନେ କେବେ କପଟ ନ ଥିଲା
ଶେଷ କଥା ଭିନ୍ନ ଭିନ୍ନ ।

ଖଟ ତଳେ ଗଲା ବଛା

ଧନ କଣଛନ୍ତି ନୂଆ ସ୍ୱକଣ୍ଣ ଯେ

ପଲଙ୍କ ପଡ଼ିଛି ତୁଚ୍ଛା ।

କୁଁ ଦ୍ୱରେ ପଡ଼ିଲା ବଡା

ଢେଙ୍ଗେଇ ଦଗାଡରେ ସରୁ ଅଳତା ଲୋ

ଯେନ ସିବ କଲ୍‌କତା ।

ଘୋଡ଼ା ମୁଣ୍ଡେ ପାଟ ଫୁଲ,

ଘୋଡ଼ା ଯାଇଥିଲା ବଜାର ବୁଲି

ଆସୁଥିଲା ଝୁଲି ଝୁଲି ।

ଜାଲରେ ମାଇଲ୍ ମୀନ,

ଝିଅଟି ସୁନ୍ଦର ଜୋଉଁଟି ସ୍ଥାନ,

କପରି ସଣବ ଦନ ?

ନଣ୍ଡା ବରଗଛ ଗୁଲ,

ଜେ ଘର ନଣବ ନାଣ୍ଡୀକ ନେଇ, ମୋ ପେନ୍ଥି ବଇଲ ଲୋ

ନାଣ୍ଡୀ ତ ବନ୍ଧଣା ଗାଈ ।

ବଣ ଭୂଆ ଘୁଡ଼େ ରଡି

ଘଡି ଘଡ଼ି ମାଆ ଡ଼ାକରୁ ନାହିଁ ଲୋ

ଦୋଳରୁ ସିବ ମୁଁ ପଡ଼ି ।

ଲାଉ ଲଗାଇଲ ପଦ୍ମଣ୍ଡେ ବସି,

ଗଣ୍ଡି ଜେ ଧଇଲା ବସି ଲୋ,

ଲାଉ ଫଳଗଲେ କଏସେ ଖାଇବ,

ବାପା ହେଲେ ପରବାସୀ ଗୋ ।

ପୋଖରୀ ମଝିରେ କଇଁ,

କେତେ ନୂଆଟବାଉ ଚକଣ ହେଉ ଟଲ,

ସ୍ୱଛନା ଆସିବେ ନାହିଁ ।

ସବୁ ସବୁ ସୁନା ଚନ୍ଦ୍ର,
ଝିକକ ସୁନ୍ଦର କେତେ କଣ୍ଠରୁ କୋ
ଦ୍ୱୋଇଲୁଣି ଦର ବୁଢ଼ୀ ।
କ କଥା କହୁଛ ତୋତେ,
ଆଉ ସୁହାଗୀରେ ସୁହିଲୁ ମୋତେ
ହୃଦୟ ବଦାରେ ସତେ ।
ତେନ୍ତୁଳ ପତର କଷା
ଆଉପାଚଳୀକୁ ତେଲଙ୍ଗୀ ଖୋଷା
ସାହୁ ବୁଲୁଅଛୁ ଏକା ।
କଲସୀ ମୁହଁରେ ଜଉ,
ସଙ୍ଗିନ ପୀରତ କୋଟାହୁ ଥାଉ,
କେତେ ଦାହି ଦାହି ଦେଉ ।
ସଜନା ଗଛର ଅଠା
ଖାଇଲେ ଜାଣିବ ପୀରତ ମିଠା,
ଜିଅରେ ଆଶସା ପିଠା ।

(୭)

(କ)

ଶାଶୁ ମାରୁଥାଏ ବୋହୂକୁ ।
ବୋହୂ ସବାଖାଇ ମାଉବ କାହାକୁ
ମାରୁଥାଏ ଚୂଲ ମୁହଁକୁ ।

(ଖ)

ଏଇମନ ଯେବେ ପ୍ରସନ୍ନ ହୁଅଇ
ଦଅଇ ଅଭୟ ବର ।
ଏଇମନ ଯେବେ ଅବୁଝା ହୁଅଇ
କରୁଥା ଦାରଖାର ।

(ଗ)

ବାଆ ମୁଠା ବଲ        ବାଆ ମୁଠା ବଲ,
ବାଆ କ ମୁଠାରେ ରହିବ ?
କେତେ ପରକାରେ        ବୁଝାଇ କହିଲେ
ପର କ ଆପଣା ହୋଇବ ?

(ଘ)

ଘଷି ହେଉଥିବୁ        ମାଜି ହେଉଥିବୁ
ଛୁଡ଼ି ଯ ଉଥିବ ଚମ,
କଲା ବଦନ କ        ଗୋରା ହୋଇବ
ଯାହା ତ କଣଚୁ ଯମ ।

(ଙ)

ଭଲ ଛଟକା, ବାଟ ବୁଲୁଥାଏ ଗୋଡ଼କୁ ଟେକ,
ମୁହରେ ନ ଲଗେ ଧୂଳ ;
ସୁନ୍ଦର ପଣକୁ ପଚାରୁର ନାହିଁ
କଥା ପଦକରେ କଲ ।

୧

କଦଳୀ, ବାଉଁଶ, କଅ,
ସଂସାର ଭିତରେ ଆଉ କେନ୍ଦ୍ର ନାହିଁ
ସ୍ତ୍ରୀ ଠାରୁ ପରକ୍ଷିଆ ।

୨

ଜାଣ ନ ଜାଣ, ଝାମ୍ପୁଡ଼ି ଆଣ,
ଖାଡ଼ିଅ ଶିଙ୍ଗା ସବୁର ଟାଣ,
ମୂଳ ଶିଙ୍ଗା ଯେବେ ଆଣୁ ରେ ରସି.
କାନ୍ଦୁଥିବୁ ହୁଡ଼ ମୁଣ୍ଡରେ ବସି ।

ଶିଂଘ ସରୁଆ, ଲାଙ୍ଗୁଡ଼ ମୋଟା
ମାଗଣା ଦେଲେ ନ ଆଣିବ ବେଟା,
ଯେବେ ଦେଖିବୁ ମିଶଗ କାନା,
ସେଇକ୍ଷଣି କାନୁ କାଟିବୁ ପୁନା ।

୩

ପେଟେ ହଷ ଗାଈ, ମେଟେ କୁଣ୍ଡା ଖାଇ, ତାଠାରୁ ଦୁଧ ପାଇ ।

୪

ଫଗୁଣେ ଚଷ, ସୁନାକଷ,
ଚଇତେ ଚଷ, କୁଟୁମ୍ବ ପୋଷ,
ବୈଶାଖେ ଚଷ, ଦ୍ୱାକମ ପୋଷ
ଜ୍ୟେଷ୍ଠେ ଚଷ, ନେଲନ୍ତିଁ ଝଷ ।

୫

ଗୁଣ୍ଡରୁ ଚହଦ, ଧଣରୁ ବ୍ବଣ,
କମାଣି କଣରୁ ବ୍ଲପ କଆଣ,
ବୁଣି ଖରଡ଼, ପକା ଖତ,
ଦ୍ୱତ ଖଣ୍ଡିରେ ନ ଦେବୁ ହାତ,
ଚଷାଭାଇ ମାନରେ,
ଯଦ୍ଧିପାଣି ଡକ୍ତି ଧନରେ ।

୬

ଆଷାଢ଼େ ରୋଇଲେ ଦଲକେ, ଶ୍ରାବଣେ ରୋଇଲେ ଫଲକେ
ଭାଦ୍ରବେ ରୋଇଲେ ରୂପକେ, ଆଶ୍ୱିନେ ରୋଇଲେ ବପକେ ।

୭

ଦ୍ୱପି ପଣେ, ଭଇଁ ନ ଦଣେ, ଉତ୍ତର ମେଘ ଦକ୍ଷିଣେ ଆସେ
ସଜ ଗୋବରରେ ଅଂସେଇ ବସେ, ଡ଼ାକ ବୋଲେ ପୃଥ୍ୱୀ ନଷ୍ଟେ ବରଷେ ।

୮

ଶ୍ରାବଣ ମାସର ଆଦ୍ୟ ଚଉଠି, ପୂର୍ବ ଦଗୁ ଯଦ୍ଦ ମେଘ ନ ଉଠି
ଦକ୍ଷିଣ ଦଗରୁ ବହଇ ବାଆ
ବୃଷି ବୋଇଲା, ବୃଷ୍ଟୁଣୀ ଲୋ, ଘରଦ୍ୱାର ଗୁଣ୍ଡ ଯା ।

୯

କୃପଣ ନୁହଇ ସଞ୍ଚଇ ଧନ, ଚୋର ନୁହେ ହରେ ପରର ଧନ
ସକଳ କାଟଇ ଅସ୍ତ୍ର ନୁହଇ, ମୂକ ନୁହେ ଗୁମ୍ଫା ଭିତରେ ଥାଇ (ମୂଷା)

୧୦

ପଡ଼ାଏ ପଥର ବୃହଇ ପାଣି, ଗର୍ଜନ କରଇ ସିଂହକୁ ଜିଣି,
ଧଣଇ କାଳିଆ ନାହିଁ ଜୀବନ, ଶୂନ୍ୟରେ କରଇ ସଦା ଗମନ, (ମେଘ)

୧୧

ମାଥା ଝୁମ୍ପୁରୁ ମୁଣ୍ଡୀ, ଝିଅ ରକତ ଭୁଣ୍ଡୀ, (ମଣଚ)

୧୨

ମାଆକୁ ହେଲାଣି ବାରବରଷ ଝିଅଟ ହେଲାଣି ବୁଢ଼ୀ
ନାତୁଣୀ ମୁଣ୍ଡରେ ବାଳ ପାଚଲାଣି ଦେଖିବ ଆସ ହେ ଖୁଡ଼ୀ । (ମକା)

—o—

ମୋ କଥାଟି ସରିଲା, ଫୁଲ ଗଛଟି ମରିଲା,
ହଇରେ ଫୁଲ ଗଛ, ତୁ କାହିଁକି ମଲୁ ?
ମୋତେ କାଳୀ ଗାଈ ଖାଇଗଲା,
ହଇଲୋ କାଳୀଗାଈ, ତୁ କାହିଁ ଖାଇଲୁ ?
ମୋତେ ଗଉଡ଼ ଜଗିଲା ନାହିଁ ।
ହଇରେ ଗଉଡ଼, ତୁ କାହିଁ ଜଗିଲୁ ନାହିଁ ?
ମୋତେ ବଡ଼ ବୋହୂ ଖାଇବାକୁ ଦେଲା ନାହିଁ
ହଇଲୋ ବୋହୂ, ତୁ କାହିଁ ଖାଇବାକୁ ଦେଲୁ ନାହିଁ ?
ପୁଅ କାନ୍ଦିଲା,
ହଇରେ ପୁଅ, ତୁ କାହିଁ କାନ୍ଦିଲୁ ?
ମୋତେ ଧଳାଅଜଗା କାମୁଡ଼ିଲା,
ହଇରେ ଧଳାଅଜଗା, ତୁ କାହିଁ କାମୁଡ଼ିଲୁ ?
ଭୂଇଁ ତଳେ ତଳେ ଥାଏ,
କାହିଁ ଲ ମାଉସ ଟିକଏ ପାଇଲେ କୁଟ୍ କରି ଖାଏ ।

( ଲୋକଗୀତ ସଞ୍ଚୟନ )

—o— ( ଜଙ୍ଗଲ ଗାଉଁଲି ଗୀତ )

## କବି-ପରିଚୟ

କାହ୍ନୁପା, ଶବରପା ଓ ଲୁଇପା :—( ଅଷ୍ଟମରୁ ଦ୍ୱାଦଶ ଶତାବ୍ଦୀ ) ବୌଦ୍ଧ-ସନ୍ନ୍ୟାସୀଗଣ । ସିଦ୍ଧମାନଙ୍କଦ୍ୱାରା ରଚିତ ଓ 'ଗୀତ ହେଉଥିବା ଦାର୍ଶନିକ ବା ପରମାର୍ଥିକ ଗୀତ ବା ଦୋହାର ଭାଷା ପ୍ରାଚୀନ ଆସାମୀ, ବଙ୍ଗଳା, ହିନ୍ଦୀ ଓ ଓଡ଼ିଆ ବୋଲି ଅନୁମାନ କରାଯାଇଛି । ହେଲେ କାହ୍ନୁପା ଶବରପା ଓ ଲୁଇପା ଯେ ଓଡ଼ିଶାରେ ଥିଲେ ଏଥିରେ ସନ୍ଦେହ ନାହିଁ । ଲୁଇପା ଜଣେ ପ୍ରସିଦ୍ଧ ସାଧକ କବି ଓ ସେ ହେଲେ ଆଦିସିଦ୍ଧ । କାହ୍ନୁପା ହାଡ଼ିପାଙ୍କ ଶିଷ୍ୟ ଥିଲେ ଏବଂ ତନ୍ତ୍ରିପା ତାଙ୍କର ଶିଷ୍ୟ । କାହ୍ନୁପା ଉତ୍କଳୀୟ ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିଲେ ଏବଂ ଜାଳନ୍ଧରପାଙ୍କ ଠାରୁ ତନ୍ତ୍ରବିଦ୍ୟା ଶିକ୍ଷା କରିଥିଲେ । ଏହି ତିନି ସାଧକକବିଙ୍କ ରଚନାରେ ଓଡ଼ିଶାର ଶବରପଲ୍ଲୀର ପ୍ରକୃତି ଓ ଜୀବନ ଉପରେ ନିଖୁଣ ଭାବରେ ଚିତ୍ରିତ ତାହା ଲକ୍ଷ୍ୟ କରିବାର କଥା । ଚର୍ଯ୍ୟାଗୀତିକାଗୁଡ଼ିକ ମୁଖ୍ୟତଃ ପରମାର୍ଥିକ ତତ୍ତ୍ୱସମ୍ବଳିତ ହେଲେହେଁ ସେଥିରେ କବିତ୍ୱ ଓ ସମସାମୟିକ ଉତ୍କଳୀୟ ସମାଜ ଓ ଜୀବନର ଯୁଗପତ୍ ସମନ୍ୱୟ ସୁସ୍ପଷ୍ଟ । ଚର୍ଯ୍ୟାପଦରେ ପାଣ୍ଡିତ୍ୟ, ଲାଳିତ୍ୟ, ଅର୍ଥଗୌରବ ଅଛି । ସିଦ୍ଧସାହିତ୍ୟ ବୌଦ୍ଧିକ, ତାନ୍ତ୍ରିକ, ଇଶ୍ୱରଶୀଳ ।

ଗୋରଖ ନାଥ :—( ଦ୍ୱାଦଶରୁ ଚତୁର୍ଦ୍ଦଶ ଶତାବ୍ଦୀ ) ଶିଶୁବେଦ, ସପ୍ତାଙ୍ଗ ଯୋଗ ଧାରଣ ଓ ଗୁରୁଙ୍କ ଉଜନର ରଚୟିତା । ଏହାଙ୍କ ଆଶ୍ରମ ଭୁବନେଶ୍ୱର ନିକଟବର୍ତ୍ତୀ ପ୍ରାଚୀନଦୀ କୂଳରେ ଥିଲା ବୋଲି ଅଚ୍ୟୁତାନନ୍ଦ ଦାସଙ୍କ ଶୂନ୍ୟ ସଂହିତାରେ ବର୍ଣ୍ଣିତ । ରସ ବିନୋଦକର ଦୀନକୃଷ୍ଣ ଦାସଙ୍କ ନାମରତ୍ନ ଗୀତାରେ ଗୋରକ୍ଷନାଥ ବୈଷ୍ଣବ ଧର୍ମାବଲମ୍ବୀ ବୋଲି ଲିଖିତ । ଗୋରଖନାଥ ମତ୍ସ୍ୟେନ୍ଦ୍ର ସ୍ୱାମୀଙ୍କ ଶିଷ୍ୟ । ଏହାଙ୍କ ହିନ୍ଦୀ ଓ ବଙ୍ଗଳା ଭାଷାରେ ରଚନା ଅଛି । ନାଥ ଧର୍ମର ପ୍ରତିଷ୍ଠାତା ହିସାବରେ ଏହାଙ୍କର ନାମ ଉତ୍ତର ଓ ଉତ୍ତର ପୂର୍ବ ଓ ପୂର୍ବ-ଭାରତରେ ଖ୍ୟାତ ଅଛି । ଜୀବନ ଚରିତର ପୂର୍ଣ୍ଣ ପରିଚୟ ମିଳି ନଥିଲେ ମଧ୍ୟ ଗୁରୁ ଗୋରଖନାଥ ନାମରେ ଅଶିକ୍ଷିତ ସମାଜରେ ମଧ୍ୟ ସେ ପରିଚିତ । ନାଥପନ୍ଥୀଙ୍କ ବିଶ୍ୱାସ, ଆତ୍ମାକୁ ଖୋଜିବା ପାଇଁ

ବାହାରକୁ ଯିବା ଦରକାର ନାହିଁ । ଏହା ଆପଣା ଭିତରେ ; ଯେପରି ଅଗ୍ନି କାଠ ଭିତରେ, ବୃକ୍ଷ ବୀଜ ଭିତରେ ଏବଂ ଗନ୍ଧ ପୁଷ୍ପ ଭିତରେ । ନାଥ ଧର୍ମର ଯୋଗପଦ୍ଧତି ଶରୀର ବନ୍ଧନ, କାୟାକଳ୍ପ, ଆତ୍ମନିରୀକ୍ଷଣର ପ୍ରଭାବ ବରାବର ପରବର୍ତ୍ତୀ ସାହିତ୍ୟରେ ମିଳେ । ବୌଦ୍ଧ ସନ୍ନ୍ୟାସୀମାନଙ୍କର ରଚନା ସହିତ ଆତ୍ମିକ ଓ ଆଙ୍ଗିକ ସାମଞ୍ଜସ୍ୟ ରହିଛି ନାଥ ଧର୍ମରେ । 'ଶିଶୁବେଦ' ଶୂନ୍ୟ ଦର୍ଶନର ଏକ ଆଦିଗ୍ରନ୍ଥ ।

ଅବଧୂତ ନାରାୟଣାନନ୍ଦ ସ୍ୱାମୀ :—( ଚତୁର୍ଦ୍ଦଶରୁ ପଞ୍ଚଦଶ ଶତାବ୍ଦୀ ) ଲେଖା ଓ ଶୈଳୀରୁ ଅନୁମାନ ଯେ କବି ଚତୁର୍ଦ୍ଦଶରୁ ପଞ୍ଚଦଶ ଶତାବ୍ଦୀର ଭୁବନେଶ୍ୱରର ଜନୈକ ଶୈବ ସନ୍ନ୍ୟାସୀ ହୋଇଥିବେ । କାବ୍ୟ, ଅଳଙ୍କାର, ସ୍ମୃତି, ଯୋଗ, ସାଂଖ୍ୟ, ବେଦାନ୍ତ ତଥା ଜ୍ୟୋତିଷ ବିଦ୍ୟାରେ ତାଙ୍କର ଅସାମାନ୍ୟ ପ୍ରବେଶ ଥିବାର ପ୍ରମାଣ କବିଙ୍କ ଶ୍ରେଷ୍ଠ ଯୁଗାନ୍ତକାରୀ କୃତି ରୁଦ୍ର ସୁଧାନିଧିରୁ ମିଳେ । ଶିବଙ୍କ ଶକ୍ତି ଓ ମହିମା ପ୍ରକଟ ଓ ପ୍ରଚାର ଉଦ୍ଦେଶ୍ୟରେ ଏ କାବ୍ୟଟି ଲିଖିତ । ଅଭିନବ ଚଇତନ ନାମକ ସିଦ୍ଧ କପର୍ଦ୍ଦ ପାର୍ବତୀଙ୍କ ମାନସ କନ୍ୟା ମୋହିନୀର ଲୋଭରେ ପଡ଼ି ଯୋଗଭ୍ରଷ୍ଟ ହେଲା ଏବଂ ମାନବ ଜନ୍ମ ଲାଭ କରି ପ୍ରାରବ୍ଧ କର୍ମଭୋଗ ଅନନ୍ତର କୈବଲ୍ୟ ପ୍ରାପ୍ତ ହେଲା ତାହା ରୁଦ୍ର ସୁଧାନିଧିର ବିଷୟବସ୍ତୁ । କବିତାର ଗତିଶୀଳତା ଓ କାବ୍ୟପ୍ରବାହ ଲକ୍ଷ୍ୟଣୀୟ । ଓଡ଼ିଆ ସାହିତ୍ୟର ସର୍ବ ପ୍ରାଚୀନ ଗଦ୍ୟ ସାହିତ୍ୟର ନିଦର୍ଶନ ରୂପେ ପରିଗଣିତ ହୋଇ ପାରିଲେ ମଧ୍ୟ ଏଠାରେ ଫଳ-ଗୁଡ଼ିକ ପଦ୍ୟରୂପେ ମୁଦ୍ରିତ ହୋଇ ଉତ୍କୃଷ୍ଟ ପଦ୍ୟରଚନାର ଭ୍ରମ ମଧ୍ୟ ସୃଷ୍ଟି କରୁଛି ।

ବଚ୍ଛାଦାସ, ବତ୍ସଦାସ ବା ଶ୍ରୀବତ୍ସ ଦାସ :—( ଚତୁର୍ଦ୍ଦଶରୁ ପଞ୍ଚଦଶ ଶତାବ୍ଦୀ ) ଚଉତିଶା ରଚନା ପ୍ରାଚୀନ ଓଡ଼ିଆ ସାହିତ୍ୟର ଏକ ବୈଶିଷ୍ଟ୍ୟ ଓ ସ୍ୱାତନ୍ତ୍ର୍ୟ ଏବଂ ଅତୀବ ଲୋକପ୍ରିୟ । ଏ ଶ୍ରେଣୀର ରଚନାରେ 'କ'ରୁ 'କ୍ଷ' ଅନୁକ୍ରମରେ ପଦ ଲେଖାଯାଏ । ସ୍ଥଳ ବିଶେଷରେ ବିପରୀତ ଗତିରେ ଅର୍ଥାତ୍ 'କ୍ଷ'ରୁ 'କ' ପର୍ଯ୍ୟନ୍ତ ପଦ ଲେଖିବା ରୀତି ଅନୁସୃତ ହୁଏ । ପ୍ରେମ, ମିଳନ, ବିରହ, ଭକ୍ତିର କରୁଣ ଆତ୍ମ ନିବେଦନ, ନାୟକ ନାୟିକାଙ୍କ ପ୍ରଣୟପର୍ବ ଏବଂ ଋତୁ ବର୍ଣ୍ଣନା ବିଷୟବସ୍ତୁ ଥାଇ ଭାବ ଓ ଭାଷା ବିଭବପୂର୍ଣ୍ଣ ଅଗଣିତ ଚୌତିଶା ଲୋକମୁଖରୁ ମଧ୍ୟ ଶୁଣାଯାଏ ।

ବଚ୍ଛା ଦାସଙ୍କ 'କଳସା' ଅଧ୍ୟାବଧି ଆବିଷ୍କୃତ ଚୌତିଶା ମଧ୍ୟରେ ସର୍ବପ୍ରଥମ । ଏହାର ରଚନା କାଳ କାହା କାହା ମତରେ ସାରଳାଦାସଙ୍କ ପୂର୍ବବର୍ତ୍ତୀ, ଅନ୍ୟମାନଙ୍କ ମତରେ ପରବର୍ତ୍ତୀ । ତେବେ ଶୈବଧର୍ମର ପରିଚୟ ତଥା ପ୍ରଚାର ଏ କବିତାର ଉଦ୍ଦେଶ୍ୟ ଥିବାରୁ ଏବଂ ସାରଳା ମହାଭାରତରେ 'କଳସା'ର ଉଲ୍ଲେଖ ଥିବାରୁ ଏ ଚଉତିଶାଟିକୁ ଅନେକଙ୍କ 'ମୋହିନୀ' ପରେ ଏବଂ ସାରଳା ଦାସଙ୍କ କୃତି ପୂର୍ବେ ସନ୍ନିବିଷ୍ଟ କରାଯାଇଛି । ବିବାହ ଶୁଭକର୍ମ ପରେ ଫଳସନ୍ତ ବା ଆଶୀର୍ବାଦ ସ୍ଥଳରେ ଏ ଚଉତିଶାଟି ଗୀତ ହେଉଥିବ । କାଳିଦାସଙ୍କ କୁମାର ସମ୍ଭବର ବଟୁ ତପୋରତା ପାର୍ବତୀଙ୍କ ଆଗରେ ଶିବଙ୍କ ଯେଉଁ ଅପ୍ରୀତିକର ଚିତ୍ର ଦେଇଛନ୍ତି ସେହି ସ୍ଥଳରେ ବଚ୍ଛାଦାସ ଶିବଙ୍କୁ ବୃଦ୍ଧାବର ଆକାରରେ ବର୍ଣ୍ଣନା କରି ଏକ ଘୃଣ୍ୟ କଦର୍ଯ୍ୟ, ହାସ୍ୟୋଦ୍ଦୀପକ ଅଥଚ ଜୀବନ୍ତ ବାସ୍ତବ ରୂପ ଦେଇଛନ୍ତି । ନିର୍ବେଦ, ଖେଦ, ଅଧୈର୍ଯ୍ୟ ଓ ମୂର୍ଚ୍ଛା ପରେ ସାର୍ବଜନୀନ ଆନନ୍ଦ ଉଲ୍ଲାସ କଳସାରେ ପ୍ରକଟିତ ।

ସାରଳା ଦାସ :—( ପଞ୍ଚଦଶ ଶତାବ୍ଦୀ ) ଆବିର୍ଭାବ କାଳ ୧୪୧୦ରୁ ବୋଲି ସାଧାରଣତଃ ଗୃହୀତ । ଜାତିର ଆଦି ମହାକବି । ଶୂଦ୍ରମୁନି ନାମରେ ଖ୍ୟାତ । ଉତ୍କଳ ଚକ୍ରବର୍ତ୍ତୀ କପିଳେନ୍ଦ୍ରଦେବ (୧୪୩୫-୧୪୬୭)ଙ୍କ ସମକାଳୀନ । ଖାରବେଳଙ୍କ ପରେ ଏହି ଗଜପତି ମହାରାଜାଙ୍କ ରାଜତ୍ବକାଳ ଉତ୍କଳ ଇତିହାସର ଦ୍ୱିତୀୟ ସ୍ୱର୍ଣ୍ଣଯୁଗ ନାମରେ ଅଭିହିତ । କେତେକଙ୍କ ଅନୁମାନ ସାରଳା ଦାସ ପଞ୍ଚଦଶ ଶତାବ୍ଦୀର ଦ୍ୱିତୀୟ ଦଶକରେ ଜନ୍ମଗ୍ରହଣ କରି ଶତାବ୍ଦୀ ପୂର୍ତ୍ତି ପୂର୍ବରୁ ସ୍ୱର୍ଗାରୋହଣ କରିଥିଲେ । ଜନ୍ମସ୍ଥାନ କଟକ ଜିଲ୍ଲାର ଝଙ୍କଡ଼ ପ୍ରଗନ୍ନାର ଆଧୁନିକ କନକପୁର ଗ୍ରାମ । ମହାକବିଙ୍କ ପ୍ରଥମ ନାମ ସିଦ୍ଧେଶ୍ୱର ପରିଡ଼ା । ସାରଳା ଦେବୀଙ୍କ ପ୍ରସାଦ ଲାଭ କରିବା ପରେ ସେ ନିଜକୁ ସାରଳାଦାସ ନାମରେ ପରିଚିତ କରାଇ-ଥିଲେ । ମହାକବିସୁଲଭ ବିନୟ ଓ ନମ୍ରତା ପ୍ରଦର୍ଶନ କରି ସାରଳା ଦାସ ସ୍ୱଲିଖିତ ଗ୍ରନ୍ଥମାନଙ୍କରେ ନିଜକୁ ମୂର୍ଖ, ଶୂଦ୍ର, ଅପଣ୍ଡିତ ଓ କୁସ୍ଥାନବାସୀ ବୋଲି ଅଭିହିତ କରିଛନ୍ତି ଏବଂ କ୍ଷେତ କର୍ଷଣ କରି କୃଷକ ବୃତ୍ତିରେ ଜୀବନଯାତ୍ରା ନିର୍ବାହ କରନ୍ତି ବୋଲି ମଧ୍ୟ ଲେଖିଛନ୍ତି ।

ସାରଳାଦାସ ଯୁଗଜନ୍ମା, ଯୋଗସିଦ୍ଧ, ଯୁଗପ୍ରବର୍ତ୍ତକ ଏବଂ ଲୋକଧର୍ମୀ ସାହିତ୍ୟ ରାଜ୍ୟରେ କ୍ରାନ୍ତିକାରକ ପୁରୁଷ । "ବ୍ରହ୍ମଚର୍ଯ୍ୟ ପ୍ରାପ୍ତିରେ ତାଙ୍କ ଚରିତ୍ର ଶୁଦ୍ଧପୂତ ଓ ସ୍ୱାଧୀନ ଥିଲା ।" ସେ ହେଲେ ଓଡ଼ିଆ ଭାଷା ଓ କବିତାର ଜନକ ; ତୁଳନାରେ ଉତ୍କଳର ବ୍ୟାସ, ବାଲ୍ମୀକି, ଚସାର ବା ହୋମାର । ତାଙ୍କ ମହାଭାରତ ଓଡ଼ିଆ ସଂସ୍କୃତି, ସଭ୍ୟତା ଓ ସାହିତ୍ୟର ବିଶ୍ୱକୋଷ । "ଓଡ଼ିଆ ସମାଜର ନିତ୍ୟ ଚଳନ, ଓଡ଼ିଆର ପ୍ରାଣପ୍ରକାଶ, ନିତ୍ୟ ଅନୁଭବ ଓ ଲୋକବ୍ୟବହାର ଜୀବନ୍ୟାସ ପାଇ ତାଙ୍କର ଗ୍ରନ୍ଥରେ ସରସ ଓ ପ୍ରାଣବନ୍ତ ହୋଇଛି ।" ଆଦର୍ଶବାଦ, ସାମ୍ୟଭାବ, ନିର୍ଭୀକତା ଓ ଦେଶାତ୍ମବୋଧ ତାଙ୍କ ମହାଭାରତକୁ ଜାତିର ଉପାସ୍ୟ ଓ ଚିରନ୍ତନ କରିଛି । କବିଦୃଷ୍ଟିରେ ଓଡ଼ିଶା ଦେବଭୂମି ; ଓଡ଼ିଶାର କପିଳାସ ପର୍ବତ ତାଙ୍କ କୈଳାସ ; ଗଜପତି ମହାରାଜାଙ୍କ ଅଭିଯାନ ସକଳ ମହାଭାରତ ଯୁଦ୍ଧର ଉପଜୀବ୍ୟ ବସ୍ତୁ । "ସାରଳାଦାସ ଓଡ଼ିଆ ସାହିତ୍ୟର ଓ ସମାଜବିଦ୍ରୋହର ଗୋଟାଏ ପ୍ରଚଣ୍ଡ ଓ ପୃଷ୍ଟିଳ ପରିସ୍ଫୁରଣର ସୁସ୍ପଷ୍ଟ ପ୍ରତୀକ ।" ଅଭ୍ୟୁତ୍ଥାନ ଯୁଗର ଅନବଦ୍ୟ ଗ୍ରନ୍ଥ ତାଙ୍କର ମହାଭାରତ ।

"ସାରଳା ଦାସ ଓଡ଼ିଆ ଭାଷା ଓ ଲିପିକୁ ସ୍ପଷ୍ଟତର ଓ ଉଜ୍ଜ୍ୱଳ, ସୁଗଠିତ ଓ ବର୍ତ୍ତୁଳ କରିଛନ୍ତି ।" ତାଙ୍କର ଆଖ୍ୟାୟିକାମାନ ଓ ଦାର୍ଶିକତ୍ୱ ନାନାରୂପରେ ପରବର୍ତ୍ତୀ ଯୁଗର କବିଙ୍କୁ ଓ କାବ୍ୟକୁ ପ୍ରଭାବିତ କରିଛି । ସାରଳା ମହାଭାରତ ଷୋଡ଼ଶ ଶତାବ୍ଦୀରେ ବଙ୍ଗ ଭାଷାରେ ଅନୂଦିତ ଓ ପ୍ରଚାରିତ ହୋଇଥିଲା । ଯୁଦ୍ଧ ବର୍ଣ୍ଣନାରେ ସାରଳା ଅପ୍ରତିଦ୍ୱନ୍ଦୀ । ମହାଭାରତର ଶୁଦ୍ଧ ସଂସ୍କରଣର ପ୍ରକାଶ ଆରମ୍ଭ ହୋଇଛି ।

ପ୍ରଧାନ ରଚନା :—ମହାଭାରତ, ବିଲଙ୍କା ରାମାୟଣ, ଚଣ୍ଡୀପୁରାଣ ।

ମାର୍କଣ୍ଡେୟ ଦାସ :—( ପଞ୍ଚଦଶ ଷୋଡ଼ଶ ଶତାବ୍ଦୀ ) ଅନୁମାନ, କବି ପୁରୀରେ ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିବେ । କବିତାର ମାର୍ଜିତ ଭାଷା ଓ ଶୈଳୀ ଦୃଷ୍ଟିରୁ ପଣ୍ଡିତ ନୀଳକଣ୍ଠ ଏହାଙ୍କୁ ସାରଳାଦାସଙ୍କ ପରବର୍ତ୍ତୀ କାଳରେ ଇତିହାସରେ ସ୍ଥାନ ଦେଇଛନ୍ତି ଯଦିଓ ବହୁଜନ ଧରି ମାର୍କଣ୍ଡେୟ ଦାସ ସାରଳାଙ୍କ ପୂର୍ବବର୍ତ୍ତୀ କବି ହିସାବରେ ସ୍ଥାନ ପାଇଥିଲେ । ବିଷ୍ଣୁଙ୍କ ଦୁଇ ଅବତାର ରାମ ଓ କୃଷ୍ଣଙ୍କୁ ଅବଲମ୍ବନ କରି ସେ 'କେଶବ କୋଇଲି' ଓ 'ମହାଭାଷ୍ୟ' ରଚନା କରିଥିଲେ ।

'ଚଉତିଶା' ସହ 'କୋଇଲି' ସଙ୍ଗୀତ ମଧ୍ୟ ଓଡ଼ିଆ କାବ୍ୟରାଜ୍ୟରେ ଅତୀବ ଲୋକପ୍ରିୟ ପ୍ରାଚୀନ ରଚନା ବୋଲି ଖ୍ୟାତି ଲଭିଛି । ବସନ୍ତାଗମରେ କୋଇଲିର ପ୍ରଥମ କୁହୁଧ୍ୱନି ନରନାରୀଙ୍କ ହୃଦୟରେ ଚଞ୍ଚଳତା ଓ ଅଭିନବ ଭାବାବେଶ ସୃଷ୍ଟି କରେ ଏବଂ ସୁପ୍ତ ଭାବ ଓ ବାସନାରାଜିକୁ ମଧ୍ୟ ଉଜ୍ଜୀବିତ କରେ । କୋଇଲିର ବିଷାଦପୂର୍ଣ୍ଣ ଗୀତ ବିରହିଣୀ କାନ୍ତା ଓ ପୁତ୍ରବିରହକାତର ମାତାର ହୃଦୟରେ ସମ୍ବେଦନ ଜଗାଏ । ଶ୍ରୀକୃଷ୍ଣଙ୍କ ମଥୁରାଯାତ୍ରାରେ ପୁତ୍ରବତ୍ସଳା ଯଶୋଦାଙ୍କ ଆକୁଳ ଉଦ୍‌ବେଗ ଓ କରୁଣ ଶୋକୋଚ୍ଛ୍ୱାସ 'କେଶବ କୋଇଲି'ରେ ଲିପିବଦ୍ଧ ହୋଇଛି । ଏ ସଙ୍ଗୀତଟି ମଧ୍ୟ ଚଉତିଶା ନିୟମବଦ୍ଧ । ବାତ୍ସଲ୍ୟ ଓ କରୁଣାର ମନ୍ଦାକିନୀ ଏହାର ପ୍ରତି ଛନ୍ଦରେ ପ୍ରବାହିତ । 'କେଶବ କୋଇଲି'ର ମୂର୍ଚ୍ଛନା ଅଦ୍ୟାପି ଉତ୍କଳର ପୁରପଲ୍ଲୀରେ ଝଙ୍କୃତ । ନବଶିକ୍ଷିତ ପାଇଁ ଏହା ପ୍ରଥମ କବିତା । ଷୋଡ଼ଶ ଶତାବ୍ଦୀରେ ଜଗନ୍ନାଥ ଦାସ ସ୍ୱରଚିତ 'ଅର୍ଥକୋଇଲି'ରେ ଏହାର ନିଗୂଢ଼ ଦାର୍ଶନିକ ତତ୍ତ୍ୱ ବ୍ୟାଖ୍ୟା କରିଥିଲେ । ମୈଥିଳୀର 'ଲୋଲି' ଗୀତ ସହିତ 'କୋଇଲି' ତୁଳନୀୟ ।

ଅର୍ଜ୍ଜୁନ ଦାସ :—( ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀ ) ସୁପ୍ରସିଦ୍ଧ 'ରାମବିଭା' କାବ୍ୟର ରଚୟିତା । ଏହାଙ୍କ ପରବର୍ତ୍ତୀ କାବ୍ୟକାରଗଣ ସ୍ୱ ସ୍ୱ କୃତିରେ ବାରମ୍ବାର 'ରାମବିଭା'ର ବାଣୀ ଗୁଡ଼ିକର ନିର୍ଦ୍ଦେଶ ଦେଇଥିବାରୁ କାବ୍ୟର ପ୍ରାଚୀନତା ତଥା ଲୋକପ୍ରିୟତା ସୂଚିତ ହେଉଅଛି । ଅର୍ଜ୍ଜୁନ ଦାସଙ୍କ ମତରେ ଜଗନ୍ନାଥ ଏକ ଅବତାର । କାବ୍ୟରେ ବାତ୍ସଲ୍ୟ, କାରୁଣ୍ୟ ଓ ବୀର ରସର ପ୍ରାଚୁର୍ଯ୍ୟ ଥିଲେ ହେଁ ଶୃଙ୍ଗାର ରସ ପ୍ରାଧାନ୍ୟ ଲଭିଛି । ବିଭିନ୍ନ ରାଗରାଗିଣୀ ଓ ଛାନ୍ଦଗୀତରେ ରଚିତ ଓଡ଼ିଆ ସାହିତ୍ୟର ପ୍ରଥମ ଓ ପ୍ରଧାନ କାବ୍ୟରୂପେ କବିକୃତ 'ରାମବିଭା'ର ସ୍ଥାନ ଅତି ଉଚ୍ଚରେ ।

ଦାମୋଦର ଦାସ :—( ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀ ) କପିଳେନ୍ଦ୍ର ଦେବଙ୍କ ସମସାମୟିକ କବି ଓ ସୁପ୍ରସିଦ୍ଧ 'ରସକୁଲ୍ୟା ଚଉତିଶା'ର ଲେଖକ । ଏହି ଚଉତିଶାରେ ଶ୍ରୀକୃଷ୍ଣଙ୍କ ପ୍ରତି ରାଧାଙ୍କ ନବାନୁରାଗ ଉଚାଟ, ଉଦ୍‌ବେଗ ପ୍ରକଟିତ ଓ ସଖିସହାୟତାରେ ରାଧାକୃଷ୍ଣଙ୍କ ମିଳନ ବର୍ଣ୍ଣିତ । ରସାଧିକ୍ୟ ହେତୁ ଚଉତିଶାର ନାମ ରସକୁଲ୍ୟା । ବଚ୍ଛାଦାସ ଯେପରି 'କଳସାର' ସ୍ରଷ୍ଟା ଦାମୋଦର ଦାସ ସେହିପରି

ଋପକଳ୍ପନାର ଅବତାରଣା । ପରବର୍ତ୍ତୀ ଯୁଗରେ ସରସ ମଧୁର ସାହିତ୍ୟର ସ୍ରଷ୍ଟାଗଣ ଏହି ଦୁଇ 'ବାଣୀ'ର ସ୍ରଷ୍ଟାଙ୍କ ଠାରେ ଋଣୀ । ଚୈତନ୍ୟଙ୍କ ଆଗମନ ପୂର୍ବରୁ ମଧ୍ୟ ଓଡ଼ିଶାରେ ରାଧାକୃଷ୍ଣ ଚରିତ୍ର ସାହିତ୍ୟର ଉପଜୀବ୍ୟ ଥିଲା, ଏ ଚୌତିଶାଟି ତାର ନିଦର୍ଶନ ।

ବଳରାମ ଦାସ :—( ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀ ) ସୂର୍ଯ୍ୟବଂଶ ଗଜପତି ପ୍ରତାପ ରୁଦ୍ର ଦେବ (୧୪୭୯—୧୫୪୦)ଙ୍କ ସମକାଳୀନ ଓ ପଞ୍ଚସଖା (ବଳରାମ, ଜଗନ୍ନାଥ, ଅଚ୍ୟୁତାନନ୍ଦ, ଯଶୋବନ୍ତ ଓ ଅନନ୍ତ)ଙ୍କ ମଧ୍ୟରେ ବୟୋଜ୍ୟେଷ୍ଠ । ଚୈତନ୍ୟଦେବଙ୍କ ଶିଷ୍ୟ ତଥା ସଖା । ଜନ୍ମ ସମ୍ଭବତଃ ୧୪୮୦ ଖ୍ରୀ: ଅ: । ପିତା ଗଜପତି ମହାରାଜାଙ୍କ ମନ୍ତ୍ରୀ ସୋମନାଥ ମହାପାତ୍ର ମାତାଙ୍କ ନାଆଁ ଜମ୍ବୁବତୀ ବା ମନୋମାୟା । ଚୈତନ୍ୟଦେବଙ୍କ ଆଗମନ (୧୫୦୯) ପୂର୍ବରୁ ବଳରାମ ଖ୍ୟାତି ଲଭି ସାରିଥିଲେ । ତାଙ୍କ ଭକ୍ତିବହ୍ୱଳତା ଲକ୍ଷ୍ୟକରି ଚୈତନ୍ୟ ତାଙ୍କୁ 'ମତ୍ତ ବଳରାମ' ବୋଲି ଆଖ୍ୟା ଦେଇଥିଲେ ।

କବିଙ୍କ ଶ୍ରେଷ୍ଠ କୃତି 'ଜଗମୋହନ ରାମାୟଣ' ସାରଳା ଦାସଙ୍କ ଦାଣ୍ଡି ବୃତ୍ତରେ ଲେଖା । ତେଣୁ ଗ୍ରନ୍ଥର ଅନ୍ୟନାମ 'ଦାଣ୍ଡି ରାମାୟଣ' । ହିନ୍ଦୀ ଭାଷାର ତୁଳସୀ ରାମାୟଣ ପରି ଏହା ଏକ ଯୁଗାନ୍ତକାରୀ ଗ୍ରନ୍ଥ । ଓଡ଼ିଆ ଜାତିର ପରମ୍ପରା, ଶୌର୍ଯ୍ୟ-ବୀର୍ଯ୍ୟ, ଧର୍ମଧାରଣା ଓ ସାମାଜିକ ଚଳଣି ସନ୍ନିବଦ୍ଧ ଗ୍ରନ୍ଥଟି ଯୁଗଯୁଗ ଧରି ଜାତିର ଉପାସ୍ୟ ହୋଇ ରହିଛି ସାରଳାଙ୍କ 'ମହାଭାରତ' ଓ ଜଗନ୍ନାଥଙ୍କ 'ଭାଗବତ' ପରି । ସରଳ ପ୍ରକାଶ, ସୁସ୍ପଷ୍ଟ ବର୍ଣ୍ଣନା, ଆଖ୍ୟାନର ଗତିଶୀଳତା, ଜୀବନ୍ତ ଓ ବଳିଷ୍ଠ ଛନ୍ଦ ଓ ଚରିତ୍ର ଚିତ୍ରଣ ଏ ଗ୍ରନ୍ଥର ବୈଶିଷ୍ଟ୍ୟ । ଭାଷା ସର୍ବତ୍ର ସରଳ, ସୁମଧୁର ଓ ସର୍ବଜନଗ୍ରାହ୍ୟ । ଯଦି ସାରଳା ମହାଭାରତ ଓଡ଼ିଶାର 'ଇଲିଅଡ଼୍' ବଳରାମଙ୍କ ରାମାୟଣ 'ଓଡ଼ିସୀ' କହିବାରେ ଅତ୍ୟୁକ୍ତି ହେବ ନାହିଁ । ଅଜସ୍ରପ୍ରାୟ ରଚନା ବଳରାମ ଦାସଙ୍କର ।

ମୁଖ୍ୟ ରଚନାବଳି :—ଦାଣ୍ଡି ବା ଜଗମୋହନ ରାମାୟଣ, ବଟ ଅବକାଶ, ଗୁପ୍ତଗୀତା, ବ୍ରହ୍ମପୁରାଣ, କାନ୍ତ କୋଇଲି, ଲକ୍ଷ୍ମୀପୁରାଣ, ମୃଗଣୀ ସ୍ତୁତି, କମଳଲୋଚନ

ତଳଉଣା, ବାରମାସୀ, ସ୍ୱରସମୁଦ୍ର, ବ୍ରହ୍ମାଣ୍ଡ ଭୂଗୋଳ, ଗୁଲାଭଣା, ବଳଭଦାଗାନ୍ଧୀ ଗୀତ, ବେଦାନ୍ତସାର, ବାରମାସୀ କୋଇଲି ।

ଜଗନ୍ନାଥ ଦାସ :—( ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀ ) ଜନ୍ମ ୧୪୯୦ (?) ପୁରୀ ଜିଲ୍ଲା କପିଳେଶ୍ୱର ଗ୍ରାମ । ପିତା ଭଗବାନ ପୁରାଣ ପଣ୍ଡା (ଦାସ), ମାତା ପଦ୍ମାବତୀ । ଜଗନ୍ନାଥ ଦାସ ଆଜନ୍ମ ବ୍ରହ୍ମଚାରୀ, ସୁପଣ୍ଡିତ, ପରମସିଦ୍ଧ ମହାଯୋଗୀ । ଷୋଳବର୍ଷ ବୟସକ୍ରମରେ ସେ ସନ୍ନ୍ୟାସୀ ହୋଇ ଅଠର ବର୍ଷ ବେଳେ ଚୈତନ୍ୟମଣ୍ଡଳୀରେ ଯୋଗ ଦେଲେ । ଏତେ ଅଳ୍ପ ବର୍ଷ ବୟସରେ ସିଦ୍ଧି ଲାଭ କରିଥିବାରୁ ଚୈତନ୍ୟ ତାଙ୍କୁ 'ଅତିବଡ଼ୀ' ଉପାଧି ଦେଇଥିଲେ । ଚୈତନ୍ୟଙ୍କ ସହିତ ଛଅ ବର୍ଷ ରହି ଓ ବହୁ ବର୍ଷ ଯୋଗନିଷ୍ଠ ଥାଇ ସେ ଲୋକୋତ୍ତର ସିଦ୍ଧି ଲାଭ କଲେ ଏବଂ ତାଙ୍କ ମହିମାରେ ମୁଗ୍ଧ ହୋଇ ପ୍ରତାପରୁଦ୍ର ତାଙ୍କୁ ଗୁରୁ କରିଥିଲେ । ସତୁରି ବର୍ଷ ବୟସରେ ଜଗନ୍ନାଥ ଦେହତ୍ୟାଗ କଲେ । ଏହାଙ୍କ ଆତ୍ମା ଜଗନ୍ନାଥ ବିଗ୍ରହରେ ଲୀନ ହୋଇଥିବାର କିମ୍ବଦନ୍ତୀ ଅଛି ।

ଜଗନ୍ନାଥ ଦାସଙ୍କ ଅମର କୃତି 'ଭାଗବତ' ଏକାଧାରରେ ଓଡ଼ିଆଜାତିର ବାଇବଲ ଓ ଭଗବଦ୍‌ଗୀତା । ମାତାଙ୍କ ଅନୁରୋଧ ରକ୍ଷା କରି ସଂସ୍କୃତ ଭାଗବତ, ପୁରାଣ ଓ ଅନ୍ୟାନ୍ୟ ପ୍ରାଚୀନ ଗ୍ରନ୍ଥରୁ ବିଷୟ ବସ୍ତୁ ନେଇ ଜଗନ୍ନାଥ ଦାସ ନବାକ୍ଷରୀ ଭାଗବତ ରଚନା କରିଥିଲେ । ଦିନ ଥିଲା ଯେବେ ଓଡ଼ିଶାର ପ୍ରତିପଲ୍ଲୀରେ 'ଭାଗବତ ଗାଦି' 'ଭାଗବତ ଘର' ସ୍ଥାପିତ ହୋଇଥିଲା ଯେଉଁଠି ସନ୍ଧ୍ୟାରେ କର୍ମକ୍ଲାନ୍ତ ପଲ୍ଲୀବାସୀ ଭାଗବତ ପାଠ ଓ ଶାସ୍ତ୍ରାଲୋଚନା କରୁଥିଲେ । ଏହି ଭାଗବତ ଘରକୁ କେନ୍ଦ୍ରକରି ଜାତୀୟ ସଂସ୍କୃତି, ଧର୍ମ ଏବଂ ସମାଜଜୀବନ ଗଢି ଉଠିଥିଲା । ଭାଗବତର ଖ୍ୟାତି ଓଡ଼ିଶା ବାହାରକୁ ଯାଇ ଗ୍ରନ୍ଥଟି ଭାଷାନ୍ତରିତ ମଧ୍ୟ ହୋଇଥିଲା । ନିରକ୍ଷର ପଲ୍ଲୀବାସୀ କି ନାରୀ କି ପୁରୁଷ ସମସ୍ତେ ଜ୍ଞାତ ଓ ଅଜ୍ଞାତ ଭାବରେ ପଦେ ଅଧେ ଭାଗବତ ବାଣୀ ଜାଣନ୍ତି, ଗାଆନ୍ତି । ମୃତ୍ୟୁଶଯ୍ୟାରେ ଭାଗବତ ଶୁଣି ସ୍ୱର୍ଗାରୋହଣ କରିବାର ଆକାଂକ୍ଷା ପ୍ରତ୍ୟେକ ଓଡ଼ିଆର ରହିଛି । ଭାଗବତ ଛୁଇଁ ଲୋକେ ଶପଥ ଗ୍ରହଣ କରନ୍ତି ମଧ୍ୟ । ଲୋକଚରିତ୍ର ଗଢ଼ିବାରେ, ଭ୍ରାତୃତ୍ୱବୋଧ ଜଗାଇବାରେ ଗ୍ରନ୍ଥଟି ଅଦ୍ୱିତୀୟ । ପ୍ରାଚୀନ ପଲ୍ଲୀ

କୃଷ୍ଣଙ୍କ ଏବଂ ଭାଗବତ ଅଧ୍ୟୟନରେ ସମର୍ଥ କରିବା ପାଇଁ ପୁଅକୁ ବିଦ୍ୟାଳୟକୁ ପଠାଏ ।

ରଚନା :—ଭାଗବତ, ଗୁପ୍ତଭାଗବତ, ଦାରୁବ୍ରହ୍ମଗୀତା, ଗଜସ୍ତୁତି, ଅର୍ଥକୋଇଲି, ମୁଗୁଣିସ୍ତୁତି, ଧ୍ରୁବସ୍ତୁତି, ତୁଳାଭିଣା, ଗୁପ୍ତଗୀତା ଓ ଅପ୍ରକାଶିତ ଉଷାହରଣ କାବ୍ୟ ।

ଅଚ୍ୟୁତାନନ୍ଦ ଦାସ :—(ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀ) (ଜନ୍ମ ୧୪୮୬ ?) ଜନ୍ମସ୍ଥାନ କଟକ ଜିଲ୍ଲା ଅନ୍ତର୍ଗତ ତିଲକଣା ଗ୍ରାମ । ପିତା ଦୀନବନ୍ଧୁ ଖୁଣ୍ଟିଆ, ମାତା ପଦ୍ମାବତୀ । ଅତି ଅଳ୍ପ ବୟସରେ ସେ ଗୀତାଭାଗବତ ପଢ଼ି ମନ୍ତ୍ର-ଯନ୍ତ୍ର-ତନ୍ତ୍ର ବିଦ୍ୟାରେ ପାରଙ୍ଗମ ହୋଇଥିଲେ । ଚୈତନ୍ୟଦେବଙ୍କଠାରୁ ଦୀକ୍ଷା ଗ୍ରହଣ ପରେ ସେ ଖୋଳ ମନ୍ଦିର ଧରି ସାରା ଭାରତର ନାନା ତୀର୍ଥ ପରିଭ୍ରମଣ କରିଥିଲେ । ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଭୂଖଣ୍ଡରେ ଏହାଙ୍କର ଅଗଣିତ ଭକ୍ତ ଥିଲେ ! ବିଶେଷ୍ କରି ଗୋପାଳମାନେ ଏହାଙ୍କ କୃଷ୍ଣଭକ୍ତିରେ ମୁଗ୍ଧ ଓ ଆକୃଷ୍ଟ ହୋଇଥିଲେ । ଅଚ୍ୟୁତାନନ୍ଦ ଅଗଣିତ ପୁସ୍ତକ ରଚନା କରିଥିବା କଥା ଲୋକ ମୁଖରୁ ଶୁଣାଯାଏ । ତାଙ୍କ ରଚନାରେ ଧର୍ମ ଓ ଯୋଗ ସମ୍ବନ୍ଧୀ ଆଲୋଚନା ତଥା ବିଭିନ୍ନ ଧର୍ମର ସମନ୍ୱୟ ପ୍ରୟାସ ଦେଖାଯାଏ । ଅଚ୍ୟୁତାନନ୍ଦଙ୍କ ହରିବଂଶ ଜଗନ୍ନାଥ ଦାସଙ୍କ ଭାଗବତ ତୁଲ୍ୟ ପୂଜିତ ହୁଏ । ବାରମାସୀ କୋଇଲିର କରୁଣରସ ଓ ଲାଳିତ୍ୟ ଲକ୍ଷଣୀୟ । 'ଘର ଘରଣି ସମ୍ବାଦ' ଅପ୍ରକାଶିତ ବ୍ରହ୍ମ ଶଂକୋଳରୁ ନିଆ ଯାଇଛି । ପାଣ୍ଡୁଲିପି ରଘୁନନ୍ଦନ ପୁସ୍ତକାଳୟର । ପରିଚ୍ଛେଦଟି ସଦାଶିବ ରଥ ଶର୍ମାଙ୍କ ସୌଜନ୍ୟରୁ ପ୍ରାପ୍ତ ।

ରଚନା :—ହରିବଂଶ, ଗୋପାଳଙ୍କ ଓଗାଳ, ଗୁରୁଭକ୍ତି ଗୀତା, ଶୂନ୍ୟସଂହିତା, ବାରମାସୀ କୋଇଲି, ଜ୍ଞାନୋଦୟ କୋଇଲି, ବ୍ରହ୍ମଶଂକୋଳ ଛତିଶଟି ସଂହିତା, ଅଠଷଠି ଗୀତା ଓ ଅନେକ ମାଳିକା (ଭବିଷ୍ୟ ପୁରାଣ)

ଯଶୋବନ୍ତ ଦାସ :—(ପଞ୍ଚଦଶ-ଷୋଡଶ ଶତାବ୍ଦୀ) । ଜନ୍ମସ୍ଥାନ କଟକ ଜିଲ୍ଲା ଅନ୍ତର୍ଗତ ଅଡ଼ଙ୍ଗ ଗ୍ରାମ । ପିତା ଜଗୁ ମଲ୍ଲିକ, ମାତା ରେଖାଦେଈ । ଯଶୋବନ୍ତ ସଂସ୍କୃତ ପଣ୍ଡିତ, ଯୋଗୀ ତଥା ସିଦ୍ଧ-ପୁରୁଷ ଥିଲେ ଓ ଅଚ୍ୟୁତାନନ୍ଦଙ୍କ ପରି ଭାରତର ଅନେକ ତୀର୍ଥକ୍ଷେତ୍ର ବୁଲି ଅବଶେଷରେ ଶ୍ରୀକ୍ଷେତ୍ରରେ ଅବସ୍ଥାନ କଲେ ଓ ଚୈତନ୍ୟଦେବଙ୍କ

ଠାରୁ ଦୀକ୍ଷା ଗ୍ରହଣ କଲେ । ଯଶୋବନ୍ତ ଅଡ଼ଙ୍ଗର ରାଜା ରଘୁନାଥଙ୍କ କନ୍ୟା ଅନ୍ତନାଙ୍କୁ ବିବାହ କରି ଗୃହସ୍ଥାଶ୍ରମ କରିଥିଲେ । ଯଶୋବନ୍ତଙ୍କ 'ଗୋବିନ୍ଦ ଚନ୍ଦ' କରୁଣ ରସାପ୍ଲୁତ । ବଙ୍ଗଦେଶର ଗୋବିନ୍ଦ ଚନ୍ଦ୍ର ନାମକ ରାଜା ମାତାଙ୍କ ଆଦେଶରେ ଗୃହସଂସାରତ୍ୟାଗୀ ହାଡ଼ିପା ହୋଇ ନାମକ ସିଦ୍ଧ ଜାତିର ମହାତ୍ମାଙ୍କୁ ଗୁରୁ କରି କିପରି ତତ୍ତ୍ୱସଂଯମ ଦ୍ୱାରା ଅମର ହୋଇଥିଲେ ତାହା ଏ କାବ୍ୟରେ ବର୍ଣ୍ଣିତ । କାବ୍ୟରେ ଉଚ୍ଚ ଚରିତ୍ର ସହିତ ଲୌକିକ ଗ୍ରାମ୍ୟ ଚରିତ୍ରର ମଧୁର ସମନ୍ୱୟ ଘଟିଛି । ବଙ୍ଗଳାରେ ଭାଷାନ୍ତରିତ 'ଗୋବିନ୍ଦ ଚନ୍ଦ୍ର ଗୀତା' ଯଶୋବନ୍ତଙ୍କ କାବ୍ୟର ଲୋକପ୍ରିୟତାର ପ୍ରମାଣ । ଏ ସମ୍ପର୍କରେ ଉଦ୍ଧୃତ ପରିଚ୍ଛେଦଟି ଯଶୋବନ୍ତଙ୍କ 'ଗୋବିନ୍ଦ ଚନ୍ଦ'ର ଅନୁସରଣରେ ଲିଖିତ ପରବର୍ତ୍ତୀ କାଳର କବି 'ଯୋଗୀନ୍ଦ୍ର ଦେବଙ୍କ ବପୁ' ବା ଉଦ୍ଧବ ଦାସଙ୍କ 'ଟୀକା ଗୋବିନ୍ଦଚନ୍ଦ୍ର'ର । ଭାଷା, କବିତ୍ୱ ଓ ଛନ୍ଦର ଲାଳିତ୍ୟ ଦୃଷ୍ଟିରୁ ରଚନାଟି 'ଗୋବିନ୍ଦ ଚନ୍ଦ' ଅପେକ୍ଷା ବେଶୀ ଲୋକପ୍ରିୟ ଏବଂ ଓଡ଼ିଶାର ନାଥମାନଙ୍କ ମୁଖରେ ଭାଗବତ ବା ଗୀତାର ପଦ ପରି ଆବୃତ୍ତ, ସମ୍ମାନିତ ଓ ଗୀତ ହୋଇଥାଏ । ଗାଁ ଗହଳର ଚିତ୍ର 'ଗୋବିନ୍ଦଚନ୍ଦ୍ର'ରେ କିପରି ଉତ୍କର୍ଷ ଲଭ ତାହା ନିମ୍ନ ଉଦ୍ଧୃତିରୁ ସ୍ପଷ୍ଟ ହେବ ।

ନିତ୍ୟ ଯେ ରଜନୀ ସେହୁ ଗଡ଼ିଆଣୀ ନାରୀ
ପାଗ ସଂଯୋଗ କରଣ ଅଗ୍ନି ଦେଲ ଜାଳି ।
ରଜନୀ ହାଣ୍ଡିରେ ଲିଆ ଛଡ଼ାଏ ନିବର
କଳଇ ପସରା ନଠ ମାପଇ ଅଢ଼ାର ।
ରାତ୍ର ଅର୍ଦ୍ଧଭାଗେ ସେ ରାନ୍ଧଣା କଲେ ଭାତ
ଖାଇ ସାରି ଦୁଇଦଣ୍ଡ ଶୁଅଇ ନିଶେତ ।
ରାଣ୍ଡ ପାଞ୍ଚ ଘଡ଼ି ଥାଉ ହଳାଚର ହୋଇ
ଚୁଲି ଲଗାଇଣ ସେହୁ ଧାନ ଖରଡ଼ାଇ । (ପୃ ୩୬)

ରଚନା :—ଗୋବିନ୍ଦ ଚନ୍ଦ, ପ୍ରେମଭକ୍ତି ବ୍ରହ୍ମଗୀତା, ଶିବସ୍ୱରୋଦୟ ।

ନରସିଂହ ସେଣ ମହାପାତ୍ର :—(ଷୋଡ଼ଶ ଶତାବ୍ଦୀ) ପଞ୍ଚସଖାଙ୍କ ସମସାମୟିକ । ପିତା, ପିତାମହ ସଂସ୍କୃତ ପଣ୍ଡିତ । ପିତା ତପନସେଣ ମାତା ଗୌରୀଦେବୀ । ପ୍ରତାପରୁଦ୍ରଙ୍କ ଦ୍ୱାରା 'ମହାପାତ୍ର' ଉପାଧିରେ ସମ୍ମାନିତ । ପୁରୁଷାନୁକ୍ରମିକ ରାଜବୈଦ୍ୟ ।

ପରମାଳା କାବ୍ୟର ଲେଖକ ଆଦିରସାତ୍ମକ କାଳ୍ପନିକ ବିଷୟ ବସ୍ତୁକୁ ନେଇ ଚବିଶଟି ଛାନ୍ଦରେ କାବ୍ୟଟି ରଚିତ । ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ' ଓ 'କୋଟିବ୍ରହ୍ମାଣ୍ଡସୁନ୍ଦରୀ'ର ଅଗ୍ରଦୂତ ଓ ପଥପ୍ରଦର୍ଶକ "ଦେଶଭାଷାରେ ମୁଁ ଗୀତ ରଚିଲି ପରୁଙ୍କର ବୁଝିବା ପାଇଁ" ପଂକ୍ତିଟି କାବ୍ୟର ଆତ୍ମମୂଲ୍ୟର ସୂଚନା ଦିଏ ।

ମାଧବୀ ଦାସୀ :—(ଷୋଡଶ ଶତାବ୍ଦୀ) ସମ୍ଭବତଃ ପ୍ରଥମ ନାରୀକବି, ଚୈତନ୍ୟ-ଦେବଙ୍କ ଅନ୍ତରଙ୍ଗ ବନ୍ଧୁ, ଭକ୍ତ ଶିଖି ମହାନ୍ତିଙ୍କ ଭଗିନୀ । ବଙ୍ଗଳା ଭାଷାରେ ରଚିତ ଏହାଙ୍କ ବୈଷ୍ଣବ ପଦାବଳୀ ତାଙ୍କ ରଚନା ବ୍ରଜବୁଲିର ଅନ୍ତର୍ଭୁକ୍ତ । ଅଧୁନା ଆବିଷ୍କୃତ 'ଭଜନାବଳୀରୁ' ଆନୀତ ଭଜନଟି ଏ 'ସଞ୍ଚୟନ'ର ଅନ୍ତର୍ଗତ ।

ଶଙ୍କର ଦାସ :—(ଷୋଡଶ ଶତାବ୍ଦୀ ?) ସରଳ ଭାଷାରେ ଲିଖିତ କରୁଣ-ରସାତ୍ମକ 'ବାରମାସୀ କୋଇଲି' କବିଙ୍କର ଏକମାତ୍ର ପ୍ରାପ୍ତ ରଚନା । ଏ କୋଇଲିଟି ଚଉତିଶା ନିୟମରେ ରଚିତ ନୁହେଁ । ବନବାସରେ ପୁତ୍ର ରାମଚନ୍ଦ୍ର କିପରି ବିଭିନ୍ନ ମାସରେ କ୍ଳେଶ ଅନୁଭବ କରୁଥିବେ ତାହା କଳ୍ପନା କରି କୌଶଲ୍ୟାଙ୍କ ବିଳାପ ଏ କ୍ଷୁଦ୍ର କବିତାର ବିଷୟବସ୍ତୁ ।

ଦେବଦୁର୍ଲ୍ଲଭ ଦାସ :—(ଷୋଡ଼ଶ-ସପ୍ତଦଶ ଶତାବ୍ଦୀ) ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତରେ ସୁପ୍ରସିଦ୍ଧ ରହସ୍ୟ ମଞ୍ଜରୀ କାବ୍ୟର ରଚୟିତା । ପଞ୍ଚସଖା ମାର୍ଗର ପଥିକ । ଏ କାବ୍ୟଟିରେ ରାଣୀମାନଙ୍କ ଅପେକ୍ଷା ଗୋପୀମାନଙ୍କ ପ୍ରତି ଶ୍ରୀକୃଷ୍ଣଙ୍କ ଅଧିକ ପ୍ରେମ ଥିବାର ବର୍ଣ୍ଣିତ ହୋଇଛି । ରାଣୀମାନଙ୍କ ସନ୍ଦେହ ମୋଚନ ପାଇଁ ସେମାନଙ୍କୁ ଶ୍ରୀକୃଷ୍ଣ ଗରୁଡ଼ ପୃଷ୍ଠରେ ସଙ୍ଗରେ ନେଇ ବୃନ୍ଦାବନରେ ପହଞ୍ଚିଲେ ଏବଂ ରାଣୀମାନଙ୍କୁ ଲୁଚାଇ ବଂଶୀ ବଜାଇ ରାସଲୀଳା ଆରମ୍ଭ କଲେ । ଗୋପୀମାନଙ୍କ ପ୍ରେମର ଉତ୍କର୍ଷ ଓ ରାସଲୀଳାର ଅଲୌକିକତା ପ୍ରତିପାଦନ କରି ସେ ପୁଣି ସେମାନଙ୍କୁ ଲେଉଟାଇ ଆଣିଲେ । ଋତୁ ବର୍ଣ୍ଣନା, ପ୍ରକୃତି ବର୍ଣ୍ଣନା ଓ ଲଳିତ ପଦଝଙ୍କାର ଦୃଷ୍ଟିରୁ କାବ୍ୟଟି ଅମୂଲ୍ୟ ଓ ଅନୁପମ ।

ସାଲବେଗ :—(ଷୋଡଶ-ସପ୍ତଦଶ ଶତାବ୍ଦୀ) ପିତା ଜଣେ ମୁସଲମାନ

ସେନାପତି, ମାତା ଏକ ଅପଦ୍ରୁତା ବ୍ରାହ୍ମଣୀ। ଯୌବନରେ (ଯୁଦ୍ଧରେ ? କୁଷ୍ଠ-ରୋଗରେ ?) ସେ କ୍ଷତବିକ୍ଷତ ହୋଇ ନିଦାରୁଣ ଯନ୍ତ୍ରଣା ସହି ନ ପାରି ଆତ୍ମହତ୍ୟା କରିବାକୁ ଯାଉଥିଲେ। ମାତ୍ର ମାତାଙ୍କ ଉପଦେଶରେ ସେ ଶ୍ରୀ ଜଗନ୍ନାଥଙ୍କ ଶରଣାର୍ଥୀ ହୋଇ ଶ୍ରୀ ଅଙ୍ଗର ଘର୍ଣ୍ଣ କରି ଯନ୍ତ୍ରଣା ମୁକ୍ତ ହେବାର କିମ୍ବଦନ୍ତୀ ଅଛି। ସେ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇଥିଲେ। ତାଙ୍କ ରଚିତ ସଙ୍ଗୀତ ଓ ଭଜନ ଆବେଗମୟ ଓ ପ୍ରାଣସ୍ପର୍ଶୀ, ତେଣୁ ଲୋକପ୍ରିୟ। 'ବଂଶୀଧ୍ୱନି' କବିତାଟିକୁ ସେକସପିଅରଙ୍କ 'When Orpheus sang' କବିତା ସହିତ ତୁଳନା କରାଯାଇପାରେ।

ଶିଶୁଶଙ୍କର ଦାସ :—(ଷୋଡ଼ଶ-ସପ୍ତଦଶ ଶତାବ୍ଦୀ) କବିଙ୍କ ଜୀବନ ଅନ୍ଧକାର ଗର୍ଭରେ। ଅର୍ଜୁନ ଦାସଙ୍କ 'ରାମବିଭା' ପରେ ଶିଶୁଶଙ୍କରଙ୍କ 'ଉଷାଭିଳାଷ' ଛାନ୍ଦୋବନ୍ଧ କାବ୍ୟରୂପେ ପ୍ରସିଦ୍ଧି ଲାଭ କରିଛି। ବାଣାସୁର କନ୍ୟା ଉଷା ସହିତ ଶ୍ରୀକୃଷ୍ଣଙ୍କ ପୌତ୍ର ଅନିରୁଦ୍ଧଙ୍କ ମିଳନ କାବ୍ୟରେ ବର୍ଣ୍ଣିତ। ଶ୍ରୀମଦ୍ ଭାଗବତ ଓ ଖିଲ ହରିବଂଶରୁ କଥାବସ୍ତୁ ନେଇ ଲିଖିତ ଏ କାବ୍ୟର ଭାଷା ପରିମାର୍ଜ୍ଜିତ। ପରବର୍ତ୍ତୀ କାବ୍ୟକାରଙ୍କ କୃତି ଉପରେ ଏ କାବ୍ୟରେ ପ୍ରଭାବ ସୁସ୍ପଷ୍ଟ। ଉପେନ୍ଦ୍ରଭଞ୍ଜଙ୍କ ପ୍ରଖ୍ୟାତ 'ବୈଦେହୀଶବିଳାସ' ଗ୍ରନ୍ଥ ଉଷାଭିଳାଷର ଏକ ଗ୍ରନ୍ଥର ଅନୁବର୍ତ୍ତୀ। ସ୍ଥଳବିଶେଷରେ ଜୟଦେବଙ୍କ ଭାବ ଓ ଶୈଳୀ ଏ କାବ୍ୟଟି ମନେ ପକାଇ ଦିଏ।

କାର୍ତ୍ତିକ ଦାସ :—(ଷୋଡ଼ଶ-ସପ୍ତଦଶ ଶତାବ୍ଦୀ) ରଚନା :—ନବାନୁରାଗ ଓ ରୁକ୍ମଣୀ ବିଭା। ପୁମଧୁର ପାଞ୍ଚୋଟି ଛାନ୍ଦରେ ପ୍ରଥମ କାବ୍ୟଟି ଓ ଦଶ ଛାନ୍ଦରେ ଦ୍ୱିତୀୟଟି ରଚିତ। ଶେଷୋକ୍ତ କାବ୍ୟର କଥାବସ୍ତୁ ( ରୁକ୍ମଣୀଙ୍କ ବିଭା ହେବାପାଇଁ ଆସିଥିବା ଶିଶୁପାଳର ପରାଭବ ଓ ଶ୍ରୀକୃଷ୍ଣଙ୍କ ରୁକ୍ମଣୀ ହରଣ) ଶ୍ରୀମଦ୍ ଭାଗବତ ଓ ପଦ୍ମପୁରାଣରୁ ଆନୀତ ହେଲେହେଁ କାବ୍ୟକଳାରେ ଉଲ୍ଲେଖନୀୟ ମୌଳିକତା ବିଦ୍ୟମାନ। ପରବର୍ତ୍ତୀ କାଳରେ ଭଞ୍ଜୀୟ ରୀତି-କାବ୍ୟରେ ଯେଉଁ ଅଳଙ୍କାରବହୁଳତା ପରିଲକ୍ଷିତ ହେବ ତାହାର ପ୍ରଥମସ୍ରଷ୍ଟା ହେଲେ ଶିଶୁଶଙ୍କର ଦାସ ଓ କାର୍ତ୍ତିକ ଦାସ।

ଶ୍ୟାମାଧୀବର :—(ଷୋଡ଼ଶ—ସପ୍ତଦଶ ଶତାବ୍ଦୀ) ଏହାଙ୍କ ବାସସ୍ଥାନ

ବେଢ଼ାଖୋଲ ବୋଲି ଅନୁମିତ ହୋଇଛି । ଯୁଧିଷ୍ଠିରଙ୍କ ପଶାଖେଳ ଓ ଦ୍ରୌପଦୀଙ୍କ ବସ୍ତ୍ରହରଣ ଘେନି ଯଥାକ୍ରମେ ସେ 'କପଟପାଶା' ଓ 'ଭାରତ ସାବିତ୍ରୀ' ରଚନା କରିଥିଲେ । ଶକ୍ତିଶାଳୀ ଭାଷା ଓ ବର୍ଣ୍ଣନାବୈଭବ ଯୋଗୁଁ କପଟପାଶା ଅତୀବ ଆଦୃତ ଲୋକପ୍ରିୟ ରଚନା କାବ୍ୟର ଅନେକ ସ୍ଥାନରେ ଓଡ଼ିଶାର ଜାତୀୟ ଚିତ୍ର ପ୍ରତିଫଳିତ ।

କୃଷ୍ଣ ଦାସ :—(ଷୋଡ଼ଶ-ସପ୍ତଦଶ ଶତାବ୍ଦୀ) ସୁପଣ୍ଡିତ ତଥା ସୁକବି । ରଘୁନାଥ ହରିଚନ୍ଦନଙ୍କ ଲୀଳାବତୀ କାବ୍ୟରୁ ଜଣାଯାଏ ଯେ କୃଷ୍ଣଦାସ ବହୁ କାବ୍ୟର ରଚୟିତା ଏବଂ ତତ୍କାଳୀନ ଏକ ସୁପ୍ରସିଦ୍ଧ କବି । ଅଧୁନା କବିଙ୍କର ପ୍ରେମଲୋଚନା ଓ କେତେକ ଚଉତିଶା ଓ ଗୀତ ମିଳିଛି । ଅପ୍ରାକୃତ ପ୍ରେମର ଘଷି ଘଷି କର୍ଣ୍ଣନା ଯେତେବେଳେ କାବ୍ୟାଦର୍ଶ ସେତେବେଳେ କୃଷ୍ଣ ଦାସଙ୍କ ମାନୁଷୀ ପ୍ରେମର ସଜୀବ ଓ ସ୍ୱତଃସ୍ଫୂର୍ତ୍ତି ପ୍ରକାଶ କବିଙ୍କ ମୌଳିକ ବାସ୍ତବ ରୁଚିର ପରିଚୟ ଦିଏ ।

ପୁରୁଷୋତ୍ତମ ଦାସ :—(ଷୋଡ଼ଶ-ସପ୍ତଦଶ ଶତାବ୍ଦୀ) ଗଜପତି ପୁରୁଷୋତ୍ତମ ଦେବଙ୍କ ସମସାମୟିକ ବୋଲି ଅନୁମାନ । ଏ ଜାତିରେ ଗଉଡ଼, ପିତା ରାମ ଦାସ । କାଞ୍ଚିକାବେରୀ କାବ୍ୟ ଏହାଙ୍କ ଶ୍ରେଷ୍ଠ ରଚନା । ମାଦଳା ପାଞ୍ଜିର କଥାବସ୍ତୁ ନେଇ କାବ୍ୟଟି ରଚିତ । ଏଥିରେ ରସଦଗ୍ଧ ଜଗନ୍ନାଥ ଓ ମାଣିକ ଗଉଡୁଣୀର ଯେଉଁ ଆଲେଖ୍ୟ ସେ ଦେଇଛନ୍ତି ତାହା ଅନବଦ୍ୟ । ରାଜକନ୍ୟାଙ୍କୁ ନାୟିକା ନ କରି ଏହି କାବ୍ୟରେ କୃଷି ବେହେରା ଝିଅ ଓ ଚନ୍ଦ୍ର ବେହେରାର ସ୍ତ୍ରୀ ମାଣିକକୁ ନାୟିକାରୂପେ ସେ ଯେପରି ଚିତ୍ରିତ କରିଛନ୍ତି ତାହାର ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ସାହିତ୍ୟରେ ବିରଳ । ବାସ୍ତବବାଦୀ ଦୃଷ୍ଟିଭଙ୍ଗୀରେ ଓ ଗ୍ରାମ୍ୟଚିତ୍ର ଅଙ୍କନରେ କବି ସ୍ୱୀୟ ପ୍ରତିଭାର ପରିଚୟ ଦେଇଛନ୍ତି । ଗଜପତିମାନଙ୍କର ବିଜୟ ଅଭିଯାନର ଚିତ୍ର କାବ୍ୟରେ ଜୀବନ୍ତ ହୋଇଛି । ଓଡ଼ିଆ ସାହିତ୍ୟର ଏହା ପ୍ରଥମ ଐତିହାସିକ କାବ୍ୟ । ଦୁତିଆ ଓଷା କଥା ପୁରାଣମାନଙ୍କରେ କୁତ୍ରାପି ବିଧାନ ନଥିଲେ ମଧ୍ୟ ତାଙ୍କର ସେଇ ନାମରେ ରଚନା ଯୋଗୁଁ ଓଡ଼ିଶାରେ ଦୁତିଆ ଓଷାର ପ୍ରଚଳନ ହୋଇଛି ।

ରଚନା :—କାଞ୍ଚିକାବେରୀ, ଗଙ୍ଗା ମାହାତ୍ମ୍ୟ, ଗୁଣ୍ଡିଚ୍ଛବିଜେ, ମୁରୁଳୀ ସ୍ତୁତି ଓ ଦୁତିଆ ଓଷା ।

ପ୍ରତାପ ରାୟ :—(ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀ) ଭଞ୍ଜୀୟ କାବ୍ୟଛଟାର ସୁସ୍ପଷ୍ଟ ପ୍ରଭାବ ଓ ପ୍ରାଗଲ୍ଭ୍ୟ ଏହାଙ୍କ କାବ୍ୟରୁ ମିଳେ । ଲୋକପ୍ରସିଦ୍ଧ ବା ପ୍ରଚଳିତ କାହାଣୀ ଅବଲମ୍ବନରେ କାବ୍ୟକଳା ପ୍ରଦର୍ଶନର ପ୍ରଥମ ସଫଳ ପ୍ରୟାସ ହେଉଛି ଏହାଙ୍କ ଶଶିସେଣା କାବ୍ୟ । ରାଜକୁମାର ଅହମାଣିକ୍ୟ ଓ ମନ୍ତ୍ରୀକନ୍ୟା ଶଶିସେଣାର ପ୍ରେମ କାବ୍ୟର ଉପଜୀବ୍ୟ ବସ୍ତୁ । ସରଳ ଭାଷା ଓ ଛନ୍ଦର ତରଳ ପ୍ରବାହ କାବ୍ୟଟିର ଲୋକପ୍ରିୟତାର କାରଣ ।

ରଘୁନାଥ ହରିଚନ୍ଦନ :—(ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀ) ବାଣପୁର ରାଜା । ଛଅ ରାଣୀଙ୍କ ମଧ୍ୟରେ ପାଟରାଣୀ ଶକୁନ୍ତଳା । ଶ୍ରେଷ୍ଠ କୃତି-ଲୀଳାବତୀ । ରଘୁନାଥ ସଙ୍ଗୀତଜ୍ଞ । ବିଷ୍ଣୁ ଦାସଙ୍କୁ ଗୁରୁ କରି କାବ୍ୟକଳା ଶିକ୍ଷା କରିଥିଲେ । ଲୀଳାବତୀ କାବ୍ୟରେ ତାଳ ଓ ଲୟ ସୁସ୍ପଷ୍ଟ ଭାବରେ ଗ୍ରନ୍ଥମାନଙ୍କରେ ଦିଆ ଯାଇଛି । ଲୀଳାବତୀ କାବ୍ୟକୁ ଧନଞ୍ଜୟ ଭଞ୍ଜ, ଲୋକନାଥ ବିଦ୍ୟାଧର ଓ ଉପେନ୍ଦ୍ରଭଞ୍ଜ ଆଦର୍ଶ ସ୍ଥାନୀୟ ବୋଲି ସ୍ୱୀକାର କରିଛନ୍ତି ।

ଧନଞ୍ଜୟ ଭଞ୍ଜ :—(୧୬୩୭ ?-୧୭୦୧) ଉପେନ୍ଦ୍ରଭଞ୍ଜଙ୍କ ପିତାମହ । ସୁଦୀର୍ଘ କାଳ ଘୁମୁସରର ରାଜ ସିଂହାସନ ଅଳଂକୃତ କରିଥିଲେ । ଏହାଙ୍କର ଅନେକ ରାଣୀ ଥିଲେ । ଧନଞ୍ଜୟଙ୍କ ବିଳାସପରାୟଣତା ଘୁମୁସରର ରାଜ ବଂଶାବଳୀରେ ବର୍ଣ୍ଣିତ । ଜନୈକ ରାଣୀଙ୍କ ବିଷପ୍ରୟୋଗରେ ତାଙ୍କର ମୃତ୍ୟୁ ଘଟିଥିଲା । ଧନଞ୍ଜୟ ନିଜେ ସଂସ୍କୃତ ପଣ୍ଡିତ ଥାଇ ଓଡ଼ିଆ ସାହିତ୍ୟକୁ ସଂସ୍କୃତ ସାହିତ୍ୟର ସମକକ୍ଷ କରିବାର ଯେଉଁ ପ୍ରୟାସ କଲେ ତହିଁର ଚରମ ପରିଣତି ଓ ଉତ୍କର୍ଷ ଦୀନକୃଷ୍ଣ ଦାସ ଓ ଉପେନ୍ଦ୍ର ଭଞ୍ଜଙ୍କ ସାହିତ୍ୟ କୃତିରେ ପ୍ରକଟିତ ।

ରଚନା :—ରଘୁନାଥବିଳାସ, ତ୍ରିପୁରସୁନ୍ଦରୀ, ରତ୍ନମଞ୍ଜରୀ, ମଦନମଞ୍ଜରୀ, ଅନଙ୍ଗରେଖା, ଇଚ୍ଛାବତୀ, ଚୌପଦୀଭୂଷଣ ( ସଙ୍ଗୀତ ସମୁଚ୍ଚୟ ) ଓ ଅନେକ ଚୌପଦୀ ।

ତ୍ରିବିକ୍ରମ ଭଞ୍ଜ :—(ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀ) ମୟୂରଭଞ୍ଜର ହରିପୁର ଗଡ଼ର

ସୂର୍ଯ୍ୟ ବଂଶୀୟ କବି । ( ବିନାୟକ ମିଶ୍ରଙ୍କ ମତରେ ଘୁମୁସର ଭଞ୍ଜବଂଶର ) ରସଲହରୀ ଲେଖକ ରଘୁନାଥ ଭଞ୍ଜଙ୍କର ପ୍ରପିତାମହ ବୋଲି ଅନୁମାନ ।

ରଚନା : କନକଲତା ।

ଦୀନକୃଷ୍ଣ ଦାସ : ( ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀ ) ଦିବ୍ୟସିଂହ ଦେବ (୧୬୯୬—୧୭୧୩)ଙ୍କ ସମକାଳୀନ କବି । ନିବାସ ବାଲେଶ୍ୱର ଜିଲ୍ଲାର ଜଳେଶ୍ୱର; ସୁବର୍ଣ୍ଣରେଖା ନଦୀ କୂଳରେ । ପିତାଙ୍କ ନାମ ମଧୁସୂଦନ । ଘଟଣାଚକ୍ରରେ କିଛି ଦିନ ଢେଙ୍କାନାଳରେ କଟାଇ ଅବଶେଷରେ ସେ ପୁରୀ ଧାମରେ ପହଞ୍ଚିଲେ । ଦିବ୍ୟସିଂହ ଦେବଙ୍କ ପ୍ରଶସ୍ତି ଗାନ କରିବାକୁ ଅନିଚ୍ଛା ପ୍ରକାଶ କରନ୍ତେ ତାଙ୍କୁ ପୁରୀରୁ ବହିଷ୍କାର ଆଦେଶ ଦିଆଯାଇଥିଲା । ଦୀନକୃଷ୍ଣ ଜଗନ୍ନାଥଙ୍କ ପରମଭକ୍ତ ଓ ପଞ୍ଚସଖାପନ୍ଥୀ ଥିଲେ । କୁଷ୍ଠ ରୋଗାକ୍ରାନ୍ତ ହୋଇ ରୋଗମୁକ୍ତି ନିମିତ୍ତ ପ୍ରତ୍ୟହ ଗରୁଡ଼ ସ୍ତମ୍ଭ ନିକଟରେ ଛିଡ଼ା ହୋଇ ସ୍ୱରଚିତ 'ଆର୍ତ୍ତତ୍ରାଣ ଚଉତିଶା' ଆବୃତ୍ତି କରୁଥିଲେ । ନିର୍ଭୀକତା, ଗଭୀର ଆତ୍ମବିଶ୍ୱାସ, ନୈତିକତା ଓ ଜଗନ୍ନାଥପ୍ରାଣତା ତାଙ୍କ ଚରିତ୍ରର ବୈଶିଷ୍ଟ୍ୟ । ଦୁଃଖକଷ୍ଟ, ଅଭାବ, ନାନାବିଧ ଦୁର୍ଦ୍ଦଶାର ବ୍ୟଞ୍ଜନାରେ ତାଙ୍କ କବିତା କରୁଣରସାପ୍ଲୁତ । ସଂସ୍କୃତ ପଣ୍ଡିତ ଥାଇ ମଧ୍ୟ ସେ କାବ୍ୟ କବିତାକୁ ଅଯଥା ଅଳଙ୍କାର ଭାରାକ୍ରାନ୍ତ ନ କରି ଲଳିତ ଓ ରସାଳ କରିଥିଲେ । ଉପେନ୍ଦ୍ର ଭଞ୍ଜ ତାଙ୍କ କାବ୍ୟକଳାକୁ ଯଥେଷ୍ଟ ସମ୍ମାନ ଦେଖାଉଥିଲେ ।

ରସ ବିନୋଦକାର ଦୀନକୃଷ୍ଣ ଓ ରସକଲ୍ଲୋଳକାର ଦୀନକୃଷ୍ଣ ଶୈଳୀ ଦୃଷ୍ଟିରୁ ଦୁଇ ବ୍ୟକ୍ତି ବୋଲି ସମାଲୋଚକମାନେ କହନ୍ତି ।

ରଚନା :—ରସକଲ୍ଲୋଳ, ନାବକେଳି, ଭୂତକେଳି, ଅଳଙ୍କାରବୋଲି, ରସବିନୋଦ, ନାମରତ୍ନ ଗୀତା, ପ୍ରସ୍ତାବସିନ୍ଧୁ, ଗୁଣସାଗର, ଜ୍ଞାନସାଗର, ଅମୃତ-ସାଗର, ମୁକ୍ତିସାଗର ଓ ଅନେକ ଚଉତିଶା ।

ବୃନ୍ଦାବତୀ ଦାସୀ :—(ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀ) ଏକ ପ୍ରସିଦ୍ଧ ବୈଷ୍ଣବ କବି ପରିବାରରେ ଜନ୍ମ । ପୁରୀ ଜିଲ୍ଲାର ମାଳପଡ଼ା ଗ୍ରାମର କୃଷ୍ଣଚନ୍ଦ୍ରୋଦୟ ରଚୟିତା ଚନ୍ଦ୍ରଶେଖର ଦାସଙ୍କ ପତ୍ନୀ । ପିତା ଜଗନ୍ନାଥ ଦାସ । ପୁତ୍ର ଶ୍ୟାମ ଦାସ ଭକ୍ତରତ୍ନାବଳୀ

ନାମକ ଗ୍ରନ୍ଥର ରଚୟିତା ନାଥ କୃପାସିନ୍ଧୁ ଦାସ 'ଉପାସନା ଚନ୍ଦ୍ରୋଦୟ'ର ଲେଖକ । ବୃନ୍ଦାବତୀଙ୍କ ପୂର୍ଣ୍ଣତମଚନ୍ଦ୍ରୋଦୟ ଶୁଦ୍ଧ ଭକ୍ତି ମାର୍ଗର ଏକ ଅପୂର୍ବ ଗ୍ରନ୍ଥ । ବୃନ୍ଦାବତୀଙ୍କୁ ଉତ୍କଳର ମୀରା ବାଈ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଭୂପତି ପଣ୍ଡିତ :—(ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀ) କାନ୍ୟକୁବ୍ଜାଗତ ସାରସ୍ୱତ ବ୍ରାହ୍ମଣ ପଣ୍ଡିତ । ସେ ପୁରୀକୁ ଆସି ତଦାନୀନ୍ତନ ରାଜା ଦିବ୍ୟସିଂହ ଦେବଙ୍କ ସଙ୍ଗେ ସାକ୍ଷାତ କରି ଭୂସମ୍ପତ୍ତି ପାଇ କଟକ ଜିଲ୍ଲାର ରଥୀପୁରରେ ବାସ କରିଥିଲେ । ଭୂପତି ବଙ୍ଗଳା ଓ ହିନ୍ଦୋସ୍ତାନୀ ଭାଷା ଜାଣିଥିଲେ ଏବଂ ଓଡ଼ିଶାକୁ ଆସି ଓଡ଼ିଆ ଭାଷାରେ ପାରଙ୍ଗମ ହୋଇ ଓଡ଼ିଆ କବିତା ଲେଖିଥିଲେ । ପୁରୀର ଚୈତନ୍ୟ ଦାସ ତାଙ୍କର ଗୁରୁଥିଲେ । ତାଙ୍କର ସୁପ୍ରସିଦ୍ଧ ରଚନା ପ୍ରେମପଞ୍ଚାମୃତ ( ୧୭୦୩ ? ୧୭୦୭ ? )ରୁ କବିଙ୍କ ପ୍ରତିଭା, ବହୁଶାସ୍ତ୍ରଦର୍ଶିତା ଓ ଭକ୍ତିର ପରିଚୟ ମିଳେ । ଜଗନ୍ନାଥ ଦାସଙ୍କ ଭାଗବତର ଭାଷାପରି ତାଙ୍କ ଭାଷା ସରଳ, ମାର୍ଜିତ ଓ ଶକ୍ତିଶାଳୀ । ଅଳଙ୍କାର ଯୁଗରେ ସେ ପ୍ରାକୃତର ଉତ୍କର୍ଷ ଓ ଉପଯୋଗିତା ପ୍ରତିପାଦନ କରିଥିଲେ ।

ରଚନା :—ପ୍ରେମପଞ୍ଚାମୃତ, କେତେଗୁଡ଼ିଏ ଚଉତିଶା ଓ ଚଉପଦୀ ।

ଲୋକନାଥ ଦାସ ( ବିଦ୍ୟାଧର ) :—(ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀ) ପୁରୀଜିଲ୍ଲା ଅନ୍ତର୍ଗତ ବାଣପୁର ଅଧିବାସୀ । ବାଣପୁରର ସମକାଳୀନ ରାଜା ଜଗନ୍ନାଥ ହରିଚନ୍ଦନଙ୍କ । ପିତାଙ୍କ ନାମ ଜଗନ୍ନାଥ ଦାସ । ଶ୍ରେଷ୍ଠ କୃତି ପଦ୍ମାବତୀ ପରିଣୟର ରଚନାକାଳ ୧୬୯୯ ବା ୧୭୦୧ । ଲୋକନାଥଙ୍କ ରଚନାରେ ଶ୍ଳେଷ, ଯମକ, ଅନୁପ୍ରାସ, ଅନ୍ତଲିପି, ବହିଲପି ଓ ଗୋମୂତ୍ର ଆଦି ବିବିଧ ଅଳଙ୍କାର ସହିତ ଅଶ୍ଳୀଳତା ମଧ୍ୟ ଦେଖାଯାଏ । ପାଞ୍ଚାଳୀ ରୀତି ଅଥବା ଜୟଦେବ ରୀତି ସହିତ ତାଙ୍କ କାବ୍ୟଶୈଳୀର ସମତା ଅଛି । ବୃନ୍ଦାବତୀ ଦାସୀ, ବିକ୍ରମ ଭଞ୍ଜ ଓ ଲୋକନାଥ ଦାସଙ୍କ କାବ୍ୟକୃତିମାନ ଉପେନ୍ଦ୍ରଭଞ୍ଜଙ୍କ ରଚନା ପ୍ରଣାଳୀର ଇତିହାସ ଗଢ଼ିବା ନିମନ୍ତେ ପ୍ରୟୋଜନ । କବିଙ୍କର ଅସାଧାରଣ ଜ୍ୟୋତିଷ ଜ୍ଞାନ ମଧ୍ୟ ଥିଲା ।

ରଚନା :—ସର୍ବାଙ୍ଗସୁନ୍ଦରୀ, ଚିତ୍ରକଳା, ରସକଳା, ପଦ୍ମାବତୀପରିଣୟ, ବୃନ୍ଦାବନ ବିହାର, ମାଳାଦି, ମହୋତ୍ସବ ଇତ୍ୟାଦି ।

ଉପେନ୍ଦ୍ର ଭଞ୍ଜ :—(ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀ-୧୬୮୮-୧୭୪୧ ?) ଗଞ୍ଜାମ ଜିଲ୍ଲା ଘୁମୁସର ରାଜବଂଶରେ ଜନ୍ମ । ଧନଞ୍ଜୟ ଭଞ୍ଜଙ୍କ ପୌତ୍ର ଓ ନୀଳକଣ୍ଠ ଭଞ୍ଜଙ୍କ ଜ୍ୟେଷ୍ଠପୁତ୍ର । ପ୍ରଥମ ପତ୍ନୀ ନୂଆଗଡର ରାଜା ବିନାୟକ ସିଂହଙ୍କ କନ୍ୟା ; ଦ୍ୱିତୀୟା ବାଣପୁର ରାଜା ଅଚ୍ୟୁତ ହରିଚନ୍ଦନଙ୍କ କନ୍ୟା, ଉଭୟ ସ୍ତ୍ରୀ ଗୁଣବତୀ ମାତ୍ର ଦୁହିଁଙ୍କ ଅକାଳରେ ମୃତ୍ୟୁ । ସିଂହାସନ ପାଇଁ ପାରିବାରିକ କଳହ ଓ ପତ୍ନୀ ବିରହ ଶୋକରେ ଅଧୀର ହୋଇ ଉପେନ୍ଦ୍ର ଭଞ୍ଜ ଘୁମୁସର ଛାଡ଼ି ନୂଆଗଡରେ ଅବସ୍ଥାନ କଲେ ଏବଂ କାବ୍ୟରଚନାରେ ମଗ୍ନ କାଳାତିପାତ କଲେ ।

ଉପେନ୍ଦ୍ର ଭଞ୍ଜ କବିସମ୍ରାଟ ନାମରେ ଅଭିହିତ । ସେ ଥିଲେ ଏକାଧାରରେ ରସିକ, ଛନ୍ଦପ୍ରଜ୍ଞ, କୋଷକାର, କବି ଓ ସଙ୍ଗୀତଜ୍ଞ । ସେ ଯୁଗଦ୍ରଷ୍ଟା ତଥା ଯୁଗସ୍ରଷ୍ଟା ଲୋକୋତ୍ତର ପ୍ରତିଭାସମ୍ପନ୍ନ, ଶାସ୍ତ୍ରଜ୍ଞ, ଅଦ୍ଭୁତ ଶାବ୍ଦିକ ଓ ଆଲଂକାରିକ । ତାଙ୍କ କାବ୍ୟ ମୂଲ୍ୟାୟନରେ ଦ୍ୱିବିଧ ମତ ଅର୍ଦ୍ଧ ଶତାବ୍ଦୀ ଧରି ସମାଲୋଚକ ମାନେ ପୋଷଣ କରନ୍ତି । ଦଳେ ତାଙ୍କୁ କବିସାର୍ବଭୌମ କହିଲା ବେଳକୁ ଅନ୍ୟ ଦଳେ ତାଙ୍କୁ କେବଳ ଆଲଂକାରିକର ସ୍ଥାନ ଦିଅନ୍ତି । ତାଙ୍କର ଅନେକ କବିତାରେ କାବ୍ୟକଳା ଅପେକ୍ଷା କାବ୍ୟକସରତ ବେଶୀ, ଏହା ସ୍ୱୀକାର୍ଯ୍ୟ । ତାଙ୍କ ସଙ୍ଗୀତ ଗୁଡ଼ିକ ଅନନ୍ୟ, ଅନବଦ୍ୟ ।

ରଚନା :—ବୈଦେହୀଶ ବିଳାସ, ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ପ୍ରେମସୁଧାନିଧି, ସୁଭଦ୍ରାପରିଣୟ, କଳାକଉତୁକ, ରସଲେଖା, ଅବନାରସତରଙ୍ଗ, ରସପଞ୍ଚକ, ସୁବର୍ଣ୍ଣରେଖା, ଚିତ୍ରକାବ୍ୟ ବନ୍ଧୋଦୟ ଆଦି ପ୍ରାୟ ପଚାଶଟି କାବ୍ୟ ଓ ରଚନାବଳି ଏବଂ ଅଗଣିତ ସଙ୍ଗୀତ ।

ବିଶ୍ୱନାଥ ଖୁଣ୍ଟିଆ :—(ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀ) କାହା କାହା ମତରେ କବି ଉପେନ୍ଦ୍ର ଭଞ୍ଜଙ୍କ ସମକାଳୀନ । ଆଉ କାହା ମତରେ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର କବି । ଦିବ୍ୟସିଂହ (୧୬୭୯-୧୭୯୫)ଙ୍କ ସମସାମୟିକ । ସେ ପୁରୀବାସୀ ବୋଲି ଅନୁମିତ ହୁଏ । ବିଭିନ୍ନ ମନୋହାରିଣୀ ରାଗରାଗିଣୀରେ ରଚିତ ବୋଲି ସେ ତାଙ୍କ କାବ୍ୟର ନାମ ବିଚିତ୍ର ରାମାୟଣ ରଖିଛନ୍ତି । ଭାଷା ଅତି ସରଳ,

କାବ୍ୟଟି ଲୋକପ୍ରିୟ । କେଉଟମାନେ ବାଉଁଶରେ ବନ୍ଧ ଭାଙ୍ଗିବା ବେଳେ ଭଜନାଟ, ନଅରତ ଓ ଯୋଗୀଗୀତରେ ଏହି ରାମାୟଣର ଛାନ୍ଦମାନ ଗୀତ ହୁଏ ।

ଦାଶରଥି ଦାସ :—(ଅଷ୍ଟାଦଶ ଶତାବ୍ଦୀ) ଜନ୍ମ ରଣପୁରର ଏକ କାୟସ୍ଥ ପରିବାରରେ । ଦାଶରଥି ଦାସ ଦଶୋଟି ସର୍ଗରେ ବ୍ରଜବିହାର ନାମକ ଏକ କାବ୍ୟ ଲେଖିଛନ୍ତି । କାବ୍ୟର ରଚନାକାଳ ୧୭୩୧, ଏଥିରେ କମନୀୟ ଭାଷାରେ କୃଷ୍ଣଲୀଳା ବର୍ଣ୍ଣିତ ।

କୃପାସିନ୍ଧୁ ଦାସ :—(ଅଷ୍ଟାଦଶ ଶତାବ୍ଦୀ) ନାୟକର ବୃନ୍ଦାବତୀ ଦାସୀଙ୍କ ନାତି । ତାଙ୍କ ରଚନା ମଧ୍ୟ ବୈଷ୍ଣବଧର୍ମ ଅନୁପ୍ରାଣିତ । ୧୭୪୮ରେ ୨୧ଟି ଛାନ୍ଦ ବିଶିଷ୍ଟ ବ୍ରଜବିହାର କାବ୍ୟ ସେ ସମାପ୍ତ କରିଥିଲେ ।

ରଚନା :—ବ୍ରଜବିହାର, ସଖୀଶ୍ୱରୀଷା, ଚତୁର୍ବିଂଶମୂର୍ତ୍ତି ଓ କେତେଗୁଡ଼ିଏ ଚଉତିଶା ।

ରଘୁନାଥ ଭଞ୍ଜ :—(ଅଷ୍ଟାଦଶ ଶତାବ୍ଦୀ) ମୟୂରଭଞ୍ଜର ପ୍ରସିଦ୍ଧ ନରପତି । ପିତା ବୀର ବିକ୍ରମ ଭଞ୍ଜ, ରାଜତ୍ୱକାଳ ୧୭୨୮ରୁ ୧୭୫୦ । ଏହାଙ୍କ ସମୟରେ ଆଲିବର୍ଦ୍ଦିଖାଁଙ୍କ ସହିତ ମୟୂରଭଞ୍ଜର ଯୁଦ୍ଧ ହୋଇଥିଲା । ଉପେନ୍ଦ୍ର ଭଞ୍ଜଙ୍କ ଶୈଳୀରେ ରଘୁନାଥଙ୍କ 'ରସଲହରୀ' ରଚିତ । ପଦବିନ୍ୟାସ ଓ ଅଲଙ୍କାରିକତା ପାଇଁ କାବ୍ୟଟି ପ୍ରସିଦ୍ଧି ଲାଭ କରିଛି ।

ପୀତାମ୍ବର ଦାସ :—(ଅଷ୍ଟାଦଶ ଶତାବ୍ଦୀ) ଅନୁମାନ ଯେ ପିତାମ୍ବର ଦାସ ରାଜା ବୀର କିଶୋର ଦେବ (୧୭୩୬-୧୭୭୯)ଙ୍କ ସମୟର । ଗଞ୍ଜାମ ଜିଲ୍ଲାର ଜଣେ ଭୂଷାଣୀ ବ୍ରାହ୍ମଣ । ନୃସିଂହପୁରାଣର ରଚୟିତା । ଭାଗବତ ପରି ନୃସିଂହପୁରାଣ ପୁରପଲ୍ଲୀରେ ପଠିତ, ଆଦୃତ ଓ ପୂଜିତ । ପୁରାଣଟି ସାତୋଟି ରତ୍ନାକରରେ ବିଭକ୍ତ । ଗ୍ରନ୍ଥଟି ପୀତାମ୍ବର ଦାସଙ୍କ ମୌଳିକ ସୃଷ୍ଟି । ସଂସ୍କୃତ ପୁରାଣ, ସାରଳା ମହାଭାରତ, ଜଗମୋହନ ରାମାୟଣ ଓ ଓଡ଼ିଆ ହରିବଂଶର ଉପାଖ୍ୟାନ ସହିତ ସ୍ୱକଳ୍ପିତ ଉପାଖ୍ୟାନ ମିଶାଇ

କବି ଏହି ଅଭିନବ ଗ୍ରନ୍ଥଟି ସୃଷ୍ଟି କରିଛନ୍ତି । ଭାଷା ଓ ଭକ୍ତିଭାବପ୍ରବଣତା ଏ ଗ୍ରନ୍ଥଟିକୁ ଲୋକପ୍ରିୟ କରିଛି ।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା :—(ଅଷ୍ଟାଦଶ ଶତାବ୍ଦୀ) ଜନ୍ମସ୍ଥାନ ନୟାଗଡ଼ର ଭିଟାରିପଡ଼ା ଗ୍ରାମ । ହୋତା ଉପାଧିଧାରୀ ବ୍ରାହ୍ମଣ ଥାଇ ବୈଷ୍ଣବ ଧର୍ମ ଗ୍ରହଣ ପରେ ସେ ନିଜକୁ ସାଧୁଚରଣ ଦାସ ନାମରେ ବିଦିତ କରାଇଥିଲେ । ତହିଁ ଉତ୍ତାରୁ ସଦାନନ୍ଦ ନାମ ଗ୍ରହଣ କରି ପୁରୀ ରାଜାଙ୍କଠାରୁ କବିସୂର୍ଯ୍ୟ ବ୍ରହ୍ମା ଉପାଧି ପାଇଥିଲେ । କବି ଉଗ୍ର ଓ କୋପନ ସ୍ୱଭାବ ଥିଲେ ବୋଲି ଅନୁମାନ । ସେ ଅଭିମନ୍ୟୁଙ୍କ ଦୀକ୍ଷାଗୁରୁ ଓ କାବ୍ୟଗୁରୁ । ତାଙ୍କ ରଚନା ଭକ୍ତଙ୍କ ପରି ସ୍ଥାନେ ସ୍ଥାନେ କ୍ଲିଷ୍ଟ ହେଲେ ମଧ୍ୟ ପ୍ରଧାନତଃ ଅତି ସରଳ ଓ ଲଳିତ ।

ରଚନା :—ଯୁଗଳ ରସାମୃତ ଲହରୀ, ନିସ୍ତାର ନୀଳମଣି, ବିଶ୍ୱମ୍ଭର ବିହାର, ଚୈତନ୍ୟ ଭାଗବତ, ଲଳିତ ଲୋଚନା, ପ୍ରେମ ଲହରୀ, ନାମ ଚିନ୍ତାମଣି, ସ୍ୱେଚ୍ଛ-ଚିନ୍ତାମଣି ଓ ପ୍ରେମପଞ୍ଚାମୃତ ବ୍ୟତୀତ ଅନେକ ଜଣାଣ, ସଙ୍ଗୀତ ଓ ଚଉତିଶା ।

ଦନେଇ ଦାସ :—(ଅଷ୍ଟାଦଶ ଶତାବ୍ଦୀ ?) ଜନାର୍ଦ୍ଦନ ଦାସ ବା ଦନେଇ ଦାସ ଜଣେ ନୈସର୍ଗିକ କବି । ତାଙ୍କ ଗୋପୀଭାଷା ମାର୍କଣ୍ଡ ଦାସଙ୍କ କେଶବ କୋଇଲି ସହିତ ଚାଟଶାଳୀ ମାନଙ୍କରେ ପଢ଼ା ଯାଉଥିଲା । ସାଧାରଣତଃ ଦେଶପ୍ରଚଳିତ ଦୃଷ୍ଟାନ୍ତର ସମାବେଶ ଯୋଗୁଁ ରଚନାଟି ଅତୀବ ହୃଦୟସ୍ପର୍ଶୀ । ଓଡ଼ିଆ ଭାଷାର ମାଧୁରୀ ତାଙ୍କ ରଚନାର ପ୍ରତିଟି ପଂକ୍ତିରେ ଅନୁଭବ କରିହୁଏ । କୃଷ୍ଣ ମଥୁରା ଚାଲିଗଲାରୁ କୃଷ୍ଣଙ୍କ ଗୁଣ ମନେ ପକାଇ ଗୋପୀମାନଙ୍କର ଯେଉଁ ବିଳାପ ତାହାକୁ ଉପଜୀବ୍ୟ କରି ଗୋପୀଭାଷା ରଚିତ । ତାଙ୍କର ସାନ ଦକଡ଼ା ଓ ବଡ଼ ଦକଡ଼ା ନାମକ ଦୁଇଟି ଚଉତିଶା ବୈରାଗ୍ୟ ଓ ନୀତିମୂଳକ ରଚନା ।

ଜିତ୍ତାମିତ୍ର ଦାସ :—(ଅଷ୍ଟାଦଶ ଶତାବ୍ଦୀ) ରାମକୃଷ୍ଣକେଳିକଲ୍ଲୋଳ ଏହାଙ୍କ ବିରଚିତ । ଏଥିରେ ରାମ ଓ କୃଷ୍ଣ ଉଭୟଙ୍କ ଚରିତ ବର୍ଣ୍ଣିତ । କାବ୍ୟଟି ୬୮ଟି ଛାନ୍ଦରେ ସମ୍ପୂର୍ଣ୍ଣ । ସମଗ୍ର କାବ୍ୟର ପ୍ରତ୍ୟେକ ଛାନ୍ଦର ପ୍ରତ୍ୟେକ ଚରଣରେ ଉପଧା

ମିଳନ ଏ କାବ୍ୟର ବିଶେଷତ୍ୱ । ପ୍ରାଚୀନ ବା ମଧ୍ୟ ଯୁଗରେ ଆଉ କୌଣସି କବି ତ୍ରିପୁରାରୀଙ୍କ ପରି ଉପଧା ମିଳନ କରି କାବ୍ୟ ରଚନା କରି ନାହାନ୍ତି ।

ବ୍ରଜନାଥ ବଡ଼ଜେନା :—(ଅଷ୍ଟାଦଶ ଶତାବ୍ଦୀ) ଢେଙ୍କାନାଳର ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂର (୧୭୬୪—୧୭୯୮)ଙ୍କ ସମକାଳୀନ । ବ୍ରଜନାଥ ଛଅଟି ଭାଷାରେ ପଣ୍ଡିତ ଥିଲେ । ଶ୍ୟାମରାସୋତ୍ସବ, ଅମ୍ବିକା ବିଳାସ, ସମର ତରଙ୍ଗ, ରାଜାଙ୍କ ଛନ୍ଦୋକ୍ତ ଓଡ଼ିଆ ଭାଷାରେ ଓ ଗୁଣ୍ଡିଚା ବିଜୟ ହିନ୍ଦୀ ଭାଷାରେ ଲିଖିତ । ଅମ୍ବିକା ବିଳାସ 'ଅ' ଆଦ୍ୟ ନିୟମରେ ଏବଂ ଶ୍ୟାମରାସୋତ୍ସବ 'ଶ' ଆଦ୍ୟ ନିୟମରେ ରଚିତ । ଚତୁର ବିନୋଦ ନାମକ ଗଦ୍ୟ ପୁସ୍ତକରେ ସେ ମନୁଷ୍ୟର ଦୁର୍ଗୁଣ ଦୁର୍ବଳତାକୁ ବ୍ୟଙ୍ଗ କରିଛନ୍ତି । ଅମ୍ବିକା ବିଳାସ (ବଳଭଦ୍ରଭଞ୍ଜ) କାବ୍ୟଟି କେନ୍ଦୁଝର ରାଜାଙ୍କ ନାମରେ ଉତ୍ସର୍ଗ କରିବାର ଥିଲା । କିନ୍ତୁ ରାଜା ତାଙ୍କ ଅଭିଳାଷ ପୂରଣ ନ କରନ୍ତେ ସେ ଅସମ୍ପୂର୍ଣ୍ଣ କାବ୍ୟଟି ଧରି ଢେଙ୍କାନାଳ ଚାଲି ଆସିଲେ । ସେତେବେଳେ ମରହଟ୍ଟାମାନେ ରାଜାରାମ ପଣ୍ଡିତଙ୍କ ସେନାପତିତ୍ୱରେ ଢେଙ୍କାନାଳ ଆକ୍ରମଣ କରି ପରାସ୍ତ ହୋଇଥିଲେ । ଏହି ଘଟଣା ଅବଲମ୍ବନରେ ବ୍ରଜନାଥ ସେଉଁ ସମର ତରଙ୍ଗ କାବ୍ୟ ଲେଖିଛନ୍ତି ତାହା ଓଡ଼ିଆ କାବ୍ୟସୃଷ୍ଟିରେ ଏକ ସ୍ୱତନ୍ତ୍ର ଗ୍ରନ୍ଥ । 'ପୁରୁଷୋତ୍ତମଙ୍କ କାଞ୍ଚିକାବେରୀ ପରେ ଏହା ଦ୍ୱିତୀୟ ଐତିହାସିକ, ବୀରତ୍ୱବ୍ୟଞ୍ଜକ ଓ ଦେଶାତ୍ମବୋଧୀ କାବ୍ୟ । ଏଥିରେ ତତ୍କାଳୀନ ସମର ପ୍ରଣାଳୀ ଓଜସ୍ୱିନୀ ଭାଷାରେ ବର୍ଣ୍ଣିତ ହୋଇଛି । ବାସ୍ତବ ରୂପ ଦେବା ଉଦ୍ଦେଶ୍ୟରେ କବି ଓଡ଼ିଆ ଓ ମରହଟ୍ଟୀ ଉଭୟ ଭାଷା କାବ୍ୟରେ ଯଥାସ୍ଥାନରେ ବ୍ୟବହାର କରିଛନ୍ତି । 'ଚତୁର ବିନୋଦ' ଚୁଟୁକା ସୁଧାନିଧି ପରି ଗଦ୍ୟପଦ୍ୟ ମିଶ୍ରିତ ରଚନା । ବ୍ରଜନାଥ କୌତୁକ ପ୍ରିୟ ଥିଲେ ଓ ତାଙ୍କର ଅସୀମ ନୈତିକ ବଳ ଓ ସାହସ ଥିଲା ।

ଅଭିମନ୍ୟୁ ସାମନ୍ତସିଂହାର :—( ୧୭୫୭-୧୮୦୬ ) ଜନ୍ମସ୍ଥାନ କଟକ ଜିଲ୍ଲାର ବାଲିଆ ଗ୍ରାମ । ପିତା ଜଗନ୍ନାଥ ମାତା ତୁଳସୀ ଦେବୀ । ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଏହାଙ୍କ ଦୀକ୍ଷାଗୁରୁ ଓ ଶିକ୍ଷାଗୁରୁ । ବାଲ୍ୟକାଳରେ ଅଭିମନ୍ୟୁ ବେଦ, ଦର୍ଶନ, ପୁରାଣ, ଇତିହାସ ଆଦି ପାଠ କରିଥିଲେ ଏବଂ କବିତା ଲେଖିବା ପୂର୍ବରୁ ରୂପ ଗୋସ୍ୱାମୀ ଓ ରୂପ ସନାତନ ଗୋସ୍ୱାମୀଙ୍କ ଶାସ୍ତ୍ରମାନ ଅଧ୍ୟୟନ

କରିଥିଲେ । ପ୍ରଥମ କବି ଜୀବନରେ ସେ ଭାଗ୍ୟଜନକ ଘଟଣା ଅବଲମ୍ବନରେ ପ୍ରୀତିଚନ୍ଦ୍ରା-ମଣି, ସୁଲକ୍ଷଣା, ରସବତୀ ଓ ପ୍ରେମକଳା ଲେଖିଥିଲେ । କବି ଜୀବନର ଚରମ ପରିଣତି ହେଲା ବିଦଗ୍ଧଚନ୍ଦ୍ରାମଣିର । ଏହା ତାଙ୍କର ପରିପକ୍ୱ ଶାସ୍ତ୍ରଜ୍ଞାନ ଓ ଅଟଳ ଭକ୍ତିର ସର୍ବଶ୍ରେଷ୍ଠ ନିଦର୍ଶନ । ସଂସ୍କୃତର ବିଦଗ୍ଧମାଧବ ଓ ଲଳିତମାଧବ ତୁଲ୍ୟ ଏ କାବ୍ୟ । ଦିବ୍ୟ ଓଡ଼ିଆ ଛନ୍ଦର ମୂର୍ଚ୍ଛନା, ବୈଷ୍ଣବ ଝଙ୍କାରରେ ଅମୂଲ୍ୟ ଭଣ୍ଡାର ଓ ସଙ୍ଗୀତର ଅମୃତ ଝଙ୍କାର ଏ କାବ୍ୟରେ ଚରମ ସମନ୍ୱୟ ଓ ଉତ୍କର୍ଷ ଲଭିଛି ।

ରଚନା :—ପ୍ରୀତିଚନ୍ଦ୍ରାମଣି, ବିଦଗ୍ଧଚନ୍ଦ୍ରାମଣି, ସୁଲକ୍ଷଣା, ରସବତୀ, ପ୍ରେମକଳା ଓ ପ୍ରେମତରଙ୍ଗିଣୀ ।

ରାଣୀ ନୀଳମଣି ରାୟ :—(ଅଷ୍ଟାଦଶ-ଊନବିଂଶ ଶତାବ୍ଦୀ) କରଡ଼ାର ରାଜା ବାସୁଦେବଙ୍କ କନ୍ୟା । ପ୍ରାୟ ୧୭୮୮ ସାଲରେ ବୃନ୍ଦାବନସିଂହ ବା ବୋଡ଼ାସମ୍ବର ରାଜା ନୀଳଙ୍କ ରାୟ ସହିତ ଏହାଙ୍କର ବିବାହ ହୋଇଥିଲା । ରାଣୀଙ୍କ ସହିତ ରାଜାଙ୍କର ମନୋମାଳିନ୍ୟ ଘଟିବାରୁ ରାଣୀ ଶ୍ୱଶୁରାଳୟ ଛାଡ଼ି ପିତୃଗୃହକୁ ପ୍ରତ୍ୟାବର୍ତ୍ତନ କଲେ ଏବଂ ଜୀବନର ଅବଶିଷ୍ଟ କାଳ କରଡ଼ାରେ ରହି କାବ୍ୟ-ରଚନାରେ ଅତିବାହିତ କରିଥିଲେ । ଭଞ୍ଜୀୟ ରୀତିରେ ଏହାଙ୍କ 'ପଦ୍ମାବତୀ ଅଭିଳାଷ' କାବ୍ୟ ରଚିତ ହେଲେହେଁ ରଚନାରେ ମୌଳିକ କବିତ୍ୱ ଫୁଟି ଉଠିଛି । ବସନ୍ତ କାଳର ବନ ଦୃଶ୍ୟର ଯେଉଁ ବର୍ଣ୍ଣନା ଏହି ସପ୍ତସ୍ୱନ ଅନ୍ତର୍ଗତ କବିତାଟିରେ ଫୁଟିଛି ତାହା ମଧ୍ୟଯୁଗୀୟ ସାହିତ୍ୟରେ ବିରଳ ।

ପଦ୍ମନାଭ ଶ୍ରୀଚନ୍ଦନ :—( ଅଷ୍ଟାଦଶ ଶତାବ୍ଦୀ ) ବାଙ୍କିର ରାଜା । ରାଜାକବିଙ୍କର 'ଶଶିରେଖା' ଉପେନ୍ଦ୍ର ଭଞ୍ଜଙ୍କର ଲାବଣ୍ୟବତୀ ଛାଞ୍ଚରେ ରଚିତ ; କିନ୍ତୁ ରଚନା ରୀତି ଅପେକ୍ଷାକୃତ ସରଳ ।

ଭକ୍ତ ଚରଣ ଦାସ :—(ଅଷ୍ଟାଦଶ-ଊନବିଂଶ ଶତାବ୍ଦୀ) ଭଦ୍ରପୁର ରାଜ୍ୟ ଅନ୍ତର୍ଗତ ସୁନାଖଳା ଗ୍ରାମରେ ଭକ୍ତ ଚରଣ ୧୭୮୦ରେ ଜନ୍ମଗ୍ରହଣ କରିଥିଲେ ଏବଂ ୧୮୦୪ ପର୍ଯ୍ୟନ୍ତ ଜୀବିତ ଥିଲେ । ପିତୃଦତ୍ତ ନାମ ବୈରାଗୀ ଚରଣ ପଟ୍ଟନାୟକ । ଦୀକ୍ଷା

ସନ୍ନ୍ୟାସ ପରେ ସେ ଭକ୍ତଚରଣ ଦାସ ନାମରେ ପରିଚିତ ହେଲେ । ସେ ଗାର୍ହସ୍ଥ୍ୟାଶ୍ରମରେ ପ୍ରଥମ ଜୀବନ ଅତିବାହିତ କରିଥିଲେ । ଶେଷ ଦଶାରେ ତାଙ୍କ ମନରେ ସଂସାର-ବୈରାଗ୍ୟ ଜାତ ହୋଇଥିଲା । ମଥୁରା ମଙ୍ଗଳ ଏହାଙ୍କ ପ୍ରସିଦ୍ଧ ରଚନା । ଏଥିରେ ଶ୍ରୀକୃଷ୍ଣଙ୍କ ମଥୁରାଗମନଠାରୁ କଂସବଧ ପର୍ଯ୍ୟନ୍ତ ଉପାଖ୍ୟାନ ସୁନ୍ଦରେ ବର୍ଣ୍ଣିତ । ଯୋଗ ସାଧନ ଅପେକ୍ଷା ଶୃଙ୍ଗାରଭକ୍ତି ଉତ୍କୃଷ୍ଟ ବୋଲି ମଥୁରାମଙ୍ଗଳରେ ପ୍ରତିପାଦିତ । କୃଷ୍ଣବିରହରେ ରାଧା ଓ ଗୋପୀମାନଙ୍କର ବିଳାପ ଅତୀବ କରୁଣରସ ପାଠକ ହୃଦୟରେ ସଞ୍ଚାର କରେ । ଆବାଳ ବୃଦ୍ଧବନିତା ଏ କାବ୍ୟଟିକୁ ଆଦର କରନ୍ତି ଏବଂ ସରଳତାରେ 'କୋଇଲି' 'ଗୋପୀଭାଷା' ସହିତ ଏହାର ସ୍ଥାନ । କବିଙ୍କର ମଥୁରା ବିଜେ ମଧ୍ୟ ଲୋକପ୍ରିୟ କବିତା । ତାଙ୍କ ବିରଚିତ 'ମନବୋଧ ଚଉତିଶା' ଓଡ଼ିଆ ସାହିତ୍ୟର ମୋହମୁଦ୍‌ଗର । 'କଳାକଳେବର ଚଉତିଶା' ମଧ୍ୟ ଅନ୍ୟ ଏକ ରମଣୀୟ ରଚନା ।

ବନମାଳୀ ଦାସ :—(ଅଷ୍ଟାଦଶ ଶତାବ୍ଦୀ) ବୀରକିଶୋର ଦେବ (୧୭୩୬-୭୯)ଙ୍କ ସମସାମୟିକ । ଏହାଙ୍କ ଉପାଧି ପଟ୍ଟନାୟକ ଥିଲା ବୈଷ୍ଣବ ହୋଇ ଦାସ ବୋଲାଇଲେ । ରାଜାଙ୍କ ନାମରେ ୬୨ଟି ଚଉପଦୀ ରଚନା କରି ୬୨ ବାଟୀ ଜମି ପୁରସ୍କାର ପାଇଥିବାର କିମ୍ବଦନ୍ତୀ ଅଛି । ଏତେ ଭୂସମ୍ପତ୍ତି ସତ୍ତ୍ୱେ କବି ଆର୍ଥିକ ଓ ମାନସିକ ଦୁଶ୍ଚିନ୍ତାରେ ବ୍ୟାକୁଳ ହେବାର ପ୍ରମାଣ ତାଙ୍କ ରଚନାରୁ ମିଳେ । ମଧ୍ୟଯୁଗୀୟ କବିମାନଙ୍କ ମଧ୍ୟରେ ବନମାଳୀ ସର୍ବାଧିକ ଲୋକପ୍ରିୟ ସଙ୍ଗୀତ ରଚନା କରି ଅଛନ୍ତି । ସୁମଧୁର ରସବର୍ଣ୍ଣିତ ସଂଗୀତମାନ ଶୃଙ୍ଗାର ଓ ଭକ୍ତି ରସାପ୍ଳୁତ ହୋଇ ପ୍ରତିପଲ୍ଲୀର ଶ୍ରୋତାମାନଙ୍କୁ ମୁଗ୍‌ଧ ଓ ଉନ୍ମତ୍ତ କରେ । ବନମାଳୀଙ୍କ 'ବୃନ୍ଦ ଇଚ୍ଛାବତୀ' ସମାଜରେ ପବିତ୍ର ପ୍ରେମର ପ୍ରତିଷ୍ଠା ଗାନ କରେ ।

କେଶବ ପଟ୍ଟନାୟକ :—(ଅଷ୍ଟାଦଶ-ଊନବିଂଶ ଶତାବ୍ଦୀ) ଜନ୍ମ ଗଞ୍ଜାମ ଜିଲ୍ଲା ପାଟଳୀର ତାଲୁକାର ମଧୁସୂଦନପୁରରେ । ପିତାଙ୍କ ନାମ ରାମଚନ୍ଦ୍ର ଚମ୍ପତି ପଟ୍ଟନାୟକ; ମାତା ଲକ୍ଷ୍ମୀ ଦେଈ । କବି ୧୮୩୦ ସାଲରେ ତାଙ୍କ ରାମାୟଣ ରଚନା ଶେଷ କରିଥିଲେ । ସେ ବଳଦେବ, ଯଦୁମଣି ଓ ଗୋପାଳକୃଷ୍ଣଙ୍କ ସମସାମୟିକ ।

କବି ସମଗ୍ର ରାମାୟଣକୁ ଆମୋଦ ପୂର୍ଣ୍ଣ ସରସଛନ୍ଦ ଓ ସଙ୍ଗୀତମୟ ଲୀଳା ଆକାରରେ ରଚନା କରିଅଛନ୍ତି । ସେ ଜଣେ ସୁଗାୟକ ଥିଲେ । ରାଗ, ତାନ ଓ ଲୟରେ ତାଙ୍କର ଯଥେଷ୍ଟ ଅବଗାହ ଓ ଆସକ୍ତି ଥିଲା । ପାଲେଖରର ରାଜା ଏକ ନର୍ତ୍ତକ ଦଳ ଗଢ଼ି ଗ୍ରନ୍ଥ ବର୍ଣ୍ଣିତ ସମସ୍ତ ବିଷୟ ଅଭିନୟ କରାଇଥିଲେ । ଏହି ରାମାୟଣ ନୃତ୍ୟ ରାମାୟଣ ନାମରେ ବିଦିତ । କଥୋପକଥନ ଓ ଉକ୍ତି ପ୍ରତ୍ୟୁକ୍ତି ଛଳରେ ଘଟଣା-ବର୍ଣ୍ଣନା କାବ୍ୟର ବୈଶିଷ୍ଟ୍ୟ ।

ଗୋପାଳକୃଷ୍ଣ ପଟ୍ଟନାୟକ :—(୧୭୮୫-୧୮୬୨) ଜନ୍ମସ୍ଥାନ ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡି, ପିତାଙ୍କ ନାମ ବନବାସୀ ପଟ୍ଟନାୟକ, ମାତାଙ୍କ ନାମ ଲଳିତା । ବାଲ୍ୟକାଳରେ ଗୋପାଳକୃଷ୍ଣ ତାଙ୍କର ଅସାମାନ୍ୟ କାବ୍ୟ ପ୍ରତିଭାର ପରିଚୟ ଦେଇଥିଲେ । ସେ ପାରଳାଖେମୁଣ୍ଡି ମହାରାଜାଙ୍କ ଜଣେ କର୍ମଚାରୀ ଥିଲେ । ଅବସର ସମୟରେ ଅଧ୍ୟୟନ ଓ କବିତା ରଚନାରେ କଟାଉଥିଲେ । ବ୍ରଜଲୀଳା ସମ୍ବନ୍ଧୀ ସଙ୍ଗୀତରେ କବି ଚରମ ଉତ୍କର୍ଷ ଲାଭ କରିଥିଲେ । ରାଧାକୃଷ୍ଣ ପ୍ରେମଲୀଳା ତାଙ୍କ ସଙ୍ଗୀତର ପରମ ଉପଜୀବ୍ୟ ବିଷୟ । ଉତ୍କଳର ଅନ୍ୟ ଏକ କୃତୀ ସଙ୍ଗୀତ ରଚୟିତା ବନମାଳୀ ଦାସଙ୍କ ତୁଲ୍ୟ ଗୋପାଳକୃଷ୍ଣ । କବି ତାଙ୍କ ସଙ୍ଗୀତରେ ପ୍ରଣୟୀପ୍ରଣୟିନୀ ହୃଦୟର ଭାବାନୁଭୂତିର ବିଭିନ୍ନ ବିଭାବ ଓ ବିଭାଗ ଅସାଧାରଣ ମନୋବୈଜ୍ଞାନିକ ଦକ୍ଷତା ସହିତ ଚିତ୍ରିତ କରିଛନ୍ତି ଓ ରାଧାକୃଷ୍ଣପ୍ରେମରେ ତନ୍ମୟତାର ପରିଚୟ ଦେଇଅଛନ୍ତି । ତାଙ୍କ ସଙ୍ଗୀତର ମୂର୍ଚ୍ଛନା ଓ ରାଗରାଗିଣୀ ଉତ୍କଳର ପୁରପଲ୍ଲୀରେ ପରିଚିତ, ଧ୍ୱନିତ ଓ ଝଙ୍କୃତ ।

କବିସୂର୍ଯ୍ୟ ବଳଦେବ ରଥ :—(୧୭୮୯-୧୮୭୮) ଜନ୍ମ ବଡ଼ଖେମୁଣ୍ଡିରେ ପୂର୍ବ-ପୁରୁଷ ବାଣପୁରର ମଣିପୁରରୁ ଆସି ଗଞ୍ଜାମ ଜିଲ୍ଲାର ଆଠଗଡ଼ରେ ବାସକରୁଥିଲେ । ପିତା ଉତ୍କଳରଥ । କବି ସଂସ୍କୃତ ପଣ୍ଡିତ ସଙ୍ଗୀତଜ୍ଞ ଓ ସୁଗାୟକ । ସେ କଲ୍ଲିକୋଟ, ଆଠଗଡ଼ ଓ ଗଜପତି ମହାରାଜାମାନଙ୍କ ପୃଷ୍ଠପୋଷକତା ଲଭିଥିଲେ । କବିସୂର୍ଯ୍ୟ ଉତ୍କଳର ସଙ୍ଗୀତକାର ତଥା କବିମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଓ ଅପ୍ରତିଦ୍ୱନ୍ଦ୍ୱୀ । ଅନୁପ୍ରାସ ପୂର୍ଣ୍ଣ ଚମ୍ପୂ ରଚନାରେ ମଧ୍ୟ କବିସୂର୍ଯ୍ୟ ରଥୀ । ତାଙ୍କ 'ଚନ୍ଦ୍ରକଳା' କାବ୍ୟ ଉତ୍କୃଷ୍ଟ

କାବ୍ୟ ଅନୁକରଣରେ ଲିଖିତ । ତାଙ୍କ ମୁଖ୍ୟ କୃତି କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ ଓ ରତ୍ନାକର ଚମ୍ପୂ । ଜଣାଣ, ଭଜନ, ଚଉପଦୀ ରଚନାରେ ସେ ଅପୂର୍ବ ପଦ-ବିନ୍ୟାସ-ସ୍ୱରୂପ ଓ ଦିବ୍ୟମୂର୍ଚ୍ଛନା ଭରି ଦେଇଛନ୍ତି । 'ଚମ୍ପୂ'ର ସଂଳାପ, ଚରିତ୍ର ଚିତ୍ରଣ ଓ ମୂର୍ଚ୍ଛନାଗର୍ଭିତ ସଙ୍ଗୀତ ଓଡ଼ିଆ ସାହିତ୍ୟରେ କାବ୍ୟଟିକୁ ଅନବଦ୍ୟ ସ୍ଥାନ ଦେଇଛି । ଦିବ୍ୟ ଓ ଅଦିବ୍ୟ ଭାଷାର ଯେଉଁ ଅପୂର୍ବ ମିଳନ ରସକଲ୍ଲୋଳ, ବୈଦେହୀଶ ବିଳାସ, ବିଦଗ୍ଧ ଚିନ୍ତାମଣି ଓ ପ୍ରବନ୍ଧପୂର୍ଣ୍ଣଚନ୍ଦ୍ରରେ ସଂଘଟିତ ହୋଇଥିଲା ତାର ଚରମ ପରିଣତି 'ଚମ୍ପୂ' କାବ୍ୟରେ । ଓଡ଼ିଆ ଭାଷା, ସାହିତ୍ୟ ଓ ସଙ୍ଗୀତ ତାଙ୍କ ରଚନାରେ ଯେପରି ଚିର ଅଭିପ୍ସିତ ରୂପ ନେଇଛି ।

ଯଦୁମଣି ମହାପାତ୍ର—(୧୮୧୦—୧୮୬୫) ହାସ୍ୟରସିକ ଯଦୁମଣିଙ୍କ ଜନ୍ମ ବଡ଼େଇ କୁଳରେ, ଗଞ୍ଜାମ ଜିଲ୍ଲାର ଆଠଗଡ଼ରେ । କିନ୍ତୁ ନୟାଗଡ଼ରେ ସେ ଜୀବନ ଅତିବାହିତ କରିଥିଲେ । ସଂସ୍କୃତ ସାହିତ୍ୟରେ ପ୍ରବେଶ ନ ଥିବାରୁ ନୈସର୍ଗିକ କବିତା ରଚନାରେ ସେ ଦକ୍ଷ ହୋଇଥିଲେ । ଯଦୁମଣି ଆଶୁ କବି । କିନ୍ତୁ ସେ କ୍ଲିଷ୍ଟ କବିତା ରଚନାରେ ମଧ୍ୟ ଦକ୍ଷ ଥିଲେ । କବିଙ୍କର ରହସ୍ୟପ୍ରିୟତା ତାଙ୍କ କବିପ୍ରତିଭାର ଏକ ସ୍ୱତନ୍ତ୍ର ବିଭବ । ସେ ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର ଓ ରାଘବ ବିଳାସ କାବ୍ୟଦ୍ୱୟର ପ୍ରଣେତା । ଏହି ଦୁଇ କାବ୍ୟରେ ଭକ୍ତୀସ୍ୱ କାବ୍ୟଗୁଣ ସୁସ୍ପଷ୍ଟ । ଯଦୁମଣି ରହସ୍ୟାବଳୀ ବର୍ତ୍ତମାନ ମଧ୍ୟ ଲୋକ ମୁଖରେ ଶୁଣାଯାଏ ।

ଭୀମ ଭୋଇ (୧୮୫୫—୧୮୯୫) ଭୀମଭୋଇ ସମ୍ବଲପୁର ଜିଲ୍ଲାନ୍ତର୍ଗତ ରେଢ଼ାଖୋଲରେ ଏକ କନ୍ଧ ପରିବାରରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରେ ଅନାଥ ହୋଇ ଗୋରୁ ଚରାଇ ବା ମୂଲ ଲାଗି ସେ ଅତି ଦୁଃଖରେ ଦିନ କାଟିଥିଲେ । ଜଗନ୍ନାଥ ଦାସଙ୍କ ଭାଗବତ ତାଙ୍କର କଣ୍ଠସ୍ଥ ଥିଲା । ଜଗନ୍ନାଥ ଦାସ ଓ ଭୀମଭୋଇ ହେଉଛନ୍ତି ଓଡ଼ିଶାର ବରିଷ୍ଠ ସନ୍ଥକବି, ଜଗନ୍ନାଥ ଦାସଙ୍କ ଭାଗବତ ଟୁଙ୍ଗିପରି ଭୀମଭୋଇଙ୍କ ଭଜନ ଟୁଙ୍ଗି ଓଡ଼ିଶାର ସମ୍ପଦ । ଆଦିବାସୀ କବି ହିସାବରେ ତାଙ୍କ ସ୍ଥାନ ଭାରତରେ ଅଦ୍ୱିତୀୟ । ସେ ସୋନପୁରରେ ରହି ଧର୍ମପ୍ରଚାର କଲେ ଓ ଉତ୍କଳର ଗ୍ରାମେ ଗ୍ରାମେ ବୁଲିଥିଲେ । ତାଙ୍କର ଅଗଣିତ ଶିଷ୍ୟ ଥିଲେ । ୧୮୬୫ରେ ସେ ଓ ତାଙ୍କର

ଶିଷ୍ୟବୃନ୍ଦ ଜଗନ୍ନାଥଙ୍କୁ ନରବୋଲ ଦାବୀ କରି ଜଗନ୍ନାଥ ମନ୍ଦିର ଦଖଲ କରିବାକୁ ଉଦ୍ୟମ କରିଥିଲେ । ମାତ୍ର ତତ୍କାଳୀନ ପୁରୀରାଜା ଦିବ୍ୟସିଂହ ଦେବ ଇଂରେଜ ସରକାରଙ୍କ ସାହାଯ୍ୟରେ ସେମାନଙ୍କୁ ତଡ଼ାଇ ଦେଇଥିଲେ । ଭୀମଭୋଇ ଶତଶତ ସ୍ତୁତି ଓ ଭଜନର ରଚୟିତା । ସେ ଗୁଡ଼ିକ 'ସ୍ତୁତିଚିନ୍ତାମଣି' ଓ 'ଭଜନମାଳା'ରେ ସନ୍ନିବିଷ୍ଟ ହୋଇଛି । ତାଙ୍କ ରଚନା ନୈସର୍ଗିକ ଓ ସ୍ୱତଃସ୍ଫୂର୍ତ୍ତି । ରଚନାରେ ଭୀମ ନିରାକାର ବ୍ରହ୍ମତତ୍ତ୍ୱ ପ୍ରତିପାଦନ କରିଛନ୍ତି । ସେ ଅଲେଖ ଧର୍ମର ପ୍ରତିଷ୍ଠାତା । ଭୀମ ଯଥାର୍ଥରେ ଭୀମକର୍ମୀ ।

ରାଧାନାଥ ରାୟ :—(୧୮୪୮—୧୯୦୮) କବିବର, ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଜନ୍ମଦାତା, ନବଯୁଗର ପ୍ରବର୍ତ୍ତକ । ବାଲେଶ୍ୱର ଜିଲ୍ଲାର କେଦାରପୁରରେ ବଙ୍ଗୀୟ କାୟସ୍ଥ କୁଳରେ ଜନ୍ମ । ପିତା ସୁନ୍ଦର ନାରାୟଣ ରାୟ, ମାତା ତାରିଣୀ ଦାସୀ । ବାଲ୍ୟକାଳରେ ମାତାଙ୍କ ପରଲୋକ । ଶିକ୍ଷା ବାଲେଶ୍ୱର ଜିଲ୍ଲା ସ୍କୁଲରେ । ବାଲେଶ୍ୱର ସ୍କୁଲରେ ଶିକ୍ଷକତା ; ଇଂରାଜୀ, ଓଡ଼ିଆ, ବଙ୍ଗଳା, ସଂସ୍କୃତ ଓ ହିନ୍ଦୀ ପ୍ରତି ଯୁଗପତ୍ ଗଭୀର ଅନୁରାଗ ଓ ସେ ସବୁ ସାହିତ୍ୟର ଗଭୀର ଅନୁଶୀଳନ । ଅଠର ବର୍ଷବେଳେ ପ୍ରଶଂସନୀୟ ବଙ୍ଗଳା 'କବିତାବଳି'ର ରଚନା । ବାଲେଶ୍ୱର ଜିଲ୍ଲା ସ୍କୁଲ ଓ ବାଙ୍କିଡ଼ାରେ ଶିକ୍ଷକତା ପରେ ସ୍କୁଲ ଇନସ୍ପେକ୍ଟରର ପଦକୁ ଉନ୍ନୀତ, ୧୯୦୧ରେ ଓଡ଼ିଶାର ଶିକ୍ଷାବିଭାଗର ଶୀର୍ଷସ୍ଥାନ ଗ୍ରହଣ । ୧୮୯୬ରେ ରାୟବାହାଦୁର ଉପାଧି ପ୍ରାପ୍ତି । ଉତ୍କଳ ଓ ଭାରତର ବହୁସ୍ଥାନ ଭ୍ରମଣ, ତାଙ୍କର ପ୍ରତ୍ୟେକଟି ରଚନା ଓଡ଼ିଆ କାବ୍ୟଜଗତରେ ଏକ ଏକ ଅନବଦ୍ୟ ସୃଷ୍ଟି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟର ଅପୂର୍ବ ସମନ୍ୱୟ ଓ ସମୀକରଣ ତାଙ୍କ ସାହିତ୍ୟରେ । ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତକ ।

ରଚନା :—ମେଘଦୂତ (ଅନୁବାଦ), କେଦାର ଗୌରୀ, ଚନ୍ଦ୍ରଭାଗା, ନନ୍ଦିକେଶ୍ୱରୀ, ଉଷା, ପାର୍ବତୀ, ଚିଲିକା, ମହାଯାତ୍ରା, ଯଯାତିକେଶରୀ, ଦରବାର, ଚାଣକ୍ୟହରଣ ପ୍ରଭୃତି ଖଣ୍ଡକାବ୍ୟ, ଇତାଲୀୟ ଯୁବା ଓ ବିବେକୀ ଉପନ୍ୟାସ ।

ମଧୁସୂଦନ ରାଓ :—(୧୮୫୩—୧୯୧୨). ଭକ୍ତକବି, ମହାବ୍ରହ୍ମଚାରୀ । ମାଘ ଶ୍ରୀପଞ୍ଚମୀରେ ଶ୍ରୀକ୍ଷେତ୍ରରେ ଜନ୍ମ ; ପିତା ଭଗୀରଥ ରାଓ ମାତା ଅମ୍ବିକା ଦେବୀ ;

ବାଲ୍ୟରେ ମାତାଙ୍କ ପରଲୋକ। ଶିକ୍ଷା ପୁରୀ ଜିଲ୍ଲା ସ୍କୁଲରେ, ୧୬ବର୍ଷ ବୟକ୍ରମରେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ। ରେଭେନ୍ସା କଲେଜରେ ଅଧ୍ୟୟନ କାଳରେ ବ୍ରାହ୍ମଧର୍ମ ପ୍ରତି ଅନୁରାଗ। ୧୮ ବର୍ଷ ବୟସରେ ଏଫ୍.ଏ. ପାସ ପରେ ପୁରୀଜିଲ୍ଲା ସ୍କୁଲର ଶିକ୍ଷକତା। ମଧୁସୂଦନ ରାଧାନାଥଙ୍କ ଶିଷ୍ୟ, ସହକର୍ମୀ ଓ ଅନ୍ତରଙ୍ଗ ବନ୍ଧୁ। ରାଧାନାଥଙ୍କ ପରି ନାନା ସ୍ଥାନରେ ଶିକ୍ଷକତା ପରେ ଅବଶେଷରେ ଶିକ୍ଷାବିଭାଗର ସର୍ବୋଚ୍ଚ ସ୍ଥାନ ଓ ରାୟବାହାଦୁର ପଦବୀ ପ୍ରାପ୍ତ। ଓଡ଼ିଆରେ ଯଥାର୍ଥ ଗୀତ କବିତା ଓ ସ୍ତୁତି-କବିତାର ପ୍ରବର୍ତ୍ତକ। ଓଡ଼ିଆରେ ପ୍ରଥମ ସନେଟ୍ ଲେଖକ। ଗମ୍ଭୀର ଭକ୍ତିଭାବ, କବିତାର ମେଘମନ୍ଦ୍ରଧ୍ୱନି ତାଙ୍କ ରଚନାର ବୈଶିଷ୍ଟ୍ୟ। ଋଷିକଣ୍ଠ ନିଃସୃତ ବାଣୀପରି ତାଙ୍କ କବିତାର ଭାଷା। ଋକ୍‌ବେଦର ଶ୍ଳୋକ ପରି ଗମ୍ଭୀର ପବିତ୍ର।

ରଚନା :—ଛନ୍ଦମାଳା, କବିତାବଳି, ବସନ୍ତଗାଥା, ବାଲରାମାୟଣ, କୁସୁମାଞ୍ଜଳି, ଉତ୍ତର ରାମଚରିତ, ସୁଖବୋଧ ଅଭିଧାନ ଏବଂ ବର୍ଣ୍ଣବୋଧ, ଶିଶୁବୋଧ, କଥାବଳି, ସାହିତ୍ୟ ପ୍ରସଙ୍ଗ ଆଦି ଉତ୍କୃଷ୍ଟ ଗଦ୍ୟ ପଦ୍ୟ ସମ୍ବଳିତ କମିକ ଶିଶୁ ଓ ମାଧ୍ୟମିକ ସାହିତ୍ୟ ପାଠ୍ୟ ପୁସ୍ତକ।

ଫକୀର ମୋହନ ସେନାପତି :—(୧୮୪୩—୧୯୧୮) ବ୍ୟାସ କବି। ପ୍ରଳୟ ପ୍ରୟୋଧିରୁ ଓଡ଼ିଆ ଭାଷା ତଥା ସାହିତ୍ୟର ଉଦ୍ଧାର କର୍ତ୍ତା। ଜନ୍ମ ବାଲେଶ୍ୱରର ମଲ୍ଲିକାଶପୁର। ପିତା ଲକ୍ଷ୍ମଣ ଚରଣ ସେନାପତି, ମାତା ତୁଳସୀ ଦେଇ। ବାଲ୍ୟରୁ ପିତୃମାତୃହୀନ। ନଅବର୍ଷ ବୟକ୍ରମରେ ଚାଟଶାଳୀରେ ବିଦ୍ୟାରମ୍ଭ। ପାଣିସ୍କୁଲରେ ଛାତ୍ରଜୀବନ। ବାଳକ ଅବସ୍ଥାରେ ଅଷ୍ଟାଲ୍ ପିଲଇ ଓ ଜାମତ ମାହାଲର କାର୍ଯ୍ୟ ତୁଣ୍ଡାମଣା। ପରେ ବାରବାଟୀ ସ୍କୁଲରେ ଅଧ୍ୟୟନ ଓ ଅଧ୍ୟାପନା, ବେତନ ୫ ୧୍‌। ତତ୍‌ପରେ ମିଶନ ସ୍କୁଲର ପ୍ରଧାନ ଶିକ୍ଷକ। ସଂସ୍କୃତ ଓ ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରତି ଗଭୀର ଅନୁରାଗ। ଜନ୍ ବୀମସଙ୍କ ଉତ୍ସାହରେ ଉନ୍ନତିଲାଭ ଓ ସ୍ତ୍ରୀ ଶିକ୍ଷା ପ୍ରସାର କାର୍ଯ୍ୟରେ ମନୋନିବେଶ। ବାଲେଶ୍ୱରରେ ପ୍ରଥମ ଓଡ଼ିଆ ଛାପାଖାନା ସ୍ଥାପନ ଓ ସମ୍ବାଦପତ୍ର ପ୍ରକାଶ। ତେର ବର୍ଷରେ 'ଲୀଳାବତୀ'ଙ୍କ ପାଣିଗ୍ରହଣ, ଓ ତାଙ୍କ ମୃତ୍ୟୁ ପରେ ୨୯ ବର୍ଷ ବୟସରେ 'କୃଷ୍ଣକୁମାରୀ'ଙ୍କ ସହିତ

ବିବାହ । ନୀଳଗିରି, ଡମପଡ଼ା, ଢେଙ୍କାନାଳ, ଦଶପଲ୍ଲା, ପାଲଲହଡ଼ା ଓ କେନ୍ଦୁଝରରେ ଦେୱାନ ବା ମେନେଜର । ବାର୍ଦ୍ଧକ୍ୟ ଶାନ୍ତ କାନନରେ । ଅତୀବ ଶାରୀରିକ, ମାନସିକ ତଥା ପାରିବାରିକ ଅଶାନ୍ତ ଓ ପୀଡ଼ାରେ । କବି ଅପେକ୍ଷା ଗାଳ୍ପିକ ଔପନ୍ୟାସିକ ହିସାବରେ ସେ ଖ୍ୟାତ । ଶିଶୁସାହିତ୍ୟ ସ୍ରଷ୍ଟା, ଅଧୁନିକ ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରାଣପ୍ରତିଷ୍ଠାତା ।

ଗଳ୍ପ ଓ ଉପନ୍ୟାସରେ ବାସ୍ତବବାଦିତା, କବିତାରେ ଆଦର୍ଶବାଦିତା ଓ ଶୁଦ୍ଧ ହାସ୍ୟରସ ସହିତ ବ୍ୟଙ୍ଗ ଓ ଦେଶାତ୍ମବୋଧର ମିଶ୍ରଣ ତାଙ୍କ କୃତିରେ ପରିଲକ୍ଷିତ । କୃଷ୍ଣ କୁମାରୀଙ୍କ ବିରହରେ ଲିଖିତ କରୁଣରସାପ୍ଲୁତ କବିତାଗୁଡ଼ିକ ସାରଲ୍ୟ ଓ ସ୍ୱତଃସ୍ଫୂର୍ତ୍ତି ଗୁଣରେ ମର୍ମସ୍ପର୍ଶୀ ।

ରଚନା :—ପ୍ରଥମ ଓଡ଼ିଆ ଗଳ୍ପ ଲଛମନିଆ, ସଂସ୍କୃତ ରାମାୟଣ ଓ ମହାଭାରତର ଅନୁବାଦ, ଉପହାର, ପୁଷ୍ପମାଳା ଓ ଅବସରବାସରେ ଆଦି ଗୀତି କବିତା, ବୌଦ୍ଧାବତାର କାବ୍ୟ, ଉତ୍କଳ ଭ୍ରମଣ (ବ୍ୟଙ୍ଗ କବିତା) ଛମାଣ ଆଠଗୁଣ୍ଠ, ଲଛମା, ପ୍ରାୟଶ୍ଚିତ, ମାମୁଁ (ଉପନ୍ୟାସ), ଗଳ୍ପସଳ୍ପ (ଗଳ୍ପଗୁଚ୍ଛ) ଓ ଆତ୍ମଜୀବନ ଚରିତ ।

ଗଙ୍ଗାଧର ମେହେର :—(୧୮୬୨—୧୯୨୪) ରାଧାନାଥ, ମଧୁସୂଦନ, ଫକୀରମୋହନ ଓ ଗଙ୍ଗାଧର ନବଯୁଗର ଚତୁର୍ଦ୍ଧାମୂର୍ତ୍ତି । ସ୍ୱଭାବ କବି ; ସମ୍ବଲପୁର ଜିଲ୍ଲା ବରପାଲିର ଏକ ଗରିବ ତନ୍ତୀ ପରିବାରରେ ଜନ୍ମ । ପିତାଙ୍କ ନାମ ଚୈତନ୍ୟ ; ମାତା ସେବତୀ ଦେବୀ ଶିକ୍ଷା :—ଗ୍ରାମ ଚଟ୍ଟଶାଳୀ ଓ ପ୍ରାଥମିକ ସ୍କୁଲ । ଦାରିଦ୍ର୍ୟରୁ ଶିକ୍ଷାଦୀକ୍ଷାରୁ ବଞ୍ଚିତ । ପନ୍ଦର ଟଙ୍କା ବେତନରେ ଅଦାଲତ କଚେରୀରେ ମୋହରର । କୌଳିକ ବ୍ୟବସାୟ ବସ୍ତ୍ରବୟନ ସଙ୍ଗେ ସଙ୍ଗେ କାଳିଦାସ, ଉପେନ୍ଦ୍ର ଭଞ୍ଜ ଆଦି କବିଙ୍କ କାବ୍ୟ ପ୍ରତି ଆସକ୍ତ । ଗଙ୍ଗାଧର ଉତ୍କଳ କାଳିଦାସ ନାମରେ ବିଦିତ । ପ୍ରକୃତିର ଅବିସ୍ମରଣୀୟ ଚିତ୍ର, ଆଦର୍ଶ ଚରିତ୍ର ଚିତ୍ରଣ ଓ ଭାଷାର ସାରଲ୍ୟ ଓ ମଧୁରତା କବିଙ୍କୁ ଅମର କରିଛି ।

ରଚନା :— ତପସ୍ୱିନୀ, ପ୍ରଣୟ ବଲ୍ଲରୀ, କୀଚକ ବଧ, ଇନ୍ଦୁମତୀ, ଉତ୍କଳ ଲକ୍ଷ୍ମୀ କବିତା କଲ୍ଲୋଳ, ଅର୍ଘ୍ୟଥାଳୀ, ଅବକାଶଚିନ୍ତା ।

•

ନନ୍ଦକିଶୋର ବଳ :—(୧୮୭୫—୧୯୨୮) ପଲ୍ଲୀକବି, କଟକ ଜିଲ୍ଲାର ଐତିହାସିକ ଲଳିତଗିରି, ଉଦୟଗିରି ଓ ପୁଷ୍ପଗିରି (ରତ୍ନଗିରି) ନିକଟବର୍ତ୍ତୀ ବିରୂପା ନଦୀକୂଳ କୃପୁପୁର ଗ୍ରାମରେ କବିଙ୍କ ଜନ୍ମ, ଏକ ଅଭିଜାତ ପରିବାରରେ । ପିତା ଭଗବାନ ଜେନା ଓ ମାତା ସ୍ୱର୍ଣ୍ଣମୟୀ ଦେବୀ । ଚତୁର୍ଥ ପୁତ୍ର । ପିତୃଶ୍ୱସା ଜାନକୀ ଦେବୀଙ୍କ ପୋଷ୍ୟପୁତ୍ର ହେବା ପରେ 'ବଳ' ବୋଲାଇଲେ । ଶିକ୍ଷା :— ଗ୍ରାମ ପାଠଶାଳା, କଟକ ଟାଉନ ସ୍କୁଲ, କଲେଜଏଟ୍ ସ୍କୁଲ, ରେଭେନ୍ସା କଲେଜ ଓ ଜେଭିଅର୍ ହେୟାର ଟ୍ରେନିଂ କଲେଜ, କଲିକତା । ବିଭିନ୍ନ ସ୍କୁଲରେ ଶିକ୍ଷକତା ପରେ ଜିଲ୍ଲାସ୍କୁଲ ସମୂହର ଇନ୍ସପେକ୍ଟର । ବ୍ୟାଧିର ତାଡ଼ନାରେ ଅକାଳରେ ଅବସର ଗ୍ରହଣ । ୧୯୨୪ରେ ରାୟସାହେବ ଉପାଧି ଲାଭ । କଟକରେ ମୃତ୍ୟୁ ଓ ତୁଳସୀ ଚଉରାରେ ସମାଧି । ଫକୀର ମୋହନ ତାଙ୍କ କୃତି ସମ୍ବନ୍ଧରେ ଲେଖିଥିଲେ "ପଢ଼ିଗଲା ବେଳେ ପଲ୍ଲୀ ପ୍ରସଙ୍ଗବାରତା, କେହି କବି କହି ନାହିଁ ଏ ପ୍ରକାର କଥା" ପଲ୍ଲୀର ବାସ୍ତବ, ଜୀବନ୍ତ ଚିତ୍ର ତାଙ୍କ କାବ୍ୟ କବିତାରେ ପ୍ରତିଫଳିତ । ଶିଶୁ ସଙ୍ଗୀତର ଅପୂର୍ବ ସ୍ରଷ୍ଟା ।

ରଚନା :—ପଲ୍ଲୀଚିତ୍ର, ନିର୍ଝରିଣୀ, ନାନାବାୟାଗୀତ, କୃଷ୍ଣକୁମାରୀ, ଶର୍ମିଷ୍ଠା ଓ କନକଲତା (ଉପନ୍ୟାସ) ।

ଚନ୍ଦ୍ରମଣି ମହାନ୍ତି :—(୧୮୬୭—୧୯୪୩) ବଳିଷ୍ଠ ସାହିତ୍ୟ ସାଧକରୂପେ ଓଡ଼ିଆ ସାହିତ୍ୟରେ ତାଙ୍କ ସ୍ଥାନ । ରାଧାନାଥ ତାଙ୍କର କାବ୍ୟଗୁରୁ । ପ୍ରଗାଢ଼ ଆତ୍ମବିଶ୍ୱାସ ଓ ଏକପ୍ରାଣତା ବଳରେ କବି ଅଜସ୍ର କାବ୍ୟକବିତା ଉତ୍କଳ ସାହିତ୍ୟକୁ ଦାନ କରିଯାଇଛନ୍ତି ।

ରଚନା :—ଯମୁନାର କାବ୍ୟ, ମହେନ୍ଦ୍ର, ସୁରଙ୍ଗୀ କାବ୍ୟ, ଉତ୍କଳ ଲଳନା, ଉଦ୍ୟାନଖଣ୍ଡ, ମେଘାସନ, ସାଳନ୍ଦୀ ଆଦି ।

ଗୋପବନ୍ଧୁ ଦାସ :—(୧୮୭୭—୧୯୨୮) ଉତ୍କଳମଣି, ଏକାଧାରରେ ସାହିତ୍ୟିକ, ସଂସ୍କାରକ ଓ ଦେଶସେବୀ । ସତ୍ୟବାଦୀ ନିକଟବର୍ତ୍ତୀ ସୁଆଣ୍ଡୋ ଗ୍ରାମରେ ଜନ୍ମ । ପିତା ଦୈତାରି ଦାସ; ମାତା ସ୍ୱର୍ଣ୍ଣମୟୀ ଦେବୀ । ପୁରୀ ଜିଲ୍ଲା ସ୍କୁଲ ଓ ରେଭେନ୍ସା କଲେଜରେ ଛାତ୍ର ଥିଲାବେଳେ ଜାତୀୟଜୀବନର ଉନ୍ମେଷ । ବି.ଏଲ. ପାସ ପରେ ଓକାଲତି ଜୀବନ ଆରମ୍ଭ । ଜୀବନ ଭକ୍ତିମୟ, କର୍ମମୟ, ପ୍ରେମମୟ । ନରନାରାୟଣ ସେବା ଓ ଜ୍ଞାନାଲୋକ ପ୍ରସାର ଜୀବନର ବ୍ରତ । ସତ୍ୟବାଦୀ ବନ-ବିଦ୍ୟାଳୟକୁ କେନ୍ଦ୍ର କରି ନବଯୁଗର ବାର୍ତ୍ତା ପ୍ରଚାର କରିଥିଲେ ସର୍ବସ୍ୱତ୍ୟାଗୀ ଗୋପବନ୍ଧୁ । ଉତ୍କଳର ସର୍ବଜନାଦୃତ 'ସମାଜ'ର ପ୍ରତିଷ୍ଠାତା; ମାସିକ 'ସତ୍ୟ-ବାଦୀ'ର ସମ୍ପାଦକ । ଉତ୍କଳର ଅସାମାନ୍ୟ ଗଦ୍ୟ-ଶିଳ୍ପୀ, ଅପ୍ରତିଦ୍ୱନ୍ଦ୍ୱୀ ବକ୍ତା ଓ ସାମ୍ବାଦିକ । ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନର ବାର୍ତ୍ତା ପ୍ରଚାର କରିବାକୁ ଯାଇ ବିହାର ହଜାରିବାଗ ଜେଲରେ କାରାଦଣ୍ଡ ଭୋଗୁଥିଲାବେଳେ ସେ ମୂଲ୍ୟ କବିତା-ଗୁଡିକୁ ଲେଖିଥିଲେ । ସେଥିରେ ଦେଶ ଓ ଜାତି ପାଇଁ ଆତ୍ମୋତ୍ସର୍ଗ ମନୋବୃତ୍ତି ପ୍ରକଟିତ । 'ଧର୍ମପଦ' କବିମାନସର ଏକ ଅମର ସନ୍ତକ । ଆଧୁନିକ ଯୁଗର 'ପଞ୍ଚସଖା'ଙ୍କ ମଧ୍ୟରେ ପ୍ରଥମ ନାମ ।

ରଚନା :—ବନ୍ଦୀର ଆତ୍ମକଥା, କାରା କବିତା, ଧର୍ମପଦ, ଗୋମାହାତ୍ମ୍ୟ ଆଦି ।

ନୀଳକଣ୍ଠ ଦାସ :—(୧୮୮୪—୧୯୬୭) ଯଥାର୍ଥରେ ପଣ୍ଡିତ । ଏକା-ଧାରରେ ବିଚକ୍ଷଣ ରାଜନୀତିକ, ସମାଜ ସଂସ୍କାରକ, ଦେଶସେବୀ, ଦାର୍ଶନିକ, କବି, ପ୍ରାବନ୍ଧିକ ଓ ସମାଲୋଚକ । ଏକଦା ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରୋଚାନ୍ସେଲର ଓ ଓଡ଼ିଶା ବିଧାନ ସଭାର ବାଚସ୍ପତି ।

ପିତା ଶ୍ରୀ ଆନନ୍ଦ ଦାଶ; ମାତା ରାଧାଦେବୀ । ଶିକ୍ଷା ପୁରୀଜିଲ୍ଲା ସ୍କୁଲ ଓ କଲିକତା । ୧୯୧୧ରେ ସ୍କଟିସ୍ ଚର୍ଚ୍ଚ ସ୍କୁଲରୁ ଏମ.ଏ. ପାସ । ସତ୍ୟବାଦୀ ବନବିଦ୍ୟାଳୟରେ ଶିକ୍ଷକତା ଓ ପରେ କଲିକତା ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟାପକତ୍ୱ ଗ୍ରହଣ । ୧୯୨୧ରେ ଅସହଯୋଗ ଆନ୍ଦୋଳନରେ ଯୋଗଦାନ

ଓ ଜାଗ୍ରବରଣ । ପ୍ରଥମ ଜୀବନରେ ଟେନିସନଙ୍କ 'ପ୍ରିନ୍‌ସେସ୍' ଅବଲମ୍ବନରେ 'ପ୍ରଣୟିନୀ' କାବ୍ୟରଚନା ଓ ପରେ 'ଇନକ୍ ଆର୍ଡେନ'ର 'ଦାସ ନାୟକ' ରୂପାନ୍ତର । 'ନବଭାରତ' ମାସିକ ଛଡ଼ାଙ୍କ ସାହିତ୍ୟ ପତ୍ରିକାର ସମ୍ପାଦନା । ଭଗବଦ୍‌ଗୀତାର ପାଣ୍ଡିତ୍ୟପୂର୍ଣ୍ଣ ବ୍ୟାଖ୍ୟା ଓ ମୁଖବନ୍ଧ ରଚନା । ଅନେକ ଗ୍ରନ୍ଥରେ ଉତ୍କଳର ଜନଜୀବନ । 'କୋଣାର୍କେ' କାବ୍ୟ ନୀଳକଣ୍ଠଙ୍କ କବିପ୍ରତିଭାର ଉତ୍କୃଷ୍ଟ ପରିଚାୟକ । ଜାତୀୟତାବୋଧ ସହିତ ମର୍ମସ୍ପର୍ଶୀ କଳ୍ପନା ବିଳାସ କାବ୍ୟଟିକୁ ଏକ ମନୋହର ସାହିତ୍ୟକୃତିରେ ପରିଣତ କରିଛି । ଭାରତୀୟ ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ମାନିତ ଓ ପୁରସ୍କୃତ ।

ରଚନା :—ଖାରବେଳ, ଦାସ ନାୟକ, ଗୀତାର ଭାଷ୍ୟ ଓ ଟୀକା, ଆତ୍ମଜୀବନ, ପ୍ରଣୟିନୀ, କୋଣାର୍କେ, ଓଡ଼ିଆ ସାହିତ୍ୟର କ୍ରମପରିଣାମ, ଆତ୍ମଜୀବନୀ ଆଦି ।

ପଦ୍ମଚରଣ ପଟ୍ଟନାୟକ :—(୧୮୮୫—୧୯୫୭) ଭୁବନେଶ୍ୱର ନିକଟବର୍ତ୍ତୀ 'ପାଞ୍ଚଗାଁ ଗ୍ରାମରେ ଜନ୍ମ । ପୁରୀରେ ସେ ଆଇନଜୀବୀ ଭାବରେ ଜୀବନଯାପନ କରିଥିଲେ । ଦେଶାତ୍ମବୋଧ ଓ ପ୍ରକୃତି ପ୍ରୀତି ତାଙ୍କ କବିତାରେ ସ୍ପଷ୍ଟ ରୂପେ ଅଙ୍କିତ ବାଇରନଙ୍କ 'ଆଇଲସ୍ ଅଫ୍ ଗ୍ରୀସ୍' ଆଇଲସ୍ ଅଫ୍ ଗ୍ରୀସ୍ ଗ୍ରନ୍ଥରେ ଡ଼. ଏଲ ରାୟ 'ମେବାର ପାହାଡ଼ ମେବାର ପାହାଡ଼' ଲେଖିଲା ପରି 'ଧଉଳି ପାହାଡ଼, ଧଉଳି ପାହାଡ଼,' ଲେଖା ହୋଇଛି ।

ରଚନା :—ଗୋଲାପଗୁଚ୍ଛ, ସୂର୍ଯ୍ୟମୁଖୀ, ପଦ୍ମପାଖୁଡ଼ା, ସୁନାର ଦେଶ ଓ ପାରିବାରିକ ପ୍ରବନ୍ଧ ।

ଗୋଦାବରୀଶ ମିଶ୍ର :—(୧୮୮୬— ୧୯୫୬) ସତ୍ୟବାଦୀର ପଞ୍ଚସଖାଙ୍କ ମଧ୍ୟରେ ଅନ୍ୟତମ ରଥୀ । ଏକାଧାରରେ ସୁକବି, ଲେଖକ, ରାଜନୀତିଜ୍ଞ, ବାଗ୍ମୀ, ଶିକ୍ଷାବିତ, ସଂସ୍କାରକ ଓ ମୁଖ୍ୟ ହିତୈଷୀ । ବାଣପୁର ନିକଟବର୍ତ୍ତୀ ଶ୍ରୀକୃଷ୍ଣ ସ-ପୁରର ଏକ ଦରିଦ୍ର ପରିବାରରେ ଜନ୍ମ । ପିତା ଲିଙ୍ଗରାଜ ମିଶ୍ର ; ମାତା ଉମାସୁନ୍ଦରୀ

ଦେବୀ । ଶିକ୍ଷା ପୁରୀଜିଲ୍ଲା ସ୍କୁଲ, ରେଭେନ୍‌ସା କଲେଜ ଓ କଲିକତା । କଲିକତାରେ ଏମ୍ ଏ, ଆଇନ ପଢିଲାବେଳେ ନୀଳକଣ୍ଠଙ୍କ ସହିତ 'ହିନ୍ଦୁ ସମାଜ' ଗଠନ । ୧୯୧୨ରେ ସତ୍ୟବାଦୀ ବନବିଦ୍ୟାଳୟରେ ଶିକ୍ଷକତା ଓ ନୀଳକଣ୍ଠଙ୍କ ପରେ ୧୯୧୮ରେ ଉକ୍ତ ସ୍କୁଲର ପ୍ରଧାନଶିକ୍ଷକ ପଦରେ ନିଯୁକ୍ତ । ୧୯୪୧ରେ ଶିକ୍ଷା ଓ ଅର୍ଥମନ୍ତ୍ରୀ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା । ଭାରତୀୟ ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ମାନିତ ଓ ପୁରସ୍କୃତ । 'କାଳିଜାଈ' ପରି ଗାଥା କବିତା ବା ବାଲାଡ୍ ଯେ କୌଣସି ସାହିତ୍ୟର ଅମୂଲ୍ୟ ରତ୍ନ ।

ରଚନା :—କଣଲସ୍ତ୍ର, କଳନା, ଗୀତାସ୍ତ୍ରନ, ଆଲେଖିକା, ଚୟନିକା, ଗୀତଗୁଚ୍ଛ, ଗୀତମାଳା ବ୍ୟତୀତ ଆହୁରି ପ୍ରାୟ ତିରିଶ ଖଣ୍ଡି ପୁସ୍ତକ । ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋର ସ୍ଥାନ (ଆତ୍ମଜୀବନ ଚରିତ) ମୁକୁନ୍ଦଦେବ ଓ ପୁରୁଷୋତ୍ତମ ଦେବ (ନାଟକ) ଅଭାଗିନୀ ଓ ଘଟାନ୍ତର (ଉପନ୍ୟାସ) ।

ଲକ୍ଷ୍ମୀକାନ୍ତ ମହାପାତ୍ର :—(୧୮୮୮—୧୯୫୩) କାନ୍ତକବି, ଡିସେମ୍ବର ୯ ତାରିଖ କଟକ ସହରରେ ଜନ୍ମ । ଶିକ୍ଷା ବାଲେଶ୍ୱର ଜିଲ୍ଲା ସ୍କୁଲ, ରେଭେନ୍‌ସା କଲେଜିଏଟ ଓ ଭଦ୍ରକ ଉଚ୍ଚ ଇଂରାଜୀ ବିଦ୍ୟାଳୟ । କଲେଜ ଶିକ୍ଷା କଟକ ଓ କଲିକତାରେ ।

ଓଡ଼ିଶାର ଦୁରବସ୍ଥା ଦେଖି ଦୁଃଖରେ ଯେ ଦେଶମାତୃକାର ଅନ୍ତର ବଳ ବୃଦ୍ଧି ପାଇଁ ଗୀତିକାବ୍ୟ ଦୁଃଖ ନିମନ୍ତେ

ଓଡ଼ିଶାର ଗୁରଣ କବି । ରୋଗଗ୍ରସ୍ତ ଦ୍ୱାରା ଚଳଚଳ ହୋଇ ଖଣ୍ଡବିଖଣ୍ଡିତ ହେଉଥିଲେ ମଧ୍ୟ ପ୍ରଚୁର ହାସ୍ୟ ଓ ବ୍ୟଙ୍ଗରସର ଅପୂର୍ବ ରଚନାବଳି ସେ ଓଡ଼ିଆ ସାହିତ୍ୟକୁ ଦାନ କରି ସାହିତ୍ୟରେ ନୂତନ ଧାରା ଆଣିଦେଇଛନ୍ତି । ବ୍ୟଙ୍ଗ ଓ ହାସ୍ୟରସରେ ସେ ତେଣୁ ଜଣେ ଯୁଗସ୍ରଷ୍ଟା । 'ଡଗର'ର ପ୍ରତିଷ୍ଠାତା । ପ୍ରଖ୍ୟାତ ଗାଳ୍ପିକ ଓ କବି ନିତ୍ୟାନନ୍ଦ ମହାପାତ୍ରଙ୍କ ପିତା । କାନ୍ତକୋମଳ ପଦାବଳିରେ ଆତ୍ମାର ଆକୁଳ ନିବେଦନ ତାଙ୍କ ସଙ୍ଗୀତଗୁଡ଼ିକରେ ପରିଦୃଷ୍ଟ । ଅତୀବ ମର୍ମସ୍ପର୍ଶୀ ହେଣୁ ବ୍ୟଥିତ ହୃଦୟର ସେ ଗୁଡ଼ିକ ସୁନ୍ଦର ପରିପ୍ରକାଶ । ସେ ନିଜର ଅନେକ ଗଳ୍ପ ଓ କବିତାର ଇଂରାଜୀ ରୂପାନ୍ତର ମଧ୍ୟ କରିଛନ୍ତି ।

ରଚନା :—ଜୀବନ ସଙ୍ଗୀତ, କଣାମାମୁଁ (ଉପନ୍ୟାସ) ଓମର ଖୈୟାମ (ଅନୁବାଦ) ଭୃଗୁଆଶଙ୍କାର ଆଦି ଗଳ୍ପ । ଦେହ ପଦ ପଲ୍ଲବମୁଦାରମ୍ ଓ ଅନ୍ୟାନ୍ୟ ଗଳ୍ପଗୁଚ୍ଛ ।

ଗୋଦାବରୀଶ ମହାପାତ୍ର :—(୧୮୯୯—୧୯୬୫) ପୁରୀଜିଲ୍ଲା ବାଣପୁର ଥାନା ଅନ୍ତର୍ଗତ କୁମାରଙ୍ଗ ଶାସନରେ ଜନ୍ମ । ପଣ୍ଡିତ ଗୋପବନ୍ଧୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସତ୍ୟବାଦୀ ବନବିଦ୍ୟାଳୟରେ ଯୋଗଦାନ ଓ ଜାତୀୟ ଆନ୍ଦୋଳନରେ ଭାଗ ନେବା ପାଇଁ ଶିକ୍ଷା ବର୍ଜ୍ଜନ । ସଂସ୍କୃତ, ବଙ୍ଗଳା ଓ ହିନ୍ଦୀ ଭାଷା ପ୍ରତି ଅନୁରାଗ ଏବଂ ଟଲଷ୍ଟୟ, ମୋପାସାଁ ଓ ଗର୍କି ପ୍ରଭୃତିଙ୍କ ଲେଖା ଦ୍ୱାରା ଆକୃଷ୍ଟ ଓ ପ୍ରଭାବିତ, ହାସ୍ୟ ଓ ବ୍ୟଙ୍ଗରସର ଅଦ୍ୱିତୀୟ ସ୍ରଷ୍ଟା । ନିର୍ଭୀକ ସମାଲୋଚନା ଓ ଜାତୀୟ କଲ୍ୟାଣ ପାଇଁ ଉତ୍ସର୍ଗୀକୃତ ତାଙ୍କ ଜୀବନ । 'ନିଆଁ ଖୁଣ୍ଟା'ର ସମ୍ପାଦକ ରୂପେ ପ୍ରତିପତ୍ତିରେ ପରିଚିତ । ଭାରତୀୟ ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ମାନିତ ।

ରଚନା — ହେ ମୋର କଲମ, ହାଣ୍ଡିଶାଳରେ ବିପ୍ଳବ, କଥା ଓ କାହାଣୀ, ଏବେ ମଧ୍ୟ ବଞ୍ଚିଛି, ଧୂପଗ୍ରସ୍ତା, ଆତ୍ମବଳି, ମରଣ-ଦୁଆରେ, ରକ୍ତପାତ, ଗରିବର ଭଗବାନ, କଣ୍ଟା ଓ ଫୁଲ, ବନ୍ଦୀର ମାୟା (ଉପନ୍ୟାସ)

ହରେକୃଷ୍ଣ ମହତାବ :—(୧୮୯୯—) ନଭେମ୍ବର ତା ୨୧ିଖ ବାଲେଶ୍ୱରର ଆଗରପଡ଼ା ଗ୍ରାମରେ ଜନ୍ମ । ପିତା ଶ୍ରୀକୃଷ୍ଣ ଦାସ, ମାତା ତୋଫାଦେବୀ । ଶିକ୍ଷା କ୍ଷେତ୍ର—ଭଦ୍ରଖ ଓ ରେଭେନ୍‌ସା କଲେଜ । ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ଶିକ୍ଷା ଓ ପରୀକ୍ଷା ବର୍ଜନ । ରାଜନୀତିରେ ଯୋଗଦେଇ ବହୁବାର କାରାବରଣ ଓ ଜେଲ୍ ଅବସ୍ଥାନ କାଳରେ ନାନା ମୂଲ୍ୟବାନ ପୁସ୍ତକ ରଚନା । ଉଚ୍ଚକୋଟୀର ସର୍ବଭାରତୀୟ ରାଜନୀତିକ, ଏକଦା ଓଡ଼ିଶାର ପ୍ରଧାନ ମନ୍ତ୍ରୀ, କେନ୍ଦ୍ର ମନ୍ତ୍ରୀ ଏବଂ ବମ୍ବେର ଗଭର୍ଣ୍ଣର । ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ 'ଝଙ୍କାର' ଇଷ୍ଟର୍ଣ୍ଣ ଟାଇମସ ଓ ପ୍ରଜାତନ୍ତ୍ର ଆଦି ପତ୍ର ପତ୍ରିକାର ପ୍ରକାଶ, ଏକଦା ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ।

ରଚନା :—ପ୍ରତଷ୍ଠ, ଅବ୍ୟାପାର, ଟାଇଟର, ସାଧନା ପଥେ, ଇଂରାଜୀରେ ଓଡ଼ିଶାର ଇତିହାସ, ଗ୍ରହଚକ୍ଷୁ, ପଲ୍ଲି ଅବସାନେ (କବିତା) ନାଟକ— ଅଗଷ୍ଟ ବିପ୍ଳବ ।

କୁନ୍ତଳା କୁମାରୀ ସାବତ :—(୧୯୦୦-୧୯୩୮) ଖୋର୍ଦ୍ଧାର ଏକ ଓଡ଼ିଆ ଖ୍ରୀଷ୍ଟିଆନ ପରିବାରରେ ଜନ୍ମ । ପିତା ଦାନିଏଲ ସାବତ ; ମାତା ମଣିକା ସାବତ । ପିତାମାତା ବ୍ରହ୍ମଦେଶରେ ଥିବାରୁ କୁନ୍ତଳା କୁମାରୀଙ୍କ ବାଲ୍ୟଶିକ୍ଷା ବିଦେଶରେ ହୋଇଥିଲା । ପରେ କଟକ ମେଡିକେଲ ସ୍କୁଲରୁ ପ୍ରଥମ ସ୍ଥାନ ଲାଭ କରି ଡାକ୍ତରୀ ପରୀକ୍ଷାରେ ଉତ୍ତୀର୍ଣ୍ଣ । ସାତ ବର୍ଷ ଡାକ୍ତରୀ ଚାକିରି ଛାଡ଼ି ଦିଲ୍ଲୀ ଯାତ୍ରା ଓ ସେଠାରେ ବ୍ୟବସାୟ ଆରମ୍ଭ ଓ କୃଷ୍ଣପ୍ରସାଦ ଚୌଧୁରୀଙ୍କ ସହିତ ଆର୍ଯ୍ୟ ସମାଜ, ରୀତିରେ ବିବାହ । ଆଧୁନିକ ଯୁଗର ନାରୀ କବିମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ।

ରଚନା:—ଅଞ୍ଜଳି, ଅର୍ଚ୍ଚନା, ସ୍ଫୁଲିଙ୍ଗ, ପ୍ରେମଚିନ୍ତାମଣି, (କବିତା) ଓ ଭ୍ରାନ୍ତ, କାଳୀ ବୋହୂ, ପରଶମଣି, ନଅତୁଣ୍ଡୀ, ରଘୁ ଅରକ୍ଷିତ (ଉପନ୍ୟାସ) ଓ ବରମାଳା (ହିନ୍ଦୀ)

କାଳିନ୍ଦୀ ଚରଣ ପାଣିଗ୍ରାହୀ :—(୧୯୦୦ —) ପଦ୍ମଭୂଷଣ, ପୁରୀଜିଲ୍ଲା ଅନ୍ତର୍ଗତ ବିଶ୍ୱନାଥପୁର ଶାସନରେ ଜନ୍ମ । ଗ୍ରାମ ପାଠଶାଳାରେ ପାଠ ସମାପ୍ତି ପରେ ପୁରୀଜିଲ୍ଲା ସ୍କୁଲରେ ଅଧ୍ୟୟନ । ସ୍କୁଲ ଜୀବନରୁ ମଧ୍ୟ ଗଳ୍ପ, ଓ କବିତା ଲେଖା ଆରମ୍ଭ । ସ୍କୁଲ କଲେଜର 'ଛାତ୍ର ଦର୍ପଣ', 'ଶକ୍ତିସାଧନା' ଆଦି ପତ୍ରିକାରୁ ଆରମ୍ଭ କରି 'ଉତ୍କଳ ପ୍ରଦୀପ ଓ ମୟୂରଭଞ୍ଜ କନକ୍ଲ' ପର୍ଯ୍ୟନ୍ତ ବିଭିନ୍ନ ପତ୍ରପତ୍ରିକାର ସଂପାଦକ ଆକାରରେ ଯଶସ୍ୱୀ ବିଦିତ । କଲେଜରେ 'ନନ୍‌ସେନସ କ୍ଲବ' ଓ ପରେ 'ସବୁଜ ସମିତି'ର ସଂଗଠକ ଏବଂ ସବୁଜଦଳମାନଙ୍କର ମୁଖପତ୍ର 'ଯୁଗବାଣୀ'ର ସମ୍ପାଦକ । ସେ ଏକାଧାରରେ ଉଚ୍ଚକୋଟିର ଗାଳ୍ପିକ, ଔପନ୍ୟାସିକ, କବି, ପ୍ରାବନ୍ଧିକ, ନାଟ୍ୟକାର, ସମାଲୋଚକ, ଶିଶୁସାହିତ୍ୟ ସ୍ରଷ୍ଟା ଓ ସାମ୍ବାଦିକ । 'ପୁରୀ ମନ୍ଦିର' କବିତାଟିର ଗଠନ ପରିପାଟୀ ଓଲଟା ମନ୍ଦିର ସଦୃଶ ।

ରଚନା :—ମନେ ନାହିଁ, ମହାପାପ, କ୍ଷଣିକ ସତ୍ୟ, ଜୁଇଫିଏ ନେଡ଼ା (କବିତା) ; ମାଟିର ମଣିଷ, ଲୁହାର ମଣିଷ, ଅଜାର ମଣିଷ, ମୁକ୍ତାଗଡ଼ର କ୍ଷୁଧା, ଅମର ଚିତା (ଉପନ୍ୟାସ) ; ସାହିତ୍ୟ ସମାଲୋଚନା, ସାହିତ୍ୟିକା, ନେତା ଓ ନେତୃତ୍ୱ (ପ୍ରବନ୍ଧ) ; ସାଗରିକା, ରାଶିଫଳ, ଶେଷରଶ୍ମି (ଗଳ୍ପ), ଯାହା ଅଙ୍ଗେ ନିଭାଇଛୁ, ସାମୟିକ ସାହିତ୍ୟ ସମୀକ୍ଷା ।

ବୈକୁଣ୍ଠନାଥ ପଟ୍ଟନାୟକ :—(୧୯୦୪—) ସବୁଜଯୁଗର ଅନ୍ୟତମ କବି । ବହ୍ମପୁରରେ ଜନ୍ମ । ଏମ.ଏ. ପାସ ପରେ ଓଡ଼ିଶା ଶିକ୍ଷା ବିଭାଗରେ ସୃଜନ-ରହସ୍ୟବାଦୀ କବି ରୂପେ ଖ୍ୟାତ । 'ବନ୍ୟାବିପ୍ଳବ'କୁ ଏକ ସନେଟ୍ ପରମ୍ପରା ବୋଲାଯାଇପାରେ ।

ରଚନା :—ମୁକ୍ତ ପଥେ, କାବ୍ୟ ସଞ୍ଚୟନ, ଉତ୍କଳସ୍ୱପ୍ନ ।

ଅନ୍ନଦା ଶଙ୍କର ରାୟ :—(୧୯୦୪—) ଜନ୍ମସ୍ଥାନ ଢେଙ୍କାନାଳ । ରେଭେନ୍ସା କଲେଜରେ ଅଧ୍ୟୟନ କାଳରେ ସବୁଜ ସାହିତ୍ୟ ସମିତିର ଅନ୍ୟତମ ପ୍ରତିଷ୍ଠାତା ଓ ବିଦଗ୍ଧ ଲେଖକ । ଆଇ.ସି.ଏସ ଚାକିରୀରୁ ଅବସର ଗ୍ରହଣ ପରେ ସମସ୍ତ ସମୟ ସାରସ୍ୱତ ସାଧନାରେ ନିୟୋଜିତ କରିଛନ୍ତି । ତାଙ୍କର ଓଡ଼ିଆ ରଚନାବଳି ନିକଟରେ 'ସବୁଜ ଅକ୍ଷର' ନାମରେ ପ୍ରକାଶିତ ହୋଇଛି । ବଙ୍ଗସାହିତ୍ୟର ପ୍ରଖ୍ୟାତ ଔପନ୍ୟାସିକ, ପ୍ରାବନ୍ଧିକ, ସମୀକ୍ଷକ ଓ କବି ରୂପେ ପ୍ରତିଷ୍ଠିତ ଓ ସମ୍ମାନିତ ।

ରଚନାବଳି (ବଙ୍ଗୀୟ) :—ପଥେ ପ୍ରବାସେ, ସତ୍ୟାସତ୍ୟ, କନ୍ୟାର ବନ୍ଧୁ, ଯୌବନେର ଜ୍ୱାଳା, ଆଗୁନ ନିୟେ ଖେଳା, ପୁତୁଲ ନିୟେ ଖେଳା, ତାରୁଣ୍ୟ ଓ ଓ ସାହିତ୍ୟେର ସଙ୍କଟ ଇତ୍ୟାଦି ।

ମାୟାଧର ମାନସିଂହ :—(୧୯୦୫—୧୯୭୩) ପଦ୍ମଶ୍ରୀ, ପୁରୀ ଜିଲ୍ଲା ଅନ୍ତର୍ଗତ ପାରିକୁଦର ନନ୍ଦଳା ଗ୍ରାମରେ ଜନ୍ମ । ଶିକ୍ଷା :—ରେଭେନ୍ସା କଲେଜରୁ ଇଂରାଜୀରେ ଏମ.ଏ. ପାସ ; ପରେ ଡାରହାମ ବିଶ୍ୱବିଦ୍ୟାଳୟରୁ କାଳିଦାସ ଓ ସେକ୍ସପିଅରଙ୍କ ଉପରେ ତୁଳନାତ୍ମକ ନିବନ୍ଧ ଲେଖି ଡକ୍ଟରେଟ ଉପାଧି ଲାଭ । ସ୍କୁଲ ଜୀବନରୁ

ଓଡ଼ିଆ ସାହିତ୍ୟ, ଶିଳ୍ପ, କଳା, ସଂସ୍କୃତି ପ୍ରତି ଗଭୀର ଅନୁରାଗ । ବାରବର୍ଷବେଳୁ କବିତା ରଚନା ଆରମ୍ଭ । ବିଂଶୋତ୍ତର ବୟସରେ ଅନବଦ୍ୟ କବିତାଗୁଚ୍ଛ 'ଧୂପ' ଓ 'ହେମଶସ୍ୟ'ର ସ୍ରଷ୍ଟାରୂପେ ସମ୍ମାନିତ । ଅବିଚ୍ଛିନ୍ନ ଶିଳ୍ପୀ ଜୀବନରେ ସଂଖ୍ୟାତୀତ କବିତା, ନାଟକ, ଗୀତିନାଟ୍ୟ, ପ୍ରବନ୍ଧ, ସମାଲୋଚନା, ଭ୍ରମଣ କାହାଣୀ, ଶିକ୍ଷାମୂଳକ ନିବନ୍ଧ ଲେଖିଛନ୍ତି । ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପ୍ରକାଶିତ ଓଡ଼ିଆ ଜ୍ଞାନକୋଷର ସମ୍ପାଦକ । ଦେଶ ବିଦେଶରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ପରିଚିତ କରାଇବା ପାଇଁ ଆମରଣ ପ୍ରୟାସ କରିଛନ୍ତି ।

ରଚନା :—ଧୂପ, ହେମଶସ୍ୟ, ହେମପୁଷ୍ପ, ପୁଷ୍ପିତା, ପୂଜାରିଣୀ, ଜେମା, ସାଧବ ଝିଅ, କମଳାୟନ, କୃଷ୍ଣ, ଶିକ୍ଷାବିଦ୍‌ର ଗାଥା, ଶିକ୍ଷା, ଶିକ୍ଷକ ଓ ଓ ଶିକ୍ଷାର୍ଥୀଚିନ୍ତନ ଏବଂ ଓଡ଼ିଆ ସାହିତ୍ୟର ଇତିହାସ (ଇଂରାଜୀ ଓ ଓଡ଼ିଆ) ।

ଅନନ୍ତ ପଟ୍ଟନାୟକ :—(୧୯୧୦—) ଭୁବନେଶ୍ୱର ନିକଟବର୍ତ୍ତୀ ଚଣ୍ଡୀହାଟ ଗ୍ରାମରେ ଜନ୍ମ । ବି.ଏ. ପାସ ପରେ ମୁଖ୍ୟତଃ ରାଜନୀତିକ କ୍ଷେତ୍ରରେ ପରିଚିତ । ସେଥିପାଇଁ ସେ ବହୁବାର କାରାବରଣ କରିଛନ୍ତି । ପ୍ରଗତିଶୀଳ ଓ ସମାଜବାଦୀ କବିତାର ଜଣେକ ଅଗ୍ରଦୂତ ରୂପେ ଖ୍ୟାତ ।

ରଚନା :—ଶାନ୍ତ ଶିଖା, କାଞ୍ଚିତ, ଦର୍ପଣ କରେ ଆଜି, ଅଲେଖା ଲେଖା, ଗ୍ରାଇର ଛୁଟା ଏବଂ ସ୍ୱର୍ଗରୁ ଝିଏ ଓ ମା (ମାକ୍‌ସିମ ଗର୍କି) ତଡ଼ା ହଉଷ (କ୍ଷୁଦ୍ରଗଳ୍ପ) ।

ରାଧାମୋହନ ଗଡ଼ନାୟକ :—(୧୯୧୧—) ଅନୁଗୁଳ ନିକଟବର୍ତ୍ତୀ କଳଣ୍ଡାପାଳରେ ଜନ୍ମ । ସେ ମୁଖ୍ୟତଃ ଅପୂର୍ବ ଛନ୍ଦସ୍ରଷ୍ଟା, ଅଭିନବ ଶବ୍ଦଶିଳ୍ପୀ ରୂପେ ଖ୍ୟାତ । ତାଙ୍କ କବିତାର ଭାବ ଓ ଛନ୍ଦଯୋଜନା ସୁନ୍ଦର ଓ ସାବଲୀଳ । କିମ୍ବଦନ୍ତୀମୂଳକ ଓ ଦେଶାତ୍ମବୋଧୀ କବିତାଗୁଡ଼ିକ ଅତି ସରସ ଓ ଜୀବନ୍ତ ।

ରଚନା :—କାଳିଦାସ, ଉତ୍କଳିକା, ମୌସୁମୀ, କାବ୍ୟନାୟିକା, ମେଘଦୂତ (ଅନୁବାଦ) ପଶୁପକ୍ଷୀର କାବ୍ୟ, କୈଶୋରିକା ଓ ଶାମୁକାର ସ୍ୱପ୍ନ ।

କୃଷ୍ଣଚନ୍ଦ୍ର ତ୍ରିପାଠୀ :—(୧୯୧୧—) ଜନ୍ମସ୍ଥାନ ବ୍ରହ୍ମପୁର, ନିଜ ଉଦ୍ୟୋଗରେ ବି.ଏ ଡିଗ୍ରୀ ପାସକରି ୧୯୩୧ରୁ ଶିକ୍ଷକତା କରୁଛନ୍ତି । ଜାତୀୟତା, ମାନବିକତା, ବିପ୍ଳବ ଓ ସରଳ ଆତ୍ମାନୁଭୂତି ତାଙ୍କ କବିତାରେ ସହଜ ଓ ସ୍ୱଚ୍ଛନ୍ଦ ପରିପ୍ରକାଶ ଲଭିଛି । ଆଧୁନିକ କବିତାରେ ଆବେଗ ଓ କାବ୍ୟିକ ଅନୁଭୂତିର ଅଭିବ୍ୟକ୍ତି ଜୀବନ୍ତ ଓ ମର୍ମସ୍ପର୍ଶୀ । ତାଙ୍କର ଜାତୀୟତାମୂଳକ ପାଇକ କବିତାଗୁଡ଼ିକ ଗାଥାକବିତା ଭାବରେ ସ୍ମରଣୀୟ ।

ରଚନା :—ପ୍ରାପ୍ତି, ଦିଗ୍‌ବଳୟ, ବେଲା ଓ ବାଟ, ଉସ୍ର, ସଙ୍କେତ, ମାଟିଦୀପ, ସାଧବର ସ୍ୱପ୍ନ, ଆମ୍ରଲିପି, ରୂପାୟନ, ଅଗ୍ନିଶଙ୍ଖ, ଆହୂତ ।

ନିତ୍ୟାନନ୍ଦ ମହାପାତ୍ର :—(୧୯୧୨—) ଭଦ୍ରଖରେ ଜନ୍ମ । ପିତା କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର । ସାହିତ୍ୟସେବା ଓ ରାଜନୀତି ଜୀବନର ବ୍ରତ । ପିତାଙ୍କ ଅନ୍ତେ 'ଡଗର'ର ସମ୍ପାଦନା କରନ୍ତି । ବହୁ ଉପନ୍ୟାସ, ଛୋଟ ଗଳ୍ପ, କବିତା ବ୍ୟଙ୍ଗଚିତ୍ର ଓ ପ୍ରବନ୍ଧର ସ୍ରଷ୍ଟା । ସର୍ବହରା ଶ୍ରମିକ, କୃଷକମାନଙ୍କ ଜୀବନଧାରା ତାଙ୍କ ରଚନାରୁ ମିଳେ । ଏକଦା ସାଂସ୍କୃତିକ ବ୍ୟାପାର ବିଭାଗର ମନ୍ତ୍ରୀ ।

ରଚନା :—ହିଡ଼ମାଟି, ଭୁଲ, ଭାରତ ଭାଗ୍ୟବିଧାତା, ମରମ, କାଳରଡ଼, ଜୀଅନ୍ତା ମଣିଷ ପ୍ରଭୃତି ।

କୁଞ୍ଜବିହାରୀ ଦାଶ :—(୧୯୧୪—) ପୁରୀଜିଲ୍ଲାର ବୀରମିତ୍ରପୁର ଶାସନରେ ଜନ୍ମ । ଶାନ୍ତିନିକେତନର ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର ଅଧ୍ୟାପକତ୍ୱ ପରେ ଓଡ଼ିଶା ଶିକ୍ଷା ବିଭାଗରେ ଓଡ଼ିଆ ବିଭାଗର କର୍ତ୍ତା । କୁଞ୍ଜବିହାରୀଙ୍କ ବିଦଗ୍ଧ ମନ ସଂସ୍କୃତ ରୁଚିରେ ମାର୍ଜିତ; ସରସ ହୃଦୟ ପଲ୍ଲୀର ଗୀତରସରେ ରସାଣିତ । ତାଙ୍କ କବିତା ସୁବୋଧ, ଜୀବନ-ଚିତ୍ରରେ ଜୀବନ୍ତ, ଅନୁଭୂତିସିଦ୍ଧ ଓ ପରମ୍ପରାର ସ୍ୱାଭାବିକ ବିକାଶପୁଷ୍ଟ । ତାଙ୍କର ଆଧୁନିକ ଢଙ୍ଗରେ ରଚିତ କବିତା, ମୁକ୍ତଛନ୍ଦ କବିତା ପଲ୍ଲୀ ଓ ଶିଶୁ କବିତା ପ୍ରଣିଧାନଯୋଗ୍ୟ ।

ରଚନା :—ଭାଠଘୋଡ଼ା ପାଣି ପି, ପାଷାଣ ତରଙ୍ଗେ ରକ୍ତ, ତନ୍ଦ୍ରମା, ଶତାଶତ୍ର, ଲୁହକପି, ସନନ୍ଦ, କଲକଲ୍ଲୋଳ, ନବମାଳଞ୍ଜା, ସୀତଶ୍ରୀ, ଭାକ୍ତମାତୃମ ତ୍ରମ, ଲୋକଗୀତ ଓ ଲୋକଗଳ୍ପ ସଂକଳକ, ସମାଲୋଚକ ଓ ଭ୍ରମଣ କାହାଣୀ ଲେଖକ ।

ସଚ୍ଚିଦାନନ୍ଦ ରାଉତରାୟ :—(୧୯୧୬—) ପଦ୍ମଶ୍ରୀ, ପୁରୀଜିଲ୍ଲା ଅନ୍ତର୍ଗତ ଖୋର୍ଦ୍ଧାଠାରେ ଜନ୍ମ । ପିତା ପ୍ରସନ୍ନ କୁମାର ରାଉତରାୟ ଆଇନଜୀବୀ ଓ କଂଗ୍ରେସ ଆନ୍ଦୋଳନର ଜଣେ ମୁଖ୍ୟ ନେତା । ଛାତ୍ରାବସ୍ଥାରେ କୃଷକ, ମଜଦୁର ଓ ଦେଶୀୟ ରାଜ୍ୟ ଆନ୍ଦୋଳନରେ ଯୋଗଦେଇ କର୍ତ୍ତୃପକ୍ଷଙ୍କ ବିରାଗଭାଜନ ହୋଇଥିଲେ ଓ କାରାବରଣ କରିଥିଲେ । ଆଧୁନିକ ସାହିତ୍ୟ କ୍ଷେତ୍ରରେ ସମାଜବାଦର ଆଦର୍ଶ ତଥା ପ୍ରଗତିବାଦୀ ସାହିତ୍ୟର ପ୍ରଚଳନ କରିଥିବାରୁ ନବଯୁଗ ସ୍ରଷ୍ଟାରୂପେ ବନ୍ଦିତ । ଅନେକ ପାଚ୍ୟ ପାଶ୍ଚାତ୍ୟ ଦେଶର ସାଂସ୍କୃତିକ ଅନୁଷ୍ଠାନ ତରଫରୁ ଆମନ୍ତ୍ରିତ ଓ ଅଭିନନ୍ଦିତ । ଏହାଙ୍କ ଯୁଗାନ୍ତକାରୀ 'ବାଜିରାଉତ' ଇଂରାଜୀରେ ଅନୂଦିତ ଓ ପ୍ରଶଂସିତ । ସାହିତ୍ୟ, ସଂସ୍କୃତି ଓ ସମାଜ ସେବାରେ ସେ ଜୀବନକୁ ନିୟୋଜିତ କରିଛନ୍ତି । ପ୍ରଗତିବାଦୀ ତ୍ରୈମାସିକ 'ଦିଗନ୍ତ' ପତ୍ରିକାର ସମ୍ପାଦକ । ଭାରତୀୟ ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ମାନିତ ଓ ପୁରସ୍କୃତ ।

ରଚନା :—ପାଣ୍ଡୁଲିପି, ଅଭିଯାନ, ଭାନୁମତୀର ଦେଶ, ପଲ୍ଲୀଶ୍ରୀ, ବାଜିରାଉତ, ହସନ୍ତ, କବିତା—୧୯୬୨ ; ମଶାଣିର ଫୁଲ, ମାଟିର ତାଜ ଓ ଚୁଇ (ଗଳ୍ପଗୁଚ୍ଛ) ଏବଂ ଚଉରଙ୍ଗୀ (ଉପନ୍ୟାସ)

ଜ୍ଞାନୀନ୍ଦ୍ର ବର୍ମା :—(୧୯୧୭—) କଟକଜିଲ୍ଲା କୁସୁପୁର ଗ୍ରାମରେ ଜନ୍ମ । ପିତା ନିଶାକର ବର୍ମା ; ମାତା ବୈଜୟନ୍ତୀ ଦେବୀ । ସେ ଏକାଧାରରେ କବି, ଔପନ୍ୟାସିକ ନାଟକ ଓ ଗଳ୍ପ ଲେଖକ, ଅନୁବାଦକ ଓ ପ୍ରବନ୍ଧକାର । ସଂସ୍କୃତ ଓ ଇଂରାଜୀର ଅନେକ ପ୍ରଖ୍ୟାତ ପୁସ୍ତକର ଅନୁବାଦକ ।

ରଚନା :—ବୋଲେ ହୁଁ ଟି, କଲରେଇ ଫୁଲ, ଏକାକିନି, ମେଘଦୂତ, ପ୍ରମିଳାର ସ୍ମୃତି, ସୁବର୍ଣ୍ଣଯୁଗର ସନ୍ଧ୍ୟା, ସ୍ୱର୍ଗର ଲୋଡକ, ଦୁଇଟି ସୂର୍ଯ୍ୟର ଜୀବନୀ, ଜୟଦେବର

ନୂତନ କବିତା, ରେନେସାଁ ଓ ତାଙ୍କ ପରବର୍ତ୍ତୀ ସମୟ, ଏଲିଅଟ୍ ଓ ଇଂରେଜୀ (ଅନୁବାଦ) ଚତୁଷ୍କୋଣୀ, ପୋଡ଼ାଭୂଇଁ ; କଥାଯାତ୍ରୀ (କ୍ଷୁଦ୍ର ଗଳ୍ପ) ମନୋବିଜ୍ଞାନ (ନାଟକ)

ବିନୋଦ ଚନ୍ଦ୍ର ନାୟକ :—(୧୯୧୯—) ଜନ୍ମସ୍ଥାନ ସୁନ୍ଦରଗଡ଼ର ତେଲପାଳ, ଏମ୍ ଏ ପାସ ପରେ ଓଡ଼ିଶା ଶିକ୍ଷା ବିଭାଗରେ ଅଧ୍ୟାପକ ରୂପେ ନିଯୁକ୍ତ । ସ୍ୱପ୍ନ-ମୂଳୀ ରୋମାଣ୍ଟିକ କବି ଭାବରେ ଓଡ଼ିଆ କାବ୍ୟ ସାହିତ୍ୟରେ ପରିଚିତ ଓ ପ୍ରତିଷ୍ଠିତ । ସୁଦୂରର ଆହ୍ୱାନ ଓ ଆକର୍ଷଣ ଓ ପ୍ରଣୟସିକ୍ତ ପ୍ରାଣର ବେଦନାର୍ତ୍ତ ଆଲୋଡ଼ନ ଓ ଅନ୍ୱେଷା ତାଙ୍କ କବିତାର ପ୍ରଧାନ ଉପଜୀବ୍ୟ । ଓଡ଼ିଶା ସାହିତ୍ୟ ଏକାଡେମୀର ସମ୍ପାଦକ, ଭାରତୀୟ ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ମାନିତ ଓ ପୁରସ୍କୃତ ।

ରଚନା :—ଚନ୍ଦ୍ର ଓ ତାରା, ନୀଳଚନ୍ଦ୍ରର ଉପତ୍ୟକା, ସରସ୍ୱତୀ, ସାତୋଟି ତାରାର ତୀର, ନନ୍ଦାଦେବୀ, ହେମନ୍ତୀ ।

ଗୁରୁପ୍ରସାଦ ମହାନ୍ତି :—(୧୯୨୪—) ଶିକ୍ଷା—ବାରିପଦା ଉଚ୍ଚଇଂରାଜୀ ବିଦ୍ୟାଳୟ ଓ ରେଭେନ୍ସା କଲେଜ । ୧୯୪୭ ସାଲରେ ଓଡ଼ିଶା ଶିକ୍ଷା ବିଭାଗର ଇଂରାଜୀ ବିଭାଗରେ ଯୋଗଦାନ । ଏହାଙ୍କ ପ୍ରସିଦ୍ଧ କବିତାଗୁଡ଼ିକ 'ନୂତନ କବିତା' ନାମକ ପୁସ୍ତକରେ ପ୍ରକାଶିତ । ଆଧୁନିକ କବିମାନଙ୍କ ମଧ୍ୟରେ ସେ ଜଣେ ଆଦର୍ଶ ସଫଳ ପ୍ରଗତିବାଦୀ କବି । ଅଧୁନାତନ ଜୀବନର ବାସ୍ତବ ପରିଚୟ ଦେଇ କବିତାରେ ନୂତନ ଶୈଳୀ ପରୀକ୍ଷାରେ ସେ ସିଦ୍ଧହସ୍ତ । ତାଙ୍କର 'କାଳ ପୁରୁଷ' ଓ 'ଅଶିର କବିତା ମୋର' ପ୍ରଭୃତି କବିତା ଉଚ୍ଚକୋଟୀର ରଚନା ପ୍ରସୂତ ।

ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) :—(୧୯୨୪—) ପୁରୀଜିଲ୍ଲା ଅନ୍ତର୍ଗତ ତରବପଡ଼ା ଗ୍ରାମରେ, ଓଡ଼ିଆ ବିଭାଗର ଅଧ୍ୟାପକ । ବାଲେଶ୍ୱର ଫକୀରମୋହନ କଲେଜରେ ଅଧ୍ୟାପକ ଥିଲାବେଳେ ସେ 'ଫକୀର ମୋହନ ପରିକ୍ରମା' ନାମକ ଫକୀରମୋହନ ସାହିତ୍ୟ ସଙ୍କଳନର ସମ୍ପାଦନା କରିଛନ୍ତି । କବି, ସମାଲୋଚକ ଓ ଐତିହାସିକ ।

ରଚନା :—ଗାର୍ଗିକ, କଥା ଓ କଳାକାର, ସେ ଦେଶର ଗଳ୍ପ, ସୃଷ୍ଟି ଓ ସମୀକ୍ଷା ଆଧୁନିକ ଓଡ଼ିଆ ସାହିତ୍ୟ ଓ ଓଡ଼ିଆ ଗୀତି କାବ୍ୟ ।

ଗୋପାଳ ଚନ୍ଦ୍ର ମିଶ୍ର :—(୧୯୨୫—) ପୁରୀଜିଲ୍ଲାର ରଣପୁର ଗଡ଼ରେ ଜନ୍ମ । ୧୯୦୭ରେ ଗଡ଼ଜାତ ଆନ୍ଦୋଳନ ସହ ସଂପୃକ୍ତ ଓ କାରାବରଣ । ୧୯୫୦ରେ ଓଡ଼ିଆ ସାହିତ୍ୟର ଅଧ୍ୟାପକ ଭାବରେ ନିଯୁକ୍ତ । ଆଧୁନିକ କବିତା, କ୍ଷୁଦ୍ରଗଳ୍ପ ଓ ନାଟକ ରଚନାରେ ସେ ସିଦ୍ଧହସ୍ତ ।

ରଚନା :—ବନମର୍ମର, କୁଆକୋଇଲି, ପଙ୍କ ଓ ପଙ୍କଜ, ସେ ପାରେ ପ୍ରିୟାର ଗାଁ, ପାଟରାଣୀ, ନଟବଦ୍ଧତା, ମାଟି କୁଣ୍ଢେଇ (ଶିଶୁଗୀତ) ଶାରୁ ଯୂଥିକା, ବିଦ୍ରୋହୀ ହବାକର, ଗଳ୍ପସୁରଭି, ଜଣେ ଥିଲେ ରାଜା ।

ବେଣୁଧର ରାଉତ :—(୧୯୨୭—) ଜନ୍ମସ୍ଥାନ କେନ୍ଦୁଝର । ଏମ୍ ଏ ପାସ ପରେ ଓଡ଼ିଶା ଶିକ୍ଷାବିଭାଗରେ ଓଡ଼ିଆ ଅଧ୍ୟାପକ ରୂପେ ନିଯୁକ୍ତ । ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ଧାରାବାହିକ କବିତା ଓ ସମାଲୋଚନା ଲେଖକ ରୂପେ ସୁପ୍ରତିଷ୍ଠିତ, ଆଧୁନିକ କବିତାର ଧର୍ମ ଓ ସ୍ୱରୂପ ତାଙ୍କ କବିତାବଳୀର ଭାଷା ବିନ୍ୟାସ, ଛନ୍ଦ ପରୀକ୍ଷା ଓ ଭାବାଭିବ୍ୟକ୍ତିରେ ଦୃଷ୍ଟିଗୋଚର ହୁଏ । ସମାଲୋଚନା ମୁକ୍ତିମସ୍ତ ହେଲେହେଁ ତୀକ୍ଷ୍ଣ ମନୀଷା ଓ ରସର ଅନ୍ୱେଷାରେ ପରିଚସ୍ତ ଦିଏ ।

ଚିନ୍ତାମଣି ବେହେରା :—(୧୯୨୮—) ଜନ୍ମସ୍ଥାନ ମୟୂରଭଞ୍ଜର ପୋଡ଼ାଗଡ଼ିଆ । ୧୯୫୦ରେ ଏମ ଏ ପାସ କରି ଓଡ଼ିଆ ସାହିତ୍ୟର ଅଧ୍ୟାପକ ଭାବରେ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗରେ ନିଯୁକ୍ତ । ଉଭୟ ଗଦ୍ୟ ଓ ପଦ୍ୟରେ ତାଙ୍କର ସବ୍ୟସାଚିତ୍ୱ ଲକ୍ଷଣୀୟ । କବି, ସମାଲୋଚକ ଭାବରେ ଆଧୁନିକ ଓଡ଼ିଆ ସାହିତ୍ୟ ରାଜ୍ୟରେ ବହୁ ପ୍ରଶଂସିତ ଓ ସୁପ୍ରତିଷ୍ଠିତ । ପ୍ରକୃତି, ବିପ୍ଳବ, ସ୍ୱାନୁଭୂତି ଓ ବହୁମୁଖୀ ଜୀବନଚେତନା ତାଙ୍କ କବିତାର ଉପଜୀବ୍ୟ । ବିଦେଶୀ ବିଶେଷତଃ ଆଧୁନିକ ଫରାସୀ କାବ୍ୟସାହିତ୍ୟ ଧାରାର ସେ ହେଉଛନ୍ତି ଓଡ଼ିଆ ଅଗ୍ରଣୀ, ଉଦ୍‌ଗାତା । ତାଙ୍କ ସମାଲୋଚନା ଭାବ୍ୟଧର୍ମୀ ; ସହୃଦୟତା ଓ ପାଣ୍ଡିତ୍ୟପୂର୍ଣ୍ଣ ।

ରଚନା :—ବୈଦେଶୀ ଭୂଲ୍ଲ ଯାଅ, ଶ୍ୱେତପଦ୍ମ, ନୂତନ ସ୍ୱାକ୍ଷର, ଆଧୁନିକ କବିତା (ସଂକଳନ), କାବ୍ୟ ଓ କଳାକାର (ସମାଲୋଚନା)

ବିଦ୍ୟୁତ୍‌ପ୍ରଭା ଦେବୀ :—(୧୯୨୯—) ସୁପରିଚିତ ଲେଖକ ଶ୍ରୀ ନିମାଇଁ ଚରଣ ଦାସଙ୍କ ମଧ୍ୟମା କନ୍ୟା । କେନ୍ଦ୍ରାପଡ଼ା ସବ୍‌ଡିଭିଜନର ଏକ ପଲ୍ଲୀରେ ଜନ୍ମ । ୧୯୪୯ରୁ କବିଙ୍କ ବୈବାହିକ ଜୀବନ ଆରମ୍ଭ । ପାରିବାରିକ ଜୀବନ କବିତା ରଚନାର ଅନ୍ତରାୟ ନ ହୋଇ ବରଂ ପରିପୋଷକ ହୋଇଛି । ପ୍ରାୟ ପାଞ୍ଚଶ ପୃଷ୍ଠାର ଏକ ପୁସ୍ତକରେ ତାଙ୍କ କବିତାଗୁଡ଼ିକ ବିଭିନ୍ନ ବିଷୟରେ ସଜା ହୋଇଛି ଯଥା :— ଲୋକାୟନ, ପଲ୍ଲୀପଥେ, ସୁନ୍ଦର ଏ ଧରା, ପ୍ରିୟ ଓ ପ୍ରିୟା, କଅଁଳ ଜୀବନ ପ୍ରଭୃତି । ଶିଶୁମାନଙ୍କ ଉଦ୍ଦେଶ୍ୟରେ ଲିଖିତ 'ଯାହାକୁ ଯିଏ' ଭାରତ ସରକାରଙ୍କ ଦ୍ୱାରା ପୁରସ୍କୃତ ।

ରମାକାନ୍ତ ରଥ :—(୧୯୩୪—) କଟକରେ ଜନ୍ମ । ଶିକ୍ଷା-ବ୍ରଜମୋହନ ହାଇ ଇଂରାଜୀ ବିଦ୍ୟାଳୟ, ବଲାଙ୍ଗୀର ଜିଲ୍ଲାସ୍କୁଲ ଓ ସାମନ୍ତ ଚନ୍ଦ୍ରଶେଖର କଲେଜ । ୧୯୫୬ରେ ରେଭେନ୍‌ସା କଲେଜରୁ ଇଂରାଜୀରେ ଏମଏ ପାସ । ବର୍ତ୍ତମାନ ସେ ଜଣେ ଆଇ ଏ ଏସ ଅଫିସର । ଆଧୁନିକ ଓଡ଼ିଆ କବିତାରେ ସେ ଜଣେ ସାର୍ଥକ ଶିଳ୍ପୀ । ବର୍ତ୍ତମାନ ମଣିଷର ବହୁବିଧ ଜୀବନର ପ୍ରକାଶ ତାଙ୍କ କବିତାରୁ ଦେଖିବାକୁ ମିଳେ । ଆଧୁନିକ କବିତାରେ ସେ ଚିତ୍ରକଳ୍ପ, ଓ ପ୍ରତୀକ ଓ ବିଭିନ୍ନ 'ବାଦ'ର ପ୍ରୟୋଗ କରିଛନ୍ତି । ତାଙ୍କର 'ଚନ୍ଦ୍ରମାର ଚୁଡ଼ୀ' 'ଲଣ୍ଠନ' ଓ 'ବାସଣୀକାର' ପ୍ରଭୃତି କବିତାଗୁଡ଼ିକରେ ନୂତନତାର ମୁଦ୍ରାଙ୍କନ ସୁସ୍ପଷ୍ଟ ।

ରଚନା :—କେତେ ଦିନର, ଅନେକ କୋଠରୀ ।

ବ୍ରଜନାଥ ରଥ (୧୯୩୬) :—ବାଲେଶ୍ୱର ସଦର ଅନ୍ତର୍ଗତ ସୁନହଟରେ ଜନ୍ମ । ଫକୀରମୋହନ କଲେଜରେ ଶିକ୍ଷାଜୀବନ । ଛାତ୍ରଜୀବନରୁ ନିରବଚ୍ଛିନ୍ନ କାବ୍ୟସାଧନା । ଓଡ଼ିଆ ଯୁବଲେଖକ ସମ୍ମେଳନର ଭୂତପୂର୍ବ ସଭାପତି । ଅଧୁନା ଫକୀରମୋହନ ସାହିତ୍ୟ ପରିଷଦର ଉପ-ସଭାପତି । 'କାବ୍ୟ' ନାମକ ଏକ ସାମୟିକ କବିତା

ସଂକଳନର ସମ୍ପାଦକ । ଜୀବନଧର୍ମୀ ମାନବବାଦୀ ଚିନ୍ତାଧାରାର ସୁବୋଧ୍ୟ ପରିପ୍ରକାଶ ତାଙ୍କ କବିତାର ବୈଶିଷ୍ଟ୍ୟ ।

ରଚନା :—ମରୁଗୋଲାପ ଓ ଅନ୍ୟାନ୍ୟ କବିତା, ଉନୋଟି ନିଃଶ୍ୱାସର ଆକାଶ, ନିଜସ୍ୱ ସଂଳାପ

ସୀତାକାନ୍ତ ମହାପାତ୍ର (୧୯୩୭):—କଟକ ଜିଲ୍ଲା ପାଟକୁରାରେ ଜନ୍ମ । ଏଲାହାବାଦ ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ଏମ ଏ ପାସ । ବର୍ତ୍ତମାନ ଓଡ଼ିଶାର ପ୍ରଶାସନିକ କ୍ଷେତ୍ରରେ ଜଣେ ପଦସ୍ଥ ଆଇ ଏ ଏସ କର୍ମଚାରୀ । କବି, ଗବେଷକ ଓ ପ୍ରାବନ୍ଧିକ ହିସାବରେ ଓଡ଼ିଶାରେ ତଥା ଓଡ଼ିଶା ବାହାରେ ସୁପରିଚିତ ଓ ସମ୍ମାନିତ ।

ରଚନା :—ଦୀପ୍ତି ଓ ଦ୍ୟୁତି, ଅଷ୍ଟପଦୀ, ଶବ୍ଦର ଆକାଶ ।

## —ପ୍ରଥମ ପଂକ୍ତି ସୂଚୀ—


| ପ୍ରଥମ ପଂକ୍ତି | ପୃଷ୍ଠା |
|---|---|
| ଅଇଲେ ଦୂର ଦେଶୁଁ ଭ୍ରମରମାନେ ଅର୍ଜ୍ଜନେ ଧନ | ୧୯୩ |
| ଅଗ୍ନିକଣା ! ଅଗ୍ନିକଣା ! ଦେହ-ଦୀପେ ଜାଳ ଦୀପ୍ତ ଶିଖା ... | ୩୬୦ |
| ଅଗସ୍ତି ବୋଇଲେ ଶୁଣ ବଇବସ୍ୱତ ମନୁ | ୧୯ |
| ଅହିଂସା ଧର୍ମ ଏହୁ, ହିଂସା ନାହିଁ | ୨୫୫ |
| ଅଣିମାଦି ସୁଖଦାୟୀ ଶୋଇଅଛୁ ଅଣି ହୋଇ | ୧୦୧ |
| ଅନନ୍ତ ଅପାର ତୃଷ୍ଣ ରେ ମହା ଆକାଶ ! | ୨୬୯ |
| ଆଖିର କପୋତ ମୋର ଆକାଶର ଇସ୍ପାତ ଦେହରେ | ୪୧୨ |
| ଆଦ୍ୟ ମାର୍ଗଶିର ଶିଶିରେ ଶୀତ | ୬୩ |
| ଆରେ ବାବୁ ରୂପଧାମ ! | ୬୪ |
| ଆରେ ବାବୁ ଶ୍ୟାମଘନ ! ତୁ ଗଲେ ମଧୁ ଭୁବନ | ୨୧୨ |
| ଆଶାରସ ଘନକାଳ ହୋଇ ଉଦୟ | ୧୩୨ |
| ଆହା ମୋ ଜୀବନଧନ ଯିବନେ କି ଥିବରେ | ୧୫୬ |
| ଆହା ବାବୁ କନ୍ୟା ସେ ! | ୧୦ |
| ଆହେ ନୀଳଶଇଳ ପ୍ରବଳ ମତ୍ତ ବାରଣ | ୮୪ |
| ଉଠିଲୁ ଏତେ ବେଗି କାହିଁକିରେ ଦୁଃଖି ଧନ | ୨୩୬ |
| ଉଦ୍ଧବ ବଚନ ଶୁଣି ବୋଲନ୍ତି ଗୋପ ରମଣୀ | ୨୧୪ |
| ଉଷା ଉଷା ପାବତ ତହିଁ ବସଇ ସବଶ୍ରୀ ବାଳୀ | ୫ |
| ଏ ହସ୍ତରୁ ସୁବକୁଷ ସାବଧାନେ ଘେନରସ | ୧୯୮ |
| ଏଥୁ ଅନନ୍ତରେ ରସ ଶୁଣ ହେ ମାଳିନୀ ବେଶ | ୧୪୪ |
| ଏଥୁ ଅନନ୍ତରେ ସପତମ ଗ୍ରନ୍ଥ ଗୀତ | ୮୬ |
| ଏଥୁ ଆନରସ ଶୁଣ ହେ ବନ୍ଧୁଷ ସୁନ୍ଦରୀମଣୀର ଗ୍ରମୁରେ | ୧୨୮ |
| ଏବେ ଗ୍ରୀଷମ କାଳ ଗଲା | ୫୮ |

ଏମନ୍ତ ବିସ୍ମୟ କରନ୍ତେ ଏଣେ ୧୦୯
ଏମନ୍ତ ସମୟରେ ଯେ ଲଙ୍କା ମଣ୍ଡପଠ ୫୨
ଏମନ୍ତେ କହୁଁବନ ହୁଏ ଶେଷ ୮୫
ଏହି କି ସେ ଆର୍ଯ୍ୟଭୂମି ! ଏ ଭୂମିର ସୁତ ! ୨୬୧
ଏହି ସମୟରେ ସଜନୀ ମଧ୍ୟରେ ନୃପସୁତା ଉପଲହସ୍ତ ୧୬୮
କଉଁ ବଦେଶୀ ତରୁଣ ଶିରୋମଣି ତରଳ ଚଟୁଳ ଚତୋଇରେ ... ୧୬୮
କଂସେ ନନ୍ଦ ସୁତ ହେବା ଶୁଣିଲେ ୧୧୨
କମଳଧର ହେ କମଳଧର ଜଗତ ନାୟକ ୧୩୩
କର ସାଧୁଜନମାନେ ଏକମନ କର୍ଣ୍ଣ ଦେଇ କୃଷ୍ଣ କଥାକୁ ... ୧୧୩
କରୁଥିଲୁ ମୁଁ କାହିଁ କାହିଁ ରେ ୨୩୨
କଳା କଳେବର କହ୍ନାଇ ସଙ୍ଗେ ଗୋହଣୀ ସୁତ ୨୧୧
କହଇ ନାଗେଶ୍ୱର ୧୬୫
କହଇ ମନ ଅରେ ମୋ ବୋଲ କର ୨୧୮
କହଇ ସ୍ପଷ୍ଟ ସଖୀ ଦୂତିକାକୁ ୪୧
କହନ୍ତି କାମିନୀ ଶୁଣ ହେମନ୍ତ ଦୁଲଣୀ ୧୩
କହନ୍ତି ଯୁଧିଷ୍ଠି ସହଦେବ ଭାଇ ଶୁଣ ବଚନେ ୧୨୭
କହ ହନୁ ମୋର କାନ୍ତର କୁଶଳ ଲକ୍ଷ୍ମଣର ସବ କୁଶଳ ୧୬୦
କହିବାରେ ଆଜ ଅଛୁ କି ସେ ରମା ୧୬୭
କାଅ-ତରୁବର ପଞ୍ଚ ବତାଳ ୮
କାଷ୍ଠ-ପାଷାଣ-ଗଠିତ ହେ ନିର୍ଜୀବ ଦେବତା ମୂରତ ! ୩୪୯
କାହାରେ କହିବ ସନ୍ତ ମୋ ଅନ୍ତର ଦାହାରେ ୨୨୩
କାହିଁକି ଜନମ ହୋଇଲି ଗୋସାଇଁ ୧୮୩
କି କରାଳ ଆଜ ରଜନୀ ବହେ ଝଞ୍ଜା ପବନ ୩୧୮
କେରସିନ, କିଛୁ ଧୂଆଁ , ବତୀ ଶିଖା ଏବ କିଛୁ କୀଟ ୪୨୩
କୁସୁମ କଳିକା ଅଳ୍ପ ସୌରଭର ଖଣି ୨୯୦
କୁସୁମ ସମସ୍ତ ହୋଇଛୁ ଉଦସ୍ତ ପଲ୍ଲବଳ ତରୁଲତା ୨୦୮

କୁମୁଦବନ୍ଧୀ ସନ୍ଧ୍ୟାର ଶାନ୍ତ ଅବଗରଣରେ ୪୧୬
କୁହୁନଅଁ ଗିଳିଚୁ ନଅଁ ୨୨୦
କେଳି କଳାନିଧି କଦମ୍ବ ମୂଳେ ୮୧
କେଶର କୁଞ୍ଜ ଶେଯରେ ୩୨୨
କୋଇଲି ! କାନ୍ତ ମୋର ଗଲେ ମୃଗ ମାରି ୫୮
କୋଇଲି ! କେଶବ ଯେ ମଥୁରାକୁ ଗଲେ ୫୭
କ୍ରମେ ମଧୁଶେଷ ହୁଅନ୍ତେ ପ୍ରବଣ ହୋଇଲି ସଂଯମ ସମସ୍ତ ... ୧୧୪
କ୍ରମେ ଯଥାକାଳେ ଟୁଟିଲି ଛଇଳା ଯୌବନ ସୀମା ୨୭୨
କୃପାଲୋଳ-ଲୋଚନା ! କଳକଣ୍ଠ-ବଚନା ୯୬
କୃପାସିନ୍ଧୁ ବଦନ କର ଅବଲୋକନ ୧୧୬
କୃଷ୍ଣ ମହିମା ଯହିଁ ଶୁଣି, ସେ ସଦ୍‌ବାକ୍ୟର ମୂର୍ଦ୍ଧନ ୧୧୮
କୃଷ୍ଣ ଗୁଣ ଶୁଣି ବରଜ ତରୁଣୀ ହୃଦବେ କହନ୍ତ ଏକ ୧୨୪
କୃଷ୍ଣ ପଞ୍ଚଗଣ୍ଡ କାଳ ଅନ୍ତରେ ୧୯୪
ଖଗପ ରୂ ହେଲୁରେ ୨୪୧
ଗଅଣଡ ଗଅଣଡ ତଇଲି ବାଜୀ ହେଙ୍କେ କୁଗଡୀ ୬
ଗଳଣିତଗଳ୍ପ ନଅରେ ସଙ୍ଗୀତ ୨୪୧
ଗ୍ରାମ ବେଙ୍ଗେ ଶମଶାନ କୂଡ କୂଡ ହାଡ଼ମାନ ୩୯୫
ଗାଇଲେ ଗାୟେଣୀ ମୃଦୁ ରବେ ରସଗୀତ ୭୨
ଗ୍ରାମେ କାହିଁ ବସି କାକଗଣ ୩୦୫
ଗୋଷ୍ଠ ଚନ୍ଦ୍ରମାକୁ ଆସ ବୋଲି ସସାରେ ୨୩୪
ଘେନାଇ ଆମ୍ଭେ ଯେତେ କହିଲୁଁରେ ୨୪୨
ଚକା ନୟନ ହେ, ଜଗୁଜୀବନ ଶ୍ରୀହରି ୭୩
ଚରଣ ଅରୁଣ ରାଜେ ୦୭
ଚଟିଆ ମୁଖରେ ଚଟେଇ ମୁକ୍ତି ୩୧୦
ଚେତ ଚତୁରସ୍ତ ଗୃହିଁ ନସି ନାଶେ ଯାଶେ ନାହିଁ ଦ୍ରବ୍ୟ ଉଣୁଣ ... ୧୪୩
ଛଳବାହନାଣ ହେ ! ଗୁଡ଼ ଏ ସାହାସ ହେ ୨୪୩

ଜଗତେ କେବଳ ... ୨୩୯
ଜଗନ୍ନାଥ ହେ କିଛି ମାଗୁନାହିଁ ମୁଁ ତୋତେ ୨୨୨
ଜୟ ଭକତ ବତ୍ସଳ ଜଗତ ଈଶ୍ୱର ୧୩୪
ଜୀବନର ସଙ୍କେ ସନ୍ଧିଁ ସ୍ୱାନ ଅବସାନ ୩୫୯
ଜ୍ଞାନ ବୋଲନ୍ତ ମନ ଶୁଣ ୧୧୯
ଝଗଡ଼ ମାତ୍ର ହେଲ ହେ ଶ୍ୟାମ ୨୪୩
ଠିକ ଠ ବର୍ତ୍ତୁଳ ଚନ୍ଦ୍ରାନନା ତୋ ଚଉରେ ୨୪୪
ଡର ନାହିଁକ ହେ ପର ତରୁଣୀ ହରଣୁଁ ୨୪୪
ଡାମରୁ ବାଜୁ ରେ ଡାମରୁ ବାଜୁ ୩୦୩
ତଥାପି ମୋ ଜୀବନରେ ବାରମ୍ବାର ଦୁଃଖର ଦୋହଦେ ୪୦୩
ତାହା ଶୁଣି ଚନ୍ଦ୍ରାବଳୀ ହରଷ ୧୮୨
ଫଣି ଭୂଷଣ ମହିଁ ବାହୁଅ ହେଲେ ୪
ଦ୍ୱାରକା ଯୁବତୀ ମୋହ ହୋଉଛନ୍ତି ୭୯
ତୋ ଘେନ ତମାଳ ଶ୍ୟାମ ମୋ ମରକତ କଣ୍ଠିଲରେ ୨୪୫
ଦୃଷ୍ଟ ଯେଉଁ ଦନୁ ଗର୍ଭରେ ହୃଦୟ ସେହିଦନୁ ଦୁଃଖ ନାହିଁ ... ୭୬
ଦୁମ୍ଭ ସଙ୍ଗେ ମୁହିଁ ଯିବ ହେ ୨୨୪
ଦନୁଁ ଦନୁଁ ନନ୍ଦନନ୍ଦନସ୍ୱ ଗୋ ନବ ନବ ପଦ୍ମ ମିତ ୨୨୩
ଦନେ ନ ଡାକରୁ ରାଧିକା ବୋଲି ରେ ମୁରଲି ୨୨୨
ଦନେ ଦନେ ତରୁଣୀ ପ୍ରେମେ ହୋଇ ଆତୁରୀ ୨୦୭
ଦୁର୍ଗମ-ଗିରି-ଦୁର୍ଗ ପ୍ରାଚୀର ଗାନ୍ଧି ଦୁଆରେ ବସି ୩୩୯
ଦୂରେ ତାଳବଣ ଆକାଶେ ଶୁଣାଏଁ ୪୦୭
ଦେଖି ନବ କାଳକା ବକାଳକା ମାଳକା ଅଳି କାଳକାକାନ୍ତ ସ୍ତୁଭ ୧୪୮
ଦେଖିଲୁ ସଂସାରେ ବସିଛୁ ହାଟ ୨୮୭
ଦେଇଲି ସପ୍ତ କୁଳକୁ ଟେକ ଜଳାଞ୍ଜଳି ୨୩୫
ଦେଶବାସୀ, ବନ୍ଧୁ, ଆତ୍ମୀୟ ସୋଦର ୩୧୪
ଧଉଳ ପାହାଡ଼, ଧଉଳ ପାହାଡ଼ ୩୩୩
ଧୀର-ଚନ୍ଦ୍ର-ଦୁନ୍ଦ-ପଦ୍ମ ମନ୍ଦିର ୨୦୧

| | |
|---|---|
| ଧୀରେ ଘେନ କାନନରେ କୃଷ୍ଣ ବଳମ୍ବିତ | ୨୦୪ |
| ନଗନ ଭୂଇଁ ନଗନ ମାଟି ଘର | ୩୮୪ |
| ନଗର ବାହାରେ ଡୋମ୍ବି ତୋହର କୁଡ଼ିଆ | ୩ |
| ନଟୀ ଅଙ୍ଗ ଶାଳୀ କଣ ଜୂତା ପାଉଛୁ | ୧୦୩ |
| ନାଇଲ ନଦୀର ତଟରେ ସୂର୍ଯ୍ୟ ଅସ୍ତମିତ | ୩୪୧ |
| ନାନା ରଙ୍ଗେ ଖେଳନ୍ତ ଗୁଳଗୁଞ୍ଜା | ୧୭୫ |
| ନିଜ ବନ୍ଦନା ପଢେଁ, ସଜନୀରେ ! | ୩୭୭ |
| ନିର୍ମଳ ଚନ୍ଦ୍ରମଣ୍ଡଳ ଶରଦେ ବିରାଜ | ୧୩୪ |
| ନିରଳସ ଏକ ନୀରବ ସ୍ୱରୂପ ସବ | ୪୧୯ |
| ନୂଆ ନଟ ପଟଳ ମୁକୁଟ ହେ ! | ୨୪୨ |
| ପଖାଳ ଉତ୍କଳେ ସଞ୍ଜୀବନୀ ସୁଧା ... | ୩୧୨ |
| ପରମ୍ ବଇକୁଣ୍ଠ ଏହୁ ... | ୭୯ |
| ପହିଲି ପାଳି ବୋଉ ଦେଲୁ ପଠାଇ | ୪୨୯ |
| ପ୍ରଶାନ୍ତ ନିଶାନ୍ତ କାଳ ବିଗତେ ଉତ୍କଳ | ୨୭୭ |
| ପାହାଡ଼ ପାହାଡ଼ ପଥର ଯେଉଁଠି ମଣିଷ କରଛୁ ଚୂନା | ୪୧୪ |
| ପ୍ରାଣଠୁଁ ଅଧିକ ଅଟଇ ଯେହୁ | ୭୭ |
| ପ୍ରୀତି ଚୁମ୍ବ ଶାଣ ଦଅରେ | ୨୨୦ |
| ପୋଡ଼ମାଟି, ପୋଡ଼ ଅଶ୍ରୁ ବୃଷ୍ଟି | ୩୯୭ |
| ଫାଟି ପଡ଼ିବାର ନିକୁଞ୍ଜ ସଞ୍ଚାର ଭ୍ରମୁଁ ମୋ ଚରଣ ତଳ | ୨୪୭ |
| ଫୁଲଟି ଯେବେ ମୋର ଯାଏ ଝରି | ୩୩୩ |
| ବଳେ ବସିଥିଲ ଧ୍ରୁବ ଉପରେ | ୧୫୪ |
| ବଖାଣି ମହିମା ଧର୍ମଙ୍କୁ ସ୍ଥାପିବା ଶ୍ରୀ ମୁଖରେ ଆଜ୍ଞା ଦେଲେ ... | ୨୫୪ |
| ବନ୍ୟା, ବନ୍ୟା, ଚତୁର୍ଦ୍ଦିଗେ ପ୍ରଳୟ ପ୍ଲାବନ | ୩୫୫ |
| ବନ୍ଦଇ ଦୀନ ବାନ୍ଧବ ହରି | ୧୩୧ |
| ବନ୍ଦେ ଉତ୍କଳ ଜନନୀ | ୩୩୦ |
| ବରଜ ବନ୍ଧୁ ହେ ପଶ୍ଚାତ ଯାହା | ୧୯୭ |

ବର୍ତ୍ତୁଳ ମସ୍ତକ କ ସେ ହେମନଟିକାଲ ୯୯
ବର ବରଷା ହେଲା ପରବେଶ ୧୦୭
ବରଷା ପ୍ରବେଶ ହୋଇଲା ଆସି ୨୦୯
ବସନ୍ତର ସାମ୍ରାଜ୍ୟରେ ... ୪୨୪
ବସି ମୁଣ୍ଡ ପାଶେ ସୁତାକୁ ବଢାଇ ୨୯୯
ବହୁ ବନ ଭ୍ରମି ଭ୍ରମି ଅବରତେ ୨୭୫
ବାଧିଲା ଜାଣି କ୍ଷମା କର ନୋହିଲେ ରମାରମଣ ଦଣ୍ଡେ ହଥ ଟାଳ ୨୩୮
ବାହାର ପର୍ଣ୍ଣବାସୁ ବୃଦ୍ଧି ବୋଇଲେ ୧୫୩
ବ୍ରାହ୍ମଣ ସ୍ୱରୂପ ଧଇଲେ ପକ୍ଷୀରେ ୨୯
ବସ୍ତ୍ରରଇ ନବ ମାଲ ସମକରେ କବମନେ ୧୫୦
ଭଜନ ବେଳା, ଭଜନ ବେଳା ୩୭୧
ଭଜଇ ମୋ ଯେତେ ଗୁରୁପାଦ ଗତେ ୨୫୪
ଭଗଲକୁ ଆଲିଙ୍ଗନ କର ଜାହ୍ନବୀ ଶୋଭନ ୧୫୧
ଭପ୍ରଳା ଏ ଧରଣୀର ଦେଶେ ଦେଶେ ବସ୍ତାର ହଗନ୍ତ ୪୧୩
ଭୁଲିଥାଇ ବନେ ନଡ ପ୍ରଡ ହନେ ୨୫୨
ବେନଜନ କଥା ଧର୍ମ ଉଲଙ୍କତା ୨୫୩
ଭଙ୍ଗୀ ସ୍ବହାଁ ଭ୍ରୁକୁମଳ ଭ୍ରକଙ୍ଗୀ ୨୪୭
ଭଲକର ନାଆ ବୃନ୍ଦାରେ ନାଉର ୩୨୨
ହେ ମୁନ ! ପ୍ରତିମାନଙ୍କୁ ନଦଲ ବହୁତ ୧୭୧
ମଧୁର ପ୍ରଦୋଷ ସମସ୍ତ ସର୍ଣ୍ଣ କରଣ ବୋଲା ୨୫୯
ମନ ଦେଇ ଶୁଣ କୋହଦେ ନୃପସୁତାସୁକେଶୀ ୧୩୮
ମଙ୍ଗଳେ ଅଇଲା ଉଷା ବକଚକ୍ରଣୀବଦ୍ଧୁଣା ୨୯୭
ମଞ୍ଚପାନ୍ତେ କଅଁ ଏତେ ଲୋକ ଠିଆ ୨୭୩
ମଞ୍ଜୁଷ ଭିତରେ ଶ୍ରୀରାମଚନ୍ଦ୍ର ପଣି ୪୪
ମଣ୍ଡୁକା ମାଡୁଛୁ ଝୁମୁକ କଠାହ ଶୃଗାଳ ହୋଇଛୁ ରଜା ୧୭୦
ମାଗୁଛୁ, ଚଲିକା, ମେଲଣି ତୋଠାରେ ୨୭୮

ମାଟିରେ ଫଳାଇ ସୁନା ୩୯୧
ମୋ ଅର୍ଜ୍ଜିତ ପାପ ମୋର ଦୁଃଖର କାରଣ ୨୯୩
ମୋତେ ସେହି ରୂପ ଦେଖାଅ ହରି ୪
ମୋର ଅସ୍ଥି-ପିଞ୍ଜରକୁ ହାତୁଡ଼ିର ନିର୍ମମ ପ୍ରହାରେ ଚୂର୍ଣ୍ଣ କରି··· ୪୧୭
ମୋର କଳା କାଇଞ୍ଚ, ଦଣ୍ଡୁଅଛି କେଉଁଠି ସଞ୍ଜ ଜୋ ୧୭୭
ମୋର ସକଳ ଗର୍ବ କରିଛ ଚୂର୍ଣ୍ଣ ୩୩୨
ମୋହନ ଗୀତ ଛନ୍ଦା ପଞ୍ଜିକା ମା ୨୩୪
ଯେଉଁଠାରେ ନାହିଁ ହୃଦ ବଥାଦେଇ ଟିକଏ ୩୮୯
ଯେତେକ ବକା ନ ହଲଇ ମୀର ୯
ରଥରେ ବସିଣ ରାମ ଚଢନ୍ତି ଯେ ଗଲେ ୪୯
ରାବଣ ବୋଲଇ ଦାତା କେ ଅଛୁ ଏ ପୁରେ ୨୨୭
ରାଧା ଧର ସଖୀ କର ୧୯୯
ରାଧା ପଦ୍ମରଜ ସଙ୍ଗାତରେ କେ ସେ ବ୍ରଜରାଜ ସୁତ ୨୩୧
ରାଧା ବୋଲନ୍ତି କୃଷ୍ଣଙ୍କୁ ଉତ୍ତର ୯୦୧
ରେ ଆସୁନ ! ନଦୀ ପରହର ୨୮୩
ଶରଦ ଚନ୍ଦ୍ରମା ଆନନ ବେନି ଚକୋର କି ସେ ! ୧୦୪
ଶାସ୍ତ୍ରର ବାହାରେ ପୁଣି ତୁମେ ଏ ଯେ ତୁଲ ୪୦୪
ଶ୍ୟାମ ନାଗର ହେ ! ଏ ବେଶ ହୋଇବ ନାହିଁ ୨୨୧
ଶ୍ୟାମ ଯା ଯା ଜହ୍ନାର ତୋ ପୀରତିକ ୨୩୫
ଶ୍ୟାମର ଚୋର କଥା ନାହିଁକରେ ୨୬୭
ଶ୍ୟାମ ସୁନ୍ଦର ମୁରଲୀ ୨୬୬
ଶିଳାଗୃହ ଅନ୍ଧକାରବାସୀ ମୁଁ ଜନନୀ ୬୭୫
ଶିଂଶୁପା ବୃକ୍ଷର ଡାଳେ ··· ୧୫୯
ଶ୍ରୀ ବୃନ୍ଦାବନର ଭିତର ··· ୧୧୭
ଶ୍ରୀ ରାଧା ବାତୁଲୀ ପ୍ରେମରତୁରୁଳ ୨୦୩
ଶୁଣ ଆହେ ସୁଜ୍ଞ ନର ବାରୁଣାବନ୍ତ ନଗର ୯୨
ଶୁଣ ଜନେ ଏଣୁ ରାଧାତାଙ୍କୁ ବଡ଼ ବୋଲ ୧୪୭

ଶୁଣ ରାଜନ ସାବଧାନେ ୫୫
ଶୁଣସି ମୋ ପ୍ରିୟ ମିତଣି ପ୍ରାଣ ଚେତନ ମୋର ୬୪
ଶୁଣି କହନ୍ତ ଅଗ୍ରେ ନରସାଇଁ ୯୯୧
ଶୁଣି ସଚୀବ ବଚନ ରାଜା ୧୦୪
ଶେଫାଳି ! କେଉଁ ଦୂର ତରୁବରେ ଫୁଟିଥିଲୁ ଗୋପନେ ... ୩୪୪
ସକଳେ ବୃନ୍ଦିଲେ ମାନ ଉଚ୍ଛାସନ ସ୍ୱାଧୀନାର ବେଗ ୩୮୧
ସଖୀ, କୁଞ୍ଜବନେ ବଂଶୀ କେ ବଜାଇଲା ଗୋ ୮୩
ସବୁଥିରୁ ବଞ୍ଚିତ କରି କେଉଁ ଯଶବନା ଉଡ଼ାଇବ ହେ ୩୩୧
ସମଧର୍ମୀ କେତେ ପଦ ଥିଲେ ସନ୍ଧତରେ ୨୯୨
ସ୍ୱର୍ଗରେ ନାଗିଲା ମଥା, ମହାଶୂନ୍ୟ ରୁନ୍ଧି ହେଲା ୪୨୬
ସରସ୍ୱତୀ ତୀରେ ବିଜୟେ ରାମ ଲକ୍ଷ୍ମଣ ବେନ ୩୯
ସାଧୁ ସାବଧାନ ବଣେ ଶୁଣ ଜନେ ସହରଷେ ୧୧୭
ସାର ଫଉଜ ହେଲେ ତୟାର ୧୮୯
ସୁମତ ଦେଇ ବସ୍ତ୍ର ସୁମତ ୨[illegible]
ସେଠି ମୁଁ ଦେଖିଛୁ ଲୋକ ଉପାସରେ ପିଠି ପେଟ ଏକାକାର ୩୯୦
ହଜନାହିଁ ଯାର କେଭେଁ କହୁହିଁ ରତନ ‘୮୨
ହୟଗ୍ରୀବ ପ୍ରହ୍ଲାପ୍ରଭୁ ପ୍ରତାପେ ୨୫୦
ହେମ ହରଣୀ, ଧୀରେ ଧାମନେ ସୁନ୍ଦର ଧରଣୀ ୧୫୭
ହେମନ୍ତ ଋତୁ ପ୍ରବେଶ ହୋଇ ହେଲା ନବୀନ ବାଞ୍ଛା ୧୪୯
ହେ ସାରଥୀ ! ଆଜ ଚନ୍ଦ୍ରପାଶେ ଏ କ ବ୍ୟୂହ ? ୩୫[illegible]
କ୍ଷମାନୁକମ୍ପା ଧର ହେ, ୨୦୮
ହେକ ଗୋପିହେ ବୋଇଲା ମିତଣୀ ୧୭୮
ହେଥୁ ଅନନ୍ତରେ ଦ୍ରୋଣ ବିଦ୍ୟା-ପ୍ରଚ୍ଛନ୍ନ ହଜାର ୨୨
ହେଥୁ ଅନନ୍ତରେ ରସ ଶୁଣ ହେ ମାଳଣୀ ବେଶ ୧୪୪
ଲକ୍ଷ୍ମଣ ଭ୍ରାତୃ ଜାନକୀ ଭ୍ରାତୃ ବାଣୀ ଶୁଣିଣ ତରୁଣୀ ୧୫[illegible]
ଲେଖ ଗୋ ଗୋବନ୍ଦ ଗ୍ରମୂକୁ ଚଟାଇ ୨୧୬
ଲୀଳାବଧୂତ କଳେବର [illegible]୦

—o—

ପ୍ରାୟ ଅର୍ଦ୍ଧ ଶତାବ୍ଦୀ ପୂର୍ବେ ପୂର୍ଣ୍ଣଚନ୍ଦ୍ର ମଜୁମଦାରଙ୍କ ଦ୍ୱାରା ସଙ୍କଳିତ ଓ କଲିକତା ବିଶ୍ୱବିଦ୍ୟାଳୟର ଆନୁକୂଲ୍ୟରେ ପ୍ରକାଶିତ ହୋଇଥିବା କବିତା-ସଙ୍କଳନ ପରେ ଏହାହିଁ ହେଉଛି ଅତୀତଯୁଗରୁ ଆରମ୍ଭ କରି ସାଂପ୍ରତିକ କାଳ ପର୍ଯ୍ୟନ୍ତ ଓଡ଼ିଆ କବିତାର ଏକ ସୁସଙ୍କଳିତ ସଙ୍କଳନ । ଏହି ସଙ୍କଳନରେ ସଂପାଦକ ଅଧ୍ୟାପକ ବସନ୍ତକୁମାର ଶତପଥୀ ପ୍ରତ୍ୟେକ ଯୁଗରେ ଓଡ଼ିଆ କାବ୍ୟ ସାହିତ୍ୟର ପ୍ରତିନିଧିତ୍ୱ କରୁଥିବା ସମସ୍ତ ପ୍ରଖ୍ୟାତ କବି ଓ କବିତାକୁ ସନ୍ନିବେଶ କରିବାର ଏକ ସୁନ୍ଦର ପ୍ରଚେଷ୍ଟା କରି ଅଛନ୍ତି । ପ୍ରାୟ ହଜାରେ ବର୍ଷ ମଧ୍ୟରେ ପ୍ରତିଷ୍ଠିତ କବି ଓ ଲୋକପ୍ରିୟ କବିତା-ଗୁଡ଼ିକୁ ଏହି ସଙ୍କଳନରେ ଯଥାସମ୍ଭବ କାଳାନୁକ୍ରମରେ ସଜ୍ଜିତ କରାଯାଇଛି । ଗ୍ରନ୍ଥର ପ୍ରାରମ୍ଭରେ ଓଡ଼ିଆ କାବ୍ୟଧାରାର ସମ୍ୟକ ଇତିହାସ ତଥା ତାହାର ଗତି ପ୍ରକୃତିର ସୂଚନା ଦିଆଯାଇଛି । ଗ୍ରନ୍ଥର ଶେଷ ଭାଗରେ 'କବି-ପରିଚୟ' ଓ କବିତାଗୁଡ଼ିକର 'ପ୍ରଥମ ପଂକ୍ତି ସୂଚୀ' ପ୍ରଦତ୍ତ ହୋଇଛି । କାବ୍ୟ-ପ୍ରେମୀ ଓଡ଼ିଆ ପାଠକ ଓ ସମାଲୋଚକମାନେ ଏହି ସଙ୍କଳନରୁ ପାଠ କରି ଓଡ଼ିଆ କାବ୍ୟ-କବିତାର ରସାସ୍ୱାଦନ କରିବା ସଙ୍ଗେ ସଙ୍ଗେ ଓଡ଼ିଆ କାବ୍ୟ ସାହିତ୍ୟର ବିକାଶଧାରାର ସମ୍ୟକ ପରିଚୟ ଏଥିରୁ ପାଇ ପାରିବେ । ବିଶେଷତଃ ସାହିତ୍ୟ ଏକାଡ଼େମୀ ଏ ଧରଣର ଏକ ସଙ୍କଳନ ପ୍ରକାଶ କରି ଓଡ଼ିଆ ସାହିତ୍ୟରେ ବହୁଦିନରୁ ଅନୁଭୂତ ହେଉଥିବା ଏକ ଅଭାବ ଦୂର କରିବାରେ କେତେଦୂର ସକ୍ଷମ ହୋଇ ଅଛନ୍ତି ତାହା ଓଡ଼ିଆ ପାଠକପାଠିକାବର୍ଗ ସ୍ଥିର କରିବେ ବୋଲି ଆଶା କରାଯାଏ ।

ମୂଲ୍ୟ ୯୫ ଟଙ୍କା ।